# ସାହିତ୍ୟ ସାଧକ
# ଶାନ୍ତନୁ କୁମାର ଆଚାର୍ଯ୍ୟ



ସଂପାଦନା : ପ୍ରଫେସର ବାଉରୀବଂଧୁ କର

# ସାହିତ୍ୟ ସାଧକ

# ଶାନ୍ତନୁ କୁମାର ଆଚାର୍ଯ୍ୟ

ସଂପାଦନା:

**ପ୍ରଫେସର ବାଉରୀବଂଧୁ କର**

ସାରସ୍ୱତ ସାଧକ ଶାନ୍ତନୁ କୁମାର ଆଚାର୍ଯ୍ୟ ଅଭିନନ୍ଦନ ସମିତି, ଓଡ଼ିଶା

୫୦୧୨/୫୮୫୩, ଗଜପତିନଗର, ଭୁବନେଶ୍ୱର - ୭୫୧୦୦୫

# ସାହିତ୍ୟ ସାଧକ ଶାନ୍ତନୁ କୁମାର ଆଚାର୍ଯ୍ୟ

ସଂପାଦନା :

**ପ୍ରଫେସର ବାଉରୀବଂଧୁ କର**

ପ୍ରକାଶକ :

**ବିନୋଦ କୁମାର ମଲ୍ଲିକ**

ସାରସ୍ୱତ ସାଧକ ଶାନ୍ତନୁ କୁମାର ଆଚାର୍ଯ୍ୟ ସମିତି, ଓଡ଼ିଶା

ପ୍ରକାଶ କାଳ : ୨୦୦୫ ଫେବୃୟାରୀ

ମୁଦ୍ରଣ : ପ୍ରିଣ୍ଟୋଭର୍ସ, ୟୁନିଭର୍ସ, କଟକ-୧

ଡି.ଟି.ପି : ଆଲିମ୍ପନ କମ୍ପୁଟେକ୍, କଟକ-୯

ପ୍ରଚ୍ଛଦ ଓ ଅଳଙ୍କରଣ: ଶଶିକାନ୍ତ ରାଉତ

ମୂଲ୍ୟ : ୧୫୦·୦୦

(ଏକଶତ ପଚାଶ ଟଙ୍କା ମାତ୍ର)

**SAHITYA SADHAK SANTANU KUMAR ACHARYA**

Edited by :

**Prof. Bauribandhu Kar**

Published by :

**Binod Kumar Mallick**

*Saraswat Sadhak Santanu Kumar Acharya Abhinandan Samiti, Orissa*

Year of Publication : February 2005

Printed at : The Printoverse, Universe, Cuttack.-1

D.T.P. at : Alimpan Computech,Ctc- 9

Cover Designed by : Sasikanta Rout

**Price : 150 /-**

**(Rupees One hundred Fifty only)**

# ଉତ୍ସର୍ଗ

ଓଡ଼ିଆ କଥା ସାହିତ୍ୟର ବରେଣ୍ୟ କଥାକାର
ଡକ୍ଟର କୃଷ୍ଣପ୍ରସାଦ ମିଶ୍ରଙ୍କ ସ୍ମୃତିରେ...



ଏକ ଅନ୍ତରଙ୍ଗ ମୁହୂର୍ତ୍ତରେ
ଶ୍ରୀଯୁକ୍ତ ଶାନ୍ତନୁ କୁମାର ଆଚାର୍ଯ୍ୟ
ଓ
ଧର୍ମପତ୍ନୀ
ଶ୍ରୀମତୀ ନିରୁପମା ଆଚାର୍ଯ୍ୟ



କୋଣାର୍କ ପରିଭ୍ରମଣରେ
ସପତ୍ନୀକ କଥାକାର
ଶ୍ରୀଯୁକ୍ତ ଆଚାର୍ଯ୍ୟ



ଶ୍ରୀଯୁକ୍ତ ଶାନ୍ତନୁ କୁମାର ଆଚାର୍ଯ୍ୟ
(ଅଭିଭାଷଣ ପ୍ରଦାନବେଳେ)



ଶ୍ରୀମତୀ/ଶ୍ରୀଯୁକ୍ତ ଆଚାର୍ଯ୍ୟ

# ସୂଚୀ





# ସଂପାଦକୀୟ...

ସାଂପ୍ରତିକ କାଳର ଅନ୍ୟତମ ପ୍ରସିଦ୍ଧ ଗଦ୍ୟସ୍ରଷ୍ଟା ଭାବରେ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ଖ୍ୟାତି ସୁବିଦିତ । ଗଳ୍ପ, ଉପନ୍ୟାସ, ଶିଶୁସାହିତ୍ୟ, ବିଜ୍ଞାନ ସାହିତ୍ୟ ରଚନାରେ ସେ ଅଜସ୍ର ଯଶର ଅଧିକାରୀ । ବିଂଶଶତକ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ତାହାଙ୍କ ସ୍ୱାତନ୍ତ୍ୟ ବାରି ହୋଇପଡ଼େ । ଗୋପୀନାଥ ମହାନ୍ତିଙ୍କ ପରେ ସେ ଓଡ଼ିଆ ଉପନ୍ୟାସକୁ ଦେଇଛନ୍ତି ନୂତନ ଦିଗ୍‌ଦର୍ଶନ । ଭାବବସ୍ତୁ ଦୃଷ୍ଟିରୁ ତାଙ୍କ ଉପନ୍ୟାସର ଯେପରି ଗୁରୁତ୍ୱ ରହିଛି, ଭାଷା ଓ ରଚନା ଶୈଳୀ ଦୃଷ୍ଟିରୁ ତାଙ୍କ ଉପନ୍ୟାସ ଏକାନ୍ତ ଅଭିନବ ମନେହୁଏ । ପ୍ରାୟ ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ସେ ସାହିତ୍ୟ ସାଧନାରେ କରିଛନ୍ତି ଜୀବନ ଅତିବାହିତ ।

୧୫ ମଇ ୧୯୩୩ ମସିହାରେ ଶାନ୍ତନୁ କୁମାରଙ୍କର ଜନ୍ମ । କଟକ ଜିଲ୍ଲାର ସିଦ୍ଧେଶ୍ୱରପୁର ତାଙ୍କର ମୂଳଗାଁ । ପିତା ଅନନ୍ତ ଚରଣ ଆଚାର୍ଯ୍ୟ ଓ ମାତା କୃଷ୍ଣପ୍ରିୟା ଦେବୀ । ତାଙ୍କର ଶିକ୍ଷାଗତ ଯୋଗ୍ୟତା ଏମ୍.ଏସ୍.ସି. । ୧୯୫୬ ମସିହାରେ ସ୍ନାତକୋତ୍ତର ଶିକ୍ଷା ପରେ ସେ କିଛି କାଳ ଗବେଷଣା କରିଥିଲେ କିନ୍ତୁ ୧୯୫୮ ମସିହାରେ ଅଧ୍ୟାପନା ବୃତ୍ତିରେ ଯୋଗଦେବା ପରେ ଆଉ ସେ ଦିଗରେ ବିଶେଷ ଅଗ୍ରସର ହୋଇପାରିନଥିଲେ । ସେ ରସାୟନ ଶାସ୍ତ୍ର ଅପେକ୍ଷା ଜୀବନ ଓ ଜଗତ ସଂପର୍କରେ ଅଧିକ ଗବେଷଣା କରିବା ସକାଶେ ସାହିତ୍ୟ ସାଧନାକୁ କରିଥିଲେ ଜୀବନର ବ୍ରତ ।

ଶାନ୍ତନୁ କୁମାରଙ୍କ ସାହିତ୍ୟିକ ବ୍ୟକ୍ତିତ୍ୱର ପରିଚୟ ଅତି ତରୁଣ ବୟସରୁ ମିଳିଥିଲା । ସବୁ ତରୁଣଙ୍କ ପରି ସେ କବିତାରୁ ଆପଣାର ସାହିତ୍ୟିକ ଜୀବନର ପରିଚୟ ଦେଇଛନ୍ତି । ସେ ପ୍ରାୟ ୧୯୪୫ରୁ ୧୯୪୮ ମସିହା ମଧ୍ୟରେ ଶହେ ପାଖାପାଖି କବିତା ଲେଖିଥିଲେ, ଯାହାର ପାଣ୍ଡୁଲିପି, 'ମନ୍ଦାକିନୀ' ନାମରେ ଏବେ ସୁଦ୍ଧା ଅପ୍ରକାଶିତ ହୋଇ ରହିଛି । ତାଙ୍କର ଅଦ୍ୟାବଧି ପ୍ରକାଶିତ ରଚନା ଗୁଡ଼ିକ ହେଉଛି –

**ଉପନ୍ୟାସ :**

୧୯୬୨ - ନରକିନ୍ନର

୧୯୬୫- ଶତାବ୍ଦୀର ନଚିକେତା

୧୯୬୯-ତିନୋଟି ରାତିର ସକାଳ

୧୯୭୩- ଦକ୍ଷିଣାବର୍ତ୍ତ

୧୯୭୬- ଯାତ୍ରାର ପ୍ରଥମ ପାଦ

୧୯୭୭- ଅନ୍ୟ ଏକ ସମୟ ଅନ୍ୟ ଏକ ଭାରତ

୧୯୮୦ - ଶକୁନ୍ତଳା

୧୯୮୮- ମନ୍ତ୍ରୀଙ୍କ ସେୟାର

୧୯୯୪- ଧରିତ୍ରୀର କାନ୍ଦ

୧୯୯୬- ଅନୁ ହଜିଯିବା ପରେ

୧୯୯୬- ଅଦୃଶ୍ୟ ଜଗତରୁ ବାର୍ତ୍ତା

୧୯୯୭- ବିଲିଗୋଟ୍ ବନାମ ଉରୁବେଳ ଘୋଟକ

୧୯୯୮- ସ୍ୱର୍ଣ୍ଣ ତ୍ରିଭୁଜ

୧୯୯୯- ତୃଷ୍ଣା

୨୦୦୩- ଅନୋମାର କନ୍ୟା

**କ୍ଷୁଦ୍ରଗଳ୍ପ :**

୧୯୬୨- ମନମର୍ମର

୧୯୬୫- ଦୁର୍ବାର

୧୯୭୨- ଏଇ ଶେଷ ପଦଟି

୧୯୭୪- ଅରଣ୍ୟର ଚୂଳ

୧୯୭୮- ଅଦିନ ବଉଳ

୧୯୮୧- ଏକବିଂଶ ଶତାବ୍ଦୀ ପାଇଁ ଗଳ୍ପ

୧୯୮୪- କରଞ୍ଜିଆ ଡାଇରୀ

୧୯୮୫- ଆଦ୍ୟ ସକାଳ

୧୯୮୯- ସର୍ପଯାନ

୧୯୯୧- ଚଳନ୍ତି ଠାକୁର

୧୯୯୫- ନାଟାଲିୟାର ଓଁକାର

୧୯୯୭- ଗଳ୍ପ ବର୍ଣ୍ଣାଳୀ

୧୯୯୮- ଶ୍ରେଷ୍ଠଗଳ୍ପ

୧୯୯୯- ଜଳଛବିର ରାତି

୨୦୦୨- ଦୃଶ୍ୟଅଦୃଶ୍ୟ

**ଶିଶୁ ସାହିତ୍ୟ ଓ ଜନପ୍ରିୟ ବିଜ୍ଞାନ ସାହିତ୍ୟ :**

୧୯୬୧- ମୋ କାଠ ଘୋଡ଼ା କଥା କହେ

୧୯୬୨- ବାଗବଗିଚାର ସୌଦାଗର

୧୯୬୩- ଆକାଶକୁ ସାତୋଟି ପାହାଚ

୧୯୬୪- କୋଶୀ ଉପତ୍ୟକାର ରାଜକୁମାର ମୋହନ

୧୯୭୧- ଶକ୍ତିର କରାମତି

୧୯୮୦- ମୋ ନାଁ ଦା ଭିନ୍‌ଚୀ ଓ ନିଆଁ ଲଗା ଓପି

୧୯୮୯- ନିତିଦିନିଆ ଜୀବନରେ ବିଜ୍ଞାନ

୧୯୮୯- ବୈଜ୍ଞାନିକ ଆବିଷ୍କାର ଓ ଉଦ୍ଭାବନ

୨୦୦୧- ଦିନେ ଆକାଶ ବି ନ ଥିଲା

**ଅନୁବାଦ :**

୧୯୮୬ - 'ଦକ୍ଷିଣାବର୍ତ୍ତ'ର ଗୁଜୁରାଟୀ ଅନୁବାଦ (ଡକ୍ଟର ରେଣୁକା ଶର୍ମା ଅହମ୍ମଦାବାଦ)

୧୯୯୭- ଶକୁନ୍ତଳାର ହିନ୍ଦୀ ଅନୁବାଦ (ରାଧାକୃଷ୍ଣ ପ୍ରକାଶନ ଦିଲ୍ଲୀ)

୧୯୯୫- ଆସନ୍ତାକାଲି ଯାହା ଘଟିଗଲା- ମୂଳ ଇଂରାଜୀ କ୍ଷୁଦ୍ରଗଳ୍ପ 'It happened Tomorrow', ର ଓଡ଼ିଆ ଅନୁବାଦ (ନ୍ୟାସ୍‌ନାଲ୍ ବୁକ୍‌ଟ୍ରଷ୍ଟ ଅଫ ଇଣ୍ଡିଆ, ନୂଆଦିଲ୍ଲୀ)

୨୦୦୨ ଦକ୍ଷିଣାବର୍ତ୍ତର ହିନ୍ଦୀ ଅନୁବାଦ

୨୦୦୪ Santanu kumar Acharaya : a collection of three short stories (ଇଂରାଜୀ ଅନୁବାଦ, ପ୍ରକାଶକ ଗ୍ରାସ ବୁକ୍‌ସ, କଲିକତା)

୨୦୦୪ Anoma's Daughter (novel) (ଇଂରାଜୀ ଅନୁବାଦ ପ୍ରକାଶକ: କଥା ଅନୁଷ୍ଠାନ ନୂଆଦିଲ୍ଲୀ)

ଶାନ୍ତନୁ କୁମାର ଆଚାର୍ଯ୍ୟ ସାହିତ୍ୟ ସାଧନା ସକାଶେ ଜୀବନରେ ବହୁ ପୁରସ୍କାର ପାଇଛନ୍ତି । ସେଗୁଡ଼ିକ ହେଉଛି –

୧୯୬୧- ବିଷୁବ ପ୍ରଜାତନ୍ତ୍ର ଶିଶୁ ସାହିତ୍ୟ ପୁରସ୍କାର

୧୯୬୧- ଭାରତ ସରକାରଙ୍କ ଶିକ୍ଷା ମନ୍ତ୍ରଣାଳୟ- ଶିଶୁ ପୁରସ୍କାର

୧୯୬୩- " "

୧୯୭୭- ଧରିତ୍ରୀ ସମ୍ମାନ

୧୯୮୭- ଶାରଳା ପୁରସ୍କାର

୧୯୯୨- ଉତ୍କଳମଣି ସମ୍ମାନ

୧୯୯୨- ଭାରତ ନାୟକ ସମ୍ମାନ - ସମ୍ବଲପୁର ବିଶ୍ୱବିଦ୍ୟାଳୟ

୧୯୯୩- ରାଜ୍ୟପାଳ ସମ୍ମାନ ଓ ଫଳକ

୧୯୯୩- କେନ୍ଦ୍ର ସାହିତ୍ୟ ଏକାଦେମୀ ପୁରସ୍କାର

୧୯୯୪- କୋଣାର୍କ ସମ୍ମାନ(ଭାରତୀୟ ଭାଷା ପରିଷଦ କଲିକତା)

୧୯୯୫- ଉତ୍କଳର ସଦାଶିବ ମିଶ୍ର ସ୍ମୃତି ପୁରସ୍କାର

୧୯୯୬- ବୀର ଫୁଲମଣି ସମ୍ମାନ

୧୯୯୬- ଖରସ୍ରୋତା ସାଂସ୍କୃତିକ ପରିଷଦ ସମ୍ମାନ

୧୯୯୬- ପ୍ରଜାତନ୍ତ୍ର ବିଷୁବ ପୁରସ୍କାର

୨୦୦୩ - ରାଜୀବ ଗାନ୍ଧି ସଦ୍‌ଭାବନା ପୁରସ୍କାର

୨୦୦୪ - ସାହିତ୍ୟ ଭାରତୀ ସମ୍ମାନ ଓ ପୁରସ୍କାର

୨୦୦୪ - 'କଥା' ପୁରସ୍କାର, ନୂଆଦିଲ୍ଲୀ

ଶାନ୍ତନୁ କୁମାର ଆ୯ ାର୍ଯ୍ୟ ସାହିତ୍ୟର ବିବିଧ ପର୍ଯ୍ୟାୟରେ ଲେଖନୀ ଚାଳନା କରିଥିଲେ ସୁଦ୍ଧା ସେ ମୂଳତଃ ଜଣେ ଔପନ୍ୟାସିକ । ସମକାଳୀନ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଜଣେ ପ୍ରଭାବଶାଳୀ ଔପନ୍ୟାସିକ ରୂପେ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ଖ୍ୟାତି ସୁବିଦିତ । ଭାବବସ୍ତୁ, ଦୃଷ୍ଟିଭଙ୍ଗୀ ଓ ରଚନା ଶୈଳୀ ଦୃଷ୍ଟିରୁ ତାଙ୍କ ଉପନ୍ୟାସଗୁଡ଼ିକ ସ୍ୱତନ୍ତ୍ର । ନିର୍ଭୀକଭାବରେ ସମାଜ ଜୀବନର ସଜୀବ ସତ୍ୟକୁ ପ୍ରକାଶ କରିବାରେ ତାଙ୍କର କୁଣ୍ଠା ନାହିଁ । ଜନଗଣର ଅନ୍ତରଙ୍ଗ ଭାଷାରେ ଯୁକ୍ତିନିଷ୍ଠ ଭାବରେ ଜୀବନର ଅତି ବାସ୍ତବ ରୂପଚିତ୍ରଣରେ ସେ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଏକ ବିରାଟ ବିସ୍ମୟ । ସେ ନିର୍ଭୟର ସହିତ ଚଳିତ ସମୟର ସମାଜକୁ, ମଣିଷକୁ ତାଙ୍କ ଉପନ୍ୟାସମାନଙ୍କରେ ଭେଟିଛନ୍ତି । ସର୍ବତ୍ର ପ୍ରଚଳିତ ଅବକ୍ଷୟ ସମାଜ ବିରୋଧରେ ପ୍ରତିବାଦ । ମନେହୁଏ, ଏ ସମାଜରୁ ମୁକ୍ତି ପାଇଁ ଔପନ୍ୟାସିକ ସତେ ଯେପରି ନିଜର ଏକ ସ୍ୱତନ୍ତ୍ର ପୃଥିବୀ ପରିକଳ୍ପନା କରିଛନ୍ତି ।

ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ଲେଖନୀ ଅଜସ୍ରସ୍ରାବୀ ନୁହେଁ । ଅଳ୍ପ ସମୟ ମଧ୍ୟରେ ଏକାଧିକ ଉପନ୍ୟାସ ଲେଖିବାର କୌଶଳ ସେ ଜାଣନ୍ତି ନାହିଁ । ପ୍ରଥମେ ଜଣେ ଉପନ୍ୟାସ ଲେଖକ ଭାବେ ତାଙ୍କ ପ୍ରତିଭାର ପରିଚୟ ମିଳେ 'ନରକିନ୍ନର' (୧୯୬୨) ଉପନ୍ୟାସରେ । ଏ ଉପନ୍ୟାସଟି ତାଙ୍କ ପାଇଁ ଉଭୟ ଯଶ ଓ ପ୍ରତିଷ୍ଠା ଆଣି ଦେଇଥିଲା । ଏହା ବୁଦ୍ଧିଜୀବୀ ପାଠକ ମହଲରେ ପ୍ରଭୂତ ପ୍ରଭାବ ମଧ୍ୟ ପକାଇଥିଲା । ପରବର୍ତ୍ତୀ ସମୟରେ ତାଙ୍କର 'ଶତାବ୍ଦୀର ନଚିକେତା' (୧୯୬୫), 'ତିନୋଟି ରାତିର ସକାଳ' (୧୯୬୯), 'ଦକ୍ଷିଣାବର୍ତ୍ତ' (୧୯୭୩), 'ଯାତ୍ରାର ପ୍ରଥମ ପାଦ' (୧୯୭୬), 'ଅନ୍ୟ

ଏକ ସମୟ ଅନ୍ୟ ଏକ ଭାରତ' (୧୯୭୭), 'ଶକୁନ୍ତଳା' (୧୯୮୦), 'ମନ୍ତ୍ରୀଙ୍କ ସେୟାର' (୧୯୮୮), 'ଧରିତ୍ରୀର କାନ୍ଦ' (୧୯୯୪) 'ଅନୁ ହଜିଯିବା ପରେ' (୧୯୯୬), 'ବିଲିଗୋଟ ବନାମ ଉଗ୍ରବେଳ ଘୋଟକ' (୧୯୯୭), 'ସ୍ୱର୍ଣ୍ଣ ତ୍ରିଭୁଜ' (୧୯୯୮) 'ତୃଷ୍ଣା' (୧୯୯୯), 'ଅନୋମାର କନ୍ୟା' (୨୦୦୨) ଉପନ୍ୟାସ ପ୍ରକାଶିତ ହୋଇଛି । ଏହି ଉପନ୍ୟାସମାନଙ୍କରେ ସେ ମଣିଷକୁ କୌଣସି ଆଦର୍ଶବାଦର ଗଣ୍ଡିରେ ଧରି ରଖିବାକୁ ଚେଷ୍ଟା କରିନାହାନ୍ତି । ମଣିଷର ମଣିଷପଣିଆ, ସ୍ୱାଧୀନ ଚିନ୍ତାଧାରା ପ୍ରତି ତାଙ୍କର ଯଥେଷ୍ଟ ସମ୍ମାନବୋଧ ରହିଛି । ସେ ମଣିଷକୁ ସ୍ଥାନ, କାଳ, ବହିର୍ଭୂତ ଅନ୍ୟ ଏକ ଚେତନାର ପରିପ୍ରକାଶ ରୂପେ ତାଙ୍କ ଉପନ୍ୟାସମାନଙ୍କରେ ଦେଖିବାକୁ ଚେଷ୍ଟା କରିଛନ୍ତି ।

ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ଉପନ୍ୟାସମାନଙ୍କୁ ବିଂଶ ଶତକର ସାମାଜିକ, ରାଜନୀତିକ ଓ ସାଂସ୍କୃତିକ ପୃଷ୍ଠଭୂମିରୁ ବିଚାର କରାଯାଇପାରେ । ବିଂଶ ଶତକରେ 'ଉତ୍କଳ ସମ୍ମିଳନୀ' (୧୯୦୩), 'ବଙ୍ଗ ବିଚ୍ଛେଦ ଆନ୍ଦୋଳନ' (୧୯୦୫), ବିହାର ଓଡ଼ିଶା ପ୍ରଦେଶ ଗଠନ (୧୯୧୨), 'ପ୍ରଥମ ପୃଥିବୀ ମହାସମର' (୧୯୧୪), 'ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ' (୧୯୩୬), 'ଦ୍ୱିତୀୟ ବିଶ୍ୱଯୁଦ୍ଧ' (୧୯୩୯), 'ଅଗଷ୍ଟ ବିପ୍ଳବ' (୧୯୪୨), 'ଭାରତର ସ୍ୱାଧୀନତା ପ୍ରାପ୍ତି' (୧୯୪୭), 'ମହାତ୍ମାଗାନ୍ଧିଙ୍କ ମୃତ୍ୟୁ' (୧୯୪୮) ଇତ୍ୟାଦି ଐତିହାସିକ ଘଟଣାମାନ ଘଟିଯାଇଛି । ଏହି ସମୟରେ ବିଜ୍ଞାନର ନିତ୍ୟନୂତନ ଆବିଷ୍କାର, ଆଇନଷ୍ଟାଇନଙ୍କ ଆପେକ୍ଷିକବାଦ, କାର୍ଲମାର୍କସଙ୍କ ସାମ୍ୟବାଦୀ ଚିନ୍ତାଧାରା, ସିଗ୍‌ମଣ୍ଡ ଫ୍ରଏଡ଼ଙ୍କ ସ୍ୱପ୍ନ ରହସ୍ୟର ବହୁବିଧ ବ୍ୟାଖ୍ୟା, ସାର୍ତ୍ତଙ୍କ ସ୍ଥିତିବାଦୀ ଦୃଷ୍ଟିଭଙ୍ଗୀ, କାମ୍ୟୁଙ୍କ ଉଦ୍ଭଟ ଭାବଧାରା ପ୍ରଭୃତି ମଣିଷର ଚିନ୍ତାରାଜ୍ୟରେ ଅଦ୍ଭୁତ ପ୍ରଭାବ ପକାଇଛି । ସମାଜରେ ଚୋରି, ବ୍ୟଭିଚାର, ଧର୍ଷଣ, ଲୁଣ୍ଠନ, ଦୁର୍ନୀତି ଏ ଶତକରେ ଆଶାତୀତ ଭାବରେ ମଧ୍ୟ ବୃଦ୍ଧି ପାଇଛି । ରାଜନୀତି କ୍ଷେତ୍ରରେ ନାନା ଧୂର୍ତ୍ତ ବିଜ୍ଞାପନ ଦେଇ ବହୁ ନେତା ଭାରତର ଜନଜୀବନକୁ କଳୁଷିତ କରିଛନ୍ତି । ଅର୍ଥନୀତି କଥା ତ ନ କହିଲେ ଭଲ । ସବୁକାଳେ ନିଅଣ୍ଟ ଆମ ଅର୍ଥନୀତିର ମୂଳମନ୍ତ୍ର । ତା'ସହିତ କଳାଟଙ୍କାର ମଧ୍ୟ ଅଭାବ ନାହିଁ । ଏସବୁ ପରିସ୍ଥିତିରେ ମଣିଷ ଚିନ୍ତାନ୍ୱେଷୀ ହୋଇ ଅତିବାସ୍ତବ ଚିନ୍ତାକୁ ତା'ର ମନୋରାଜ୍ୟରେ ସ୍ଥାନ ଦେଇଛି । ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ଉପନ୍ୟାସ ସମୂହ ଏଭଳି ଏକ ସମୟର ସୃଷ୍ଟି । ଏ ସଂପର୍କରେ ସେ ନିଜର ଉକ୍ତି ପ୍ରକାଶ କରି ଲେଖିଛନ୍ତି, "ମୋର ମନେହୁଏ ଆମେ ଯୁଦ୍ଧୋତ୍ତର କାଳର ସମାଜବାଦ ଓ ଗଣତାନ୍ତ୍ରିକ ଚିନ୍ତନର ଆବାହକ । ଏ ଚିନ୍ତନର ମଣିଷ ଏକ ନିର୍ଦ୍ଦିଷ୍ଟ ସମାଜ ବା ବ୍ୟକ୍ତିର ପ୍ରତିଭୂ ନୁହେଁ । ସେହିପରି ମଣିଷ କ୍ଲାସ୍ ବା କାଷ୍ଟ୍‌ର ସାମଗ୍ରୀ ନୁହେଁ ବୋଲି ଆମର ବିଶ୍ୱାସ । ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ବି ଜ୍ଞାନ ମଣିଷର 'ଟାଇମ୍ ଓ ସ୍ପେସ୍' ଦୃଷ୍ଟିକୁ ଯେତିକି ସମୃଦ୍ଧ ଓ ସୁଦୂରପ୍ରସାରୀ କରିଛି ସେଥିରୁ ମଣିଷ ଗୋଟିଏ ସାମାଜିକ ବା ବ୍ୟକ୍ତିବାଚକ ଅସ୍ତିତ୍ୱରେ ଆବଦ୍ଧ ଜୀବବିଶେଷ ବୋଲି ବୁଝାପଡ଼େନା । ତେଣୁ ମଣିଷକୁ ସ୍ଥାନ କାଳ ବହିର୍ଭୂତ ଅନ୍ୟ ଏକ ଚେତନାର ପରିପ୍ରକାଶରୂପେ ପ୍ରତିଷ୍ଠିତ କରିବାକୁ ଆଜିର ସାହିତ୍ୟିକର ପ୍ରଚେଷ୍ଟା ।" (ଧରିତ୍ରୀ ତା ୨୯.୧୦.୧୯୭୮ ରିଖ) ଚଳିତ ଶତକର ଜଟିଳ ମାନସିକ ପରିବେଶକୁ ରୂପ ପ୍ରଦାନ କରିବାରେ ଶାନ୍ତନୁ କୁମାର ଆଚାର୍ଯ୍ୟ ତାଙ୍କ ଉପନ୍ୟାସମାନଙ୍କରେ ଯଥେଷ୍ଟ ପ୍ରୟାସ କରିଛନ୍ତି । ସେ ତାହାଙ୍କ ଉପନ୍ୟାସରେ ସାଂପ୍ରତିକ କାଳର ଅନ୍ଧ ସମାଜର ବାସ୍ତବ ରୂପ ପ୍ରକାଶ କରିଛନ୍ତି । ଏ ଭୂମିରେ ରାଜନୀତିକ ମଣିଷର ସ୍ୱରୂପକୁ ସେ ଚିହ୍ନାଇ ଦେଇଛନ୍ତି । ସାମାଜିକ ଆବର୍ଜନା ଭିତରେ ସଢୁଥିବା ମଣିଷର ମୁକ୍ତି ପାଇଁ ତାଙ୍କର ଚେଷ୍ଟା କିଛି କମ୍ ନୁହେଁ । ବ୍ୟକ୍ତି ସ୍ୱାଧୀନତା

ପାଇଁ ତାଙ୍କ ଉପନ୍ୟାସମାନ ଏକ ଏକ ବିସ୍ତୀର୍ଣ୍ଣ କ୍ଷେତ୍ର । ମଣିଷର ମନ ଅପେକ୍ଷା ଆତ୍ମାରେ ତାଙ୍କର ଅଧିକ ବିଶ୍ୱାସ । ନୈତିକତା ପରିବର୍ତ୍ତେ ଆତ୍ମିକତା ସ୍ଥାପନ ପାଇଁ ତାଙ୍କ ଉପନ୍ୟାସ ଗୁଡ଼ିକ ଅଧିକ ଅଗ୍ରସର ହୋଇଛି ।

ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ଉପନ୍ୟାସରେ ଅନ୍ଧ ସମାଜର ଚିତ୍ର ପରିଲକ୍ଷିତ । ତାଙ୍କ ଚରିତ୍ରଗୁଡ଼ିକ ଅନ୍ଧାରରେ ବିଚରଣ କରିବାରେ ଆନନ୍ଦ ଅନୁଭବ କରନ୍ତି । 'ନରକିନ୍ନର' ଉପନ୍ୟାସରେ ଅନେକତ୍ର ଏହି ଅନ୍ଧାର ପରିବେଶର ବର୍ଣ୍ଣନା ରହିଛି । କାଠକେବିନର ଅନ୍ଧାର, କବିରାଜ ପିଣ୍ଡାର ଅନ୍ଧାର ସହିତ ଜର୍ଜ ଯେଉଁ ପାଗଳ, ମଦ୍ୟପ, ଲମ୍ପଟ ପ୍ରଭୃତି ଚରିତ୍ରମାନଙ୍କ ସଂପର୍କରେ ଆସିଛି, ସେମାନଙ୍କ ମନର ଅନ୍ଧାରୀ ଭାବନା ଏକାଠି ମିଶି ଏ ଉପନ୍ୟାସର ପରିବେଶକୁ ଘନ ଅନ୍ଧକାର କରିଦେଇଛି । ଏସବୁ ଦେଖିଲେ ସ୍ମରଣକୁ ଆସେ ପ୍ରସିଦ୍ଧ ଫରାସୀ ଔପନ୍ୟାସିକ ଭିକ୍ଟୋର ହ୍ୟୁଗୋଙ୍କ 'ଲାମିଜରେବଲ୍' ଉପନ୍ୟାସ ପ୍ରସଙ୍ଗ । ଭିକ୍ଟୋର ହ୍ୟୁଗୋ ମଣିଷର ଦୁଃଖ ଦୁର୍ବିପାକକୁ ରୂପ ଦେବା ପାଇଁ ଯେପରି ଅନ୍ଧାରକୁ ଆପଣାର କରି ନେଇଛନ୍ତି, ସେହିପରି 'ନରକିନ୍ନର'ରେ ଅନ୍ଧାରର ଅଖଣ୍ଡ ରାଜତ୍ୱ ।

'ନରକିନ୍ନର' ଉପନ୍ୟାସର ନାୟକ ଜର୍ଜ ଅଜ୍ଞାତ-କୁଳଶୀଳ ଏକ ଅଦ୍ଭୁତ ଚରିତ୍ର । ଏହାକୁ ଏକ ପରିଚୟହୀନ ଅନ୍ଧାରୀ ଚରିତ୍ର କହିଲେ ଭୁଲ ହେବନାହିଁ । ଜର୍ଜ ଯେଉଁ ନାରୀ ଚରିତ୍ର ଗୁଡ଼ିକର ସମ୍ପର୍କରେ ଆସିଛି. ସେମାନେ କେହି ରୂପବତୀ ନୁହନ୍ତି । କିଏ ଗୋଦରୀ ତ କିଏ ପୁଣି କୁଷ୍ଠରୋଗିଣୀ । ସମସ୍ତେ ବିରୂପା ଓ ବିକଳାଙ୍ଗୀ । ସେମାନଙ୍କ ଅବଚେତନରେ ରହିଛି କେବଳ ଜାନ୍ତବ ନାରୀଭାବ । ଜର୍ଜ ସର୍ବଗ୍ରାସିନୀ ପିଶାଚୀ ନାରୀମାନଙ୍କ କବଳରେ ଜୀବନ ବିତାଇଛି । ଏହି ନାରୀମାନଙ୍କୁ ଆଲୁଅରେ ଦେଖିବା କଷ୍ଟ । କେବଳ ଅନ୍ଧାରରେ ହିଁ ଏମାନଙ୍କର ସ୍ଥିତି । ଏମାନଙ୍କର ରୂପ ଯେପରି କୁତ୍ସିତ, ଗୁଣ ମଧ ଅନୁରୂପ ଭାବରେ ଭୟଙ୍କର ।

'ଶତାବ୍ଦୀର ନଚିକେତା'ରେ ଅବଶ୍ୟ ଅନ୍ଧକାର ପରିବେଶ ନାହିଁ । ମାତ୍ର ଆଲୁଅରେ ଚରିତ୍ର ଗୁଡ଼ିକ ବିଚରଣ କଲେ ସୁଦ୍ଧା ସେମାନଙ୍କ ଅନ୍ତରରେ ଅନ୍ଧାର ସତତ ବିଦ୍ୟମାନ । ଦାଶରଥି ଦାସଙ୍କ ଭାଷାରେ କହିଲେ, "ଉପନ୍ୟାସର ସବୁ ମଣିଷ ଆମର ପରିଚିତ । ଏମାନେ 'ନରକିନ୍ନର' ମଣିଷ ପରି ଅନ୍ଧାରରେ ବିଚରଣ ନକରି ଆଲୁଅରେ ଘୁରନ୍ତି । ଅଥଚ ଅଧିକାଂଶଙ୍କ ଅନ୍ତରରେ ଅନ୍ଧାର ପୋଷିତ । ସବୁଗୁଡ଼ିକ କଳ୍ପନାର, କିନ୍ତୁ ରୂଢ଼ ବାସ୍ତବର ପରିହାସରେ ଧୂସର ।" (ବିବିଧ ସମାଲୋଚନା ପୃଷ୍ଠା-୧୮୭) ଶତାବ୍ଦୀର ପ୍ରବଞ୍ଚନା, ଅନୀତି, ସ୍ୱାର୍ଥପର ମନୋଭାବ, ନୈରାଶ୍ୟର ଏ ଉପନ୍ୟାସରେ ପ୍ରବଳ ପ୍ରାଦୁର୍ଭାବ । ବହୁ ଅସ୍ପଷ୍ଟ ଓ ଉଦ୍ଭଟ ଚରିତ୍ର ଏହି ଶତାବ୍ଦୀର ପ୍ରତିଭୂ ରୂପେ 'ଶତାବ୍ଦୀର ନଚିକେତା'ରେ ସ୍ଥାନ ପାଇଛନ୍ତି । ସୁତରାଂ ଶତାବ୍ଦୀର ନାରକୀୟ କାଳିମା ଆଙ୍କିବାରେ ଏ ଉପନ୍ୟାସ ଏକ ସଫଳ ପଦକ୍ଷେପ କହିଲେ ବୋଧହୁଏ ଅଯଥାର୍ଥ ହେବନାହିଁ । 'ଶତାବ୍ଦୀର ନଚିକେତା'ର ଉତ୍ତରାର୍ଦ୍ଧ 'ତିନୋଟି ରାତିର ସକାଳ' ଉପନ୍ୟାସରେ ମଧ ବ୍ୟକ୍ତିସ୍ୱାର୍ଥର ଅନ୍ଧାରୀ ମହଲଗୁଡ଼ିକୁ ଦକ୍ଷତାର ସହ ଔପନ୍ୟାସିକ ଖୋଜିଛନ୍ତି ।

ସେ 'ଯାତ୍ରାର ପ୍ରଥମ ପାଦ' ଉପନ୍ୟାସରେ ଆମ ସମାଜର ଛଳନା, ଭଣ୍ଡାମି ଇତ୍ୟାଦିକୁ ଦେଖାଇଛନ୍ତି । ଆଧୁନିକ ମଣିଷ ସୁଯୋଗ ପାଇଲେ କିପରି ତା'ର ଆଦିମ ପ୍ରବୃତ୍ତି ଚରିତାର୍ଥ କରିବାକୁ ଆଗେଇ ଆସେ, ଏ ଉପନ୍ୟାସଟି ପଢ଼ିଲେ ତାହା ବୁଝିହେବ । ଯେଉଁମାନେ, 'ମିନି'-ସେଇ ପତଳୀ ହାଡୁରୀ ଝିଅଟାକୁ ଧର୍ଷଣ କରିଥିଲେ, ସେମାନେ ସମସ୍ତେ ସଙ୍କୋଚହୀନ ଭାବେ ଆଧୁନିକ ମଣିଷ

ରୂପେ ନିଜର ପରିଚୟ ଦିଅନ୍ତି । ସେମାନେ କ'ଣ ପ୍ରକୃତରେ ଆଧୁନିକ ମଣିଷ ନା ଆଉ କିଛି ? ଏ ପ୍ରଶ୍ନର ଉତ୍ତର ସ୍ପଷ୍ଟ ଭାବରେ ଦେଇଛି ଉପନ୍ୟାସର ନାୟିକା 'ମିନି' । "ରାଜନୀତିକ ମଣିଷ ଆଧୁନିକ ମଣିଷ ନୁହେଁ- ସେ ସେଇ ଆଦିମ ଗୁହା ମଣିଷ" । ଆଧୁନିକ ମଣିଷକୁ ଗୁହା ମଣିଷ କହି ଔପନ୍ୟାସିକ ପରୋକ୍ଷରେ ତା'ର ସମାଜକୁ ଅନ୍ଧ ସମାଜ କହିଛନ୍ତି ।

ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ 'ଧରିତ୍ରୀର କାନ୍ଦ' ଉପନ୍ୟାସରେ ସଂପ୍ରତି ଆମର ଶିକ୍ଷା ଓ ସାଂସ୍କୃତିକ ଦିଗ୍‌ବଳୟ ଯେ ରାଜନୀତିର କୂର ଚକ୍ରାନ୍ତରେ ବିଷାକ୍ତ ହୋଇପଡ଼ିଛି, ଏ ସଂପର୍କରେ ସେ ଐତିହାସିକ ତର୍ଜମା କରି ଦେଖାଇ ଦେଉଛନ୍ତି । ରେଭେନ୍‌ସା କଲେଜର ପବିତ୍ର ବାତାବରଣ କାଳକ୍ରମେ ବିଭିନ୍ନ ନେତୃବୃନ୍ଦଙ୍କ ରାଜନୀତିକ ଶତ୍ରୁତା ଭିତରେ କଳୁଷିତ ହୋଇଯାଇଛି । ସଂକୀର୍ଣ୍ଣ ରାଜନୀତିକ ସ୍ୱାର୍ଥ ସାଧନ ସକାଶେ ଆମର ପ୍ରସିଦ୍ଧ ଶିକ୍ଷାନୁଷ୍ଠାନ ରେଭେନ୍‌ସା କଲେଜକୁ କିପରି ଜାଳି ଦିଆଯାଇଛି, ସେ ସମସ୍ତ ବୃତ୍ତାନ୍ତ ଆପଣାର ଅନୁଭବରୁ ଔପନ୍ୟାସିକ ଏଥିରେ ପ୍ରକାଶ କରିଛନ୍ତି । ଏହାରି ଭିତରେ ଉପନ୍ୟାସର ନାୟକ ଯଜ୍ଞଦତ୍ତର ସବୁଯାକ ସ୍ୱପ୍ନ ଓ ସମ୍ଭାବନା ସେଇ ଧୂମ କୁଣ୍ଡଳୀରେ ବିଲୟ ଭଜିଛି । ତେଣୁ ଆମର ଶିକ୍ଷା ଓ ସଂସ୍କୃତି ଯେ ଘନ ଅନ୍ଧକାର ଭିତରକୁ ରାଜନୀତିକ ଚକ୍ରାନ୍ତରେ ଚାଲି ଆସିଛି, ଏ ଉପନ୍ୟାସଟି ପଢ଼ିଲେ ସହଜରେ ବୁଝିହେବ ।

ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ଉପନ୍ୟାସମାନଙ୍କରେ ଆମର ଅନ୍ଧ ସମାଜ, ମଣିଷର ଅନ୍ଧାରୀ ଭାଗ୍ୟ ସହିତ ଚରିତ୍ରମାନଙ୍କର ଅନ୍ଧାରୀ ଭାବନା ବେଶ୍ ଏକାଠି ହୋଇଯାଇଛି । ଏଇ ଘନଅନ୍ଧାର ଭିତରେ ଆଜିର ମଣିଷ ଏକାବେଳକେ ବିବ୍ରତ । ତଥାପି ମଣିଷ ଏହି ଅନ୍ଧାରରେ ଜୀବନର ପଥ ସନ୍ଧାନ କରୁଛି ।

ଶାନ୍ତନୁ କୁମାର ଆଚାର୍ଯ୍ୟ ରାଜନୀତିକ ମଣିଷମାନଙ୍କୁ ତାଙ୍କ ଉପନ୍ୟାସରେ ଯଥେଷ୍ଟ ବିଦ୍ରୁପ କରିଛନ୍ତି । ସେ ପାଇଁ କାରଣ ବି ଅନେକ । ଭାରତ ସ୍ୱାଧୀନତା ପାଇବା ପରେ ଆମେ ପୂର୍ବରୁ ସ୍ୱାଧୀନତାର ଯେଉଁ ସ୍ୱପ୍ନ ଦେଖିଥିଲୁ, ତା'ର ମୋହଭଙ୍ଗ ଘଟିଛି । ଗାନ୍ଧିଙ୍କ ପରିକଳ୍ପିତ ରାମରାଜ୍ୟକୁ ଏ ଭୂମିରେ ତାହାଙ୍କ ମୃତ୍ୟୁ ପରେ ସମାଧି ଦିଆଯାଇଛି । ପରବର୍ତ୍ତୀ କାଳରେ କ୍ଷମତା ଓ ସୁଖଭୋଗ ପାଇଁ ଆମର ରାଜନୀତିକ ନେତାମାନେ ବ୍ୟାକୁଳ ହୋଇ ପଡ଼ିଛନ୍ତି। ଜନମଙ୍ଗଳ ଓ ଆଦର୍ଶବାଦର ଦ୍ୱାହି ଦେଇ ଏଇ ନେତାଗଣ ସମାଜରେ ସବୁପ୍ରକାର ବ୍ୟଭିଚାର ସୂତ୍ରଧର ହୋଇଛନ୍ତି । ଗାନ୍ଧିଙ୍କ ନାମୋଚ୍ଚାରଣ କରି ଶସ୍ତା ସ୍ଲୋଗାନ ଦେଇ ମଣିଷକୁ ଏମାନେ ଦାସ ପରି ବ୍ୟବହାର କରିଛନ୍ତି । ସବୁକିଛି ଅମାନୁଷିକ କାର୍ଯ୍ୟକୁ ଏମାନେ ଉତ୍ସାହିତ କରିଛନ୍ତି । ସ୍ୱାଧୀନତା ପରବର୍ତ୍ତୀ ସମୟରେ ରାଜନୀତିଜ୍ଞମାନଙ୍କର ଏହିସବୁ ଦୁର୍ନୀତି, ଶଠତା, କ୍ଷମତାଲୋଭ ଲମ୍ପଟ ମନୋଭାବକୁ ଔପନ୍ୟାସିକ ଯଥେଷ୍ଟ ସାବଧାନତାର ସହିତ ତାହାଙ୍କ ଉପନ୍ୟାସରେ ପ୍ରକାଶ କରିଛନ୍ତି ।

ପ୍ରଥମେ ତାଙ୍କର 'ନରକିନ୍ନର' ଉପନ୍ୟାସକୁ ବିଚାର କରାଯାଉ । ଏଥିରେ 'ଜର୍ଜ' ପରିଶେଷରେ ରାଜନୀତିକ ଦଳର ସଂପର୍କରେ ଆସିଛି । କସ୍ମିକ ରିଭଲ୍ୟୁସନାରୀ ଦଳର ଅଧିନାୟକ ଆନନ୍ଦଭସ୍କି ଓ ମିସ୍ ଆହ୍ମସ୍ ତାକୁ ଏଇ ଦଳୀୟ ଆଦର୍ଶରେ ଅନୁପ୍ରାଣିତ କରିଛନ୍ତି । ସେମାନେ ଜର୍ଜର ଏକ ରାଜନୀତିକ ପରିଚୟ ମଧ୍ୟ ଦେଇଛନ୍ତି । 'ତୁମେ ସେଇ ବ୍ରହ୍ମ ରାକ୍ଷସର ପୁଅ । ତା ନାଁ ହେଉଛି ବୁର୍ଜୁଆ ରାକ୍ଷସ, ଆଉ

ତମ ମା'ର ନାଁ ହେଉଛି ସର୍ବହରା ରାକ୍ଷସୁଣୀ । ତୁମେ ଏଇ ବୁର୍ଜୁଆ ଆମ ସର୍ବହରାର ଦୋମିଶା ପୁଅ ।' ଦଳୀୟ ଆଦର୍ଶବାଦରେ ଜର୍ଜର ବ୍ୟକ୍ତି ସ୍ୱାଧୀନତା ଲୋପ ପାଇଛି । ସେ ଜନସାଧାରଣଙ୍କ ଦୁଃଖ ଦୁର୍ଦ୍ଦଶା ପାଇଁ ମରଣକୁ ବରଣ କରିଛି । ସମାଜକୁ ବଦଳାଇବାର ଧ୍ୱନି ଦେଇ ରାଜନୀତିକ ନେତାଗଣ ମଣିଷର ସ୍ୱାଧୀନତାକୁ ଅପହରଣ କରି ନେଇଛନ୍ତି କହିଲେ ଭୁଲ ହେବନାହିଁ । ଜର୍ଜ ମଧ୍ୟ ଏଇ ବିଷୟ ଦଳର ସଂପର୍କରେ ଆସି ଭଲଭାବେ ଅନୁଭବ କରିପାରିଛି ।

ଶାନ୍ତନୁ କୁମାର ଆଚାର୍ଯ୍ୟ 'ଯାତ୍ରାର ପ୍ରଥମ ପାଦ' ଉପନ୍ୟାସରେ ରାଜନୀତିକ ମଣିଷକୁ ଆଧୁନିକ ମଣିଷରୂପେ ଗ୍ରହଣ କରିବାକୁ ଆଦୌ ରାଜି ହୋଇନାହାନ୍ତି । ବରଂ ସେ ତାକୁ ଆଦିମଗୁହା ମଣିଷ ରୂପେ ତାଙ୍କ ଉପନ୍ୟାସରେ ବିବେଚନା କରିଛନ୍ତି । କ୍ଷମତା ଓ ଆଦର୍ଶର ସରଳ କଥା କହି ଆମର ନେତାଗଣ ମଣିଷ ଉପରେ କିଛି କମ୍ ଅତ୍ୟାଚାର କରିନାହାନ୍ତି । ଯେଉଁମାନଙ୍କଠାରୁ ରାଜନୀତିକ ମଣିଷ ଶ୍ରଦ୍ଧା ଓ ସମ୍ମାନ ପାଇଛି, ସେଇମାନଙ୍କ ପ୍ରତି ଅତ୍ୟାଚାର କରିବା ପାଇଁ ତା'ର ପ୍ରବଳ ଆଗ୍ରହ, ଯେମିତି ମିନିକୁ ସେମାନେ ଧର୍ଷଣ କରିବାକୁ କୁଣ୍ଠାବୋଧ କରି ନାହାଁନ୍ତି । ଏ ଦେଶରେ ଯେଉଁମାନଙ୍କ ହାତରେ ରାଜନୀତିକ କ୍ଷମତା ଓ ସମ୍ବିଧାନ ସୁରକ୍ଷା ଦାୟିତ୍ୱ ରହିଛି, ସେଇମାନେ ହିଁ ସବୁପ୍ରକାର ଆସୁରିକ କ୍ରିୟାକଳାପକୁ ଉତ୍ସାହିତ କରନ୍ତି । ଏ ସକାଶେ ଔପନ୍ୟାସିକ ଆଚାର୍ଯ୍ୟ ଏ ସଂସାରରୁ ରାଜନୀତିକ ମଣିଷର ବିଲୋପ କାମନା କରିଛନ୍ତି । 'ଯାତ୍ରାର ପ୍ରଥମ ପାଦ' ଉପନ୍ୟାସରେ ତାଙ୍କର ଏଇ ଦୃଷ୍ଟିଭଙ୍ଗୀ ସଫଳ ରୂପେ ପ୍ରକାଶ ପାଇଛି ସେଇ ହାଡୁରୀ ଧର୍ଷିତା ଝିଅ ମିନି ମୁଖରେ ''... ସେ ଚାହୁଁଥିଲା ଜଳ ଜଳ ହୋଇ ସେମାନଙ୍କ ମୁହଁକୁ । ଭାବୁଥିଲା କେତେଶୀଘ୍ର ସେ ଦୁଃସମୟଟିର ସମାପ୍ତି ଘଟିବ ଯେତେବେଳେ ରାଜନୀତିକ ମଣିଷର ପରିସମାପ୍ତି ହେବ ଏ ପୃଥିବୀରୁ ।'' ଏ ଉପନ୍ୟାସଟି ପାଠକଲେ ପାଠକର ମନରେ ସ୍ୱତଃ ଅନେକ ପ୍ରଶ୍ନ ଉଦ୍ରେକ ହୁଏ । ସତରେ କ'ଣ ରାଜନୀତିକ ମଣିଷ ଶାସନ, କ୍ଷମତା ସହିତ ମଣିଷର ଅନ୍ୟସବୁ ସ୍ୱଭାବକୁ ନିୟନ୍ତ୍ରଣ କରିବ ? ପୁଣି ଔପନ୍ୟାସିକଙ୍କ ଭାଷାରେ କହିଲେ, "ରାଜନୀତିର ଚକ୍ରାନ୍ତ ବାହାରକୁ ଆଧୁନିକ ମଣିଷ ଆଦୌ ଯାଇପାରିବ ନାହିଁ।" ଏଭଳି ନାନା ପ୍ରଶ୍ନ ଏହି ଉପନ୍ୟାସଟି ପାଠକଲେ ମନକୁ ଭାରାକ୍ରାନ୍ତ କରେ। ସଂକ୍ଷେପରେ କହିଲେ 'ଯାତ୍ରାର ପ୍ରଥମ ପାଦ' ରାଜନୀତିକ ମଣିଷର ଏକ ନାରକୀୟ ରୂପ। ଏ ମଣିଷକୁ ଦେଖିଲେ ସ୍ନେହ, ଶ୍ରଦ୍ଧା ପରିବର୍ତ୍ତେ ଘୃଣା ଓ ବିରକ୍ତିଭାବ ମନରେ ଜାତ ହୁଏ। ଅଧିକନ୍ତୁ, ଏ ସଂପର୍କରେ ବିଶିଷ୍ଟ ଲେଖକ George Orwell ଙ୍କ ଉକ୍ତି ଏଠାରେ ପ୍ରଣିଧାନଯୋଗ୍ୟ। "In our age no such thing as keeping out of politics. All issues are political issues, and politics itself is a mass of lies, evasions. folly, hatred and schizophrenia." ଭାରତର ରାଜନୀତିକ ସ୍ୱାଧୀନତା ପ୍ରାପ୍ତି ପରେ ବି ଏଠାରେ ସ୍ୱାଧୀନତାର କୌଣସି ଅର୍ଥ ଥିଲା ପରି ମନେ ହୁଏ ନାହିଁ। ଏହାକୁ ଭଲଭାବରେ ଶାନ୍ତନୁ କୁମାର ଆଚାର୍ଯ୍ୟ ଆମକୁ ତାଙ୍କର 'ଅନ୍ୟ ଏକ ସମୟ ଅନ୍ୟ ଏକ ଭାରତ' ଉପନ୍ୟାସରେ ବୁଝାଇ ଦେଇଛନ୍ତି । ଏଠାରେ ମହାତ୍ମାଗାନ୍ଧିଙ୍କ ଅହିଂସା, ବିଶ୍ୱମୈତ୍ରୀ, ସମାଜବାଦ, ଆତ୍ମତ୍ୟାଗ ଭଳି ବହୁ ଆଦର୍ଶର କଥା ବାରମ୍ବାର କୁହାଯାଉଛି । କିନ୍ତୁ ସ୍ୱାର୍ଥସାଧନ ପାଇଁ ସ୍ୱାଧୀନ ଭାରତରେ ପ୍ରତ୍ୟହ ଏସବୁକୁ ମଣିଷ ଲଂଘନ କରୁଛି । ସୁତରାଂ ଲକ୍ଷ୍ମୀଧର ପରି ଗାନ୍ଧିବାଦୀ ମଣିଷଙ୍କର ଶତଚେଷ୍ଟା ସତ୍ତ୍ୱେ ମଧ୍ୟ ସ୍ୱାଧୀନତାର ମୂଲ୍ୟବୋଧ ନିରର୍ଥକ ହୋଇପଡ଼ିଛି । ସାଧାରଣ ମଣିଷ ଏହାର ଯଥାର୍ଥ ମର୍ମଭେଦ କରିପାରି ନାହାନ୍ତି ।

'ଶକୁନ୍ତଳା' ଉପନ୍ୟାସରେ ଶାନ୍ତନୁ କୁମାର ଆଚାର୍ଯ୍ୟ ସ୍ୱାଧୀନତା ପରବର୍ତ୍ତୀ ଭାରତର ରାଜନୀତିକ ପରିବେଶକୁ ଓ ସମାଜବାଦୀ ଗଣତନ୍ତ୍ରର ସ୍ୱରୂପକୁ ରୂପ ଦେବାକୁ ପ୍ରୟାସ କରିଛନ୍ତି । ଏ ଉପନ୍ୟାସରେ ସେ ୧୯୫୧ ମସିହା ପ୍ରଖ୍ୟାତ ତେଲେଙ୍ଗାନା ବିପ୍ଳବ ପରଠାରୁ ୧୯୭୦ର ନକ୍ସଲପନ୍ଥୀ ଆନ୍ଦୋଳନର ଶେଷ ପର୍ଯ୍ୟନ୍ତ ସଂଘଟିତ ହୋଇଥିବା ବିଭିନ୍ନ ରାଜନୀତିକ ଆନ୍ଦୋଳନର ସୂଚନା ଦେଇଛନ୍ତି । ସ୍ୱାଧୀନତା ପରେ ଗାନ୍ଧିଙ୍କ ନାମକୁ ସର୍ବସ୍ୱ କରି ଭାରତରେ ଯେଉଁସବୁ ଧୂର୍ତ୍ତ ରାଜନୀତିକ ନେତାମାନଙ୍କର ଆବିର୍ଭାବ ହୋଇଛି, ସେମାନଙ୍କର କାର୍ଯ୍ୟାବଳୀ ସଂପର୍କରେ ଶକୁନ୍ତଳାରେ ପ୍ରଚୁର ଉପାଦାନ ରହିଛି । ଏ ଉପନ୍ୟାସରେ ସେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଏକ ନୂତନ ସମାଜ ଗଠନର ସ୍ୱପ୍ନ ଦେଖିଛନ୍ତି । ଏକ ଦିଗରେ ଉଗ୍ର ନକ୍ସଲପନ୍ଥୀଙ୍କ ଅମାନୁଷିକ ହତ୍ୟାକାଣ୍ଡ ସହିତ ଅନ୍ୟପକ୍ଷରେ ମୈତ୍ରୀଦେବ ଜଗନ୍ନାଥଙ୍କ ବର୍ଣ୍ଣନା କରିଛନ୍ତି । ଏ ଜଗନ୍ନାଥ କଣ୍ଡୁଆ ଗାଁର ଜଗନ୍ନାଥ । ମନେହୁଏ ଔପନ୍ୟାସିକ ରାଜନୀତିକ ମଣିଷକୁ ସାଂସ୍କୃତିକ ଚେତନାରେ ଉଦ୍‌ବୁଦ୍ଧ ହେବା ପାଇଁ ଏଭଳି ଭାବରେ ଜଗନ୍ନାଥଙ୍କ ବର୍ଣ୍ଣନା ଉପନ୍ୟାସରେ କରିଛନ୍ତି । ରାଜନୀତିକ ନେତାମାନଙ୍କ ଗତିବିଧି ଓ କ୍ରିୟାକଳାପକୁ ବେଶ୍ ସତର୍କତାର ସହିତ ଏଥିରେ ଔପନ୍ୟାସିକ ଦେଖିଛନ୍ତି । ଏଥିରେ ଗାନ୍ଧିବାଦର ଅବକ୍ଷୟ ସଂପର୍କରେ ସେ ଭଲ ରୂପେ ଆମକୁ ସଚେତନ କରି ଦେଇଛନ୍ତି । ଔପନ୍ୟାସିକଙ୍କ ଭାଷାରେ, "ଗାନ୍ଧି ଗଲେଣି, ଅହିଂସା ଗଲାଣି, ଗାନ୍ଧିବାଦର ଆଦର୍ଶ କାଣିଚାଏ ଦିଶୁନଥାଏ ଏଇ ନେତାମାନଙ୍କ ମୁହଁରେ, ଦେହରେ । ଖାଲି ଗାନ୍ଧି ଟୋପିର କରାମତି ଯାହାକିଛି ଦିଲ୍ଲୀ ଦରବାରଠୁ ରାଜ୍ୟଗୁଡ଼ିକର କ୍ୟାପିଟାଲ ଗୁଡ଼ାକର ଅଫିସ କଚେରିରେ, ବାସ୍ ସେତିକି । ସେତେବେଳକୁ ଏ ନେତାଙ୍କର ଆରମ୍ଭ ହୋଇଯାଇଥାଏ କୋଟା ପରମିଟ୍ ବ୍ୟବସାୟ ଜୋର୍ ସୋର ।" ଭାରତର ଜନଗଣଙ୍କ ପାଇଁ ଗାନ୍ଧି ଆତ୍ମବଳି ଦେଇ ଯେଉଁ ସ୍ୱାଧୀନତା ଆଣିଥିଲେ, ସେସବୁ କିଭଳି ବିପର୍ଯ୍ୟସ୍ତ ହୋଇପଡ଼ିଛି- ଏ ଉପନ୍ୟାସଟି ପାଠକଲେ ତାହା ସହଜରେ ଜାଣିହେବ। ପରବର୍ତ୍ତୀ ସମୟରେ ଶ୍ରେଣୀ ସଂଘର୍ଷ,ବିଭିନ୍ନ ରାଜନୀତିକ ବାଦର ଅଭ୍ୟୁଦୟ ଭାରତର ସ୍ୱାଧୀନତାକୁ ବିଡ଼ମ୍ବିତ କରିଛି। ଶାନ୍ତନୁ କୁମାର ଏଭଳି ଏକ ପରିସ୍ଥିତିରେ ସାଂସ୍କୃତିକ ପୃଷ୍ଠଭୂମି ଉପରେ ଆଧାରିତ ଏକ ନୂତନ ସମାଜ ଗଠନର ଓ ନବ ନୈତିକତାବାଦର ସ୍ୱପ୍ନ ଦେଖିଛନ୍ତି। କାରଣ ସ୍ୱାଧୀନତା ପରେ ବୁର୍ଜୁଆମାନଙ୍କ ପ୍ରଭାବରେ ଆମର ସାମାଜିକ ବ୍ୟବସ୍ଥା ଏକାବେଳକେ ନଷ୍ଟ ହୋଇଯାଇଛି। 'ଶକୁନ୍ତଳା'କୁ ସ୍ୱାଧୀନତା ପରବର୍ତ୍ତୀ ସମୟର ଏକ ସଫଳ ରାଜନୀତିକ ଭାବଚେତନାଭିତ୍ତିକ ଅସାଧାରଣ ଉପନ୍ୟାସର ମର୍ଯ୍ୟାଦା ଦିଆଯାଇପାରେ।

ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ଉପନ୍ୟାସମାନଙ୍କରେ ରାଜନୀତିକ ମଣିଷ ପ୍ରତି ଆଦୌ ଅନୁକମ୍ପା ନାହିଁ। ସେ ଧୂର୍ତ୍ତ, ପ୍ରତାରକ ରାଜନୀତିକ ମଣିଷକୁ ଚୋର, ଡକାୟତ, ଆଦିମଗୁହା ମଣିଷ- ଏଇ ଭାବରେ ସର୍ବତ୍ର ଦେଖିଛନ୍ତି। ରାଜନୀତି, ଦେଶସେବା ନାମରେ କିଭଳି ସ୍ୱାର୍ଥସର୍ବସ୍ୱ ଅମଣିଷମାନଙ୍କର ସମାବେଶ ଏ ଭାରତ ଭୂମିରେ ଘଟିଛି, ତାହା ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ଉପନ୍ୟାସଗୁଡ଼ିକୁ ପାଠକଲେ ଭଲରୂପେ ଜାଣିହେବ ।

ସାମାଜିକ ଦୁର୍ଗତିରୁ ମଣିଷର ମୁକ୍ତି ପାଇଁ ଓ ବ୍ୟକ୍ତି ସ୍ୱାଧୀନତାର ପ୍ରତିଷ୍ଠା ପାଇଁ ଶାନ୍ତନୁ କୁମାର ଆଚାର୍ଯ୍ୟ ସର୍ବଦା ସଚେତନ । ଏ ସଂପର୍କରେ ଡକ୍ଟର ଖଗେଶ୍ୱର ମହାପାତ୍ର ଲେଖିଛନ୍ତି, "ସମାଜର ଆବର୍ଜନାମୟ ପ୍ରତ୍ୟନ୍ତରରେ ତାଙ୍କର ସଞ୍ଚାର, ମାତ୍ର ଆବର୍ଜନାଜୀବୀ ଭାବରେ ନୁହେଁ, ଜଣେ ସେହି ସ୍ଥିତିର ଶାପଗ୍ରସ୍ତଭୋକ୍ତା ଭାବରେ ଯାହାର ଏକାନ୍ତ କାମ୍ୟ ସେହି ସ୍ଥିତିର ସଂସ୍କାର ଓ ପୁର୍ନବିନ୍ୟାସ,

ସ୍ୱକାରାନ୍ତରେ ଯାହା ଆଣିଦେବ ବ୍ୟକ୍ତି ସ୍ୱାଧୀନତା ପାଇଁ କିଞ୍ଚିତ ପ୍ରସାରିତ ଚାରଣ ଭୂମି ।"(ସମାଲୋଚନାର ଦିଗଦିଗନ୍ତ -୨ ପୃଷ୍ଠା-୧୨) ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ଜର୍ଜ, ନଟବର, ବିଭୁପ୍ରସାଦ ପ୍ରଭୃତି ଚରିତ୍ର ନିଜର ସ୍ୱାଧୀନ ମନୋଭାବର ପରିଚୟ ସବୁଠାରେ ଦେଇଛନ୍ତି । ଏପରିକି ଜର୍ଜ କମ୍ୟୁନିଷ୍ଟ ରିଭଲ୍ୟୁସନାରୀ ପାର୍ଟିରେ ଯୋଗଦେବାବେଳେ ମଧ୍ୟ ନିଜର ସ୍ୱାଧୀନତା ବିଷୟ ଭାବିଛି । ଦଳରେ ଯୋଗଦେବା ଦ୍ୱାରା ତା'ର ସ୍ୱାଧୀନତା ବିଲୁପ୍ତ ହୋଇଥିବା ବିଷୟ ମଧ୍ୟ ସେ ଅନୁଭବ କରିଛି ।

ନୈତିକତାର ପ୍ରଚାର କିମ୍ବା ଆଦର୍ଶର ଅବତାରଣା ପାଇଁ ସାଂପ୍ରତିକ ଉପନ୍ୟାସ ଲେଖକ କେବେହେଲେ ଚାହେଁ ନାହିଁ । ସାଂପ୍ରତିକ କାଳର ଔପନ୍ୟାସିକ ମଣିଷର ମନକୁ ଅତିକ୍ରମ କରି ଆତ୍ମା ସହିତ ସଂପର୍କ ସ୍ଥାପନ ପାଇଁ ବ୍ୟସ୍ତ । ଆତ୍ମ ଅନ୍ୱେଷଣ ହିଁ ଆଜିର ଉପନ୍ୟାସ ଲେଖକ ପାଇଁ ବଡ଼ କଥା । 'ନରକିନ୍ନର', 'ଦକ୍ଷିଣାବର୍ତ୍ତ' ଉପନ୍ୟାସରେ ଏଇ ଭାବର ପରିଚୟ ମିଳେ । ଜର୍ଜ ପରି ଜାରଜ ସନ୍ତାନ ମଧ୍ୟ ସତ୍ୟ,ନ୍ୟାୟ, ସାମ୍ୟ ଏହାରି ଭିତରେ ନିଜର ଆତ୍ମ ଅନ୍ୱେଷଣ କରୁଥିଲା । "ଦକ୍ଷିଣାବର୍ତ୍ତ' ଉପନ୍ୟାସରେ ଯୁଦ୍ଧ ବିମୁଖ ସୈନିକର ନୂତନ ଜୀବନ ଅନ୍ୱେଷଣର ସ୍ୱର ଶୁଣାଯାଇଛି । ନୂତନ ଜୀବନ ଆସ୍ୱାଦ କରିବାକୁ ଯାଇ ସେ ଅନ୍ୟର ମଇଳା ଲୁଗା କାଚିଛି । ପୁଣି ଦକ୍ଷିଣପଥର ଯାତ୍ରୀ ହୋଇ ଏକ ଆଧ୍ୟାତ୍ମିକ ଜୀବନ ସନ୍ଧାନରେ ସେ ଅଗ୍ରସର ହୋଇଛି ।

ଶାନ୍ତନୁ କୁମାର ଆଚାର୍ଯ୍ୟ ସମାଜ ଅପେକ୍ଷା ବ୍ୟକ୍ତି ବିଶେଷଙ୍କୁ ତାଙ୍କ ଉପନ୍ୟାସରେ ଅଧିକ ଗୁରୁତ୍ୱ ଦେଇଛନ୍ତି । ମଣିଷ ମନର ଯାବତୀୟ ଦ୍ୱନ୍ଦ୍ୱ, ମାନସିକ ଅବସାଦ, ଆତ୍ମିକ ବିଭବ, ଆଧ୍ୟାତ୍ମିକ ଅବବୋଧକୁ ପ୍ରକାଶ କରିବାରେ ସେ ଜଣେ ସାର୍ଥକ ଶିଳ୍ପୀ । ସେ ସାମାଜିକ ଆଦର୍ଶର ଦୁହାଇ ଦେଇ ମଣିଷକୁ ସଂକୀର୍ଣ୍ଣତା ମଧ୍ୟରେ ଆବଦ୍ଧ କରି ରଖି ନାହାଁନ୍ତି । ତାଙ୍କ ଉପନ୍ୟାସରେ ମଣିଷର ଆତ୍ମଶକ୍ତିର ବିକାଶ ପାଇଁ ପ୍ରଚୁର ଉପାଦାନ ରହିଛି । ମଣିଷର ଆତ୍ମଶକ୍ତିର ବିକାଶ ମାଧ୍ୟମରେ ଯେ ଏକ ମାନବିକ ମୂଲ୍ୟବୋଧଭିତ୍ତିକ ନୂତନ ସମାଜ ଗଠନ ସମ୍ଭବ ଏକଥା ସେ ତାଙ୍କ ଉପନ୍ୟାସ ଗୁଡ଼ିକରେ ଆମକୁ ସୂଚାଇ ଦେଇଛନ୍ତି ।

ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ଉପନ୍ୟାସମାନଙ୍କର ସଫଳତା ଅନେକାଂଶରେ ତାଙ୍କର ଅସାଧାରଣ ରଚନାଶୈଳୀ ଦ୍ୱାରା ସମ୍ଭବ ହୋଇଛି । ବ୍ୟାବହାରିକ ଭାଷା ପ୍ରୟୋଗରେ ତାଙ୍କ ସମକକ୍ଷ ଔପନ୍ୟାସିକଟିଏ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ବିରଳ । ଯେତେ ଅଶ୍ଳୀଳ ହେଲେ ମଧ୍ୟ ପ୍ରଚଳିତ ଓଡ଼ିଆ ଭାଷା ପ୍ରୟୋଗ କରିବାକୁ କୁଣ୍ଠିତ ହୋଇ ନାହାନ୍ତି । ସେ ତତ୍ସମ ଶବ୍ଦବହୁଳ ଭାଷା ଅପେକ୍ଷା ଲୋକମୁଖର କଥିତ ଭାଷାକୁ ତାଙ୍କ ଉପନ୍ୟାସରେ ଅଧିକ ମର୍ଯ୍ୟାଦା ଦେଇଛନ୍ତି । ଏଠାରେ ପ୍ରାସଙ୍ଗିକ ଭାବରେ ଗୋଟିଏ ଦୃଷ୍ଟାନ୍ତ ଦିଆଯାଇପାରେ, "ବେ ହେଡ଼ାଖିଆ ଲକ୍ଷିଆ ବାହୁଣ ! ଆବେ କବାଟ ଫିଟୋଉଚୁ କି ନାଇଁବେ ! ଆବେ ଚୋରମୁହାଁ, ମାଇପ ବୋଲକରା, ହଗୁରା ବାହୁଣ ! ମାଇପକୁ କୁଣ୍ଢେଇ କେତେ ଶୋଇବୁରେ ଆଉ ? ଆବେ ଉଠୁଚି କି ନାଇଁ । କବାଟ ଖୋଲୁଚି କି ନାଇଁ । ତୋ ମା'କୁ ପଠାଣ ନଉ । ତୋ' ଭଉଣୀକୁ ହାଡ଼ି ନଉ । ଆରେ କାନ୍ଲା, ତତେ ଶୁଭୁଚି କି ନାଇଁ । ତୋ' ମା'କୁ ପଠାଣ ନେଲା- ତୋ' ଭଉଣୀକୁ ...।" (ଅନ୍ୟ ଏକ ସମୟ ଅନ୍ୟ ଏକ ଭାରତ) ଏ ପ୍ରକାର ଭାଷା ପାଠକଲେ, ସତେ ଯେମିତି କୌଣସି ନିପଟ ମଫସଲୀ ଲୋକର ଭାଷା ପରି ଜଣାଯାଏ । ଏ ଭାଷାରେ ହୁଏତ ଶିଷ୍ଟ ପ୍ରୟୋଗ ନାହିଁ, କିନ୍ତୁ ଏ ଭାଷାରେ ଯେଉଁ ଜୀବନୀଶକ୍ତି ରହିଛି, ତା'ର ପଟାନ୍ତର ନାହିଁ ।

ଔପନ୍ୟାସିକ ଶାନ୍ତନୁ କୁମାର ଆଚାର୍ଯ୍ୟ ତାଙ୍କ ଉପନ୍ୟାସମାନଙ୍କରେ ଅଧିକାଂଶ ସ୍ଥଳରେ ସାଧାରଣ ଓଡ଼ିଆ ଭାଷା ସହିତ ଇଂରାଜୀ ଭାଷା ଓ ହିନ୍ଦୀ ଭାଷାକୁ ଯୋଡ଼ି ଅଦ୍ଭୁତ ପଦମାନ ରଚନା କରିଛନ୍ତି । ଏସବୁ ହାସ୍ୟୋଦ୍ଦୀପକ ହେଲେ ବି ଅନ୍ତରସ୍ପର୍ଶୀ । ଏଠାରେ ତାଙ୍କର 'ଯାତ୍ରାର ପ୍ରଥମ ପାଦ' ଉପନ୍ୟାସରୁ କିୟଦଂଶ ଉଦ୍ଧାର କରାଗଲା ।

"ଅର୍‌ର୍ ମେ... ରହିବେ ଟିକିଏ ।''

"ରବ୍ଧି ! ସି ହାଉ ଦି କାଉ ଜମ୍ପସ୍ ଓ ର ଦି ମୁନ୍ - ?''

'ମାଇକିନାଗୁଡ଼ାକୁ ଏତେ ଶକ୍ତି ଭଗବାନ୍ ଦେଲାକେମିତି ? ଗୁରୁ ! ସାମ୍ୟବାଦ ଗୋଟାଏ ହୋକ୍‌ସ- ଇମ୍ପସିବୁଲ ।''

''ହେ ଥୋଡ଼ା ରହବେ ଛୋକ୍ରି ! କେତେନା ଚାଉଳ, ଚିନି, କିରାସିନ୍ ଲବୁ କହୁନୁ- ଦଉଡ଼ୁଚୁ କାହିଁକି ? ଅତର୍କ୍ଷ ହେଉଛୁ କାହିଁକି ଯେ !'' (ପୃଷ୍ଠା -୧୩)

ଶାନ୍ତନୁ କୁମାର ଆଚାର୍ଯ୍ୟ ତାଙ୍କ ଉପନ୍ୟାସରେ ମଝିରେ ବେଳେ ବେଳେ ଅଦ୍ଭୁତ ସଙ୍ଗୀତ ସବୁ ଖଞ୍ଜି ଦିଅନ୍ତି । ଯେମିତି ତାଙ୍କର 'ଯାତ୍ରାର ପ୍ରଥମ ପାଦ' ଉପନ୍ୟାସରେ କେତେଗୁଡ଼ିଏ ସଙ୍ଗୀତ ସଂଯୋଜିତ ହୋଇଛି । ଏଗୁଡ଼ିକର ଛନ୍ଦଯୋଜନା, ବିଚିତ୍ର ଭାବକୁ ପାଠକେ ଲକ୍ଷ୍ୟକଲେ ଔପନ୍ୟାସିକଙ୍କ ଚଞ୍ଚଳ କବିସ୍ୱଭାବ ଜାଣିପାରିବେ । ଏଠାରେ କେତେଗୁଡ଼ିଏ ଦୃଷ୍ଟାନ୍ତ ଦେଖନ୍ତୁ ।

(୧) ''ଆଛା ଗୋଲ୍ ଟେବୁଲ୍  
ପାଲା ଲାଗିଲାରେ  
ବାବା ସତ୍ୟପୀର  
ପୂଜା ମାଗିଲାରେ ।''

(୨) ''ପାର୍ଲାମେଣ୍ଟ ସତ୍ୟପୀର  
ମ୍ୟାକ୍ ଡୋନାଲଡ଼ ଗାଉଣୀ ଶିର  
କିଂସଲି ହଲ୍‌ରେ ତା'ର ଆସ୍ଥାନ  
ସାଜସଜ୍ଜା ଭାରି ମସ୍ତାନ  
କେତେ ରଙ୍ଗେ ପୂଜା ବାଜା ବାଜିଲାରେ  
ଆଛା ଗୋଲ୍ ଟେବୁଲ୍ ପାଲା ଲାଗିଲାରେ ।'' (ଯାତ୍ରାର ପ୍ରଥମ ପାଦ)

ଏସବୁ କବିତ୍ୱ ବର୍ଜିତ ସଙ୍ଗୀତର ବର୍ଣ୍ଣନା ଅପେକ୍ଷା ଗାନ କରୁଥିବା ବ୍ୟକ୍ତିର ଢ଼ଙ୍ଗ ଔପନ୍ୟାସିକ ଆଚାର୍ଯ୍ୟ ଅତ୍ୟନ୍ତ ଆକର୍ଷଣୀୟ ଭାବରେ ବ୍ୟକ୍ତ କରିଛନ୍ତି । ଏସବୁ ବର୍ଣ୍ଣନାରେ ହାସ୍ୟଚଟୁଳ ନିର୍ଝର ଝରି ଯାଇଛି । ଗାନ କରୁଥିବା ବ୍ୟକ୍ତି ପ୍ରତି ଏଠାରେ ରହିଛି ନଷ୍ଟୁର ଉପହାସ ।

ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ଉପନ୍ୟାସଗୁଡ଼ିକରେ ଅଧିକାଂଶ ଶବ୍ଦ ଧ୍ୱନି ଅନୁଯାୟୀ ସ୍ଥାନ ପାଇଛି । ଜନଗଣର ମୁଖରୁ ଧ୍ୱନି ଛଡ଼ାଇ ନେଇ ସେ ଏସବୁକୁ ତାଙ୍କ ଉପନ୍ୟାସରେ ଖଞ୍ଜି ଦେଇଛନ୍ତି । ଏସବୁ ଦ୍ୱାରା ଭାଷାର ସ୍ୱାଭାବିକ ଗୁଣ ପ୍ରକାଶ ପାଇଛି । ସେସବୁର ଏକ କ୍ଷୁଦ୍ର ତାଲିକା ପାଠକମାନଙ୍କ ଅବଗତି ନିମନ୍ତେ ପ୍ରଦାନ କରାଗଲା । 'ଶତ୍ରୁ ଫତ୍ରୁ', 'ଚୁ ଉପ୍', 'ୟା', 'ଛାଡ୍ ଛାଡ୍', 'ହିସ୍ସ୍-ଠୋ', 'ଥମଥମ', 'ଧମାଧମ୍', 'ଗମ୍ଗମ୍', 'ଦଉଦଉ', 'ଥିରକିନା', 'ଡିବିଡିବି', 'ପଟାକ୍କିନା', 'ରବ୍ବି', 'ଧର୍ଧର୍', 'ମାର୍ମାର୍', 'ନଉଚ', 'ଓକାଳି', 'ଚାରିକିତି', 'କିଓ', 'ଆକତା', 'ନିଅଂଶୀ', 'କାଇଁଲୁ', 'ସୁକୁସୁକୁ', 'ଜୁତୁବୁତୁ', 'ଟୁମୁକେଇ', 'ଧଡ଼କରି', 'ଚେଙ୍ଗି', 'ଯୋଉଠି' ଇତ୍ୟାଦି ବହୁ ଶବ୍ଦ ସାଧାରଣ ଜନଜୀବନରୁ ସଂଗୃହୀତ ହୋଇ ସିଧାସଳଖ ତାଙ୍କ ଉପନ୍ୟାସରେ ସ୍ଥାନ ଲାଭ କରିଛି ।

ଶାନ୍ତନୁ କୁମାର ଆଚାର୍ଯ୍ୟ ଭାଷା ଅନେକତ୍ର ଯୁକ୍ତିନିଷ୍ଠ । ସେ ମଧ କାର୍ଯ୍ୟକାରଣ ସମନ୍ୱିତ ବର୍ଣ୍ଣନା କରିବାରେ ଧୁରୀଣ । ସେ ଏପରି ଯୁକ୍ତିର ସହ ବର୍ଣ୍ଣନା କରିପାରନ୍ତି, ଯାହା ପୁନଃପୁନଃ ପାଠକର ପ୍ରାଣରେ ଭାବ ସଞ୍ଚାର କରେ । ଏଠାରେ 'ତିନୋଟି ରାତିର ସକାଳ' ଉପନ୍ୟାସରୁ କେତେକ ଅଂଶ ଉଦ୍ଧାର କରାଯାଇପାରେ ।

''ଏ ବୃକ୍ଷ ବିଦେଶୀ ବୃକ୍ଷ କି ନା ମୁଁ ଜାଣେ ନା । ଆପଣ ଗଛ ନାଁରୁ ହିଁ ଦେଶୀ ବିଦେଶୀ ବୋଲି ଚିହ୍ନୁଛନ୍ତି । ମୋର ଚିହ୍ନିବା ବାଗ କିନ୍ତୁ ଭିନ୍ନେ । ଶୁଣନ୍ତୁ, ବାଘ ଆଉ ରୋଗ ଆଗରେ ବିଦେଶୀ ଦେଶୀ ମଣିଷ ସମ୍ଭଳା ପଡ଼େନାହିଁ । ମହାତ୍ମା ଗାନ୍ଧୀ ତ ପୁଣି ବିଶ୍ୱଯୁଦ୍ଧବେଳେ ବିଦେଶୀ ଶାସକଙ୍କୁ ସମର୍ଥନ କରିବା ପାଇଁ ଆହ୍ୱାନ ଦେଇଥିଲେ । ମାତୃଭୂମି ଆଉ ମଣିଷ ଭିତରେ ଛୋଟବଡ଼ କଥା ପଡ଼ିଲେ ମଣିଷ ନିଶ୍ଚୟ ବଡ଼ବୋଲି ଯେ କେହି କହିବ । ଉର୍ଣ୍ଣନାଭ ଆଶ୍ରମ, ଗୋଟିଏ ଦାତବ୍ୟ ଅନୁଷ୍ଠାନ ନ ହେଲେ ମଧ ଲୋକହିତକର କାର୍ଯ୍ୟ କରିବ ନିଶ୍ଚୟ । ଏଣୁ ଦେଶ ବିଦେଶ ନିର୍ବିଶେଷରେ ଔଷଧ ବୃକ୍ଷ ଆମଦାନୀ କରିବା 'ସ୍ୱରାଜ୍ୟ' ର ନୀତିବିରୁଦ୍ଧ ନୁହେଁ ।'' ଏ ଧରଣର ଗଦ୍ୟ ତାଙ୍କର ଉପନ୍ୟାସରେ ବ୍ୟାପକ ବ୍ୟବହୃତ ।

ଚିତ୍ରକଳ୍ପର ସଫଳ ପ୍ରୟୋଗରେ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ କୃତିତ୍ୱକୁ ଅସ୍ୱୀକାର କରିହେବ ନାହିଁ । ଦୈନନ୍ଦିନ ଜୀବନରୁ ସଂଗୃହୀତ ସତେଜ ଚିତ୍ରକଳ୍ପରେ ତାହାଙ୍କ ଉପନ୍ୟାସ ଋଦ୍ଧିମନ୍ତ । ପୁଣି ସେ ଅନେକତ୍ର ପ୍ରାକୃତିକ ଜଗତରୁ ତାଙ୍କର ଚିତ୍ରକଳ୍ପ ମଧ ସଂଗ୍ରହ କରିଛନ୍ତି । ଏଇ ଚିତ୍ରକଳ୍ପଗୁଡ଼ିକ ତାହାଙ୍କ ଉପନ୍ୟାସକୁ ପ୍ରାଣପ୍ରାଚୁର୍ଯ୍ୟ ଯୋଗାଇଛି । ଏଠାରେ ଉଦାହରଣ ଛଳରେ କେତୋଟି ଚିତ୍ରକଳ୍ପର ଅବତାରଣା କରାଯାଇପାରେ-

୧. 'ଅସଲ ସ୍ୱରାଜ୍ୟ ପାଇଁ ଏ ଦୁହିଁଙ୍କୁ ପ୍ରଥମେ ନିଜ ମାଟିରୁ ବାଲୁଙ୍ଗା ଉପାଡ଼ିଲା ପରି ଉପାଡ଼ିଦେବ ।'' (ତିନୋଟି ରାତିର ସକାଳ)

୨. ''ମାଇକିନିଆଟା ଗୋଟିଏ ଧର୍ମଛଡ଼ା ଦେଶୀ କୁକୁର ଭଳି ବସି ବାହୁନେ ।'' (ନରକିନ୍ନର)

୩. ''ଦୁର୍ବୃତ୍ତମାନେ ଦଳେ ହେଟାବାଘ ଭଳି ସାଉଁ ସାଉଁ ହେଇ ଖେଦି ଆସୁଥିଲେ ପଛରୁ ।'' (ଯାତ୍ରାର ପ୍ରଥମ ପାଦ)

୪. ''ଏମିତିକି ସବାଶେଷ ଲୋକଟା ଆପଣାର ବିକୃତ ଲାଳସା ମେଣ୍ଟନ ପାଇଁ ଚକୁଳି ଲେଉଟାଇଲା ଭଳି ମିନିକୁ ଓଲଟେଇ ଦେଇଥିଲା କେଇଥର ।'' (ଯାତ୍ରାର ପ୍ରଥମ ପାଦ)

ଏହିପରି ଅସଂଖ୍ୟ ଚିତ୍ରକଳ୍ପ ତାଙ୍କ ଉପନ୍ୟାସର ସ୍ତରେ ସ୍ତରେ ପରିଲକ୍ଷିତ । ନାଟକୀୟ ଛଟା, ପ୍ରତୀକଧର୍ମୀ, ଭାଷା, ସାଧାରଣ ଢ଼ଗଢ଼ମାଳି ପ୍ରୟୋଗ ଦ୍ୱାରା ସେ ତାଙ୍କ ଉପନ୍ୟାସକୁ ପାଠକର ନିକଟବର୍ତ୍ତୀ କରିପାରିଛନ୍ତି ।

ଶାନ୍ତନୁ କୁମାର ଆଚାର୍ଯ୍ୟ ଚଳିତ ଶତକର ଅନ୍ୟତମ ବିଶିଷ୍ଟ ଔପନ୍ୟାସିକ । ଜୀବନ ସଂପର୍କିତ ନୂତନ ଚିନ୍ତାଧାରାର ମୁଦ୍ରାଙ୍କ ତାଙ୍କର ପ୍ରତ୍ୟେକଟି ଉପନ୍ୟାସରେ ଉତ୍କୀର୍ଣ୍ଣ । ସେ ମଣିଷକୁ ପ୍ରତ୍ୟେକ ଉପନ୍ୟାସରେ ମୂଳ ବୋଲି ଗ୍ରହଣ କରି ତାରି ମାଧମରେ ସମସାମୟିକ ଯୁଗୀୟ ଅନୁଚିନ୍ତାକୁ ରୂପ ଦେଇଛନ୍ତି । ତାଙ୍କ ଉପନ୍ୟାସଗୁଡ଼ିକ ପାଠକଲେ ଆଧୁନିକ ଜୀବନ ସଂପର୍କିତ ଭାଗ୍ୟ ପଢ଼ିବା ପରି ମନେହୁଏ । କବିତା, ଦର୍ଶନ, ବିଜ୍ଞାନ ପ୍ରଭୃତିଠାରୁ ତାଙ୍କ ଉପନ୍ୟାସ ମଣିଷର ମଣିଷପଣିଆ ଓ ଜୀବନ ସମ୍ବନ୍ଧୀୟ ତତ୍ତ୍ୱ ବଖାଣିବାରେ ଅଧିକ ମୂଲ୍ୟବାନ । ପରିଶେଷରେ ତାହାଙ୍କ ଉପନ୍ୟାସ ସଂପର୍କରେ D.H. Lawrence ଙ୍କ ଉକ୍ତି ଉଦ୍ଧାର କରି କୁହାଯାଇପାରେ, The novel is the one bright book of life. Books are not alive ? They are only tremulations of ether. But the novel as a tremulation can make the whole man alive tremble. Which is more than Poetry, Philosophy, Science or any other book tremulation can do !

ସାଂପ୍ରତିକ ସମୟର ଜଣେ ବିଶିଷ୍ଟ ସାହିତ୍ୟ ସାଧକଙ୍କ ସଂପର୍କରେ ଏହି ଗ୍ରନ୍ଥଟି ପ୍ରକାଶ କରି ଗ୍ରନ୍ଥ ସଂପାଦକ ନିଜକୁ କୃତାର୍ଥ ମଣୁଛି । ଗ୍ରନ୍ଥଟି ଛାତ୍ର, ଶିକ୍ଷକ, ଗବେଷକ ଓ ସାହିତ୍ୟ- ପ୍ରେମୀଙ୍କ ଦ୍ୱାରା ଆଦୃତ ହେଲେ ଏଇ ସଂପାଦକର ଶ୍ରମ ସାର୍ଥକ ହେବ ।

ବାଉରୀବଂଧୁ କର



# ବହୁନି ବହୁନି ଜନ୍ମାନି- ମୋର ପୂର୍ବଜନ୍ମର କିଞ୍ଚିତ୍ ରହସ୍ୟ

ଶାନ୍ତନୁ କୁମାର ଆଚାର୍ଯ୍ୟ

"କଲିକତାର ମୋମିନ ପୁରରେ ତୋ ଜନ୍ମ...ଘର ନମ୍ବର ସତେଇସ...", ନନା କହୁଥିଲେ । ସେଇଠି ମୋ ଜନ୍ମ ସ୍ଥାନ ? ଆଶ୍ଚର୍ଯ୍ୟ ଲାଗେ କଥାଟା ଭାବିଲେ । କାରଣ ଆମ ଗାଁ ଓଡ଼ିଶାର କଟକ ଜିଲ୍ଲାର ପ୍ରସିଦ୍ଧ ସିଦ୍ଧେଶ୍ୱର ପୁର ଗାଁ; ଏଥିରେ ଆଦୌ ସନ୍ଦେହ ନଥାଏ ମୋର । ତେବେ କଲିକତା ? ମୋମିନପୁର ?

ମୋ ଡାକ ନାଁ ଫକୀର । ସେ କି କଥା ? ଫକୀର ନାଁଟା ଆଦୌ ଭଲ ଲାଗେନା ମତେ । କିନ୍ତୁ ପିଲା ଦିନ ଗୋଟାକଯାକ ଏଇ ନାଁରେ ଡକା ଯାଇଥିଲା ମତେ । ମୁଁ ବି ଉତ୍ତର ଦେଉଥିଲି ଏ ଡାକର । ବହୁତ ଛାଟି ପିଟି ହୁଏ– ଡାକଟାକୁ ଫକୀରରୁ ଶାନ୍ତନୁକୁ ବଦଳେଇ ଦବାକୁ । କିନ୍ତୁ ହୁଏନା । ଥରେ ଗୋଟାଏ ନାଁ ସଙ୍ଗେ ଚିହ୍ନଟ ହୋଇଗଲା ପରେ ଆଉ କାହା ବାପର ବି ଚାରା ନଥାଏ ଡାକ ନାଁ ବଦଳେଇ ଦବାକୁ ।

ତେବେ ଏ ନାଁ ମୁଁ ପାଇଲି କୋଉଠୁ ? କୁହାଯାଏ ମୁଁ ବାପାମାଙ୍କ ଅପର୍ଛିଆଣୀ ପିଲା । ତେଣୁ ଏ ଅପର୍ଛନିଆ ନାଁ । କିନ୍ତୁ ଯେତେ ଅପର୍ଛନିଆ ହେଲେ ବି ଡାକ ନାଁର ଯଦି କୌଣସି ଅଲୌକିକ ତାତ୍ପର୍ଯ୍ୟ ଥାଏ ତେବେ ତାକୁ ମୁଣ୍ଡେଇବା ଛଡ଼ା ଅନ୍ୟ ବାଟ ନଥାଏ । ତେଣୁ ମୁଁ ଏ ନାଁ ଟାକୁ ମୁଣ୍ଡେଇଚି ଆଜିଯାକେ ଧାର୍ମିକତା ଦୃଷ୍ଟିରୁ ନୁହେଁ– ଏକ ଗଭୀର ଅଲୌକିକ କାରଣ ଯୋଗୁ ବୋଲି କୁହାଯାଇପାରେ ।

କ'ଣ ସେ ଅଲୌକିକ କାରଣ ?

ମୋ ଅଜା କୁଳମଣି ମିଶ୍ର ସେତେବେଳେ କଲିକତା କର୍ପୋରେସନରେ ଥିଲେ ଜଣେ ଇଞ୍ଜିନିୟର । ସେ ବ୍ରିଟିଶ ଟାଇମସ୍‌ର ଜଣେ ଆର୍ମି ଇଞ୍ଜିନିୟରିଂ କୋରର ପୁନର୍ନିଯୁକ୍ତି ପ୍ରାପ୍ତ ସେବାମୁକ୍ତ ଅଫିସର । ପ୍ରଥମ ବିଶ୍ୱ ଯୁଦ୍ଧରେ (୧୯୧୪-୧୯୧୮) ରିକ୍ରୁଟ ହେଇ ଯାଇଥିଲେ ସେ ସେସମୟରେ ମେସୋପଟାମିଆଁ ବା ଆଜିର ଇରାକକୁ, ମିତ୍ର ପକ୍ଷର ସୈନ୍ୟ ବାହିନୀରେ ସାମିଲ ହୋଇ ଯୁଦ୍ଧ କରିବାକୁ । ତାଙ୍କ ସଙ୍ଗେ ମଧ ଯାଇଥିଲେ ତାଙ୍କ ସାନ ଭାଇ ସୋମନାଥ, ସେଇ ସୈନ୍ୟ ବାହିନୀରେ ଗୋଟାଏ ନନ୍ କମିସନଡ୍ ପୋଷ୍ଟରେ- ଟ୍ରକ୍ ଡ୍ରାଇଭର । ତିନି ବା ଚାରି ବର୍ଷ ଶତୃପକ୍ଷ ବିରୁଦ୍ଧରେ ଜବରଦସ୍ତ ଯୁଦ୍ଧ କଲା ଭିତରେ ଥରେ ଦି ଭାଇ ଏକାବେଳେ ଧରା ପଡ଼ିଗଲେ ଏକ ବେଦୁଇନ ଡାକୁ ଦଳ କବଳରେ । ହେଲେ ବନ୍ଦୀ । ଅକଥନୀୟ ଶାରୀରିକ ମାନସିକ ଅତ୍ୟାଚାରର ଶିକାର ହେଲେ- ମୁସଲମାନ ବେଦୁଇନ ଡାକୁଙ୍କ କ୍ୟାମ୍ପରେ । କେତେକ ବେଦୁଇନ ସ୍ତ୍ରୀ ଲୋକ ଏ ଦୁଇ ଭାଇଙ୍କ ନିର୍ଯାତନା ଦେଖୁଥିଲେ । ସେଦିନ ସେମାନେ ଯୋଡ଼ାଏ ବୁର୍ଖା ଆଉ କିଛି ଶୁଖିଲା ଫଳ, ପାଣି ଧରି ରାତିରେ ପହଞ୍ଚିଲେ ତମ୍ବୁ

ପଛବାଟେ- ଏ ଦିଇ ଭାଇଙ୍କୁ ଇସାରାରେ ଜଣେଇ ଦେଲେ, ''ଭାଗୋ ! ନହେଲେ ମରିବ କାଲି ସକାଳେ ।'' ଦୁଇ ଭାଇଙ୍କ ଜୀବନ ବଞ୍ଚି ଯାଇଥିଲା । ରାତି ସାରା ଆଉ ତା ପରଦିନଗୁଡ଼ାକ ସେମାନେ ଆରବ ମରୁଭୂମିରେ କେମିତି ଜୀବନ ରକ୍ଷା କଲେ ସେ ଆଉ ଏକ ଅଧ୍ୟାୟ ସେମାନଙ୍କ ଆତ୍ମ ଜୀବନୀର ଯାହା ମଧ୍ୟ କିଛି କମ ପ୍ରଭାବିତ କରି ନଥିଲା ମତେ ମୋ ପିଲା ଦିନେ । ଏହାର ସବିଶେଷ ବିବରଣୀ ମୁଁ ମୋ ଉପନ୍ୟାସ 'ଧରିତ୍ରୀର କାନ୍ଦ'ରେ ଦେଇଚି– ବୃହସ୍ପତି ଓ ବୁଧନାଥ ଚରିତ୍ର ମାଧ୍ୟମରେ ।

କିନ୍ତୁ ଏଇଲେ ପଡ଼ିଚି ଅନ୍ୟକଥା । ମୋ ନାଁ ଫକୀର ଦିଆଗଲା କାହିଁକି ଆଉ ମୋ ଜନ୍ମ ହେଲା କାହିଁକି ସୁଦୂର କଲିକତାରେ- ଆମର ବିଖ୍ୟାତ ଗାଁ ସିଦ୍ଧେଶ୍ୱରପୁର, କଟକ ସହରର ମୋଟେ ଦଶ କିଲୋମିଟର ଦୂରରେ ଥାଉଥାଉ । ବର୍ତ୍ତମାନ ଆସନ୍ତୁ ଟିକେ ଆମର ସେଇ ଏକ୍ସ ମିଲିଟାରୀ ଇଞ୍ଜିନିୟର ଅଜା କୁଳମଣିଙ୍କ ମୁସଲିମ ପ୍ରୀତିର ଅନ୍ୟଏକ ଦିଗକୁ ଆଖି ପକେଇବା । ଏକଥା କହିବାର ଉଦ୍ଦେଶ୍ୟ ମୋର ସେଇ ନାମକରଣ ସମ୍ପର୍କରେ ଗୋଟିଏ ଅଲଗା ପ୍ରସ୍ତ ଖୋଲିବା ।

କୁଳମଣିଙ୍କ ନିଜ ଜନ୍ମସ୍ଥାନ ସେତେବେଳର କଟକ ଜିଲ୍ଲାର ଗୋଟାଏ ଧୋଇଆ ମୂଳକର ଗାଁ- ପାର୍ବତୀପୁର । ଏବେ ଏ ଗାଁ ରହିଲାଣି ଜଗତ୍‌ସିଂହପୁର ଜିଲ୍ଲାରେ । ଗାଁଟି ଦେବୀ ନଦୀର ଉତ୍ତର କୂଳରେ ଅବସ୍ଥିତ । ନଈ ସେପାରି ବନ୍ଧରେ ଗୋବିନ୍ଦପୁର, ଏପଟ ବନ୍ଧରେ ପାର୍ବତୀପୁର । ମଝିରେ ବିରାଟ ଏକ ପ୍ରଶସ୍ତ ଗଭୀର ହ୍ରଦ ଭଳି ଦେବୀନଦୀର ଗଣ୍ଡ । ଏଇ ଗଣ୍ଡର ଅତଡ଼ି ଉପରେ ଅଜା କୁଳମଣିଙ୍କ ଘର । ଏମିତି ସେମିତି ଘର ନୁହେଁ; ଆଖିଦୃଷ୍ଟିଆ କୋଠା ଘରଟିଏ ମଧ୍ୟ । ଘର ଚାରି ପଟେ ବାଡ଼ିବଗିଚା । ଖାଲି ବଗିଚା ନୁହେଁ ଗୋଟାଏ ନିଜସ୍ୱ ସୁବାସ ଥାଏ ଯାର ଯାହା ବହୁ ଦୂରରୁ ବାଜେ ପଥିକର ନାକରେ । ଲୋକେ ଜାଣନ୍ତି ସେ ବାସ୍ନାଟା ମିଶ୍ରଘରର ବାସ୍ନା । ପାର୍ବତୀପୁରର ଏଇ ମିଶ୍ର ଘରର ଅନ୍ୟ ଏକ ଡାକ ନାଁ ଥାଏ ଅଞ୍ଚଳ ଯାକରେ ''କଳପାଣି ମିଶ୍ର ଘର'' ! କାରଣ ସେତେବେଳେ କଳପାଣି ବ୍ୟବହାର ପ୍ରଚଳନ ହେଇନଥାଏ ସେ ଅଞ୍ଚଳରେ । କୁଳମଣି କଲିକତାରୁ ଟ୍ୟୁବୱେଲ ଖୋଳେଇବାର ସାଜସରଞ୍ଜାମ ମଗେଇ ଗୋଟାଏ ଟ୍ୟୁବୱେଲ ବସେଇଥାନ୍ତି ତାଙ୍କ ଦାଣ୍ଡରେ । ସେଥିରୁ କଳ ପାଣି ବାହାରେ ହାବିସ୍ କଲେ । ଖାଲି ବାହାରେ ନାହିଁ –ପାଣିକୁ ବି କୋଠା ଉପର ପର୍ଯ୍ୟନ୍ତ ଉଠେଇବା ବ୍ୟବସ୍ଥା କରିଥାନ୍ତି ମିଶ୍ରେ । ପୁଣି ଆହୁରି ଅନେକ ପ୍ରକାର କଳକବଜା କାରବାଇ ଦେଖିବାକୁ ଯାଉଥିଲେ ଆଖପାଖ ଗାଁ ଲୋକେ । ମିଶ୍ର ଘରେ ରାତିରେ କଳଗାଉଣା ବାଜେ । ହାରମୋନିୟମ, ଡୁବିତାବଲା, ମୃଦଙ୍ଗ, ବଂଶୀ ଇତ୍ୟାଦି ବାଦ୍ୟ ବାଜଣା ବାଜେ । ଅନେକ ପ୍ରାଚୀନ ଆଧୁନିକ ସୁରର ଛାନ୍ଦ ଚଉତିଶା ସଙ୍ଗୀତର ବୈଠକ ହୁଏ । ପୁଣି ଶୁନ ଗାଡ଼ି ! ପୁଞ୍ଜାଏ ଛଟା ଶୂନ ଗାଡ଼ି ବାହାରେ ପଦାକୁ ସେ ଘରୁ । ଆହୁରି ବିଚିତ୍ର- ଦିନେ ଦିନେ ରାତିକୁ ସେ ଘର ଦାଣ୍ଡରେ ଜଳେ ମସ୍ତମସ୍ତ ବଡ଼ ଆଲୁଅ, ଯାହାକୁ କହନ୍ତି ଡେ-ଲାଇଟ ! ସେଥିରୁ ବୁଝାପଡ଼େ-ସେ ଘରେ ନିଶ୍ଚୟ କିଛି ପର୍ବ ପର୍ବାଣି ବା ପାଲା ଯାତ୍ରା ଦାସକାଠିଆ କି ଗୋପୀ ନାଚର ବ୍ୟବସ୍ଥା ହବାର ଥାଏ । ସେ ସବୁ କିଛି ହବାର ଥିଲେ ଗାଁରେ ଆଗରୁ ନିଉତା ଦିଆ ସରିଥାଏ ମାତବର ଲୋକଙ୍କ ସମେତ ସର୍ବସାଧାରଣଙ୍କୁ ମଧ୍ୟ । ମିଶ୍ର ଘର ଦାଣ୍ଡରେ ସତରଞ୍ଜି, ସପ, ହେଁସ ପରା ହେଇଥାଏ ଦର୍ଶକମାନଙ୍କ ପାଇଁ । ରାତି ସାରା ଯାନିଯାତ୍ରା ଚାଲେ । ଚାରିଆଡ଼େ ହାଲୋଳମୟ । ଚାରିଚାରିଟା ଚାରିଶହ କ୍ୟାଣ୍ଡେଲ ପାୱାର ପେଟ୍ରୋମାକ୍ସ ରାତିସାରା ଜଳୁଥାଏ ।

ସେଦିନ ମିଶ୍ରଘର ଦାଣ୍ଡରେ ଗୋଟାଏ ବଡ଼ ଛାମୁଡ଼ିଆ ବନ୍ଧା ହେଉଥିବା ଖବର ଚାଲି ଯାଇଥାଏ ଆଖପାଖ ଗାଁକୁ । ସନ୍ଧ୍ୟାରେ ସତ୍ୟ ନାରାୟଣ ପୂଜା ପାଲା ବଡ଼ ଧୁମଧାମରେ ହବ ଆଉ ବି ଗୋଟିଏ ବଡ଼ ଭୋଜି–କାରଣ ମିଶ୍ରଙ୍କ ବଡ଼ ନାତିର ଏକୋଶିଆ; ଏ' କଥା ପିଲା ଜନ୍ମ ହେବାଦିନୁ ଜଣା ସରିଥାଏ ଗାଁ ଲୋକଙ୍କୁ । ଅନେକ ଦିନ ଗଣୁଥାନ୍ତି ଗଲା ତିନିହପ୍ତା ଆଗରୁ । ମିଶ୍ରେ କଲିକତାରୁ ବୋହି ଆଣିଥାନ୍ତି ଗଦାଗଦା କେତେକଣ ଜିନିଷ । ସେଗୁଡ଼ାକ କଇଜଙ୍ଗା ନଈ ଘାଟରୁ ଡଙ୍ଗାରେ ବୋଝେଇ ହେଇ ଆସି ଉତରାହବା ଦେଖିଥାନ୍ତି ଲୋକେ ମିଶ୍ରଘର ଘାଟରେ । ତେଣୁ ବହୁ ଆଶା ଉତ୍ସାହ ଖେଳୁଥାଏ ଶୁଭେଚ୍ଛୁ ଗ୍ରାମବାସୀଙ୍କ ମନରେ ସକାଳ ପହରୁ ।

କିନ୍ତୁ ଦିନ ଗଡ଼ିବା ବେଳକୁ ଲୋକଙ୍କର ସବୁ ଶୁଭେଚ୍ଛା ହଠାତ ମଉଳି ପଡ଼ିଲା- ଅଦିନ ବାତ୍ୟାରେ ଫଳନ୍ତି ଗଛଟା ଧଡ଼ାସ କିନା ମୂଳରୁ ଉପୁଡି ପଡ଼ିଲା ପରି । ମିଶ୍ରଘରୁ ଆଗ ଶୁଣାଗଲା ଗୋଟାଏ ଛାତିଫଟା ବାହୁନା । ପରେ ପରେ ଘରଟା ଫାଟି ପଡ଼ିଲା ନାରୀ ପୁରୁଷଙ୍କ ମିଳିତ ଆର୍ତ୍ତନାଦରେ । ଆରେ ଆରେ କଅଣ କାହାର ହେଇଗଲା ନା କଅଣ ? ଲୋକେ ଗଦା ହେଇ ପଡ଼ିଲେ ମିଶ୍ରଘର ଦାଣ୍ଡରେ ।

ମୁହୂର୍ତ୍ତକେ ଖବର ରଟିଗଲା-ଆହା ବିଚାରୀ ଆମ ପାରିର ନୂଆ ପୁଅଟି ମରିଗଲାରେ ମରିଗଲା !

ପାରି ମୋ ବୋଉର ଡାକନାଁ । କୁଳମଣି ମିଶ୍ରଙ୍କ ଅଲିଅଳି ବଡ଼ଝିଅ ପାରିର ଭଲ ନାଁ-କୃଷ୍ଣପ୍ରିୟା । ବିଚାରୀ ପାରିର ବହୁତ ବଡ଼ ଆଶାର ମିନାରଟା ସେଇଠି ଧୂଳିସାତ ହେଇଗଲା । ଦଶମାସ ଧରି ଯୋଉ ପିଲାଟିକୁ ଗର୍ଭରେ ଧରି ସେ କେଜାଣି କେତେ ସ୍ୱପ୍ନ ଦେଖିସାରିଥିଲା ସେଦିନ ସରିକି ! ସେ ସ୍ୱପ୍ନକୁ ଠିକ୍ ଏକୋଇଶିଆ ଦିନ କରି ଯମଦେବତା ମାରିବ ଏମିତି ଗୋଟାଏ ନିଷ୍ଠୁର ଗୋଇଠା ଏକଥା ଦେହରେ ଗଲା ନାଇଁ ମିଶ୍ରଙ୍କ ଅଲିଅଳି ବଡ଼ ଝିଅ ପାରିର । ମଲା ପିଲାଟାକୁ ଛାତିରେ ଜାକିଧରି ଦଉଡ଼ିଗଲା ସେ ବାପପାଖକୁ । ତୁକିନା କଚିଦେଲା ମୁଣ୍ଡ ବାପ ପାଦତଳେ । ସତେକି ସେଇ ବାପ କୁଳମଣି ହିଁ ହେଉଛନ୍ତି ଯମଦେବ, ଯାହାଙ୍କ ହାତରେ ଥିଲା ପିଲାର ଜୀବନ ମରଣ ! ସେଇ ଜ୍ଞାନରେ ଅଲିଅଳି ଝିଅ ତାଙ୍କର ବାହୁନି ଉଠିଲା, "ନିଅ ନିଅ ନନା ତୁମ ନାତିକୁ ନିଅ ! କହୁଥିଲ ପରା ! ମୁଁ ଥିବା ଯାକେ ମୋ ବଂଶର କାହାରି କିଛି ହବନାଇଁ ? ମତେ ଜଣା ମହାମୃତ୍ୟୁଞ୍ଜୟ ମନ୍ତ୍ର ? ମଲା ମଣିଷକୁ ଜୀଏଁଇ ଦବା ମନ୍ତ୍ର ? କାହିଁ ? କୁଆଡ଼େ ଗଲା ତମର ସେ ମହାମୃତ୍ୟୁଞ୍ଜୟ ନା ମୃତ୍ୟୁଞ୍ଜୟ ? ତମେ ମିଛରେ ଭଣ୍ଡୁଥିଲ ମତେ ଏତେ ଦିନ, ନନା ? କାହିଁ ? କୁଆଡ଼େ ଗଲା ତମ ଇଷ୍ଟଦେବୀ ଭୁବନେଶ୍ୱରୀର କାଢ ? ସେ ପରା ତମ ଦି ଭାଇଙ୍କୁ ପାଣି ଆଣି ଦେଉଥିଲା କୁଆଡ଼େ ଆରବ ମରୁଭୂମିରେ ? ତମେ ମିଛୁଆ ! ତମ ଇଷ୍ଟଦେବୀ ମିଛ । ସବୁ ମିଛ । ସେ ଠାକୁର ଗୁଡ଼ାଙ୍କୁ ନଈ ପାଣିରେ ଫୋପାଡ଼ି ଦିଅ ନନା ! ତମେ ଯଦି ନ ଫୋପାଡ଼ିବ ଆଜି ସେ ଗୁଡ଼ାଙ୍କୁ ତେବେ ମୁଁ ଫିଙ୍ଗିବି ମୁଁ ଫିଙ୍ଗିବି...।" ତୁ ତୁ ମୁଣ୍ଡପିଟି ଲାଗିଲା ପାରି । ତାକୁ ଘରଟା ଯାକର ମାଇପେ କେହି ସମ୍ଭାଳିବା ଅବସ୍ଥାରେ ନଥିଲେ ସେତେବେଳେ ।

କୁଳମଣି ସ୍ତବ୍ଧ ହୋଇଗଲେ କିଛି ସମୟ ପାଇଁ । ପରେ ପରେ ସେ ପଶିଗଲେ ତାଙ୍କ ଠାକୁର ଘରେ । ଖଟୁଲୀରୁ ଇଷ୍ଟଦେବୀ ଭୁବନେଶ୍ୱରୀଙ୍କୁ ଉଠେଇ ଜାକିଲେ କାଖରେ । ଚାଲିଲେ ଦାଣ୍ଡକୁ । ଦାଣ୍ଡରେ ଦେବୀନଈର ବନ୍ଧ । ବନ୍ଧ ତଳକୁ ନଈ ବାଲି । ବାଲି ପାରି ହେଲେ ଦେବୀନଈର ପାଣି ଧାର । ଟିକିଏ ଭିତରକୁ ପଶିଗଲେ -କଳାଘୁମର ପାଣିର ଗଣ୍ଡ ଯୋଉଠି ରହେ ମଣିଷ ଖିଆ କୁମ୍ଭୀର ଶଙ୍ଖା ।

କୁଳମଣି ଏକ ମୁହାଁ ଚାଲିଥାନ୍ତି ସେଇ ଗଣ୍ଡକୁ ଲକ୍ଷ୍ୟକରି ନଈ ବନ୍ଧ ତଳକୁ ।

ହଠାତ୍ ତାଙ୍କ କାନରେ ବାଜିଲା ବାଦ୍ୟ ବାଜଣା । ବହୁ ଦୂରରେ ଶୁଭୁଥାଏ ସେ ବାଜା-ଢୋଲ ମହୁରୀ ବିଗୁଲ ସହିତ ସେଇ ପରିଚିତ କୁହାଟ- ବେଲେ ବେଲେ ବେଲେ ବେଲେରେ !

ସେ ଥିଲା ଗୋଲାପ ମିଆଁର କୁହାଟ । ଅଟକି ଗଲା କୁଳମଣିଙ୍କ ପାଦ । ପୁଣି କାନ ଡେରି ଶୁଣିଲେ ସେ ବାଜାର ଡାକରାକୁ । ପଚାରିଲେ ନିଜକୁ, ଆଜି କଣ ମହରମ ? ମହରମ ତାଜିଆ ନେଇ ଗୋଲାପ ମିଆଁ ପ୍ରତିବର୍ଷ ଆସେ ହାଜିପୁରରୁ । ହାଜିପୁର ବିଲୁଆ ଖାଇ ନଈ ସେପାରି ଗାଁ । ଗୋଲାପ ମିଆଁର ତାଜିଆରେ ଶିରିଣି ଭୋଗ ଲାଗେ ମହରମକୁ । ସାରା ଅଞ୍ଚଳରେ ସେଇ ଗୋଟାଏ ହିନ୍ଦୁ ବ୍ରାହ୍ମଣ ଘର ପାର୍ବତୀପୁରରେ ଯୋଉଠିକି ମୁସଲମାନଙ୍କ ମହରମ ପର୍ବକୁ ତାଜିଆ ଆଣେ ଗୋଲାପ ମିଆଁ ସାହାସ କରି । ତାକୁ ସେ ସାହାସ ଦେଇଥିଲେ ମେସୋପଟାମିଆଁ ଭଳି ଇସ୍‌ଲାମିକ୍ କଣ୍ଟ୍ରିରେ ଯୁଦ୍ଧ କରି ଦେଶକୁ ଫେରିଆସିବା ପରେ କୁଳମଣି ।

ଗୋଲାପ ମିଆଁ ଘରଦାଣ୍ଡରେ ପହଞ୍ଚି ଦେଖିଲା ଖୁଣ୍ଟଭଳି ଗୋଟାଏ ଯାଗାରେ ଠିଆ ହେଇଛନ୍ତି ମିଶ୍ରାଜୀ !

ତାଙ୍କୁ ଏମିତି ରୂପରେ ଦେଖିନଥିଲା କେବେ ଗୋଲାପ । କୋଟ ପେଣ୍ଟ ପିନ୍ଧିବା ମଣିଷଟା ଏକ ବସ୍ତ୍ର ହେଇ ଖାଲି ଦେହରେ କାହିଁକି ଠିଆ ହେଇଛି ? ପୁଣି ନୁଖୁରା ମୁଣ୍ଡବାଳ ଉଡୁଚି ଫୁରୁଫୁରୁ । ମୁହଁରେ ସହଜେ ଲମ୍ବା ନିଶ ଦାଢି ରଖିଥାନ୍ତି ମିଶ୍ରେ । ଭଲବେଳେ ଦିଶନ୍ତି ହିନ୍ଦୁଙ୍କ ଋଷି ମୁନି ଯା ମୁଲ୍ଲା ମୌଲବୀଙ୍କ ଭଳି । କଥା କଥାକେ ସଂସ୍କୃତ ଶ୍ଳୋକ ସାଙ୍ଗକୁ କୋରାନ ସରିଫ୍‌ର ଗଡ଼ ଗଡ଼ ପଦ ଗାଇଯାନ୍ତି ସେ ଯାହା ଗୋଲାପ ପାଇଁ ଘଡ଼ଘଡ଼ି ଚଡ଼ଚଡ଼ି । କିନ୍ତୁ ସେ ଜାଣେ ମିଶ୍ର ଲୋକଟା ପଣ୍ଡିତ । ଖଣ୍ଡ ମଣ୍ଡଳରେ ଆଉ ଜଣେ କିଏ ନଥାଏ ସେଦିନ ଯେ ଗୋଲାପ ମିଆଁର ଆଖିରେ ଦିଶନ୍ତା ଜ୍ଞାନୀ ପଣ୍ଡିତ ଭଳି । ତେଣୁ ମିଶ୍ର ମଣିଷଟାକୁ ପୟଗମ୍ବରତୁଲ୍ୟ ସମ୍ମାନ କରେ ସେ । ସେଭଳି ମଣିଷଟା କ'ଣ ପାଇଁ ଏମିତି କାହୁଁ ଅଇଲା ଭଳି ଠିଆ ହେଇଛି ନବୁଝି ପାରି ଗୋଲାପ ପଡ଼ିଗଲା ଗୋଳକ ଧନ୍ଦାରେ ।

ଚାରିଆଡ଼କୁ କାନ ଡେରିଲା ଏଥର ଗୋଲାପ । ଶୁଣିପାରିଲା- ମିଶ୍ର ଘର ଭିତରୁ ଜନାନା ଲୋକଙ୍କ କାନ୍ଦ ବୋବାଳି । ତାଜିଆ ବାଜାର କାନଫଟା ରବାଦ ଆଉ ବନତୀ ବୁଲାଳିଙ୍କ କିରିକିରି ହସ ସତ୍ତ୍ୱେ କାନ୍ଦଣା ସ୍ୱର ପଡୁଥାଏ ମିଆଁ କାନରେ ଠିକ୍ ଠିକ୍ । ତେବେ କ'ଣ କିଛି ଅଘଟଣ ଘଟିଗଲା, ଆଜିଭଳି ଦିନରେ ମିଶ୍ରଙ୍କ ଘରେ ?

"ଖାମୋସ୍..." ରାହୁଆ ପାଟିଟାଏ କଲା ଗୋଲାପ ।

ତାଜିଆ କାନ୍ଧେଇବା ଲୋକଙ୍କ ସାଙ୍ଗରେ ଚାଲିବା ବାଜାବାଲାଙ୍କ ଢୋଲ ମହୁରି ଗୁଡ଼ାକ ଚୁପ୍ ପଡ଼ିଗଲେ ସାଙ୍ଗେ ସାଙ୍ଗେ ।

ଏହାପରେ ଗୋଲାପ ମିଆଁର ସମ୍ବୋଧନ, "ହଜୁର ! ମେ ଏ କ୍ୟା ଶୁନ ରହା ହୁଁ ? ଘରକା ଅନ୍ଦରସେ ଏ କ୍ୟା ଆୱାଜ ? ରୋନେକା ଆୱାଜ ? କ୍ୟା ହୋ ଗୟା ଆପ ଲୋଗୋଁକୋ ସାହେବ ?"

ବାସ୍ ! ସେତିକିରେ କୁଳମଣିଙ୍କୁ ଲାଗିଲା କାଳିସି ! କାଖରେ ଜକା ଭୁବନେଶ୍ୱରୀଙ୍କ ଚକଚକ ଅଷ୍ଟଧାତୁର ପ୍ରାଚୀନ ମୂର୍ତିଟାକୁ ଲାଲ ରଙ୍ଗର ସାଲୁ କନା ଅଢୁଆଳରୁ କାଢିଲେ କୁଳମଣି । ସେଟାକୁ

ଗୋଲାପ ମିଆଁ ଆଡ଼କୁ ବଢେଇ ଦେଇ କହିଲେ, "ଲୋ ଲୋ ଇସକୋ ! କି ଯୋ ଚାହତା ତୁହ୍ମାରା କରଲୋ ! ନହିଁ ତୋ ଫିର୍ ୟାର୍ ଗୋଟାଏ ରଫାଦଫା କରିବି ମୁଁ ମିଆଁ ବାଟ ଛାଡ଼ । ଆଜି ଏ ଆଉ ମୁଁ ଦିହେଁ କୁଣ୍ଢିଆ କୁଣ୍ଢି ହେଇ ଏ ଦେବୀ ନଦୀରେ ଝାସ ଦବୁ ! ଛାଡ଼ ବାଟ !"

ଗୋଲାପ ବିଚରା ଜଣେ ରନର୍- ଡାକ ବିଭାଗର । କାନ୍ଧରୁ ଡାକ ମୁଣି ଝୁଲେଇ ହାତରେ ଝୁମୁକାବନ୍ଧା ଠେଙ୍ଗାଟାଏ ଧରି ଏ ଗାଁରୁ ସେ ଗାଁ ନିତି ଧାଁଦଉଡ଼ ଭିତରେ ସେ ଏଇ ମିଶ୍ରଘର ପିଣ୍ଡାରେ ଉଦୁଉଦିଆ ଦି ପହରେ ଆଶ୍ରାନିଏ। ଡାକ ଘର ସାଙ୍ଗେ କାରବାର ଏ ଅଞ୍ଚଳର ସବୁଠୁଁ ବେଶୀ ଏଇ ମିଶ୍ର ଘରର । ଯେତେ ଚିଠି ପତ୍ର ମନିଅର୍ଡ଼ର ଖବରକାଗଜ ଆସି ଗଦା ହୁଏ ନଈ ସେପରି ଗୋବିନ୍ଦପୁର ଡାକଘରେ ଲୋକମାନଙ୍କ ଠିକଣାରେ ସେଥିରେ ସବୁଠୁ ବଡ଼ ଭାଗଟା ଏକା ଏ ମିଶ୍ର ଘରର । ତେଣୁ ଆଠକାଳି ବାରମାସି ମିଶ୍ରଘର ସେବାରେ ନିଯୁକ୍ତ ରହେ ପୋଷ୍ଟାଲ ରନର୍ ଗୋଲାପ । ସେଇ ସୂତ୍ରରେ କୁଳମଣିଙ୍କ ଘର ସାଙ୍ଗେ ତାର ପରିଚୟ । ପରିଚୟରୁ ଆତ୍ମୀୟତା । ଆତ୍ମୀୟତାରୁ ଧର୍ମ ଚର୍ଚ୍ଚା । ଯୋଉଦିନ ସେ ଜାଣିଲା- କୁଳମଣି ମକ୍କା ମଦିନା ଦେଖିସାରିଛନ୍ତି ତାଙ୍କୁ ସେ ମନେ ମନେ ଜଣେ ହାଜି ବୋଲି ଭାବିନେଇ ଖୁବ ସମ୍ମାନ ଦବାକୁ ଆରମ୍ଭ କଲା । ସେଇ ସୂତ୍ରରେ ବି ସେ ପ୍ରସ୍ତାବ ଦେଇଥିଲା- ପ୍ରତିବର୍ଷ ମହରମକୁ ତାଜିଆ ଆଣିବାକୁ ମିଶ୍ରଘର ଦାଣ୍ଡକୁ । ମିଶ୍ରଙ୍କ ଅନୁମତି ମିଳିଲା ପରେ ତେଣିକି ସାହାସ ପାଇଲା ଗୋଲାପ । ତାଜିଆ ଆସିଲା ପାର୍ବତୀପୁରର ଶୋତ୍ରୀୟ ଭରଦ୍ୱାଜ ଗୋତ୍ରୀ ବ୍ରାହ୍ମଣ କୁଳମଣି ମିଶ୍ରଙ୍କ ଦାଣ୍ଡକୁ ବର୍ଷ ପରେ ବର୍ଷ ଫି ବର୍ଷ ମହରମକୁ । ଧୀରେ ଧୀରେ ହିନ୍ଦୁ ମୁସଲିମ ଦୁଇ ସମ୍ପ୍ରଦାୟର ବୁଝାମଣାର ବାଟ ପ୍ରଶସ୍ତ ହବାକୁ ଲାଗିଲା ଏ ଅଞ୍ଚଳରେ ।

ସେତେବେଳେ ଦେଶର ଅନ୍ୟତ୍ର ମୁସଲିମ ଲିଗର କାର୍ଯ୍ୟକ୍ରମ ବ୍ୟାପିବା ଫଳରେ କଂଗ୍ରେସର ଧର୍ମ ଭିତ୍ତିରେ ରାଜନୈତିକ ଫଟାଫଟିର ବାଟ ଫିଟେଇବା କାମ ଆରମ୍ଭ ହେଉଥାଏ ଜୋରସୋର । କଲିକତାରେ ମଝିରେ ମଝିରେ ବଡ଼ ଜୋର ରାୟଟ ଲାଗୁଥାଏ ଦୁଇ ସମ୍ପ୍ରଦାୟ ଭିତରେ । ହାଣକାଟ ଚାଲେ । ପୁଣି ଶୁଣାଯାଏ ଗାନ୍ଧି-ଜିନ୍ନାଙ୍କ ମିଳାମିଶା ହେଇଯିବା ଫଳରେ ହାଣକାଟ ବନ୍ଦହେଇ ଗଲାଣି । କୋଳାକୋଳି ହେଲେଣି ପୁଣି ହିନ୍ଦୁ ମୁସଲମାନ । କଲିକତା ରାସ୍ତାରେ ପୁଣି ତାଜିଆ କାନ୍ଧେଇ ହିନ୍ଦୁ ମୁସଲମାନ ଚାଲିଲେଣି ଭାଇ ଭାଇ ଭଳି ।

ଏସବୁର କୌଣସି ପ୍ରଭାବ ପଡୁନଥାଏ ଗ୍ରାମାଞ୍ଚଳରେ । ପାର୍ବତୀପୁରର କୁଳମଣି ମିଶ୍ର ଆଉ ହାଜିପୁରର ଗୋଲାପ ମିଆଁ ବହୁ ଆଗରୁ ହେଇ ସାରିଥାନ୍ତି-ଭାଇ ଭାଇ !

ମିଶ୍ରଙ୍କ ହାତରେ ତାଙ୍କ ଇଷ୍ଟଦେବୀ ଭୁବନେଶ୍ୱରୀଙ୍କ ମୂର୍ତ୍ତିଟାକୁ ଦେଖି ହାତ ଯୋଡ଼ି ମୁଣ୍ଡ ନୁଏଁଇ ନମସ୍କାର କଲା ଗୋଲାପ ପହିଲେ ସେ ଠାକୁରାଣୀଙ୍କୁ । ମୁହୂର୍ତ୍ତକ ଭିତରେ ସେ ବୁଝିନେଲା ଘଟଣାର ଗୁରୁତ୍ୱକୁ । କହିଲା, "ବାବୁ ! ମା ଠାକୁରାଣୀକୁ ଆପଣ ଲଇକୁ ଲେଇ ଫୋପାଡ଼ି ଦବାକୁ ବାହାରିଛନ୍ତି ? ତୋବା ତୋବା ! ଏତେ ବଡ଼ ବିଧର୍ମୀ କାମ କରିବାକୁ ତ ଆମ ମୁସଲମାନଙ୍କ ହାତ ଯିବ ନାହିଁ ! ଆପଣ ହିନ୍ଦୁହେଇ କେମିତି ବାହାରିଛନ୍ତି ଏ ବେହୁଦା କାମ କରିବାକୁ ! ଛ୍ୟା ଛ୍ୟା । ଏ କ୍ୟା ହୋ ଗୟା ଆପକା ଦିମାକକୁ ବାବୁଜୀ ? ମୁଝେ ବତାଓ ତୋ ଜରା । ଦେଖୁଙ୍ଗା କ୍ୟା କରସକତା ମୈ..."

"ତାଜିଆ ଓ୍ୱାପସ ନେଇ ଚାଲିଯା" ରଡ଼ି କଲେ କୁଳମଣି, "ଆଜିଠୁଁ ଏ ଘରେ ସବୁ ପୂଜା ପାଠ ବନ୍ଦ । ଭଗବାନ ଫଗବାନ ସବୁ ମିଛ । ତୁ ଆଉ ତାଜିଆ ଆଣିବୁ ନାଇଁ ଆରବର୍ଷ ମହରମକୁ । ମୋର ଆଉ କୋଉ ଧର୍ମ ଫର୍ମରେ ବିଶ୍ୱାସ ନାହିଁ । ତୁ ଯା ପଳା... ।"

"ଆରେ ଆରେ ବାବୁ ! ତମକୁ ତ ସତରେ କାଳିସି ଲାଗିଛି... । "ଗୋଲାପ ଅନେଇଲା ମିଶ୍ରଙ୍କ ଆଖିକୁ । ହଠାତ ତା ପାଟିରୁ ବାହାରିଲା, "ଦେଖ ବାବୁ ! ଠାକୁରାଣୀକୁ ହଲାପଟା କରନା ଆଉ ! ସେ ତମ ଘରର ଜାନ୍, ତମ ମିଶର ବଉଁଶର ଜାନ୍ ବଞ୍ଚେଇଛି ହଜାର ହଜାର ସାଲ୍ । ଅବି ସେ ଗୋଟାଏ କୁର୍ବାନୀ ମାଗିଲା ତମଠୁଁ ବୋଲି ତମେ ତା ଜାନ ଲବାକୁ ବାହାରି ପଡ଼ିଲଣି ନା କଅଣ ହୋ ବାବୁ ! ତମର ଗୋଟାଏ ନାତିକୁ ଠାକୁରାଣୀ ଆଜି ମାଗି ଲେଲା ବୋଲି ଏତେ ଗରମ ହେଇ ଯାଉଛ ତା ଉପରେ ! ସେ ତମ ମା'ଟି ? ମା'କୁ ତମର ଗୋଟାଏ ବୋଲି ବଳି ଦେଇଛ ବୋଲି ତାକୁ ନଈ ପାଣିରେ ଫେକି ଦବାକୁ ଯାଉଛ ? ଫେର୍ ଆଜି ଭଳି ମହରମ ପରବରେ ତମେ ଏ କାମ୍ କରିବାକୁ ଯାଉଛ ? ଜାଣିଛଟି ଏ ମହରମ ତାଜିଆ ନିକାଲାଯାଏ କାହା ପେଇଁ ? ପୟଗମ୍ବର ମହମ୍ମଦଙ୍କ ଖୋଦ ନାତିକୁ ଆଜି କୁର୍ବାନ କରା ହେଇଥିଲା କରବଳା ଯୁଦ୍ଧରେ ! ଭୁଲିଗଲ ? ଯାଅ ଯାଅ... ଠାକୁରାଣୀ କି ଖଟୁଲୀରେ ଥୁଅ । ମା'ଜୀଙ୍କୁ ଘରେ ଖବର କର । ଜଲଦି ବେବସ୍ଥାକର... ତାଜିଆ ପୂଜା ଅଲବତ ହବ ଆଜି ଆପନଙ୍କ ମକାନ ସାମନାରେ ! ବନ୍ଦୋବସ୍ତ କର । ଆପକା କୁର୍ବାନୀ କିୟାହୁଆ ନାତିକୋ ଠାକୁରାଣୀ ଫିର ଓ୍ୱାପସ କରନେକା ଓ୍ୱାଦା କିଆ ହୈ ଅଭିଅଭି ! ଶୁନା ନେହିଁ ? ଯାଓ ମିଶ୍ରାଜୀ... ତାଜିଆ ପୂଜାକା ବନ୍ଦୋବସ୍ତ କରୋ । ଦଶ ମୈନେକା ଅନ୍ଦର ଓ ଲଡ଼କା ଫିର ଓ୍ୱାପସ ଆଏଗା ! ତାଜିଆ ପୂଜାକା ବନ୍ଦୋବସ୍ତ କରୋ !"

ସ୍ତବ୍ଧ ହେଲେ କୁଳମଣି । କାନକୁ ବିଶ୍ୱାସ କରିବା ଅବସ୍ଥାରେ ନଥିଲେ ସେ । କିନ୍ତୁ ସେ ଠିକ୍ ଶୁଣି ପାରିଥିଲେ- ଗୋଲାପ ମିଆଁର ପ୍ରତିଶ୍ରୁତି; ଦଶ ମୈନେକା ଅନ୍ଦର ଓ ଲଡ଼କା ଫିର ଓ୍ୱାପସ ଆଏଗା !

ଇଷ୍ଟଦେବୀ ଭୁବନେଶ୍ୱରୀଙ୍କୁ ପୁଣି ଖଟୁଲି ଉପରେ ନେଇ ବସେଇଲେ କୁଳମଣି ।

ଦାଣ୍ଡରେ ପୁଣି ଶୁଭିଲା-ଢୋଲ ମହୁରୀ ଆଉ ଲାଗିଲା ବନତୀ ଖେଳ । ପୁଣି ଆରମ୍ଭ ହେଇଗଲା ଉତ୍ସବ ମିଶ୍ର ଘରେ । ସତେକି ସେ ଘରେ କିଛି ଦୁର୍ଘଟଣା ଆଦୌ ଘଟିନାହିଁ ।

ତେଣେ ଘର ଭିତରେ ଚକଟା ଚାଲିଥାଏ ଶିରିଣି-ତାଜିଆ ପୂଜା ପାଇଁ । ସନ୍ଧ୍ୟାରେ ସତ୍ୟ ନାରାୟଣ ପୂଜା ପାଇଁ ସଂଗୃହୀତ ସବୁ କାନ୍ଦି କାନ୍ଦି ପାଚିଲା କଦଳୀ ଆଉ ହଣ୍ଡା ହଣ୍ଡା ପିଠା ମିଠା କ୍ଷୀର କାକରା ସବୁ ଉତ୍ସର୍ଗ କରି ଦିଆଗଲା ସେଇ ଠାକୁରଙ୍କୁ ସେଦିନ ଯାହାଙ୍କୁ ଗୋଲାପ ମିଆଁ ତାଜିଆରେ ବସେଇ ବିଲୁଆଖାଇ ନଈ ସେପାରି ହାଜିପୁରରୁ ନେଇ ଆସିଥିଲା ପାର୍ବତୀପୁର ମିଶ୍ର ଘରକୁ ।

ବୋଉ କହେ, "ତା'ର ଠିକ୍ ଦଶମାସ ପରେ ତୋ ଜନ୍ମ କଲିକତାରେ । ସେତେବେଳେ ଅଜା କଲିକତା କର୍ପୋରେସନରେ ଚାକିରି କରୁଥିଲେ । ଆମେ ରହୁଥିଲୁ ଭଡ଼ା ଘରେ- ମମିନପୁରରେ । ଚାରିଆଡ଼େ ମୁସଲମାନ ବସ୍ତି ।"

"ମୋ ନାଁ ଫକୀର ଦେଲା କିଏ କାହିଁକି ? ଆଉ ଭଲ ନାଁ ନଥିଲା ?" ମୁଁ ଗାଉଁ ଗାଉଁ ହୁଏ ବୋଉ ଉପରେ ପିଲା ଦିନେ ।

"ଏ ନାଁ ତତେ କେହି ଦେଇନାହିଁ-ତୁ ଆପେ ଆପେ ଅର୍ଜିଲୁ", ବୋଉ ହସି ଦଉଥିଲା ଆଉ ପଚାରୁଥିଲା, "ତତେ କିଏ କହୁଥିଲାକି ସେମିତି ଖେଳିବାକୁ ? ତୁ ତ ଥରେ ଜନ୍ମ ହେଇଥିଲୁ । ପୁଣି ପଳାଉଥିଲୁ କାହିଁକି ? ତୁ କଣ ଆଉ ସହଜେ ଫେରି ଆସିଥାନ୍ତୁ କି ? ତତେ ଫାଶ ବସେଇ ଧରି ପକେଇ ନଥାନ୍ତା ଯଦି ଗୋଲାପ ଚାଚା ତୁ ତ ଆମକୁ ମଝି ଦରିଆକୁ ପେଲି ଦେଇ ଖସି ପଳେଇବୁ ବୋଲି ଗୋଡ଼ ଟେକି ବସିଥିଲୁ !"

"ଖାଲି କଣ ଗୋଲାପ ମିଆଁ ?" ମୋ ନନା (ଅନନ୍ତ ଚରଣ) ମଧ୍ୟ ସେଦିନ କଥା ମନେ ପକାନ୍ତି, "ତୋ ଜନ୍ମ ହବା ଦିନର ସେ ଅଦ୍ଭୁତ ଘଟଣାଟା ? ସେଥିରୁ ଜଣାପଡିଲା ତୁ ପ୍ରକୃତରେ କିଏ ! ଆମର ଧାରଣା ପୂର୍ବ ଜନ୍ମରେ ତୁ ଥିଲୁ କୋଉ ପୀରଫୀର କି କଣ କେଜାଣି ! ସେଇ ପୀରଙ୍କ ଆତ୍ମା ହେଇଥିବୁ ନହେଲେ ତୋ ଜନ୍ମ ଦିନ ପୁଣି ସେମିତି ଏକ ବିଚିତ୍ର ଘଟଣା ଘଟନ୍ତା ବା କାହିଁକି !"

"କି ଘଟଣା ?" କାବା ହୁଏ ମୁଁ ସେ ସବୁ ଗପ ଶୁଣିଲେ ପିଲାଦିନେ, ମୋ ଜନ୍ମକୁ ନେଇ ।

" ତୋ ଜନ୍ମ କଲିକତା ଟାଇମ- ସନ୍ଧ୍ୟା ଛ'ଟା ବାରରେ । ବେଳ ରତରତ । ଓଃ କି ଗରମ- ! ଜ୍ୟେଷ୍ଠ ମାସରେ କଲିକତା ନିଆଁ ଉହ୍ଲେଇ । ସେଦିନ କଥା ଜଳଜଳ ଦିଶୁଛି-୧୫ ମେ, ୧୯୩୩, ସୋମବାର । ତୋ କୁଆଁ କୁଆଁ ଡାକ କାନରେ ବାଜିଲା କ୍ଷଣି ଆମେ ଖୁସି ହଉଥାଉ ହଁ; କିନ୍ତୁ ମନରୁ ଦକା ଯାଇନଥାଏ...", ନନା ଚିନ୍ତିତ ଦିଶନ୍ତି ।

ମୋ ଜନ୍ମର ବହୁ ବର୍ଷଯାକେ ସେମାନଙ୍କ ମନରୁ ଭୟ ଯାଇନଥିଲା- କାଳେ ମୁଁ ପୁଣି ଠକି ଦେଇ ଖସି ପଳେଇବି ଆଉଥରେ । ସେଥିପାଇଁ ବୋଉ ମୋ ପାଇଁ ଷୋଳ ପୂଜା ମାନସିକ କରାଇଥିଲା ସତ୍ୟପୀରଙ୍କ ପାଖରେ । ବୋଉ ବଞ୍ଚିଥିବା ଯାକେ ନ' ବର୍ଷ ପର୍ଯ୍ୟନ୍ତ ସେ ପୂଜା ପ୍ରତିବର୍ଷ ମୋ ଜନ୍ମଦିନ ତିଥିରେ (ଜ୍ୟେଷ୍ଠ କୃଷ୍ଣପକ୍ଷ ସପ୍ତମୀ) ପାଳିତ ହେଉଥିଲା ଆମ ଘରେ । କିନ୍ତୁ ୧୯୪୨ ଜୁନ ତେର ତାରିଖରେ ବୋଉର ମୃତ୍ୟୁ ପରେ ତାର ନିୟମିତତା ଆଉ ରହିଲା ନାହିଁ ।

"ହଁ ତା ପରେ କଅଣ ହେଲା", କଥାଟା ଅଧା ରହିଗଲା ଭଳି ଜଣାପଡ଼େ ମତେ ନନାଙ୍କ ନୀରବତାରୁ ।

"ତା ପରେ ?" ଏଥର ଅଜା ପୂର୍ଣ୍ଣ କରନ୍ତି ଅଧା ରହିଯିବା କଥାକୁ, "ଶୁଣ ତାହେଲେ ! ତୋ କୁଆଁକୁଆଁ ଶୁଭିଲା ଏଣେ ଘର ଭିତରେ ତେଣେ ଦାଣ୍ଡରେ, ରାସ୍ତା ଉପରେ ଶୁଣାଗଲା-ବ୍ୟାଗ୍ ପାଇପ ଆଉ ବ୍ରାସ ଡ୍ରମ ବାଜା ବାଜିବା ଶବ୍ଦ । ପୂରା ବ୍ୟାଣ୍ଡ ପାର୍ଟି ! ପନ୍ଦର କି କୋଡ଼ିଏ ଜଣିଆ ପାର୍ଟି ! ସମସ୍ତେ ପିନ୍ଧିଥାନ୍ତି ଫୁଲ ୟୁନିଫର୍ମ । ଆମେ ଭାବିଲୁ ସେମାନେ ଯାଉଛନ୍ତି ଅନ୍ୟ କୁଆଡ଼େ । କିନ୍ତୁ ସେ ଦଳଟା ଆସି ଠିଆ ହେଲା ଆମ ଘର ଆଗରେ ଚାଲିଲା ଅଧଘଣ୍ଟାଏ କାଳ ବ୍ୟାଣ୍ଡ ମ୍ୟୁଜିକ୍ ଆମ ଘର ଆଗରେ । ସମସ୍ତେ ଭାବିଲେ ମୁଁ ବୋଧହୁଏ କାହାକୁ କିଛି ନକଣେଇ ସେ ବ୍ୟବସ୍ଥା କରିଛି । କିନ୍ତୁ ମୁଁ ନିଜେ ତୋବା ବନିଗଲି । ଆରେ ବାପ୍ ! ସେ ହେଉଛି ରାଜା ମହାରାଜା କି ଲାଟସାହେବଙ୍କ ଆଟର ବ୍ୟାଣ୍ଡ । ଆମେ କିଏ ସେ ବ୍ୟାଣ୍ଡ କିଏ ? ତଥାପି ମୁଁ କହିଲି-ଠିକ୍ ଅଛି । ସେମାନଙ୍କୁ ବସାଅ, ଚର୍ଚ୍ଚାକର । ନାସ୍ତା ଚା ପାଣିର ବରାଦ କର । ବନ୍ଦୋବସ୍ତ ଆରମ୍ଭ ହେଉଥାଏ । ହଠାତ ବାଜା ବଜା ବନ୍ଦ ହୋଇଗଲା । ସବୁ ଚୁପ୍ ! ଚାରି ଆଡ଼ ନିସ୍ତବ୍ଧ । ଦେଖ ଦେଖ ବ୍ୟାଣ୍ଡ ପାର୍ଟିର ଲୋକେ ମୁଣ୍ଡରୁ ପଗଡ଼ି

ଖୋଲି ପକେଇଲେ । ସେଇଠୁ ତଳକୁ ମୁହଁ ପୋତି ଧାଡ଼ି ହେଇ ଚାଲିଲେ-ସତେ ଯେମିତି କିଏ ତାଙ୍କର ମରିଗଲା କି କ'ଣ ! ଆଶ୍ଚର୍ଯ୍ୟ ବ୍ୟାପାର । ଖବର ନିଆଗଲା । ପ୍ରକୃତରେ କଥା ସେଇଆ..." ଅଜା ଆଖି ବୁଜି ନିଜ ଲମ୍ବା ଦାଢିକୁ ହାତ ମୁଠାରେ ସାଉଁଲେଇଲେ । ଏଟା ତାଙ୍କ ଅଭ୍ୟାସ । ଅତୀତର କୌଣସି ରହସ୍ୟମୟ ଘଟଣା ଦୁର୍ଘଟଣା କଥା ତାଙ୍କ ସ୍ମୃତିକୁ ଆଚ୍ଛନ୍ନ କରିବା ମାତ୍ରେ ସେ ଏମିତି ଆଖିବୁଜି ଦାଢି ସାଉଁଳାନ୍ତି ବହୁତ ବେଳଯାକେ ।

କିନ୍ତୁ ସେଦିନର ସେଇ ରହସ୍ୟମୟ ଘଟଣାର ଉଦ୍‌ଘାଟନ କରନ୍ତି ଅଜା ପ୍ରତିଥର ପ୍ରାୟ ସେଇ ଏକା ଢଙ୍ଗରେ । କହନ୍ତି, "ସେ ବ୍ୟାଣ୍ଡ ପାର୍ଟିଟା ପ୍ରକୃତରେ ଆସିଥିଲା ମୟୂରଭଞ୍ଜ ମହାରାଜାଙ୍କ ନାତିର ଜନ୍ମ ଉତ୍ସବ ପାଇଁ । ମହାରାଜାଙ୍କ ଗୋଟାଏ ପ୍ୟାଲେସ ଥିଲା ଆମର ସେଇ ମମିନ୍‌ପୁର-ଖିଦିରିପୁର ଏରିଆରେ । ସେମାନେ ରାଜ ଉଆସ ଆଗରେ ବ୍ୟାଣ୍ଡ ବଜେଇବାକୁ ଆସିଥିଲେ ବରାଦ ଅନୁସାରେ । ବାଜା ବଜେଇ ସାରି ଫେରୁଥିଲେ । ସେତିକି ବେଳେ କିଏ ତାଙ୍କୁ ଖବର ଦେଲା- ଏ ଷ୍ଟ୍ରିଟରେ ଅମୁକ ବାଡ଼ିରେ ଗୋଟିଏ ପିଲା ପୈଦା ହେଇଛି । ତା'ପରେ ସେମାନେ ମନକୁ ମନ ଆସି ପହଞ୍ଚିଲେ ଆମ ୨୭ ନମ୍ବର କ୍ୱାଟର୍ସର ସାମନାରେ । ଅଯାଚିତ ଭାବେ ବଜେଇଲେ ବ୍ୟାଣ୍ଡ । ହୁଏତ ସେମାନେ ଆଶା କରୁଥାଇପାରନ୍ତି ଆମ ଘରୁ ବି କିଛି ବକ୍‌ସିସି ଆଦାୟ କରିବାକୁ । ଅନ୍ତତଃ ମୁଁ ମନେ କରିଥିଲି ସେଇଆ । କିନ୍ତୁ ସେକଥା ବୁଝି ତାଙ୍କ ପାଉଣା ଦେବା ଆଗରୁ ସେମାନେ ବାଜା ବଜେଇବା ବନ୍ଦ କରି ଦେଲେ । ତାଙ୍କ ପାଖକୁ ଖବର ଆସିଲା-ଜଣେ କିଏ ବଡ଼ ଗୁରୁ ସ୍ଥାନୀୟ ମୁସଲମାନ ପୀର ତାଙ୍କର ମରିଗଲେ ! ବାସ୍ ! ଆଉ ନାସ୍ତା ଚା' ପାଣି କଥା ପଚାରେ କିଏ ! ମୁଣ୍ଡରୁ ପଗଡ଼ି ଉତାରି ପକେଇ ସେମାନେ ଚୁପ୍‌ଚାପ୍ ଚାଲିଗଲେ- ପଦେ କଥା ବି ଶୁଣିନୁ ତାଙ୍କ ମୁହଁରୁ ଆମେ । ଆମେ ଏ ଯାକେ ବୁଝିପାରୁନୁ କିଏ ସେମାନେ, କାହିଁକି ମାଗଣାରେ ସେମିତି ରୟାଲ ବ୍ୟାଣ୍ଡ ବାଜା ଗରିବ ଲୋକର ଘର ସାମନାରେ ବଜେଇବାକୁ ଆସିଥିଲେ ! କିଏ ଡାକିଥିଲା ତାଙ୍କୁ ? ପୁଣି କାହିଁକି ସେମିତି ପଳେଇଲେ ? କୋଉ ପୀର ତାଙ୍କର ଯେ ମରିଗଲେ ସେଦିନ ? ତୋ ଜନ୍ମ ହବାକୁ ଆଉ ସେ ମୁସଲମାନ ପୀରଙ୍କ ମୃତ୍ୟୁ ଘଟିବାକୁ ! କ'ଣ ସେଭଳି ଯୋଗାଯୋଗ ଘଟଣାଟାର କିଛି ଅର୍ଥ ନାହିଁ ଭାବୁଚ କି ତମେ ସବୁ ? ସେଇ କାରଣରୁ ମୁଁ ତୋ ନାଁ ଦେଇଛି ଫକୀର । କ'ଣ କିଛି ଖରାପ ନାଁ ଏଇଟା କିରେ । ଆରେ ଶୁଣିଛୁ ସେ ନାଁ -ଫକୀର ମୋହନ ସେନାପତିଙ୍କ ନାଁ ? ଆଖି ଖୋଲି ଚାହିଁଲେ ମୋ ମୁହଁକୁ ଅଜା ।

ସେଇ ଥିଲା ମୋର ନାମକରଣର ରହସ୍ୟ ।

ମୋ ଜନ୍ମର ସେଇ ସବୁ ରହସ୍ୟଜନକ ଘଟଣା ଗୁଡ଼ାକ ବିଷୟରେ ଭାବିଲେ ବେଳେ ବେଳେ ମତେ ଲାଗେ ମୁଁ ମୋର ପୁନର୍ଜନ୍ମ ରହସ୍ୟ ସବୁର ଜଣେ ଦ୍ରଷ୍ଟା ପୁରୁଷ ! ଗୋଟିଏ ପରିବାରରେ ମାତ୍ର ଦଶଟା ମାସର ଅନ୍ତରାଳରେ ମୁଁ ଜନ୍ମ ହେଇଛି ଥରେ ନୁହଁ ଦୁଇଥର । ଆଉ ମୋ ଚେତନାରେ ଅଛି କୌଣସି ମୁସଲିମ ସୁଫି ସନ୍ଥ ବା ପୀରଙ୍କ ସଂସ୍କାର ।



# ବିଶିଷ୍ଟ କଥାକାର ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ଅମୃତ ବାଣୀ

(ସେଦିନ ଥିଲା ସେପ୍ଟେମ୍ବର ୫ ତାରିଖ ରବିବାର ଗୁରୁଦିବସ । ପ୍ରାୟ ଅପରାହ୍ନ ସାଢେ ପାଞ୍ଚଟା ବେଳେ ବର୍ତ୍ତିକା ପରିବାର ପକ୍ଷରୁ ଆମର ପ୍ରିୟ କଥାକାର ଶାନ୍ତନୁକୁମାର ଆଚାର୍ଯ୍ୟ ମହୋଦୟଙ୍କୁ ଭେଟିଥିଲେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ପ୍ରଫେସର ବାଉରୀ ବଂଧୁ କର ଓ ବର୍ତ୍ତିକାର ମୁଖ୍ୟ ସଂପାଦକ ଡକ୍ଟର ନବକିଶୋର ମିଶ୍ର । ସେଇ ସାକ୍ଷାତକାର ପ୍ରାୟ ତିନି ଘଣ୍ଟା ଧରି ଚାଲିଥିଲା । ସେ ସାକ୍ଷାତକାରକୁ କୁହାଯାଇଛି ଅମୃତ ବାଣୀ । )

ବିଂଶ ଶତକ ଓଡ଼ିଆ କଥା ସାହିତ୍ୟର ଏକ ବୌଦ୍ଧିକ ବିସ୍ଫୋରଣ ହେଉଛନ୍ତି ଖ୍ୟାତାନାମା କଥାକାଚ ଶାନ୍ତନୁ କୁମାର ଆଚାର୍ଯ୍ୟ । ଯେଉଁ କେତେଜଣ ଚିନ୍ତାନାୟକ ଓଡ଼ିଆ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପରେ ନୂତନତା ଆଣିଛନ୍ତି, ସେମାନଙ୍କ ମଧ୍ୟରେ ଆଚାର୍ଯ୍ୟ ମହୋଦୟଙ୍କ ସ୍ୱାତନ୍ତ୍ର୍ୟ ବାରି ହୋଇପଡ଼େ । ସେ, ଓଡ଼ିଆ ଉପନ୍ୟାସ ସାହିତ୍ୟରେ, ଗୋପୀନାଥ ମହାନ୍ତିଙ୍କ ପରବର୍ତ୍ତୀ କାଳର ଜଣେ କ୍ରାନ୍ତିକାରୀ ସ୍ରଷ୍ଟା । ଏବେ ସୁଦ୍ଧା ତାଙ୍କ ଲେଖନୀ ଗତିଶୀଳ ।

ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ଜନ୍ମ ୧୫ ମଇ ୧୯୩୩ ମସିହାରେ । ବୃତ୍ତିରେ ସେ ଥିଲେ ରସାୟନ ଶାସ୍ତ୍ରର ଅଧ୍ୟାପକ । ଶିକ୍ଷା ବିଭାଗର ସର୍ବୋଚ୍ଚ ପାହ୍ୟା ପ୍ରଫେସର କ୍ୟାଡ଼ରର ଜଣେ ଅଫିସର ଭାବରେ ସେ ଅବସର ଗ୍ରହଣ କରିଛନ୍ତି ।

ତାଙ୍କର ରଚନାବଳୀ ଗୁଡ଼ିକ ମଧ୍ୟରେ 'ନର କିନ୍ନର' (୧୯୬୨) 'ଶତାବ୍ଦୀର ନଚିକେତା' (୧୯୬୫) 'ତିନୋଟି ରାତିର ସକାଳ' (୧୯୬୯) 'ଦକ୍ଷିଣାବର୍ତ୍ତ' (୧୯୭୩) 'ଯାତ୍ରାର ପ୍ରଥମ ପାଦ' (୧୯୭୬) 'ଅନ୍ୟ ଏକ ସମୟ ଅନ୍ୟ ଏକ ଭାରତ' (୧୯୭୭) 'ଶକୁନ୍ତଳା' (୧୯୮୦) 'ମନ୍ତ୍ରୀଙ୍କ ସେୟାର' (୧୯୮୮) 'ଧରିତ୍ରୀର କାନ୍ଦ' (୧୯୯୪) 'ଅନୁ ହଜିଗଲା ପରେ' (୧୯୯୬) 'ଅଦୃଶ୍ୟ ଜଗତରୁ ବାର୍ତ୍ତା' (୧୯୯୬) 'ବିଲି ଗୋଟ୍ ବନାମ ଉରୁବେଳ ଘୋଟକ' (୧୯୯୭) 'ସ୍ୱର୍ଣ୍ଣତ୍ରିଭୁଜ' (୧୯୯୮) 'ତୃଷ୍ଣା' (୧୯୯୯) 'ଅନୋମାର କନ୍ୟା' (୨୦୦୨) ଉପନ୍ୟାସ ପ୍ରଧାନ । ତାଙ୍କ ରଚିତ ଗଳ୍ପ ଗ୍ରନ୍ଥ ଗୁଡ଼ିକ ହେଉଛି 'ମନମର୍ମର' (୧୯୬୨) 'ଦୁର୍ବାର' (୧୯୬୫) 'ଏଇ ଶେଷ ପଦଟି' (୧୯୭୨) 'ଅରଣ୍ୟର ଚୂଳ' (୧୯୭୪) 'ଅଦିନ ବଉଳ' (୧୯୭୮) 'ଏକ ବିଂଶ ଶତାବ୍ଦୀ ପାଇଁ ଗଳ୍ପ' (୧୯୮୧) 'କରଂଜିଆ ଡାଏରୀ' (୧୯୮୪) 'ଆଦ୍ୟସକାଳ'(୧୯୮୫)' ସର୍ପଯାନ' (୧୯୮୯) 'ଚଳନ୍ତିଠାକୁର' (୧୯୯୧) 'ନାଟାଲିଆର ଓଁକାର' (୧୯୯୫)' ଗଳ୍ପ ବର୍ଣ୍ଣାଳୀ' (୧୯୯୭) 'ଶ୍ରେଷ୍ଠଗଳ୍ପ' (୧୯୯୮) 'ଜଳ ଛବିର ରାତି' (୧୯୯୯) 'ଦୃଶ୍ୟ ଅଦୃଶ୍ୟ'

(୨୦୦୩) ତାଙ୍କ ରଚିତ ଶିଶୁ ସାହିତ୍ୟ ଓ ବିଜ୍ଞାନ ସାହିତ୍ୟ ହେଉଛି–'ମୋ କାଠ ଘୋଡ଼ା କଥାକହେ' (୧୯୬୧) 'ବାଗବଗିଚାର ସୌଦାଗର' (୧୯୬୨) 'ଆକାଶକୁ ସାତୋଟି ପାହାଚ' (୧୯୬୩) 'କୋଶୀ ଉପତ୍ୟକାର ରାଜକୁମାର ମୋହନ' (୧୯୬୪) 'ଶକ୍ତିର କରାମତି' (୧୯୭୧) 'ମୋ ନାଁ ଦାଭିନ୍‌ଚି ଓ ନିଆଁଲଗା ଓପି' (୧୯୮୦) 'ନିତି ଦିନିଆ ଜୀବନରେ ବିଜ୍ଞାନ' (୧୯୮୯) 'ବୈଜ୍ଞାନିକ ଆବିଷ୍କାର ଓ ଉଦ୍ଭାବନ'(୧୯୮୯)

**ପ୍ରଶ୍ନ :** ଆପଣଙ୍କ ନିକଟରେ ସାହିତ୍ୟ ଓ ବିଜ୍ଞାନର ଅଦ୍ଭୁତ ସମନ୍ୱୟ ଘଟିଛି । ଆପଣଙ୍କଠାରେ ସାହିତ୍ୟ ଓ ବିଜ୍ଞାନ ମଧ୍ୟରୁ କେଉଁଟି ବେଶୀ ପ୍ରିୟ ?

**ଉତ୍ତର :** ମୋ ପାଇଁ ବିଜ୍ଞାନ ଓ ସାହିତ୍ୟ ଉଭୟ ପ୍ରିୟ । ମୁଁ ବିଜ୍ଞାନରୁ ସାହିତ୍ୟ କ୍ଷେତ୍ରକୁ ଆସିଲି । ମୋର ସାହିତ୍ୟିକ ପ୍ରକାଶଭଙ୍ଗୀ ବିଜ୍ଞାନ ସମ୍ମତ । ସାହିତ୍ୟିକ ଚେତନାର ପୃଷ୍ଠଭୂମିରେ ବୈଜ୍ଞାନିକ ଚେତନା ରହିଥିବା ହେତୁ ମୋର ପ୍ରକାଶଭଙ୍ଗୀ ବର୍ତ୍ତମାନର ବିଶ୍ୱଦର୍ଶନ ସହ ସମକକ୍ଷ ହୋଇପାରିଛି। ତେଣୁ ଉଭୟ ନିମନ୍ତେ ସମାନ ସମୟ ସଦୁପଯୋଗ କରିଥାଏ ।

**ପ୍ରଶ୍ନ :** ବିଜ୍ଞାନ ସହ ସାହିତ୍ୟର ଢ଼େର ବିରୋଧାଭାସ ରହିଛି। ଏ ସତ୍ତ୍ୱେ ବିଜ୍ଞାନର ସତ୍ୟକୁ କିପରି ଆପଣ ସାହିତ୍ୟିକ କଳ୍ପନା ଭିତରେ ପ୍ରକାଶ କରିପାରୁଛନ୍ତି ?

**ଉତ୍ତର:** ବିଜ୍ଞାନ ଜ୍ଞାନଯୋଗର ପରବର୍ତ୍ତୀ ଏକ ଯୋଗ ବୋଲି ଗୀତାରେ ଅଛି । ଉଭୟ ଜ୍ଞାନ ଓ ବିଜ୍ଞାନ ଯୋଗ ବିଷାଦ, ସାଂଖ୍ୟ ଓ କର୍ମଯୋଗର ପରବର୍ତ୍ତୀ ପାହାଚ । ଏହାପରେ ଭକ୍ତିଯୋଗ । ରସାଭିଷିକ୍ତ ହେବା ପାଇଁ ଭକ୍ତିଯୋଗକୁ ପ୍ରାରମ୍ଭିକ ସ୍ତରବୋଲି ଧରାଯାଇଥାଏ । ଏହାପରେ ଅନ୍ୟାନ୍ୟ ଅନେକ ପର୍ଯ୍ୟାୟ ମୋକ୍ଷ ଆଡ଼କୁ । ସାହିତ୍ୟ ମୋକ୍ଷଯୋଗର ମାର୍ଗ ନିର୍ଣ୍ଣୟକରେ ବୋଲି ମୋର ବିଶ୍ୱାସ। କବିମାନଙ୍କୁ ସେଥିପାଇଁ ଦ୍ରଷ୍ଟା କୁହାଯାଏ । ପ୍ରତ୍ୟେକ ଭଲ କବି ଓ ସାହିତ୍ୟିକ ଜଣେ ଜଣେ ଦାର୍ଶନିକ । ଦର୍ଶନ ପାଇଁ ଆଜିଯୁଗରେ ବିଜ୍ଞାନକୁ ଶ୍ରେଷ୍ଠମାର୍ଗ ବୋଲି ଧରାଯାଉଛି । ଏ ଯୁଗର ସର୍ବଶ୍ରେଷ୍ଠ କବି ଦାର୍ଶନିକ ହେଲେ ଆଇନ୍‌ଷ୍ଟାଇନ, ଦାରଉଇନ୍, ଫ୍ରଏଡ, ମାର୍କସ ଇତ୍ୟାଦି । ଏମାନେ ସମସ୍ତେ ଶଙ୍କରଙ୍କ ଅଦ୍ୱୈତ ବେଦାନ୍ତର ଅନୁସରଣକାରୀ। ବିଜ୍ଞାନର ଛାତ୍ରଭାବେ ମୁଁ ଯେଉଁ ଦାର୍ଶନିକ ଆନନ୍ଦ ଲାଭ କରିଛି ତାହା ସହିତ ମୋର ଅନ୍ତରର କବି ପ୍ରବୃତ୍ତି ସଂଯୁକ୍ତ ହେଲା - ଏକ ନିର୍ଦ୍ଦିଷ୍ଟ ବୟସରେ । ପିଲାଦିନେ ମୁଁ ବହୁତ କବିତା ଲେଖୁଥିଲି, କିନ୍ତୁ କବିତା ମାଧ୍ୟମରେ ଆଧୁନିକ ଯୁଗର ଏ ଘଟଣା ବହୁଳ ମନସ୍ତାତ୍ତ୍ୱିକ ଜଗତର ଯାବତ୍ ବିଭାବକୁ ପ୍ରକାଶ କରିବା ଅସମ୍ଭବ ବୋଲି ଜାଣି ପାରିଲି ବିଜ୍ଞାନ ସହିତ ଗଭୀର ପରିଚୟ ପରେ । ଘାଟନିକତା, ଚାରିତ୍ରିକ ବୈଚିତ୍ର୍ୟ ଓ ଜଟିଳ ମନସ୍ତାତ୍ତ୍ୱିକ ପ୍ରକ୍ରିୟାମାନଙ୍କର ସଫଳ ସଂଘାତରୁ ଏ ବିଶ୍ୱକୁ କିଞ୍ଚିତ ରୂପାୟିତ କରାଯାଇପାରେ ବୋଲି ଯେଉଁଦିନ ଆତ୍ମପ୍ରତ୍ୟୟ ଜାତ ହେଲା ସେ ଦିନ ମୁଁ 'ନରକିନ୍ନର' ଉପନ୍ୟାସ ରଚନା ପାଇଁ କଲମ ଧରିଲି । ସେତେବେଳେ ମୋତେ ପଚିଶ ବର୍ଷ ବୟସ ଛୁଇଁ ସାରିଥିଲା । ବାରବର୍ଷ ପରଠାରୁ କବିତାଲେଖା ଛାଡ଼ି ମୁଁ ଅନ୍ୱେଷଣରତ ଥିଲି ଆତ୍ମପ୍ରକାଶ ପାଇଁ ଏକ ଉଚିତ ମାର୍ଗର ।

କେଉଁ ମାର୍ଗରେ ନିଜକୁ ପ୍ରକାଶ କଲେ ଜୀବନର ଜଟିଳ ରହସ୍ୟ ପ୍ରକାଶ କରିହେବ ସେ ପାଇଁ ଥିଲି ଘୋର ଦ୍ୱନ୍ଦ୍ୱରେ । ବିଜ୍ଞାନରେ ଗବେଷଣା କରି କିଛି ନୂତନ ତଥ୍ୟ ଆବିଷ୍କାର ଉଦ୍ଭାବନ ବା

ଅନ୍ୟକିଛି ମାର୍ଗ ଅଛି ଆତ୍ମପ୍ରକାଶ ପାଇଁ ତାରି ସନ୍ଧାନରେ ଥିଲି । ସେତିକିବେଳେ ଘଟିଲା ଏକ ଅଦ୍ଭୁତ ଘଟଣା ମୋ ଜୀବନରେ । ହିମାଳୟର ଋଷିକେଶର ଋଷି ସ୍ୱାମୀ ଶିବାନନ୍ଦଙ୍କ ସହିତ ମୋର ପତ୍ରାଳାପ ଓ ତଜ୍ଜନିତ ଏକ ନିଶ୍ଚିତ ମାରାତ୍ମକ ଦୁର୍ଘଟଣାରୁ ମୁଁ ପୁନର୍ଜନ୍ମ ସଦୃଶ ଏକ ପରିସ୍ଥିତିର ସମ୍ମୁଖୀନ ହୋଇଥିଲି । ତାହା ମତେ ଆକୃଷ୍ଟ କଲା ଆଧ୍ୟାତ୍ମିକ ଜଗତ ଆଡ଼କୁ । କ୍ରମଶଃ ଆତ୍ମପ୍ରକାଶର ଦିଗଟି ସ୍ଥିରୀକୃତ ହୋଇଗଲା ମୋ ପାଇଁ । ମୁଁ ପାରଳାଖେମୁଣ୍ଡିରେ ଅଧ୍ୟାପକ ଚାକିରି କରୁଥିବା ବେଳେ ଅରଣ୍ୟ ମଧ୍ୟରେ ବସି 'ନରକିନ୍ନର' ଲେଖିବା ଆରମ୍ଭ କରିଥିଲି । ତାହାହିଁ ଦେଲା ମୋତେ ମୋର ପ୍ରଥମ ସିଦ୍ଧି ଓ ଆତ୍ମପ୍ରତ୍ୟୟ । ୧୯୫୯ ପରଠାରୁ ପୂର୍ଣ୍ଣପ୍ରାଣରେ ସାହିତ୍ୟ ସାଧନାରେ ଅଦ୍ୟାବଧି ଯୋଗରତ ରହିଛି ।

**ପ୍ରଶ୍ନ :** ବିଜ୍ଞାନ ସବୁବେଳେ ପରୀକ୍ଷା (Experiment), ନିରୀକ୍ଷଣ (Observation) ଓ ସିଦ୍ଧାନ୍ତ (inference) ଅଭିମୁଖୀ। ସାହିତ୍ୟର ଲକ୍ଷ୍ୟ ସବୁବେଳେ ଆନନ୍ଦ ଦାନ । ସାହିତ୍ୟକୁ ବିଜ୍ଞାନ ସମ୍ମତ କଲାବେଳେ ଏହାର ମୂଳ ଲକ୍ଷ୍ୟ ବ୍ୟାହତ ହେବ ନାହିଁ ତ ?

**ଉତ୍ତର :** ବିଜ୍ଞାନରେ ପରୀକ୍ଷା ନିରୀକ୍ଷା ଓ କଳାରେ ତତ୍ତୁଲ୍ୟ କ୍ରିୟା ପ୍ରକ୍ରିୟାର ପଦ୍ଧତି ଭିନ୍ନ ହେଲେ ମଧ୍ୟ ଲକ୍ଷ୍ୟ ଏକ । ତାହା ହେଲା ଅଦୃଶ୍ୟ ଜଗତକୁ ଦୃଶ୍ୟମାନ ବା ବାସ୍ତବ ଭୂମିକୁ ଆଣିବା । ଉଭୟ ବୈଜ୍ଞାନିକ ଓ କବି ସାହିତ୍ୟିକଙ୍କ ଲକ୍ଷ୍ୟ ଏଇ: ଅଦୃଶ୍ୟକୁ ଦୃଶ୍ୟକରାଇବା । କଳା ସଂପର୍କରେ ନାନା ପରୀକ୍ଷା ନିରୀକ୍ଷା ନେଇ ପାଶ୍ଚାତ୍ୟ ଜଗତରେ ଯେଉଁସବୁ ବିପ୍ଲବ ସୃଷ୍ଟି ହୋଇଛି ସେ ବିଷୟରେ ସମସ୍ତେ ଅବଗତ । ସେପରି ପରୀକ୍ଷା ନିରୀକ୍ଷା ନଚାଲି ଥିଲେ ଆମେ ମଧ୍ୟ ଯୁଗୀୟ କଳାସୃଷ୍ଟିରୁ ଉଦ୍ଧାର ପାଇପାରି ନଥାନ୍ତୁ । ତେବେ ସାହିତ୍ୟ ଓ ବିଜ୍ଞାନର ଲକ୍ଷ୍ୟରେ ଜ୍ଞାନର ପ୍ରୟୋଗରେ ପାର୍ଥକ୍ୟ ସ୍ପଷ୍ଟ। ବିଜ୍ଞାନ ଅସୀମକୁ ସସୀମ କରିବା ପାଇଁ ସବୁବେଳେ ବ୍ୟାକୁଳ । ସାହିତ୍ୟ ସସୀମକୁ ଅସୀମରେ ପରିଣତ କରିବାପାଇଁ ବ୍ୟାକୁଳ । ଗୋଟିଏ ଅବଜେକ୍‌ଟିଭ ହେଲାବେଳେ ଅନ୍ୟଟି ସବଜେକଟିଭ୍ । ଦୁହେଁ ଏ ଦୃଷ୍ଟିରୁ ଭିନ୍ନ ବୀପରୀତ ମୁଖୀ ସ୍ରୋତଭଳି ପ୍ରବହମାନ । ସାହିତ୍ୟିକ ତା ନିଜ ସ୍ରୋତରେ ସନ୍ତରଣ କରେ ।

**ପ୍ରଶ୍ନ :** ଆପଣ ଏକାଧାରରେ ଜଣେ ଗାଳ୍ପିକ, ଔପନ୍ୟାସିକ, ବିଜ୍ଞାନ ସାହିତ୍ୟ ଲେଖକ, ଶିଶୁ ସାହିତ୍ୟିକ । କେଉଁ ବିଭାଗଟି ଆପଣଙ୍କ ସାହିତ୍ୟିକ ବ୍ୟକ୍ତିତ୍ୱର ବିକାଶରେ ସହାୟତା କରିଛି ?

ଉତ୍ତର : ଉପନ୍ୟାସ

**ପ୍ରଶ୍ନ :** ସାଂପ୍ରତିକ ଯୁବ ଲେଖକମାନଙ୍କ ସୃଷ୍ଟି ସଂପର୍କରେ ଆପଣଙ୍କର ମନ୍ତବ୍ୟ କିପରି ?

**ଉତ୍ତର :** ଯୁବ ଲେଖକ କହିଲେ ମୋତେ ବି ଧରାଯାଇପାରେ । ଯଦି ଯୁବ ଲେଖକଙ୍କ ବୟସସୀମା କୋଡ଼ିଏରୁ ପଚିଶ ବର୍ଷ ମଧ୍ୟରେ ରଖାଯାଏ, ତେବେ ମନ୍ତବ୍ୟଟି ଭିନ୍ନ ହେବ । ପତ୍ର ପତ୍ରିକା ପଢ଼ି ମୋର ଯାହା ଧାରଣା ହେଉଛି, ଅନେକ ଯୁବଲେଖକଙ୍କ ଦୃଷ୍ଟିକୋଣ ଗଭୀର ନୁହେଁ । ସେମାନଙ୍କର ସାହିତ୍ୟିକ ଅଭିବ୍ୟକ୍ତି ମାର୍ମିକ ହେଉନାହିଁ । ଏହାର ମୂଳକାରଣ ହେଉଛି, ଏମାନେ ବିଶ୍ୱସାହିତ୍ୟ ସହିତ ପରିଚିତ ନୁହଁନ୍ତି । ଯାହାକୁ ଇଂରାଜୀରେ 'International Literary Movement' କୁହାଯାଏ । ବର୍ତ୍ତମାନ ଆମେ ଏକ ବିଶ୍ୱବାସୀ ଭାବେ କୌଣସି ପ୍ରକାରେ ବିଚ୍ଛିନ୍ନ ଭାବରେ ଚିନ୍ତା କରିପାରିବୁ ନାହିଁ । ଏଇ ସାମଗ୍ରିକ ଦୃଷ୍ଟି ହିଁ ବିଶ୍ୱଚେତନା । କିନ୍ତୁ ବର୍ତ୍ତମାନର ଯୁବଲେଖକମାନଙ୍କ ନିକଟରେ ଏ ବିଶ୍ୱଚେତନାର ଅଭାବ ରହିଛି ।

**ପ୍ରଶ୍ନ :** ସାଂପ୍ରତିକ ସମାଜ ପ୍ରତି ଆଧୁନିକ ସାହିତ୍ୟର ଅବଦାନ କ'ଣ ?

**ଉତ୍ତର :** ଆଧୁନିକ ସାହିତ୍ୟର ଅବଦାନ ଏହା ହୋଇପାରେ ଯେ ସମାଜ ଏବଂ ବ୍ୟକ୍ତିର ସଂପର୍କକୁ ସୁଦୃଢ଼ କରିବା ଏବଂ ସମାଜର କୁତ୍ସିତ ଦିଗଗୁଡ଼ିକୁ କଳାତ୍ମକ ଭାବରେ ଏକ୍‌ସପୋଜ କରିବା । ଏହା ହିଁ ଆଧୁନିକ ସାହିତ୍ୟର ଲକ୍ଷ୍ୟ । ଏହା ଦ୍ୱାରା ଉକ୍ତ ସାମାଜିକ ଭୁଲଗୁଡ଼ିକ ସଂଶୋଧିତ ହୋଇଯାଏ। ଆଧୁନିକ ସାହିତ୍ୟର ଭୂମିକା ହେଉଛି ବାସ୍ତବବାଦୀ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଆଧୁନିକ ସାହିତ୍ୟ ହେଲା ସମାଜବାଦୀ । ସାହିତ୍ୟରେ ଆଧୁନିକତାର ପରୀକ୍ଷା ହିଁ ସାମାଜିକ ବାସ୍ତବତା ମାଧ୍ୟମରେ ହୁଏ ।

**ପ୍ରଶ୍ନ :** ବିଶ୍ୱ ସାହିତ୍ୟ ଦରବାରରେ ଓଡ଼ିଆ ସାହିତ୍ୟର ସ୍ଥାନ କେଉଁଠି ?

**ଉତ୍ତର :** ବିଶ୍ୱ ଦରବାରରେ ଓଡ଼ିଆ ସାହିତ୍ୟର ସ୍ଥାନ ନିରୂପଣ କରିବା ପାଇଁ ଏ ପର୍ଯ୍ୟନ୍ତ ସେଭଳି କୌଣସି ପ୍ରଚେଷ୍ଟା ହୋଇନାହିଁ । ଆମର ଯେଉଁକେତୋଟି ବହିକୁ ଆମେ ପ୍ରତିନିଧି ମୂଳକ ବୋଲି ଭାବୁଛେ, ତାକୁ ଯଦି ଇଂରାଜୀରେ ଅନୁବାଦ କରି ବିଶ୍ୱଦରବାରରେ ଉପସ୍ଥାପନ କରନ୍ତେ, ତେବେ ଏ ପ୍ରଶ୍ନଟିର ଉତ୍ତର ମିଳନ୍ତା । କିନ୍ତୁ ବ୍ୟକ୍ତିଗତ ଭାବରେ ମୁଁ ଯେଉଁ କେତୋଟି ଓଡ଼ିଆ ବହିକୁ ଭଲ ପାଏ ଏବଂ ଗୁରୁତ୍ୱ ଦିଏ, ସେମାନଙ୍କର ମୂଲ୍ୟ ଆନ୍ତର୍ଜାତିକ ଦୃଷ୍ଟିରୁ କିଛି କମ୍ ନୁହେଁ । ସେସବୁକୁ ଭାଷାନ୍ତର କଲେ ଯାଇ ଏହାର ସତ୍ୟାସତ୍ୟ ମିଳନ୍ତା। କିଛିଦିନ ତଳେ ଗୋପୀନାଥ ମହାନ୍ତିଙ୍କର 'ପରଜା' ଉପନ୍ୟାସଟି ଇଂରାଜୀରେ ଅନୁବାଦ କରାଯାଇ ବିଶ୍ୱ ଦରବାରରେ ପହଞ୍ଚି ପାରିଛି ଏବଂ ଆନ୍ତର୍ଜାତିକ କ୍ଷେତ୍ରରେ ଖ୍ୟାତି ଅର୍ଜନ କରିଛି ।

**ପ୍ରଶ୍ନ :** ଦେଶରେ ପାଶ୍ଚାତ୍ୟ ଶିକ୍ଷା ଓ ଚାଲି ଚଳନର ପ୍ରସାର ଏବଂ ବୈଷୟିକ ସମୃଦ୍ଧି ଆମ ମାତୃଭାଷା ପ୍ରତି କିଛି ବିପଦ ସୃଷ୍ଟି କରିବ ବୋଲି ଆପଣ ଭାବୁଛନ୍ତି କି ?

**ଉତ୍ତର :** କେତେକାଂଶରେ ହୋଇପାରେ । ଯଦି ମାତୃଭାଷା ପ୍ରତି ଲୋକମାନେ ଧ୍ୟାନ ନଦେବେ, ନିଜର ମାତୃଭାଷା ମାଧ୍ୟମରେ ପୃଥିବୀର ସର୍ବାଧୁନିକ ଚିନ୍ତାଧାରା ପ୍ରକାଶ ନକରିବେ, ତେବେ ମାତୃଭାଷା ପ୍ରତି ବିପଦ ଆସିପାରେ। ଏକଥା ମରାଠୀରେ ହେବ ନାହିଁ କି ବଂଗଳାରେ ମଧ୍ୟ ହେବ ନାହିଁ, ଓଡ଼ିଶାରେ ହୋଇପାରେ। କାରଣ ଓଡ଼ିଶାରେ ଅଧିକାଂଶ ପାଠକ ଏବଂ କେତେକ ଲେଖକ ଏପର୍ଯ୍ୟନ୍ତ ଏ ବିଷୟରେ ପ୍ରାୟ ଅଚେତନ । ଭାଷା ବଞ୍ଚିବା ପାଇଁ ଲେଖକମାନଙ୍କର ସୃଜନାତ୍ମକ ସୃଷ୍ଟି ଆବଶ୍ୟକ । ସହଜ ନାଟକୀୟ ସଂଳାପ ବା ମନୋରଂଜନରେ ସାହିତ୍ୟକୁ ସୀମିତ ରଖିଲେ ଭାଷା ଏବଂ ସାହିତ୍ୟ ଉଭୟେ ବଞ୍ଚିବେ ନାହିଁ, ତେଣୁ ଆମ ମାତୃଭାଷାକୁ ବଞ୍ଚାଇବା ପାଇଁ ଆମର ଲେଖକମାନେ ନିଜର ସୃଷ୍ଟି ପ୍ରତି ଧ୍ୟାନ ଦେବା ଆବଶ୍ୟକ ।

**ପ୍ରଶ୍ନ :** ସଂପ୍ରତି ଶିଳ୍ପପତିମାନେ ନିଜ ଶିଳ୍ପ ସାମ୍ରାଜ୍ୟ ଅକ୍ଷୁଣ୍ଣ ରଖିବା ପାଇଁ କଳା-ସାହିତ୍ୟ-ସଂସ୍କୃତିର ପୃଷ୍ଠପୋଷକତା କରୁଛନ୍ତି ବୋଲି ଅଭିଯୋଗ ହେଉଛି ସେ ସଂପର୍କରେ ଆପଣଙ୍କ ମତ କ'ଣ ?

**ଉତ୍ତର :** ଶିଳ୍ପପତିମାନଙ୍କ ପାଖରେ ଯଥେଷ୍ଟ ଅର୍ଥ ଅଛି । ଅର୍ଥ ସହିତ ସେମାନେ ଯଦି ସେମାନଙ୍କର ଅଞ୍ଚଳ ବା ଦେଶର ସାଂସ୍କୃତିକ ନେତୃତ୍ୱ ନିଅନ୍ତି ତେବେ ତାଙ୍କ ପାଇଁ ରାଜନୈତିକ ନେତୃତ୍ୱ ନେବାର ପନ୍ଥା ଖୋଲିପାରେ । ଅର୍ଥ ଓ କ୍ଷମତା ଅଙ୍ଗାଙ୍ଗୀଭାବେ ଜଡ଼ିତ । ଏତଦ୍‌ବ୍ୟତୀତ ଏହାର ଗୋଟିଏ ଭଲ

ଦିଗ ମଧ ରହଛି । ଯଦି ଶିଳ୍ପପତିମାନେ ନିଃସ୍ୱାର୍ଥପର ଭାବରେ ଏବ୍ୟବସ୍ଥା କରିଥାନ୍ତି, ତେବେ ଏହା ସର୍ବୋତ୍ତମ । ମୋର ମନେ ପଡ଼େ, ପାଶ୍ଚାତ୍ୟ ଦେଶମାନଙ୍କରେ ଶିଳ୍ପପତିମାନେ ନିଃସ୍ୱାର୍ଥପର ଭାବରେ ଏଭଳି ବ୍ୟବସ୍ଥା କରି ଦେଶର ସାଂସ୍କୃତିକ ଉନ୍ନତି କରୁଛନ୍ତି । ଯଦି ଏ ବ୍ୟବସ୍ଥା ପଛରେ ରାଜନୈତିକ ସ୍ୱାର୍ଥ ଥାଏ ତେବେ ଏହା ନିଶ୍ଚିତ ଭାବରେ କ୍ଷତିକାରକ ।

**ପ୍ରଶ୍ନ :** ଆମ ଦେଶର ନାଗରିକମାନଙ୍କ ନୈତିକତା ସଂପର୍କରେ କିଛି କହିବେ କି ?

**ଉତ୍ତର :** ନୈତିକତା ଏକ ବ୍ୟାପକ ଶବ୍ଦ । ଏ ନେଇ ନାନା ପ୍ରସଙ୍ଗ ଆସିବ । ଯଦି ବର୍ତ୍ତମାନ କୁହାଯିବ ଯେ ଆମ ଦେଶର ନାଗରିକମାନଙ୍କର ନୈତିକତା ନାହିଁ, ତେବେ ଏହା ଏକ Broad Statement ହେବ । ଯଦି ଯୌତୁକ ସଂପର୍କରେ ନୈତିକତାର ମାନ ପଚରାହୁଏ ତେବେ ଆମେ କହିବା ଆମ ଯୁବସମାଜର ନୈତିକତାର ଅଭାବ ଅଛି । କାରଣ ଏ ଯୁବକମାନେ ନୈତିକତା ବିରୁଦ୍ଧରେ କେତେକଥା କହୁଅଛନ୍ତି କିନ୍ତୁ ବିବାହ କରିବାବେଳେ ଯୌତୁକ ମାଗୁଛନ୍ତି । ନୈତିକତା ପ୍ରସଙ୍ଗରେ ସଂପ୍ରତି ଜନମତ ପ୍ରକାଶ ପାଉ ନାହିଁ । ଏହାକୁ ବୁଦ୍ଧିଜୀବିମାନେ ପ୍ରକାଶ କରନ୍ତି, କିନ୍ତୁ ସେମାନେ ନୀରବ, ତେଣୁ ନୈତିକତା ବିଚାରଟା କୋଉଠୁ ଆସିବ ?

**ପ୍ରଶ୍ନ :** ଆଧାତ୍ମିକତା କ'ଣ ମଣିଷ ସମସ୍ୟାର ଶେଷ ଉତ୍ତର ? ଭାରତର ଏକ ସମୃଦ୍ଧ ଆଧାତ୍ମିକ ପରମ୍ପରା ଥିବା ସତ୍ତ୍ୱେ ଏ ଦେଶରେ ଏତେ ଦୁଃଖ, ଏତେ ଦାରିଦ୍ର୍ୟ ଓ ଏତେ ହିଂସା -ଦ୍ୱେଷ କାହିଁକି ?

ଉତ୍ତର : ଦାରିଦ୍ର୍ୟ ଓ ଦୁଃସ୍ଥିତି ହେଉଛି ଇତିହାସର ପ୍ରତାରଣା; କିନ୍ତୁ ସ୍ୱେଚ୍ଛାକୃତ ଦାରିଦ୍ର୍ୟ ଅନ୍ୟ ଏକ ବ୍ୟାପାର । ଭାରତରେ ହଜାର ହଜାର ବର୍ଷ ଧରି ସ୍ୱେଚ୍ଛାକୃତ ଦାରିଦ୍ର୍ୟ ବରଣ ଥିଲା ଆଧାତ୍ମିକତାର ପରିଚାୟକ । ବୌଦ୍ଧଧର୍ମର ମୂଳ ଲକ୍ଷ୍ୟ ସଂଯମ । ଅସଂଗ୍ରହ ଭାରତୀୟ ଯୋଗ ଶାସ୍ତ୍ରର ବିଧାନ । ଆଜିର ଗଣତାନ୍ତ୍ରିକ ପରମ୍ପରା ଅସଂଗ୍ରହକୁ ପରିତ୍ୟାଗ କରି ସଂଗ୍ରହକୁ ଅର୍ଥନୈତିକ ଉନ୍ନତିର ମାର୍ଗରୂପେ ଗ୍ରହଣ କରିଛି । ତେଣୁ ଏ ଦାନବ ପ୍ରତିଯୋଗୀତା ଓ ହିଂସା ଦ୍ୱେଷର ପ୍ରାଦୁର୍ଭାବ ।

**ପ୍ରଶ୍ନ :** କେତେକଙ୍କ ମତରେ ଆଧାତ୍ମିକ ଉତ୍ତରଣ ଓ ଭୌତିକ ପ୍ରାଚୁର୍ଯ୍ୟ ଦୁଇଟି ଭିନ୍ନ କଥା । ଏ ସଂପର୍କରେ ଆପଣଙ୍କ ମତ କ'ଣ ?

**ଉତ୍ତର :** ପ୍ରାଚୁର୍ଯ୍ୟ ଆସିଲେ ଆସିଗଲା ଅସୁବିଧା । ପ୍ରାଚୁର୍ଯ୍ୟ ଯେଉଁଠି ଆସେ ସେଇଠି ବୋରଡ଼ମ ଓ ସ୍ଥାଣୁତ୍ୱ ଆସିଯାଏ। ଦାରିଦ୍ର୍ୟ ପରି ପ୍ରାଚୁର୍ଯ୍ୟ ମଧ ଆଧାତ୍ମିକ ଉତ୍ତରଣର ଅନ୍ତରାୟ ହୋଇପଡ଼େ । ପ୍ରାଚୁର୍ଯ୍ୟକୁ ଏଡ଼ାଇଯିବା କଥା ।

**ପ୍ରଶ୍ନ :** ଆପଣ ଦୀର୍ଘଦିନ ଧରି ଅଧାପନା ବୃତ୍ତିରେ ଥିଲେ । ରସାୟନ ବିଜ୍ଞାନର ଅଧାପକ ଠୁ ଆରମ୍ଭ କରି କଲେଜ ଅଧକ୍ଷ, ଶିକ୍ଷା ନିର୍ଦ୍ଦେଶାଳୟ, ଉତ୍କଳ ବିଶ୍ୱ ବିଦ୍ୟାଳୟ ରେଜିଷ୍ଟ୍ରାର ପରି ଗୁରୁତ୍ୱପୂର୍ଣ୍ଣ ପଦବୀରେ ଆପଣ କାର୍ଯ୍ୟ କରିଛନ୍ତି । ଛାତ୍ରମାନଙ୍କୁ ନିକଟରୁ ଦେଖିଛନ୍ତି । ଛାତ୍ର ରାଜନୀତି ଏବେ ଏକ ଗୁଣାତ୍ମକ ଅଧୋଗତି ପଥରେ ଗତି କରୁଛି ଓ ଏମାନେ ଏବେ ରାଜନୀତିକ ନେତାମାନଙ୍କ ଅସ୍ତ୍ର ରୂପେ ବ୍ୟବହୃତ ହେଉଛନ୍ତି କାହିଁକି ?

ଉତ୍ତର : ଗୁଣାତ୍ମକ ଦୃଷ୍ଟିରୁ ଛାତ୍ରମାନଙ୍କର ଅବସ୍ଥା ଅତି ନିମ୍ନମାନକୁ ଖସି ଆସିଛି । ଏ ସତ୍ତ୍ୱେ ବ୍ରିଲିଆଣ୍ଟ ଛାତ୍ରମାନଙ୍କର ଅଭାବ ନାହିଁ। ମନ୍ଦ ଛାତ୍ରଙ୍କ ଭିଡ଼ ଭିତରେ ସେମାନେ ହଜି ଯାଉଛନ୍ତି । ହଁ

ରାଜନୈତିକ ନେତାମାନେ ଛାତ୍ରମାନଙ୍କୁ ଅସ୍ତ୍ର ଭାବେ ବ୍ୟବହାର କରୁଛନ୍ତି । ଏମାନଙ୍କୁ ବ୍ୟବହାର କରି କ୍ଷମତାକୁ ଆସୁଛନ୍ତି । ରାଜନୈତିକ ଦଳ ଗୁଡ଼ିକ ଏବେ କ୍ଷମତା ଅକ୍ତିଆର ପାଇଁ ସବୁ ପ୍ରକାର ମୂଲ୍ୟବୋଧକୁ ଜଳାଞ୍ଜଳି ଦେଉଛନ୍ତି ।

**ପ୍ରଶ୍ନ :** କେତେକ ସମାଲୋଚକଙ୍କ ମତରେ 'ନରକିନ୍ନର' ଆପଣଙ୍କର ସର୍ବୋତ୍କୃଷ୍ଟ ଉପନ୍ୟାସ। ଏପରିକି ପ୍ରସିଦ୍ଧ ଲେଖକ ଚନ୍ଦ୍ରଶେଖର ରଥ ଏହାର ଭୂୟସୀ ପ୍ରଶଂସା କରିଛନ୍ତି । ଏ ସଂପର୍କରେ ଆପଣଙ୍କ ମତ କ'ଣ ?

**ଉତ୍ତର :** ସମାଲୋଚକଙ୍କର ମତ ଅଛି ନିଶ୍ଚୟ । ମୁଁ ତାକୁ ସମ୍ମାନ ଦିଏ । ତେବେ ଗୋଟିଏ ଉପନ୍ୟାସ ଶ୍ରେଷ୍ଠ କି ନୁହେଁ ତାକୁ ଆମେ କୋଉ ମାପକାଠିରେ ମାପିବା, ସେଇ କଥାଟିକୁ ଧରିଲେ ଉତ୍ତର ଦେବା ସହଜ ହେବ । ମୋ ମତରେ 'ନରକିନ୍ନର' ମୋତେ ଆନନ୍ଦ ଦେଇଥିବା ଏକ ଉପନ୍ୟାସ । ସାବଲୀଳ ରୀତିରେ ସେଇଟି ମୋଠୁ ବାହାରି ଯାଇଛି । ଏହା ନିଶ୍ଚିତ । କିନ୍ତୁ ଉପନ୍ୟାସର ଅନ୍ୟାନ୍ୟ ବିଚାର ଧାରାକୁ ନେଲେ ମୁଁ ଭାବିବି - 'ଶକୁନ୍ତଳା' ମଧ୍ୟ ସେଇ ଧରଣର ଉପନ୍ୟାସ । 'ଶକୁନ୍ତଳା'ରେ ସେଇ ଷ୍ଟାଇଲ ଅଛି । ସେଇ ଏକ୍‌ଜିଷ୍ଟେନସିଆଲିଜିମ ସମସ୍ୟା, ସେହି ସିମ୍ବଲ, ରୂପକ, ଅତି ବାସ୍ତବ ବାଦର ପ୍ରୟୋଗ ଅଛି । ବିଷୟବସ୍ତୁକୁ ପ୍ରାଧାନ୍ୟ ଦେଲେ ଭାରତ ପରିପ୍ରେକ୍ଷୀରେ 'ଶକୁନ୍ତଳା'ର ପ୍ରାସଙ୍ଗିକତା ବେଶୀ ।

**ପ୍ରଶ୍ନ :** 'ଦକ୍ଷିଣାବର୍ତ୍ତ' ଉପନ୍ୟାସରେ ଆପଣ ଲେଖିଛନ୍ତି ଯେ ବିଂଶ ଶତକ ଏମିତି କିଛି ଅଲଗା ନୁହେଁ ଯେ ଏ ଶତାବ୍ଦୀରେ ମଣିଷ ବାବାଜୀ ନ ହେବ ? ବରଂ ବାବାଜୀ ହେବା ପାଇଁ କୋଉ ଶତାବ୍ଦୀ ଥିଲା ସବୁଠୁ ଉର୍ବର, ତେବେ ଏଇ ତ ସେଇ । ଏଭଳି ଲେଖିବାର ତାତ୍ପର୍ଯ୍ୟ କ'ଣ ଓ ବାବାଜୀର ସଂଜ୍ଞା କ'ଣ ?

**ଉତ୍ତର :** ବିଂଶ ଶତାବ୍ଦୀ ଅନ୍ୟାନ୍ୟ ଶତାବ୍ଦୀଠାରୁ ଢେର ଭିନ୍ନ । ଏହି ଶତାବ୍ଦୀରେ ଅନେକ ନୂଆ ତତ୍ତ୍ୱ ଓ ବୈଜ୍ଞାନିକ ଅନୁଶୀଳନ ଆସିଲା । ଅନ୍ୟ ଶତାବ୍ଦୀରେ ଏତେ ଅନୁଶୀଳନ ହୋଇନଥିଲା । ମୋର ମନେହୁଏ ଉପନିଷଦ ପରେ ମଣିଷ କେବେ ଏତେ ତାତ୍ତ୍ୱିକ ଅନ୍ତର୍ନିରୀକ୍ଷଣ କରିନଥିଲ । ମାତ୍ର ତାହା ଏହି ଶତାବ୍ଦୀରେ ସମ୍ଭବ ହେଲା । ପରମାଣୁ ବିସ୍ଫୋରଣ ଏବଂ ଚନ୍ଦ୍ର ପୃଷ୍ଠରେ ମଣିଷ ପହଞ୍ଚିବା ଏହି ଶତାବ୍ଦୀରେ ସମ୍ଭବ ହେଲା । ମଣିଷ ବାବାଜୀ କାହିଁକି ହୁଏ ? ଆପଣ ଏଠି ବାବାଜୀକୁ ସ୍ଥୂଳ ଦୃଷ୍ଟିରୁ ଦେଖନ୍ତୁ ନାହିଁ । ଈଶ୍ୱରଙ୍କୁ ଅତି ନିକଟରେ ପାଇଲେ ଆନନ୍ଦାତିଶଯ୍ୟାର ସାର୍ଥକତାରେ ମଣିଷ ବାବାଜୀ ହୁଏ । ଈଶ୍ୱରଙ୍କୁ ନପାଇଲେ ବ୍ୟର୍ଥତା ଯୋଗୁ ବି ମଣିଷ ବାବାଜୀ ହୁଏ । ବିଂଶ ଶତାବ୍ଦୀର ମଣିଷ ଅନେକ କିଛି ରହସ୍ୟ ଉଦ୍‌ଘାଟନ କରିସାରିଛି । ବେଳେ ବେଳେ ମନେ ହୋଇଛି, ସେ କ'ଣ ସତକୁ ସତ ଈଶ୍ୱରଙ୍କୁ ହାତ ପାହାନ୍ତାରେ ପାଇଗଲା କି ? ମାତ୍ର ଏହା ପରେ ସେ ଦେଖୁଛି ଯେ ଏତେ ସବୁ ସତ୍ତ୍ୱେ ସେ ଜୀବନର ଅସ୍ତିତ୍ୱ ସଂପର୍କୀୟ ଦୁର୍ବୋଧତାର ଗ୍ରନ୍ଥିକୁ ତଥାପି ଉନ୍ମୋଚନ କରିପାରୁ ନାହିଁ । ଯେଉଁ ଦୁଇଟା କାରଣରୁ ମଣିଷ ବାବାଜୀ ହୋଇଥାଏ, ତାହାହିଁ ଏହି ବିଂଶ ଶତକରେ ଅଧିକ ଅନୁଭୂତ ହୋଇଛି । ବୁଦ୍ଧ, ବୁଦ୍ଧତ୍ୱ ପ୍ରାପ୍ତି ପୂର୍ବରୁ ବାବାଜୀ ବା ସନ୍ନ୍ୟାସୀ ହୋଇଥିଲେ; ବୁଦ୍ଧତ୍ୱ ପ୍ରାପ୍ତି ପରେ ମଧ ସନ୍ନ୍ୟାସୀ ହୋଇ ରହିଲେ । ବିଂଶ ଶତାବ୍ଦୀ ଜ୍ଞାନର ଶତାବ୍ଦୀ । ଜ୍ଞାନ ଭକ୍ତି, ଭକ୍ତିରୁ ମୁକ୍ତି ବା ମୋକ୍ଷ । ଦକ୍ଷିଣାବର୍ତ୍ତରେ ଏଇ ପ୍ରସଙ୍ଗ ଉତ୍‌ଥାପିତ ହୋଇଛି ।

**ପ୍ରଶ୍ନ :** 'ଶକୁନ୍ତଳା' ଉପନ୍ୟାସର ପ୍ରଚ୍ଛଦଟି ଏହାର ବିଶେଷ ଆକର୍ଷଣ । ଏହାର ପ୍ରଚ୍ଛଦ କେଉଁ ଭାବଧାରା ବ୍ୟକ୍ତ କରୁଛି ।

**ଉତ୍ତର :** ପ୍ରଚ୍ଛଦ ପଟରେ ଗୋଟିଏ କଦମ୍ବଗଛ ତଳେ ଗୋଟିଏ ମୃଗ ଶିଶୁର ଚିତ୍ର ରହିଛି । ତା' ତଳକୁ ଶିକାରୀ ବନ୍ଧୁକଟିଏ ଟୋପି ଉପରେ ଥୁଆ ହୋଇଛି । ଏଠାରେ ଶକୁନ୍ତଳାର ପ୍ରତୀକ ହେଉଛି ମୃଗଶିଶୁ । କଦମ୍ବ ଗଛ ଓ ମୃଗ ଶିଶୁର ସମନ୍ୱୟ ହେଉଛି ଭାରତ ବର୍ଷର ଚିରନ୍ତନ ଶାନ୍ତିର ଐତିହ୍ୟର ପ୍ରତୀକ । ଯେଉଁ ବନ୍ଧୁକ ଏବଂ ଟୋପିର ଚିତ୍ର ରହିଛି, ତାହା ହିଂସାତ୍ମକ ବିପ୍ଳବର ପ୍ରତୀକ । ୧୯୭୦ ମସିହାରେ ଯେଉଁ ହିଂସାତ୍ମକ ନକ୍ସଲ ବିପ୍ଳବର ଆହ୍ୱାନ ଆସିଲା ତଦ୍ୱାରା ମୋର ମନେହେଲା ଯେ, ଗାନ୍ଧି ଯେଉଁ ଶାନ୍ତିର ଦେଶ ପ୍ରତିଷ୍ଠା କରିବାକୁ ଚାହୁଁଥିଲେ, ତା'ର ଏକ ଚରମ ବିପରୀତ ବୈପ୍ଳବିକ ଅବସ୍ଥା ଆସି ଉପନୀତ ହୋଇଛି ଭାରତ ବର୍ଷରେ । ଏ ହିଂସାତ୍ମକ ବିପ୍ଳବ ଭାରତରେ ସ୍ଥାୟୀ ବା ଅସ୍ଥାୟୀ ହେବ । ଏ କଥା ଶକୁନ୍ତଳା ପୁସ୍ତକରେ ପ୍ରତିପାଦନ କରାଯାଇଛି । ତେଣୁ ଉକ୍ତ ଭାବଧାରାକୁ ପ୍ରଚ୍ଛଦପଟରେ ଚିତ୍ରିତ କରାଯାଇଛି ।

**ପ୍ରଶ୍ନ :** 'ଶକୁନ୍ତଳା' ଉପନ୍ୟାସର ମୂଳ ବୈଶିଷ୍ଟ୍ୟ କ'ଣ ?

**ଉତ୍ତର :** ରାଜନୈତିକ ଭାରତରେ ହିଂସାର ସ୍ଥାନ ଏହାର ପୃଷ୍ଠଭୂମି । ଅଥଚ ସାଂସ୍କୃତିକ ଭାରତରେ ଅହିଂସା ହିଁ ଭାରତୀୟ ସଂସ୍କୃତି । ଭାରତର ସ୍ୱାଧୀନତା ଯେଉଁ ମୂଲ୍ୟବୋଧ ଉପରେ ପ୍ରତିଷ୍ଠିତ ସେ ସବୁ ଠିକ୍ ନା ଭୁଲ ଏହାର ପୁନର୍ବିଚାର 'ଶକୁନ୍ତଳା'ରେ କରାଯାଇଛି ।

**ପ୍ରଶ୍ନ :** ଆପଣଙ୍କ ମତରେ ଆଧୁନିକ କବିତା ଓ ଗଦ୍ୟ ମଧ୍ୟରେ ପାର୍ଥକ୍ୟ କେଉଁଠି ?

**ଉତ୍ତର :** ଆଧୁନିକ ଯୁଗ ଗଦ୍ୟ ସାହିତ୍ୟର/ ଗଦ୍ୟରେ କବିତା, କବିତାରେ ଗଦ୍ୟ ଏ ଯୁଗର ଲକ୍ଷଣ । ମୋ ମତରେ କବି ବୋଲି ସ୍ୱତନ୍ତ୍ର ବ୍ୟକ୍ତି କେହି ନାହିଁ ଏ ଯୁଗରେ । ସମସ୍ତେ ଲେଖକ । ମୋ ପାଇଁ ଫକୀର ମୋହନଙ୍କ କ୍ଷୁଦ୍ରଗଳ୍ପ 'ରେବତୀ', ଗୋଟିଏ କବିତା । 'ଅମୃତର ସନ୍ତାନ' ଏକ ବୃହତ କାବ୍ୟ । 'ମାଟିର ମଣିଷ' ଅନ୍ୟତମ ଅନବଦ୍ୟ କାବ୍ୟ । କବିତାରୁ ଯତିପାତ ଓ ସାଙ୍ଗୀତିକତା ଚାଲିଗଲା ପରେ ଆଉ ଯାହା ରହିଲା ତାକୁ କାବ୍ୟିକ ଅଭିବ୍ୟକ୍ତି ହିଁ କହିବା । ତେଣୁ ସବୁ ସଫଳ କଥାକାର,ନାଟ୍ୟକାର, ଫିଚର ଲେଖକ କବି ।

**ପ୍ରଶ୍ନ :** ବହୁ ଆଲୋଚକଙ୍କ ମତରେ ଗୋପୀନାଥ ମହାନ୍ତିଙ୍କ ପରେ ଆପଣ ଓଡ଼ିଆ ଉପନ୍ୟାସ ସାହିତ୍ୟର ଜଣେ ଶକ୍ତିଶାଳୀ ସ୍ରଷ୍ଟା । ଆପଣ ଓଡ଼ିଆ ଉପନ୍ୟାସକୁ କେଉଁ ଦିଗରୁ ଅଧିକ ସମୃଦ୍ଧ କରିଛନ୍ତି ?

**ଉତ୍ତର :** ଗୋପୀନାଥ ଉପନ୍ୟାସରେ ଯଥାର୍ଥ ମାର୍କସିଷ୍ଟ ଚିନ୍ତାଧାରା ପ୍ରଥମେ ଆଣିଥିଲେ ବୋଲି ମୋର ବିଶ୍ୱାସ । ସେହିପରି ମନସ୍ତାତ୍ତ୍ୱିକ ଅନୁଶୀଳନ ପଦ୍ଧତିରେ ବ୍ୟକ୍ତିର ସବ୍‌କନ୍‌ସସକୁ ସେ ଉଖାରି ଥିଲେ ତାଙ୍କର ଅଭିନବ ଭାଷାର ତୀକ୍ଷ୍ଣ ମୁନରେ । ତେଣୁ ତାଙ୍କୁ ଭାଷା ସମ୍ରାଟ ବୋଲି କୁହାଯାଇ ପାରେ ।

ମୋର ମନେହୁଏ ଆମେ ଯୁଦ୍ଧୋତ୍ତର କାଳର ସମାଜବାଦ ଓ ଗଣତାନ୍ତ୍ରିକ ଚିନ୍ତନର ଆବାହକ। ଏ ଚିନ୍ତନରେ ମଣିଷ ଏକ ନିର୍ଦ୍ଦିଷ୍ଟ ସମାଜ ବା ବ୍ୟକ୍ତିର ପ୍ରତିଭୂ ନୁହେଁ । ସେହିପରି ମଣିଷ 'କାଷ୍ଟ' ବା 'କ୍ଲାସ' ର ସାମଗ୍ରୀ ନୁହେଁ ବୋଲି ଆମର ବିଶ୍ୱାସ । ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ମଣିଷର ଟାଇମ୍ ଓ ସ୍ପେଶ୍

ଦୃଷ୍ଟିକୁ ବିଜ୍ଞାନ ଯେତିକି ସମୃଦ୍ଧ ଓ ସୁଦୂର ପ୍ରସାରୀ କରିଛି ସେଥିରୁ ମଣିଷ ଗୋଟିଏ ସାମାଜିକ ବା ବ୍ୟକ୍ତିବାଚକ ଅସ୍ତିତ୍ୱର ସୀମାବଦ୍ଧ ଜୀବ ବିଶେଷ ବୋଲି ବୁଝାପଡ଼େ ନା । ତେଣୁ ମଣିଷକୁ ସ୍ଥାନ କାଳ ପାତ୍ର ବହିର୍ଭୂତ ଅନ୍ୟ ଏକ ଚେତନାର ପରିପ୍ରକାଶ ରୂପେ ପ୍ରତିଷ୍ଠିତ କରିବାକୁ ଆଜିର ସାହିତ୍ୟିକର ପ୍ରଚେଷ୍ଟା ।

ଆଜିର ଓଡ଼ିଆ ଔପନ୍ୟାସିକ ମଣିଷର ମନକୁ ଅତିକ୍ରମ କରି ଆତ୍ମା ସହିତ ସଂପର୍କ ଯୋଡ଼ିବାକୁ ଚାହେଁ । ନୈତିକତା ବଦଳରେ ଆତ୍ମିକତା ଏହି କାରଣରୁ ଆଜିର ଔପନ୍ୟାସିକର ବିଷୟବସ୍ତୁ ।

ଆଜିର ଉପନ୍ୟାସ ବସ୍ତୁଭିତ୍ତିକତାର ଊର୍ଦ୍ଧ୍ୱକୁ ଯାଇ ଆଧ୍ୟାତ୍ମିକ ବିଶ୍ୱ ଦୃଷ୍ଟିକୁ ଗ୍ରହଣ କରିଛି- କଳାତ୍ମକ ଅଭିବ୍ୟକ୍ତି ପାଇଁ । ମୁଁ ଏହି ଦିଗକୁ ଅଧିକ ସମୃଦ୍ଧ କରିଛି ବୋଲି ଦାବି କରିପାରେ ।

**ପ୍ରଶ୍ନ :** ଓଡ଼ିଆ ଉପନ୍ୟାସ ଜଗତରେ ଆପଣ କିଛି ନୂତନ ସମ୍ଭାବନା ଲକ୍ଷ୍ୟ କରୁଛନ୍ତି କି ?

**ଉତ୍ତର :** ପ୍ରଚୁର ନୂଆ ଔପନ୍ୟାସିକମାନେ ଅପେକ୍ଷା କରୁଛନ୍ତି ଅଦୃଶ୍ୟରେ ୱିଙ୍ଗ୍ ସେ ପାଖେ । ଦେଖନ୍ତୁ- ବର୍ତ୍ତମାନ କେତେ ଇଂଜିନିୟର, ଡାକ୍ତର ମିଲିଟାରୀ ଅଫିସର ଉପନ୍ୟାସ ଲେଖିଥିବାକୁ ହାତ ବଢ଼ାଉଛନ୍ତି ଓଡ଼ିଆ ଭାଷାରେ ।

**ପ୍ରଶ୍ନ :** ଭଲ ଗପ କହିଲେ ଆପଣ କ'ଣ ବୁଝନ୍ତି ?

**ଉତ୍ତର :** ଭଲ ଗପର ଗୋଟିଏ ବଡ଼ ଲକ୍ଷଣ – ମନେ ରହିଯିବା । ଠିକ୍ ସମୟରେ ମନେ ପଡ଼ିଯିବା । ଯେମିତି ଅତୀତରେ ବା ନିକଟରେ ପଢ଼ା ଯାଇଥିବା ବା ଶୁଣାଯାଇଥିବା କବିତାଟିଏ, ଗୀତଟିଏ । ମନେ କରନ୍ତୁ ଜଣେ ନେତା ଆପଣଙ୍କୁ ଧମକେଇଲେ, ''ରହ ତମକୁ ଦେଖୁଚି – ବଦଳି ହବାକୁ ମନ ହଉଚି କି ? ଆପଣ ଯଦି ସାନ ଅଫିସରଟିଏ ଯେ ନିଜକୁ ବଞ୍ଚାଇବା ପାଇଁ ନେତାମାନଙ୍କୁ ଡରି ଡରି ଚଳି ଆସୁଛନ୍ତି ଅଥଚ ନିଜର ମର୍ଯ୍ୟାଦାବୋଧ ତଥାପି ହରେଇ ନାହାନ୍ତି ଆପଣ ସେ କ୍ଷେତ୍ରରେ କରିବେ କ'ଣ କହନ୍ତୁ ତ ! ଆପଣ ନିଶ୍ଚେ ଆତ୍ମପକ୍ଷ ସମର୍ଥନ କରି କହି ପକେଇବେ,''ସାର୍, ସାର ମୁଁ ବିଚରା ମେଣ୍ଢା ଛୁଆଟିଏ, ଝରଣାର ତଳ ମୁଣ୍ଡରେ ପାଣି ଟୋପାଏ – ପିଉଚି ମାତ୍ର । ଉପର ମୁଣ୍ଡ ପାଣି ଗୋଳି କରିବା ତ ମୋର ଉଦ୍ଦେଶ୍ୟ ନୁହେଁ । ତେବେ ଆପଣଙ୍କ ବିରକ୍ତି ଯଥାର୍ଥ । ଆପଣ ଉପର ମୁଣ୍ଡରେ ପାଣି ପିଇବା ମଣିଷ (ମନେ ମନେ କହୁଥିବେ- ତୁତ ସେଇ ଜନ୍ତୁ, ଗଧିଆଟିଏ ତୁ )। ଆମେ ସାର ଆପଣଙ୍କ ପାଣି ଗୋଳି କରିବୁ ! ଇସ୍, ଏ ସାହସ ଆମର କେବେ ହବ ସାର ? ଆମେ ପରା ମେଣ୍ଢା ଛୁଆ । ନେତା ବା ଆପଣଙ୍କ ଉପର ଅଫିସର ଖୁସି ହେବେ କି ନା ସେ କଥା ପଡ଼ିନାହିଁ ଏଠି । ଏଠି ପଡ଼ିଚି ଆପଣ ସେ ମେଣ୍ଢା ଛୁଆ ଓ ଗଧିଆ ଗପଟି ପିଲାଦିନେ ପଢ଼ିଚନ୍ତି କିନା !

ସେମିତି ମନେ କରନ୍ତୁ ଆପଣ ଜଣେ ଅଫିସ କିରାଣୀ । ବଡ଼ ହାକିମ ଆପଣଙ୍କୁ ଥରେ ତାଙ୍କ ଅଫିସକୁ ଡାକିଲେ । କହିଲେ, ଗୋବିନ୍ଦ ବାବୁ ! ଆପଣ ଏ କ'ଣ ଲେଖୁଛନ୍ତି ଫାଇଲରେ । ଆପଣଙ୍କୁ ଚାକିରି ପିତା ଲାଗିଲାଣି କି ? ତା'ପରେ ଆପଣ ନିଶ୍ଚେ ଆପଣଙ୍କ ସ୍ଥିତି ସୁଦୃଢ଼ ରଖିବାକୁ ଚେଷ୍ଟା କରିବେ । ହାକିମ ରାଗିଛନ୍ତି ଜାଣି ଆପଣ ନିଶ୍ଚେ ଏକାଧିକ ବାର ତାଙ୍କୁ ଅଫିସରେ, ଘରେ, ବାହାରେ ଯେଉଁଠି ଦେଖିବେ, ସେଠି ଭଲେଇ ହୋଇ କହିବେ, ''ସାର୍, ସାର, ମୁଁ ପ୍ରକୃତରେ ନିର୍ଦ୍ଦୋଷ... ।'

ଅଫିସର ପ୍ରଥମେ ହସିଦେବେ । ସେଇଠୁ ଟେରେଇ ଚାହିଁବେ । ତାପରେ ନାଲି ଆଖି ଦେଖେଇବେ । ଆପଣଙ୍କ ବିବେକ ଏଇଠି ଆପଣଙ୍କୁ ପଚାରିବ, ଯାପରେ ଏ ଚୋରଟାକୁ ଆଉଥରେ ଦେଖା କରିବା ଉଚିତ, ହେବ କି ? ଯାର ଉତ୍ତର ଆପଣଙ୍କ ପାଖରେ । ତେବେ କଥା ନିର୍ଭର କରୁଛି - ଆପଣ କେତେଦୂର ପାଠୁଆ । ଚେକଭ୍‌ଙ୍କ ସେ କିରାଣି ଗପଟି ଯଦି ଆପଣ ପଢ଼ିଥିବେ ତେବେ ନିଶ୍ଚେ ଆପଣଙ୍କୁ ସୁବୁଦ୍ଧି ଦିଶିବ । ସେ ଚୋରଟା ଆଗକୁ ଆପଣ ଆଉ ଯିବେ ନାଇଁକି ଭଲେଇ ହେବେ ନାଇଁ । ନାଇଁ ଯଦି ତଥାପି ମୂର୍ଖଙ୍କ ପରି ଯିବେ ତେବେ ମରିବେ । ହଁ, ସତରେ ମୃତ୍ୟୁ ହିଁ ଶେଷ କଥା ହେବ ଏ କ୍ଷେତ୍ରରେ- ଯାହା ଚେକ୍‌ଭଙ୍କ କିରାଣୀର ହେଲା, ସେଇଆ । ଏହା ସୁନିଶ୍ଚିତ । ଆଉ ଗୋଟେ ପଟେ ଅନାନ୍ତୁ । ସେପଟେ ପାଶ୍ଚାତ୍ୟ ଗଳ୍ପ ରହିଗଲା । ଏପଟେ ଆମ ଭାରତୀୟ ଗଳ୍ପ ସାହିତ୍ୟର ଅସୀମ ଦିଗନ୍ତ । ରାମାୟଣ ମହାଭାରତଠୁ ଏପରିକି ଆହୁରି ପୁରୁଣା ବେଦ ଉପନିଷଦର ଗଳ୍ପମାଳାଠାରୁ ଆଜିର ଭାରତୀୟ ଗଳ୍ପ ସାହିତ୍ୟ ସମ୍ଭାର ପର୍ଯ୍ୟନ୍ତ ଏକ ସୁବିସ୍ତୃତ ମହାକାଶ ପଡ଼ିବ ଆପଣଙ୍କ ଆଖିରେ । କିନ୍ତୁ ଏ ମହାକାଶର ନବାବିଷ୍କୃତ ସୂର୍ଯ୍ୟ ଚନ୍ଦ୍ର ତାରା ଆପଣଙ୍କ ନେତ୍ର ପଥରେ ଏଯାବତ୍ ଆସି ପାରିନାହାଁନ୍ତି । କାରଣ ଆପଣ ଜଣେ ରୁଚିବନ୍ତ ଲୋକ । ଆପଣ ନୂଆ; ମାନେ ଆଧୁନିକଙ୍କୁ ଅର୍ବାଚୀନ ମନେ କରନ୍ତି । ତେଣୁ ସବୁବେଳେ ସେଇ ପୁରୁଣା ପ୍ରଚୀନମାନେ ପୌରାଣିକ ଜିନିଷ ଆପଣଙ୍କୁ ଖୁବ୍ ରୁଚେ । ହଉ ତାହାହିଁ ହେଉ । ମନେ କରନ୍ତୁ ଆପଣ ରାମାୟଣ ମହାଭାରତରେ ଖୁବ୍ ଓସ୍ତାଦ୍ । କଥା କଥାକେ ରାମ, ଲକ୍ଷ୍ମଣ, ହନୁମାନଜୀ, ଯୁଧିଷ୍ଠିର ଅର୍ଜ୍ଜୁନଙ୍କ ବୀରତ୍ୱ କାହାଣୀ ଆପଣଙ୍କ ମୁହଁରୁ ବାହାରି ପଡ଼େ । ଏଇଥିପାଇଁ ଆମ ଭାରତର ଜଣେ ନେତୃ ସ୍ଥାନୀୟ ବ୍ୟକ୍ତିରୂପେ ଲୋକେ ଆପଣଙ୍କୁ ଖୁବ୍ ସମ୍ମାନ କରନ୍ତି । ଆପଣ ନିମିଷକେ ନିରକ୍ଷର ଗରୀବ ନିରୀହ ଲୋକଙ୍କ ମନରେ ବୀରଭାବ ସଞ୍ଚାର କରି ଦେଇ ପାରନ୍ତି । ତେଣୁ ଆପଣ ମଧ୍ୟ ଜଣେ ନେତା । ଧରନ୍ତୁ ଦିନେ ଆପଣଙ୍କର ଗାଁ ଯୋଉ ନଈ ବଂଧ ଉପରେ ସେ ନଈରେ ବଢ଼ି ଆସିଗଲା । ଖୁବ୍ ବଡ଼ ବଢ଼ି । ଚାହୁଁ ଚାହୁଁ ବଂଧରେ ଘୋଳିଆ ପଡ଼ିଗଲା । ଆପଣ ଲୋକଙ୍କୁ ଉଦ୍‌ବୋଧନ ଦେଇ ଖୁବ୍ କହିଲେ ଏଠି ଯଦି ରାମଚନ୍ଦ୍ର ଥାଆନ୍ତେ କିମ୍ବା ହନୁମାନଜୀ ଥାଆନ୍ତେ, କିମ୍ବା ଅର୍ଜ୍ଜୁନ ଭୀମ ଭଳି-କେହିଯେ ଥାଆନ୍ତେ, ସେ ନିଶ୍ଚେ ଏତେ ବେଳକୁ ଛାତି ପତେଇ ଠିଆ ହୋଇ ପଡ଼ନ୍ତେଣି ଏ ଘୋଳିଆ ଫାଟ ସାମ୍ନାରେ । ଭାଇମାନେ । ଡେ଼ଇଁ ପଡ଼ନ୍ତୁ । ଛାତି ଲଗେଇ ଆଗ ପାଣି ସୁଅ ଅଟକେଇ ଦିଅନ୍ତୁ । ମୁଁ ଯାଉଛି ଭୋବନିଶୋର । ଚିଫ୍ ଇଞ୍ଜିନିୟରଙ୍କୁ ଖବର ଦେଇ ସାହାଯ୍ୟ ଘିନି ଆସୁଛି । ଆପଣ କଣ ଭାବୁଛନ୍ତି ରାମଙ୍କଠୁଁ ଅର୍ଜ୍ଜୁନ ପର୍ଯ୍ୟନ୍ତ ଯାହା ନାଁ ଧଇଲେ କେହି ଡେଇଁ ପଡ଼ିବେ ବଢ଼ିଲା ନଈବଂଧର ଫାଟ ଆଗକୁ ?

ଧରନ୍ତୁ ଗୋଟିଏ ହୁଣ୍ଡା ଟୋକାଥିଲା । କ'ଣ ଭାବିଲା ଦଉଡ଼ି ଯାଇ ଗୋଟାଏ ଜିଆଇ ସିଟ୍ କୋଉଠୁ ଉଠେଇ ଆଣି ସିଧା ଡେଇଁ ପଡ଼ିଲା । ପାଣି ଅଟକେଇ ଦେଇ ରଡ଼ି ଛାଡ଼ିଲା 'ହରିବୋଲ । ପକାଅ ମାଟି । ମୁଁ ଅଟକେଇଛି ପାଣିକି ।' କ'ଣ କରିବେ ଆପଣ । ଆପଣ ସେଇ ସୁଯୋଗଟି ନେବେ ନିଶ୍ଚୟ ଲୋକଙ୍କୁ ଆଖିମାରି ଡାକଦେବେ, " ପକାଅ ମାଟି ହରିବୋଲ "। ଫଳ ? ପିଲାଟି ସମେତ ପୋତି ପକେଇବେ ଆପଣ ଫଟା ନଈବନ୍ଧକୁ । କାରଣ ଆପଣ ଜଣେ ପ୍ରାଚୀନତାର ପୂଜାରୀ । ଆପଣ କେବଳ ଜାଣିଛନ୍ତି ପ୍ରାଚୀନ ସାହିତ୍ୟର ବୀରମାନଙ୍କ ଜୀବନ । ଯଦି ଆଧୁନିକ ସାହିତ୍ୟ ପଢ଼ିଥାନ୍ତେ ଫକୀରମୋହନଙ୍କ ରାଣ୍ଡିପୁଅ ଅନନ୍ତା ଗପଟି ପଢ଼ିଥାନ୍ତେ, ସେ ଗପଟିର ଚରିତ୍ର ଅର୍ଥାତ ଆପଣଙ୍କ ଗାଁର

ସେ ହୁଣ୍ଡାଟୋକାକୁ ଆପଣ କେବେ ସେଭଳି ନିର୍ଦ୍ଦୟଭାବେ ପୋତି ମାରିପକେଇବାକୁ ଆଗଭର ହୁଅନ୍ତେ ନାହିଁ । ଅର୍ଥାତ ଆପଣଙ୍କୁ ଜୀବନର ଟ୍ରାଜେଡ଼ି କ'ଣ ସେକଥା ଖୁବ୍ ଭଲଭାବେ ଜଣାଥାନ୍ତା । ଟ୍ରାଜେଡ଼ିର ପୁନରାବୃତ୍ତି କରିବାକୁ ଆପଣଙ୍କ ବିବେକ ବାଧା ଦିଅନ୍ତା ।

ଫକୀରମୋହନଙ୍କଠୁ ଶହେ ବର୍ଷ ଆଗପର୍ଯ୍ୟନ୍ତ ଆଧୁନିକ ଗଳ୍ପ ବିସ୍ତାରଲାଭ କରିସାରିଲାଣି । କାହିଁ କେତେ ପଛରେ ରହିଗଲେଣି ଫକୀରମୋହନ । ଏହି ଭିତରେ ଆସିଗଲେଣି ବା ଯିବାକୁ ବାହାରିଲେଣି ଅନେକ ପ୍ରସିଦ୍ଧ ଗଳ୍ପକାର । କିନ୍ତୁ କ୍ୱଚିତ ଗଳ୍ପ ଆପଣଙ୍କୁ ପ୍ରଭାବିତ କରିଥିବ, ଯାହାକୁ ଜୀବନର ଘଡ଼ିସନ୍ଧି ମୁହୂର୍ତ୍ତରେ ମନେ ପକେଇ ନିଜ ଜୀବନର ସମସ୍ୟା ନିଜେ ସମାଧାନ କରିବା ସମ୍ଭବ ହୋଇଥିବ ଆପଣଙ୍କ ପକ୍ଷରେ । ଖାଲି ସମସ୍ୟାର ସମାଧାନ ତ ନୁହେଁ, ଜୀବନ ବଂଚିବାର ସୁଆଦ ମଧ୍ୟ ସୃଷ୍ଟି କରି ପାରନ୍ତେ ଆପଣ ସାମାନ୍ୟ ଦୈନନ୍ଦିନ ଘଟଣାରୁ- ଯଦି ଭଲ ଗପର ସଂଜ୍ଞା ଜଣାଥାନ୍ତା ଆପଣଙ୍କୁ । ମନେକରନ୍ତୁ ଆପଣ ଟ୍ରେନରେ ଯାଉଛନ୍ତି । ପାଖରେ ଅନ୍ୟ ପ୍ରଦେଶର ଅନ୍ୟଭାଷାଭାଷୀ ଲୋକ ଜଣେ । କଳି ଆରମ୍ଭ ହୋଇଗଲା କେଉଁ କାରଣରୁ । ଆପଣ ଭାବିଲେ ଟ୍ରେନ ଓଡ଼ିଶାରେ ଚାଲିଚି । ପକେଇବି 'ଶାଳା' କୁ ଏକ ଚଟ୍‌କଣା ଦେଖାଯାଉ କିଏ ଏ ଶଳାର ପିଠିରେ ପଡ଼ିବ । କିନ୍ତୁ ଆପଣ କେବେ ଏ ମନ୍ଦ କାମ କରିବେ ନାଇଁ ଯଦି ହଠାତ୍ ମନେ ପଡ଼ିଗଲା ଗୋପୀନାଥ ମହାନ୍ତିଙ୍କ 'ଦୁଇବୀର', ଗପଟା । କିମ୍ବା ଆଉ ଜଣେ କିଏ ଲେଖକଙ୍କର 'ହୃଦ କୋଲପ' ବୋଲି ଗଳ୍ପଟିଏ । ଆପଣ ତାପରେ ସେ ଶଳାକୁ ଚକ୍‌କଣି ନମାରି କ'ଣ କରିବେ ଭାବନ୍ତୁ । ତାକୁ ଡାକି ଆଗାମୀ ଷ୍ଟେସନରେ ଗୋଟିଏ ସାଉଥ୍ ଇଣ୍ଡିଆନ ରେଷ୍ଟୁରାଁକୁ ନେଇ ଦୋଷା ଖୁଆଇବେ ବା ମିଷ୍ଟି ଖୁଆଇବେ ବା ମହାନଦୀ ପୋଲ ଉପରେ ଗାଡ଼ିର ଘର୍ଘର ଶବ୍ଦ ଶୁଣିବା ମାତ୍ରେ ମନେହେବ – ହେ ତମ୍ବା ପଇସାଟିଏ ଯଦି ଥାଆନ୍ତା ତେବେ ଏଇଲେ କାମ ଦେଇଥା'ନ୍ତା । ଏ ଲୋକକୁ ଡାକନ୍ତି, ଆସ ତମ୍ବା ପଇସା ପକେଇବା ନଈ ଭିତରକୁ । ଆମର ହୃଦ କୋଲପ ଫିଟି ଯିବ ନିଶ୍ଚେ ତଦ୍ଦ୍ୱାରା । ଏମିତି ସମାଧାନ କରିଥାନ୍ତେ ଆପଣ ସେଦିନ ରେଳଯାତ୍ରା ବେଳେ ଜଣେ ଅନ୍ୟ ଭାଷା ଭାଷୀ ଲୋକ ସାଥିରେ । ଭଲଗପ ପଢ଼ିବାର ପୁରସ୍କାର ଏଇଆ । କଳି ନୁହେଁ; ଭାବ ଯୋଡ଼ି । ଭଲ ଗପ ଏଇଆ ଶିଖାଏ ।

ଜୀବନରେ ଅନେକ ମୁହୂର୍ତ୍ତ ଏମିତି ଆମ ଭାବ ପ୍ରବଣତା, ଆମ 'ଇମୋସନ୍'କୁ ସୁଶୃଙ୍ଖଳିତ, ସୁନିୟନ୍ତ୍ରିତ କରିବା ପାଇଁ ସାହିତ୍ୟର ସାହାଯ୍ୟ ଦରକାର କରେ । ପୁଣି ଆଧୁନିକ ଜୀବନ ହେଲା ମନସ୍ତାତ୍ତ୍ୱିକ । ସେ ସବୁ ମୁହୂର୍ତ୍ତକୁ ଆୟତ୍ତ କରିବାକୁ ପୁରାଣ, ଭାଗବତ ଆଦୌ ସିଧାସଳଖ କାମ ଦେବନାହିଁ ପୁରାଣ ସାହିତ୍ୟ ଯଦି ମିଥ୍ ପାଲଟିଥିବ ଆପଣଙ୍କ ମନରେ ତେବେ ଯାଇ କାମ । କିନ୍ତୁ ପୌରାଣିକ ମିଥ୍‌କୁ ଆଧୁନିକ ପରିସ୍ଥିତି ଭିତରେ ଖୋଜି ପାଇବା କାଠିକର ପାଠ । ଆଧୁନିକ ଘଟଣା, ଆଧୁନିକ ପରିସ୍ଥିତି ବା ସ୍ଥିତି ଭିତରେ ମଣିଷ ମନରୁ ମିଥ୍ ଯିଏ ଉତ୍ପାଦନ କରିପାରେ ସେଇ ହେଲା ଆଧୁନିକ ଗଳ୍ପ ଲେଖକ । ସେ ଖାଲି କାହାଣୀକାର ନୁହେଁ । ସେ ଜଣେ ମନୋବିଜ୍ଞାନୀ ବି ନୁହେଁ । ତାଠୁଁ ଢ଼େର ବଡ଼ ସେ – କଳାକାର । ଆଧୁନିକ ଗଳ୍ପର କଳା ଅର୍ଥାତ୍ ଷ୍ଟାଇଲ ଟେକ୍‌ନିକ୍ ଫର୍ମର ଆଶ୍ଚର୍ଯ୍ୟଜନକ ପ୍ରଭାବକୁ ଆମେ ଗଳ୍ପର 'ଏଫେକ୍ଟ' କହୁ । ଉନବିଂଶ ଶତାବ୍ଦୀରୁ ଏହି 'ଏ ଫେକ୍ଟ' କିଭଳି ଶାଣିତରୁ ଶାଣିତତର ହେବ ଏଇ ପରୀକ୍ଷା ଚାଲି ଆସିଥିଲା ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ସମୟ ପର୍ଯ୍ୟନ୍ତ । ଗଳ୍ପର ପରିଣତି ସଦାବେଳେ ରହି ଆସୁଥିଲା ଗଳ୍ପ ଶେଷାଂଶରେ । ଏହାକୁ କୁହାଯାଇଥିଲା

'ଏଫେକ୍ଟ ଏଣ୍ଡିଂ ' ବା 'ସକ୍ – ଏଣ୍ଡିଂ' କ୍ଷୁଦ୍ରଗଳ୍ପ । କିନ୍ତୁ ବର୍ତ୍ତମାନ ଏଭଳି ଗଳ୍ପକୁ କୃତ୍ରିମ ଗଳ୍ପ କୁହାଗଲାଣି । ପାଠକକୁ ଚମକେଇ ଦେଲେ ଯେ ସେ ମନେ ରଖିବ ଗପଟାକୁ ଏକଥା ନୁହେଁ । ବରଂ ପାଠକ ବିରକ୍ତ - ଏଇ କୃତ୍ରିମତା, ଛଳନା ପ୍ରିୟତା ଯୋଗୁଁ । ଆଜିର କ୍ଷୁଦ୍ରଗଳ୍ପ ପାଠକକୁ ଚମକେଇବା ପରିବର୍ତ୍ତେ ଅତି ସୂକ୍ଷ୍ମ ସ୍ତରରେ ପ୍ରଭାବିତ କରିପାରୁଛି । ଏହାର ପ୍ରଭାବ ହିପ୍‌ନୋସିସ୍ ପରି ଅତ୍ୟନ୍ତ ଗଭୀର ଯାହା ଫଳରେ ପାଠକର ଅନ୍ତରାତ୍ମା ଆଲୋକିତ ହୋଇଉଠେ, ଉଦ୍‌ଭାସିତ ହୋଇଉଠେ । ଏଭଳି ଗଳ୍ପ ଲେଖିବା କଠିନ ବ୍ୟାପାର । ସେଥିପାଇଁ ଆବଶ୍ୟକ ଲେଖକର ଏକ ପ୍ରକାର ଯୋଗସିଦ୍ଧି । କିଶୋରୀ ଚରଣ ଦାସଙ୍କ ପୁରୁଣା ଗଳ୍ପ ଗୁଡ଼ିକୁ ମନେ ପକାନ୍ତୁ– 'ଭଙ୍ଗାଖେଳଣା', 'ଠାକୁର ଘର' ଇତ୍ୟାଦି । ଅଖିଳ ମୋହନ ପଟ୍ଟନାୟକଙ୍କ ଝଡ଼ର ଈଗଲ ଓ ଧରଣୀର କୃଷ୍ଣସାର' ମନେ ପକାନ୍ତୁ । ବାମା ଚରଣ ମିତ୍ରଙ୍କ 'ଲଡୁ' ସମେତ ସବୁ ଗପକୁ ଅନାନ୍ତୁ । ମହାପାତ୍ର ନୀଳମଣି ସାହୁଙ୍କ ସୁମିତ୍ରାର ହସ ସମେତ 'ଅଭିଶପ୍ତ ଗର୍ନ୍ଧବ', ଗପଟିକୁ ଯଥା ସମୟରେ ମନେ ପକେଇ ଅତ୍ୟନ୍ତ ଦୁଃଖପୂର୍ଣ୍ଣ ମୁହୂର୍ତ୍ତରେ ହସିବାକୁ ଚେଷ୍ଟା କରନ୍ତୁ । ମନେପକାନ୍ତୁ ମନୋଜ ଦାସଙ୍କ 'ଆରଣ୍ୟକ' ଗଳ୍ପର ପ୍ରଥମ ଓ ଦ୍ୱିତୀୟ ସଂସ୍କରଣ । ପ୍ରଥମଟି ଏଫେକ୍ଟ ବା ସକ୍ ଏଣ୍ଡିଂ । କି ଭୀଷଣ ! କିନ୍ତୁ ଦ୍ୱିତୀୟ ସଂସ୍କରଣରେ ସେଇ ସକ୍ କିଭଳି ପାଲଟୁଚି ମୋଲାଏମ୍ ଅନ୍ତର୍ଜ୍ୟୋତିରେ ପରଖନ୍ତୁ । ସେଇଭଳି ଓଡ଼ିଆ ସାହିତ୍ୟର ଗଳ୍ପକାର ସୁରେନ୍ଦ୍ର ମହାନ୍ତିଙ୍କର 'କୃଷ୍ଣଚୂଡ଼ା' ଗଳ୍ପର ପ୍ରଭାବକୁ ତୁଳନା କରନ୍ତୁ କୃଷ୍ଣପ୍ରସାଦ ମିଶ୍ରଙ୍କ 'ହିପ୍ପୀ' ବା 'ମୁଖା' ସାଙ୍ଗରେ । ଏହିପରି ଓହ୍ଲେଇ ଓହ୍ଲେଇ ଚଢ଼ି ଚଢ଼ି ଆସନ୍ତୁ ଜଗଦୀଶ ମହାନ୍ତି, ତରୁଣକାନ୍ତି ମିଶ୍ର ଅଥବା ଯଶୋଧାରା ମିଶ୍ରଙ୍କ ବା ତାଙ୍କ ପରବର୍ତ୍ତୀ ସମୟର ଆଜିର ଗଳ୍ପକାରଙ୍କ ପର୍ଯ୍ୟନ୍ତ ।

ହଜାରେ ଗପ ଭିତରୁ ମାତ୍ର ଦଶୋଟିର ପରମାୟୁ ରେଖା ବୋଧହୁଏ ସୁଦୀର୍ଘ ହେବ । ଏଇ ହେଲା ମହା ପ୍ରକୃତିର ଅକାଟ୍ୟ ନିୟମ । କିନ୍ତୁ ଭଲ ଗପର ସେଇ ଅକାଟ୍ୟ ନିୟମଟି ହେଲା – ମନେରହିବା, ମନେ ରହିଯିବା। ପ୍ରତି ଭଲ ଲେଖକ ଏଇ ନିୟମଟିକୁ ବୁଝିବାକୁ ବାଧ୍ୟ। ଗପଟି କାହିଁକି, କେମିତି ମନକୁ ହୃଦୟକୁ , ଆତ୍ମାକୁ ଛୁଏଁ, ପ୍ରଭାବିତ କରେ – ଭଲ ଲେଖକ ଜୀବନ ବ୍ୟାପି ଏଇ ପ୍ରଶ୍ନର ଉତ୍ତର ଲେଖୁଥାଏ, ଗଳ୍ପ ଲେଖା ଛଳରେ।

**ପ୍ରଶ୍ନ :** ସାଂପ୍ରତିକ ଓଡ଼ିଆ ସାହିତ୍ୟର ସ୍ଥିତି କିପରି ?

**ଉତ୍ତର :** ଗତ କେତେବର୍ଷ ଧରି ମୁଁ ଓଡ଼ିଆ ସାହିତ୍ୟର ସ୍ଥିତି ସଂପର୍କରେ ସଚେତନ ହୋଇଛି । ତାର କେତେକ କାରଣ ଭିତରୁ ଗୋଟିଏ ହେଲା - କୌଣସି ଗୋଟିଏ ମୂଲ୍ୟବାନ ପୁରସ୍କାର ପ୍ରଦାନକାରୀ ସଂସ୍ଥାସହିତ ଜଡ଼ିତ ହେବା ଦ୍ୱାରା ସେ ସଂସ୍ଥା ସଂଗ୍ରହ କରୁଥିବା ଉଚ୍ଚକୋଟୀର ସୃଜନଶୀଳ ପ୍ରତିଭାଙ୍କ ଦ୍ୱାରା ସୃଷ୍ଟ କିଛି ପୁସ୍ତକର ଅନୁସନ୍ଧାନ ଦାୟିତ୍ୱ ମୁଁ ଆପେଆପେ ନିଜ କାନ୍ଧକୁ ନେଇଛି । ଏହି ଅନୁସନ୍ଧାନ ପ୍ରକିୟା କ୍ରମଶଃ ମୋର ଅବବୋଧକୁ ଏକ ଅବସାଦରେ ଧୀରେ ଧୀରେ ଆଚ୍ଛନ୍ନ କରି ଆସୁଛି । ତାହା ହେଲା - ଓଡ଼ିଆରେ ବହୁ ସଂଖ୍ୟାର ବହି ଲେଖା ହେଉଛି ଏଥିରେ ସନ୍ଦେହ ନାହିଁ । କିନ୍ତୁ, ଗୁଣାତ୍ମକତା ଦୃଷ୍ଟିରୁ ଏହାର ମାନ ବର୍ଷ ପରେ ବର୍ଷ କମି କମି ଚାଲିଛି ।

ଓଡ଼ିଆ ସାହିତ୍ୟର ବହୁ ଧର୍ମ-ସାହିତ୍ୟ ଲେଖା ଚାଲିଛି, କିନ୍ତୁ ସେ ଗୁଡ଼ିକର ଆଧ୍ୟାତ୍ମିକ ମୂଲ୍ୟ ବେଶୀ କିଛି ନାହିଁ । ଅପର ପକ୍ଷରେ ସମାଜିକ ଈର୍ଷା ଓ ଅସ୍ୱୀୟା ନଚେତ 'ସେକ୍ସ'କୁ କୁହାଯାଉଛି ଲୋକପ୍ରିୟ

ସାହିତ୍ୟ । କିନ୍ତୁ ଏଥିରେ ବି କୌଣସି ଉତ୍ତରିତ ମୂଲ୍ୟର ସମ୍ଭାବନା ଦିଶୁନାହିଁ । ଅର୍ଥାତ ଏଗୁଡ଼ିକ କୌଣସି ବାଦ ବା ଇଜମ ପ୍ରତି ମଧ ସତ୍ୟନିଷ୍ଠ ନୁହଁନ୍ତି।

ଅଧିକାଂଶ ଲେଖକ ନିଜର ଜୀବନାଭିଜ୍ଞତା ପ୍ରତି ସଂପୂର୍ଣ୍ଣ ନିର୍ଲିପ୍ତ । ଅର୍ଥାତ୍ ଜୀବନ ତାଙ୍କୁ କିଛି ଶିକ୍ଷା ଦେଉନାହିଁ ବା ଦେଇନାହିଁ ଯେମିତି । ତେଣୁ ନିଜର ମୌଳିକତା ପ୍ରତି ସେମାନେ ନିରପେକ୍ଷ; ପରର ମୌଳିକତା ପ୍ରତି ଅସହିଷ୍ଣୁ । ଏକ ସ୍ଥାଣୁ ସାହିତ୍ୟିକ ପରିବେଶ ଭିତରେ ଓଡ଼ିଆ ସାହିତ୍ୟ ନିର୍ବେଦ ହୋଇ ଅନାଇ ରହିଛି ।

ତଥାପି ଗୋଟିଏ ଶୁଭ ସୂଚନା ମିଳୁଛି । ଓଡ଼ିଆ ଭାଷାକୁ ନାକ ଟେକୁଥିବା ବହୁ ବୃତ୍ତିଧାରି ମେଧାବୀ ବ୍ୟକ୍ତି ଡେରିରେ ହେଲେ ବି ଏ ଭାଷାକୁ ଆଦରି ଚାକିରି ସରିବା ପରେ କିଛି ଲେଖାଲେଖି କରିବାକୁ ଆଗେଇ ଆସିବା ଲକ୍ଷ୍ୟ କରାଯାଉଛି । ସେଥିରେ ଅଛନ୍ତି କେତେକ ପ୍ରଫେସର, ଅବସର ପ୍ରାପ୍ତ ବା ବୃତ୍ତିରେ ଥିବା ଡାକ୍ତର, ଇଂଜିନିୟର, ରାଜନୈତିକ ଉଚ୍ଚପଦସ୍ଥ ବ୍ୟକ୍ତି । ସେମାନଙ୍କର ସହଯୋଗକୁ ସ୍ୱାଗତ କରାଯିବା ଦରକାର ।

**ପ୍ରଶ୍ନ :** ଆପଣ ଓଡ଼ିଆ ସାହିତ୍ୟ କାହିଁକି ଭାରତୀୟ ସାହିତ୍ୟର ଜଣେ ବିଶିଷ୍ଟ ଲେଖକ । ଆପଣଙ୍କ ଲେଖକ ଜୀବନର ସ୍ୱପ୍ନ କ'ଣ ?

ଉତ୍ତର : ମୋ ନିଜ ଜୀବନ ଦୃଷ୍ଟିରୁ ମୁଁ କେବଳ ଗୋଟିଏ ବାକ୍ୟ ଦୋହରେଇ ପାରେ - 'ଉପନ୍ୟାସ (ଗଳ୍ପ) ମୋ ଜୀବନ ରକ୍ଷା କରିଦେଇଛି'' -

ଏଭଳି ଏକ ବାକ୍ୟ ଆପଣ ହୁଏତ ଶୁଣିଥିବେ । ଡି.ଏଚ. ଲରେୟନସ୍‌ଙ୍କ

ଏଭଳି ବାକ୍ୟ ଅଛି - ''Novel Saved my life...''

ମୁଁ ତାଙ୍କର ଏ ମହାବାକ୍ୟକୁ ଆବିଷ୍କାର କରିବାର ବହୁ ପୂର୍ବରୁ ଏ ଅନୁଭବକୁ ଅଙ୍ଗେ ଲିଭେଇ ସାରିଥିଲି।

ମୋ ଜୀବନରେ ଏକ ମହାଭୟଙ୍କର ଧର୍ମ ସଂକଟ ଉପସ୍ଥିତ ହୋଇଥିଲା । ତାହା ଅତ୍ୟନ୍ତ ତରୁଣ ବୟସରେ ଘଟିଥିଲା । ସେଥିରୁ ମୁଁ ଉଦ୍ଧାର ପାଇବା ପରେ ପରେ ମୋ ଆଗରେ ସାହିତ୍ୟର ସ୍ୱର୍ଣ୍ଣାଭ ଦିଗନ୍ତଟି ଆବିର୍ଭୂତ ହେଲା । ସେଇଠାରୁ ଏ ଯାତ୍ରାର ଆରମ୍ଭ । ଦିଗନ୍ତ ଆହୁରି ଆହୁରି ପରିବ୍ୟାପ୍ତ ହୋଇ ଚାଲିଚି । କଦାପି ସଂକୀର୍ଣ୍ଣ ହୋଇଯାଇନାହିଁ ।

ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସାଧନା କରୁଥିଲେ ବି ମୁଁ ବିଶ୍ୱଭାବକୁ ହିଁ ସାହିତ୍ୟରେ ପ୍ରତିବିମ୍ବିତ କରିବାକୁ ସଂକଳ୍ପବଦ୍ଧ ।

**ମୋର ସ୍ୱପ୍ନ :** ଓଡ଼ିଆ ଭାଷା ସାହିତ୍ୟ ଆଞ୍ଚଳିକତାରୁ ମୁକ୍ତ ହେଉ ଏବଂ ଯଥାର୍ଥରେ ବିଶ୍ୱସାହିତ୍ୟରେ ପରିଣତ ହେଉ । ଏହାକୁ ସାର୍ଥକ କରିବା ମୋର ସ୍ୱପ୍ନ।

**ପ୍ରଶ୍ନ :** ଓଡ଼ିଶା ଦାରିଦ୍ର୍ୟ, ଆର୍ଥିକ ସଂକଟ ଭିତରେ ଏବେ ଗତି କରୁଛି । ଜଣେ ପ୍ରସିଦ୍ଧ ଲେଖକ ଭାବେ ଓଡ଼ିଶା ଏଥିରୁ କିପରି ମୁକ୍ତି ପାଇବ ବୋଲି ଭାବୁଛନ୍ତି ?

**ଉତ୍ତର :** ଏଇ ପ୍ରଶ୍ନ ଥରେ ମତେ ଜଣେ ବିଶିଷ୍ଟ ବୁଦ୍ଧିଜୀବୀ ଇଂଜିନିୟର ପଚାରିଥିଲେ କେତେ ବର୍ଷ ତଳେ । ତାର ଉତ୍ତର ମୁଁ ଦେଇଥିଲି ଏହିପରି, 'ଯାହା ଲୁଟ୍ କରିଚ ବା କରୁଚ ତାକୁ କୋଉଠି ରଖୁଚ ? ଓଡ଼ିଶାରେ ନା ଓଡ଼ିଶା ବାହାରେ ? ନିଜକୁ କେବେ ଓଡ଼ିଶା ମାଟି ପ୍ରତି ଜଣେ କୃତଜ୍ଞ ନାଗରିକ ବୋଲି ଭାବ ? ''

ଭଦ୍ରଲୋକ ଆଁ କରି ଚାହିଁଲେ ।

ମୁଁ ପୁଣି ବୁଝେଇ ବସିଲି- ଗାଈଟିଏ ପୋଷିଲେ ସେ ଅନ୍ତତଃ ଲଣ୍ଡାଏ ଗୋବର ଦଉଚି ମାଟିକୁ । ଗଛଟିଏ ଲଗେଇଲେ ଅନ୍ତତଃ କିଛି ଝଡ଼ାପତ୍ର ପଡୁଛି ମାଟିରେ ଯାହା ଖତ ପାଲଟି ଉର୍ବର କରୁଚି ତା ପାଦ ତଳମାଟିକୁ । ଆମେ ଯାହା ନଉଚେ ଏ ଓଡ଼ିଶାମାଟିରୁ, ତାକୁ କିଭଳି ଫେରସ୍ତ ଦେଇଚେ ଏ ରାଜ୍ୟକୁ - କୁହନ୍ତୁତ ? ଲୁହା ନଉଚେ, କୋଇଲା ନଉଚେ, ଆଲୁମିନିୟମ ନଉଚେ ଏ ମାଟିରୁ। ଦଉଚେ କ'ଣ ?

ଆପଣ ଓଡ଼ିଆ ହୋଇ ଗର୍ବିତ ? ନିଜର ପରିଚୟ କିପରି ଦିଅନ୍ତି ଓଡ଼ିଶା ବାହାରେ ? କହନ୍ତି ନିଶ୍ଚେ ମୁଁ ଜଣେ ଭାରତୀୟ । ପ୍ରଥମେ ଭାରତୀୟ ପରେ ଓଡ଼ିଆ ।

ବର୍ତ୍ତମାନ ସମୟ ଆସିଚି । କହନ୍ତୁ 'ମୁଁ ପ୍ରଥମେ ଓଡ଼ିଆ ପରେ ଭାରତୀୟ' ।

ମଧୁସୂଦନ ଦାସଙ୍କ ଆଦର୍ଶ ଗ୍ରହଣ ନକରିବା ପର୍ଯ୍ୟନ୍ତ ଆପଣ ପଣ୍ଡିତ ଗୋପବନ୍ଧୁ ଦାଶଙ୍କ ପରି ସେଇ ଭୁଲ୍ କରିବସିବେ । ମହାଭାରତୀୟ ଭାବ ବେଦ, ବେଦାନ୍ତ ଅପେକ୍ଷା ଆଉ କେହି ଅଧିକ ଦେଇପାରିବେ ? କୋଉ ମହାଭାରତୀୟ ରାଜନୈତିକ ଦଳ ଗୋପବନ୍ଧୁଙ୍କୁ ପଚାରିଲା ସେତେବେଳେ ? ମଧୁବାରିଷ୍ଟର ଯୋଗୁ ଓଡ଼ିଶା ହେଲା ସ୍ୱତନ୍ତ୍ର ପ୍ରଦେଶ । ବର୍ତ୍ତମାନ ଏ ରାଜ୍ୟ ସରକାର ଯଦି ତଥାପି ସେଇ ଭୁଲ୍ କରେ ତେବେ ଓଡ଼ିଶା ସମୂଳେ ନାଶ ଯିବ। ଅର୍ଥନୈତିକ ପ୍ରଗତି କଣ ? ଓଡ଼ିଆ ଭାଷା ସାହିତ୍ୟ ସଂସ୍କୃତିର ବି ଚିହ୍ନ ରଖିବେ ନାହିଁ- ମହାଭାରତୀୟମାନେ ।

**ପ୍ରଶ୍ନ :** ଆମର ପଡ଼ୋଶୀ ବଂଗଳା ସାହିତ୍ୟ କିମ୍ବା ତେଲଗୁ ସାହିତ୍ୟରେ ଲେଖକମାନେ ଯେପରି ସାହିତ୍ୟ ସୃଷ୍ଟିରୁ ପ୍ରଚୁର ଅର୍ଥ ପୁସ୍ତକ ବିକ୍ରିରୁ ପାଆନ୍ତି, ଓଡ଼ିଆ ସାହିତ୍ୟରେ ଲେଖକଗଣ କାହିଁକି ସେପରି ପାଆନ୍ତି ନାହିଁ ?

**ଉତ୍ତର :** ଗୋଟାଏ ସମୟଥିଲା ଯେତେବେଳେ ମୁଁ ଲେଖକ ସାମ୍ମୁଖ୍ୟ ପ୍ରତିଷ୍ଠା କରିଥିଲି । ସେ ସାମୁଖ୍ୟ ଏଇ ସମସ୍ୟାକୁ ନେଇ ମୁଣ୍ଡ ଖେଳାଉଥିଲା । ଏବେ ସେ ଦାୟିତ୍ୱରୁ ମୁଁ ଅବ୍ୟାହତି ନେଇସାରିଛି । ପ୍ରକାଶକ ସାଙ୍ଗେ ରୟାଲିଟି ଝଗଡ଼ା କରିବା ବୟସ ମୋର ଆଉ ନାହିଁ । କିନ୍ତୁ ମୁଁ ଖୁସି ହୁଏ ଯଦି ପ୍ରକାଶକ ସ୍ୱେଚ୍ଛାରେ ଯତ୍‌କିଞ୍ଚିତ୍ ଅର୍ଥ ବଢ଼ାଇଦିଏ ରୟାଲିଟି ବାବଦକୁ । ଏହାକୁ ମୁଁ ସାମିଲକରେ ବାର୍ଷିକ ଆୟକର ହିସାବରେ ଓ କର ଦିଏ ମଧ ।

ରୟାଲିଟି ବର୍ତ୍ତମାନ ମୋର ବ୍ୟକ୍ତିଗତ ସମସ୍ୟା ନୁହେଁ, ମୁଁ ତାର ଉର୍ଦ୍ଧ୍ୱରେ ନିଜକୁ ରଖିବା ଶିଖିସାରିଛି । ନଚେତ ଜୀବନର କିଛି ନୂଆବହି ନଲେଖି ସେଇ କେଇଟା ପୁରୁଣା ବହିର ରୟାଲଟି ପାଇଁ ମାଲିମକଦ୍ଦମା କରୁଥାନ୍ତି ଆଜିଯାକେ ।

ତେବେ ଅନ୍ୟାନ୍ୟ ବ୍ୟକ୍ତି ଓ ସଂସ୍ଥାମାନେ ଏ ଦିଗରେ ସଚେତ ନ ହେବା ଉଚିତ। ନଚେତ୍ ସାହିତ୍ୟ ପ୍ରତି ଘୋର ବିପଦ ଦେଖା ଦେବ ଦିନେ ନା ଦିନେ ।

**ପ୍ରଶ୍ନ :** 'ବର୍ତ୍ତିକା' ପତ୍ରିକା ପ୍ରତି ଆପଣଙ୍କର ବାର୍ତ୍ତା କ'ଣ ?

**ଉତ୍ତର :** ବର୍ତ୍ତମାନ ଓଡ଼ିଶାରେ ପତ୍ରିକା ପ୍ରକାଶ ପାଇଁ ଗୋଟିଏ ଦଉଡ଼ ପ୍ରତିଯୋଗିତା ଦେଖା ଯାଉଛି । ବିଶେଷତଃ ପୂଜାସଂଖ୍ୟା ପ୍ରକାଶ ପାଇଁ ଏ ପ୍ରତିଯୋଗିତା ବଡ଼ କୋଳାହଳମୟ । ଏ ଏକ ଶୁଭ ସୂଚନା ନୁହେଁ । କାରଣ ଅଧିକାଂଶ ପତ୍ରିକାରେ ଲେଖିବା ପାଇଁ ଲେଖକ ଜନ୍ମିବା ଆଗରୁ ପତ୍ରିକାମାନେ ଜନ୍ମ ହୋଇ ପଡୁଛନ୍ତି ବହୁ ସଂଖ୍ୟାରେ ।

ମୋର ଏ ଦିଗରେ ଗୋଟିଏ ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣ ରହିଚି । ମୁଁ ଜାଣେ, ଯେ କୌଣସି ଦେଶର ଗଣତନ୍ତ୍ର ବଞ୍ଚିରହି ପ୍ରଭାବଶାଳୀ ହେବାକୁ ହେଲେ ବହୁ ସଂଖ୍ୟାରେ ଚିନ୍ତନଗୋଷ୍ଠୀ ଓ ସେମାନଙ୍କର ଚିନ୍ତନଚକ୍ର ସକ୍ରିୟ ହେବା ଉଚିତ୍ । ଏ ଗୋଷ୍ଠୀ ବା ଚକ୍ରର ମୁଖପତ୍ରଗୁଡ଼ିକ ସାଧାରଣତଃ ସ୍ୱଳ୍ପ ସଂଖ୍ୟାରେ ପ୍ରକାଶିତ / ପ୍ରସାରିତ ସାହିତ୍ୟିକ ଅଭିବ୍ୟକ୍ତି ସଂବଳିତ ପତ୍ରିକା ହେବା ଦରକାର । ଏଭଳି ପତ୍ରିକାକୁ ପାଶ୍ଚାତ୍ୟ ଦେଶରେ କୁହାଯାଏ 'ଲିଟଲମ୍ୟାଗାଜିନ୍' । ସାଧାରଣତଃ ଏଇ ଛୋଟ ବା ଲିଟଲ୍ ମ୍ୟାଗାଜିନ୍‌ମାନଙ୍କର ସେ ଦେଶର ବହୁମୂଲ୍ୟ ମୌଳିକ ଚିନ୍ତାପ୍ରସୂତ ଗଳ୍ପ /କବିତା /ପ୍ରବନ୍ଧ ଏବଂ ମତାମତ ପ୍ରକାଶ ପାଇଥାଏ ଯାହା ଲକ୍ଷାଧିକ ସଂଖ୍ୟାରେ ପ୍ରସାରିତ ବଡ଼ ପତ୍ରପତ୍ରିକା ଦ୍ୱାରା ସମ୍ଭବ ହୁଏନା ।

ଆମେରିକାରେ ପ୍ରତି ଦଶବର୍ଷରେ ଗୋଟିଏ ଦିଇଟା 'Best Short Stories' ଶୀର୍ଷକ ଗଳ୍ପ ସଂଗ୍ରହ ପ୍ରକାଶପାଏ । ସେଥିରେ ସଂଗୃହୀତ ଅଧିକାଂଶ ଗଳ୍ପ ମିଳିଥାଏ ଏଇ ଲିଟଲ୍‌ମ୍ୟାଗାଜିନ୍ ମାନଙ୍କରୁ । ବଡ଼ - କାଗଜରୁ ସେଭଳି ନିର୍ବାଚିତ ଗଳ୍ପସଂଖ୍ୟା ନଗଣ୍ୟ । ଏଥିରୁ ଏତିକି ବୁଝିହେବ - 'କ୍ୱାଲିଟି(ଗୁଣାତ୍ମକତା) 'କ୍ୱାଣ୍ଟିଟି'(ସଂଖ୍ୟାଗରିଷ୍ଠତା) କୁ ବରାବର ଲୁଚିଲୁଚି ବୁଲୁଥାଏ ।

'ବର୍ତ୍ତିକା' ଆକାରରେ ବେଶୀ ବଡ଼- ନହୋଇ ଛୋଟ ହେଲେ ଭଲ ହୁଅନ୍ତା ସେଥିରୁ ଭଲ ଲେଖା ବାରି ହୋଇପଡ଼ନ୍ତା । ମୋର ଉପଲକ୍ଷ୍ୟ ଏତିକି । ପତ୍ରିକା ପ୍ରତି ସମସ୍ତ ଶୁଭେଚ୍ଛା ସହିତ କହୁଛି ।

**(ବର୍ତ୍ତିକା ପୂଜାସଂଖ୍ୟା - ୨୦୦୪ ରୁ ସଂଗୃହୀତ ।)**



# ସାହିତ୍ୟିକ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ସହିତ ଅର୍ଦ୍ଧଶତାବ୍ଦୀର ଜୀବନଯାତ୍ରା: କିଞ୍ଚିତ୍ ସୂଚନା

ନିରୁପମା ଆଚାର୍ଯ୍ୟ

ସାହିତ୍ୟିକ ଶାନ୍ତନୁ କୁମାର ଆଚାର୍ଯ୍ୟ ଓଡ଼ିଆ ପାଠକମାନଙ୍କ ପାଇଁ ସାମାନ୍ୟ ଦୁର୍ବୋଧ । ମୁଁ ଯଦି ତାଙ୍କ ସ୍ତ୍ରୀ ନ ହୋଇଥାନ୍ତି, 'ନରକିନ୍ନର' ଲେଖା ହେଲାବେଳେ ତାଙ୍କ ପାଖରେ ନ ଥା'ନ୍ତି ତେବେ ମୋ ପାଇଁ ମଧ ସେ କିଞ୍ଚିତ୍ ଦୁର୍ବୋଧ ହୋଇ ରହିଥାନ୍ତେ । ପ୍ରଥମ ଉପନ୍ୟାସ 'ନରକିନ୍ନର' ଠାରୁ ଏବର ଉପନ୍ୟାସ 'ଅନୋମାର କନ୍ୟା' ମଝିରେ ଚାଳିଶ ବର୍ଷର ବ୍ୟବଧାନ । ଏ ମୋ ପାଠ ପଢ଼ାର ସମୟ । ମୋ ବୋଉ ଭାଷାରେ ''ତୁ ଯଦି ଶାନ୍ତନୁଙ୍କୁ ବାହା ନ ହୋଇ ଇଞ୍ଜିନିୟର କି ଡାକ୍ତରଟିଏ ବାହା ହୋଇଥାନ୍ତୁ ତୁ କ'ଣ ଏମିତି ଜୀବନଯାପନ କରିଥାନ୍ତୁ ନା 'ଜୀବନ-ଯାତ୍ରା' ଲେଖିଥାନ୍ତ୍ ?'' ଏ ହୁଏତ ସତ୍ୟ । 'ନରକିନ୍ନର' ଲେଖିଲା ବେଳେ ପ୍ରତିଟି ପରିଚ୍ଛେଦ ଲେଖିସାରି ବଡ଼ ପାଟିରେ ପଢ଼ି ମତେ ଶୁଣେଇବେ ଓ ତା' ଉପରେ ଆଲୋଚନା କରିବେ । ମୁଁ ନୀରବ ଶ୍ରୋତା । ଅଳ୍ପଦିନ ପରେ ମୁଁ ଜାଣି ପାରିଲି ଏ ଆଲୋଚନା ନୁହେଁ କି ମତେ ବୁଝଉନାହାଁନ୍ତି । ଏ ହେଲା ପରବର୍ତ୍ତୀ ପରଛେଦ ପାଇଁ ପ୍ରସ୍ତୁତ ପବ । ବଡ଼ ପାଟିରେ ଚିନ୍ତା । ଏମିତି ଶୁଣି ଶୁଣି ମୁଁ ସେ ସ୍କୁଲ ଭିତରକୁ ପ୍ରବେଶ କରିଗଲି । ତାଉକ ଆଲୋଚନା ଶୁଣିବାରେ ଆଗ୍ରହ ବଢ଼ିଲା ।

ଘରୋଇ କଥାବାର୍ତ୍ତା ତ ସେ ହୁଅନ୍ତି ନାହିଁ । ତେଣୁ କଥାବାର୍ତ୍ତା ଆରମ୍ଭ କରିବା ପାଇଁ ମତେ ପ୍ରସ୍ତୁତ ହେବାକୁ ହୁଏ । କଥା ଆରମ୍ଭ କରିବି କୋଉଠୁ ? ବଡ଼ ଝିଅ ଭାଷାରେ- "ମମୀ ଖୋଜି ଖୋଜି ସେଇ ବହି ପଢ଼େ, ଯାହା ନନା ନ ପଢ଼ିଛନ୍ତି ।" ଏ କଥା ମଧ ସତ୍ୟ । ଥରେ ଆରମ୍ଭ ହୋଇଗଲେ ସାବଲୀଳ ହୁଏ କଥାବାର୍ତ୍ତାର ଧାରା । ଏ ହେଲା ପ୍ରଥମ ଜୀବନ । ଥରେ ପାହାଚ ଚଢ଼ିବା ଶିଖିଗଲା ପରେ ଆଉ କ'ଣ ଅସୁବିଧା ?

ଥରେ ମତେ ଜଣେ ବନ୍ଧୁ ପଚାରିଥିଲେ- "କେମିତିଆ ଜୋଇଁ ପାଇଲେ ତୁମେ ଖୁସି ହେବ ?" ମୋର ଉତ୍ତର ଥିଲା- "Science Student" ଟିଏ ହୋଇଥିବ । ଆଉ ସାଧାରଣ ମଣିଷଟିଏ ହୋଇଥିବ- ଯେ ସଂସାର କରିବ । ପରିବାରକୁ ସୁଖି କରିବାକୁ ଯେ ଜୀବନର ସଫଳତା ବୋଲି ଭାବିବ । କାହିଁକି ନା ଅସାଧାରଣ ବ୍ୟକ୍ତିତ୍ୱର ସ୍ତ୍ରୀ ହେବା ଭାରି କଷ୍ଟ । ସେ ତା ସ୍ୱପ୍ନ ପଛରେ ଗୋଡ଼େଇଥିବ ଜୀବନ ସାରା । ମନଥିଲେ ମଧ ପରିବାରକୁ ସ୍ତ୍ରୀ ପିଲାଙ୍କୁ ଦେଖିବ କେତେବେଳେ ?''

ଥରେ ପଚାରିଲି- "ପିଲାଙ୍କୁ ଟିକେ ଦେଖୁନ କାହିଁକି ? ଖାଲି ଦୋକାନକୁ ଯାଇ ସବୁଠାରୁ ଭଲ ଦାମ୍‌ର ଜାମାଖଣ୍ଡେ କିଣିଦେଲେ ଦାୟିତ୍ୱ ସରିଲା ?" ଉତ୍ତର ଦେଇଥିଲେ- "କ'ଣ ଦେଖିବି ? ସେମାନେ କ'ଣ ଦେଖୁ ନାହାନ୍ତି, ତାଙ୍କ ନନା ଦଶ ଘଣ୍ଟା ଟେବୁଲ ପାଖରେ ବସିଛନ୍ତି ?"

କହିଥିଲି- "ହିଁ ଦେଖିଲେ ଯଦି ସବୁ ଶିଖି ଯାଉଥାନ୍ତେ- ଭାରତର ଆଗଣିତ ଜନତା ଗାନ୍ଧିଜୀଙ୍କୁ ଦେଖିଲା ପରେ ସମସ୍ତେ ତ ଦାଣ୍ଡୀମାର୍ଚ୍ଚ କରୁଥାନ୍ତେ; ଏମିତି ତସ୍କର ହୋଇଛନ୍ତି କାହିଁକି ? ତୁମ ଭାଗ୍ୟ ଭଲ- ତୁମର ଖାଲି ଝିଅ । ଯାହା ହେଲେ ବି ଦୋଷ ଦେବେନି । ସେମିତି ନନା ନନା ହେଉଥିବେ । କାନ୍ଦୁଣୁ ମାନ୍ଦୁଣୁ ହଉଥିବେ ।" କାହାରି ହାତ ଧରି ଚଳାଇବା ଲୋକ ସେ ନୁହଁନ୍ତି । ନିଜ ପିଲାଙ୍କୁ ନୁହେଁ, କି କାହାକୁ ନୁହେଁ ।

ପିଲାଏ ଛୋଟ ହୋଇଥାନ୍ତି । କିଛି ଗୋଟେ ବହି ପଢ଼ି ନ ଶୁଣାଇଲେ ବଡ଼ ଝିଅକୁ ଜମାରୁ ନିଦ ହବନି । ସେଦିନ ଖଟ ଉପରେ ପେଟେଇ କରି ଶୋଇ ମୁଁ ଗଡ଼ଗଡ଼ କରି କ'ଣ ଗୋଟେ ବହି ପଢୁଥାଏ । ଦିପଟେ ଦୁଇଝିଅ ଶୋଇଛନ୍ତି । ରାତି ଦଶଟା ପାଖାପାଖି ହବ । ଭଙ୍ଗା ଭଙ୍ଗି ହୋଇଥିବା ଖବର କାଗଜ (ପ୍ରଜାତନ୍ତ୍ର) ଖଣ୍ଡେ ଆଣି ମୋ ପଢୁଥିବା ବହି ଉପରେ ପକାଇ ଦେଲେ । ସେଇ ଭାଙ୍ଗ ଜାଗାରେ ଖବରଟିଏ ବାହାରିଛି । ଆଖିରେ ପଡ଼ିଲା । ଡ଼ି.ପି.ଆଇ. ଅଫିସର ସାଇନସ୍‌ର ସ୍ପେଶିୟାଲ୍ ଅଫିସର୍ ଶ୍ରୀ ଅଗାଧୁ ମିଶ୍ର ସରକାରୀ ଅବହେଳାରୁ ଅନେକ ଦିନରୁ ପ୍ରମୋସନ୍ ପାଇବାରୁ ବଞ୍ଚିତ ହୋଇ, ଅବସାଦ ଗ୍ରସ୍ତ ଅବସ୍ଥାରେ କଟକର ଲଣ୍ଡା ଦେଉଳରେ ବେକରେ ଦଉଡ଼ି ଦେଇ ଆତ୍ମହତ୍ୟା କରିଛନ୍ତି । ଅଚିହ୍ନା ମଣିଷଙ୍କ ବିଷୟରେ ଖବରଟିଏ । ମୁଁ ତାକୁ ହଜମ କରି ଦେଇଥାନ୍ତି । କିନ୍ତୁ ତା ତଳକୁ ତାଙ୍କର ଚିଠିଟିଏ ଦଶମ ଶ୍ରେଣୀର ପୁଅ ପାଖକୁ । ଭାଷା ସମ୍ପୂର୍ଣ୍ଣ ମନେ ପଡୁନି । ଭାବ ହୃଦୟସ୍ପର୍ଶୀ । ଅନ୍ୟ ସବୁ କଥା ସହିତ- "ତୁମକୁ ପାଠ ପଢ଼ାଇବା ପାଇଁ ବଞ୍ଚିରହି ପାରିଲି ନାହିଁ । ମୋର ଏତିକି ଆଶା ପୂରଣ କରିବ । ସମସ୍ତେ ପାଠ ପଢ଼ି ମଣିଷ ହେବ ଇତ୍ୟାଦି ।" ସେଇ ଖବର କାଗଜ ଉପରେ ମୁଣ୍ଡ ରଖି ବହୁତ କାନ୍ଦିଲି ମୁଁ । ମତେ କାନ୍ଦୁଥିବାର ଦେଖି ଫେରିଗଲେ ଓ କିଛି ସମୟ ପରେ ଆଉ ଖଣ୍ଡିଏ କାଗଜ ଆଣି ସେଇ ଖବରକାଗଜ ଉପରେ ରଖିଦେଇ ଗଲେ । ତାକୁ ପଢ଼ିଦେଲା ପରେ ମୋ ଭିତର ଥଣ୍ଡା ହୋଇଗଲା । କେହି ଅରକ୍ଷିତ ନୁହେଁ ଏ ସଂସାରରେ । କେହି କୋଉଠି ହେଲେ ଠାକୁରଙ୍କ ମାଧ୍ୟମ ହୋଇ ଠିଆ ହୋଇଥିବ ବିପଦବେଳେ । ଏଇ ବିଶ୍ୱାସ ସାହାସ ଦେଲା ମତେ । ମୋ ଆଖିରୁ ଲୁହ ଶୁଖିଲା ।

ପ୍ରଜାତନ୍ତ୍ର ସମ୍ପାଦକଙ୍କୁ ପତ୍ରଟିଏ ଲେଖିଛନ୍ତି-

ଶିଶୁ ସାହିତ୍ୟ ପାଇଁ ସେ ବର୍ଷ ସେ ପାଇଥିବା ଜାତୀୟ ପୁରସ୍କାର (୧୯୬୩) ଏକ ହାଜର ଟଙ୍କା ଅଗାଧୁ ମିଶ୍ରଙ୍କ ପିଲାଙ୍କୁ ଦାନ କରିବାର ପ୍ରତିଶ୍ରୁତି । ସେ ଟଙ୍କା ମିଳିବାର ଋରି ଛଅ ଦିନ ପରେ-

ଗ୍ରୀଷ୍ମ ଛୁଟିରେ ତ ଦରମା ବନ୍ଦ । ଏକ ହଜାର ଟଙ୍କା ସେତେବେଳକୁ ତିନି ମାସର ଦରମା । ମତେ ଡାକି କହିଲେ- "ଶୁଣ ଏଇଲେ ତ ଆମ ପାଖରେ ଟଙ୍କା ନାହିଁ । ସେ ଟଙ୍କା ତୁମେ ରଖ, ଖର୍ଚ୍ଚ କରିବ । କଲେଜ ଖୋଲିଲେ, ମୁଁ ଦରମା ପାଇଲେ ତାଙ୍କ ପାଖକୁ ପଠାଇଦେବି ।"

ତାଙ୍କ ହାତ ଧରି ନେଇ ଆସିଥିଲି ଶୋଇବା ଘରକୁ । ଖଟ ଉପରୁ ଗୋଡ଼ ତଳ ପାଖ ଶେଜ ଟେକି ଦେଇ ଦେଖାଇ ଦେଇଥିଲି ''ସେଠି ରହିଚି ଦଶଖଣ୍ଡ ଶହେ ଟଙ୍କିଆ ନୋଟ୍ । କହିଥିଲି, ଦେଖ, ଯାକୁ ମୁଁ ଟଙ୍କା ବୋଲି ଭାବି ନାହିଁ । ଆଲମାରୀକୁ ବି ନେଇନାହିଁ । କାଗଜ ଦଶଖଣ୍ଡ ପରି ଲାଗିଛି ମତେ । ଏ ତ ଆମର ନୁହେଁ । ତାକୁ ଖର୍ଚ୍ଚ କରିବି କେମିତି ? ତୁମ ପାଖରେ ଯଦି ସତରେ ଜମାରୁ ଟଙ୍କା ନାହିଁ, ତେବେ ଏଇଥିରୁ ମନିଅର୍ଡର ଖର୍ଚ୍ଚ ଦଶଟଙ୍କା କାଢ଼ିନେଇ ନଶହନବେ ଟଙ୍କା ତାଙ୍କ ପାଖକୁ ଏଇଲେ ପଠେଇ ଦିଅ ।" ଆଜି ଭାବୁଚି, ସେଇ ହଜାରେ ଟଙ୍କା ବହୁ ଗୁଣିତ ହୋଇ କେତେକେତେ ରୂପରେ ପରବର୍ତ୍ତୀ ସମୟରେ ପହଞ୍ଚିଯାଇଛି ତାଙ୍କ ପାଖରେ ।

ଦିନେ ପଚାରିଥିଲି- "ତୁମେ ନନା ବୋଉଙ୍କୁ କେମିତି ମିଛ କଥା କହିଲ ?" (ମୋ ନନାଙ୍କ ଛାତ୍ର ସେ ଜାଣିଛି । ତାଙ୍କର ଗଭୀର ସମ୍ମାନ ତାଙ୍କୁ । ନନାଙ୍କ ଜୋଇଁ ହବାକୁ ଓ ତାଙ୍କର ତ ପିଲାଦିନୁ ମା' ନଥିଲେ; ତେଣୁ ବୋଉର ପୁଅ ହବାକୁ ସେ ମତେ ବାହାହୋଇଛନ୍ତି । ତାଙ୍କ ପୁଅ ପଣିଆର ଦାୟିତ୍ୱ ସେ ନେଇଛନ୍ତି । ମୋ ନନା ଏଇଠି ତାଙ୍କରି ପାଖରେ ଗଲେ । ଏଇ ଘରେ ତାଙ୍କର ଶୁଦ୍ଧଘର ହେଲା, ଆଉ ବୋଉ ତାଙ୍କରି ପାଖରେ ଅଛି) ମୁହଁ ଉଠାଇ ମତେ ଚାହିଁଲେ ଓ କହିଲେ- "ମିଛ କଥା ? କ'ଣ ମିଛକଥା କହିଲି ?" କହିଲି- ବୋଉ କହୁଥିଲା- ତୁମେ କହିଛ ଯେ "ତୁମ ପାଖରେ ଦଶ ହଜାର ଟଙ୍କା ଅଛି ?" ହସିଲେ । "ଆଉ କହି ନ ଥାନ୍ତି ? କେମିତି କହିଥାନ୍ତି ଯେ ମୋ ପାଖରେ ମାତ୍ର ଅଢେଇ ହଜାର ଟଙ୍କା ଅଛି: ଆଉ ମୁଁ ଘର ତିଆରି ଆରମ୍ଭ କରିବାକୁ ଯାଉଛି । ମିଛ କ'ଣ ? ଲୋନ୍ ମିଳିଯିବନି କି ?"

ସତରେ ସେଇ ଅଢ଼େଇ ହଜାର ଟଙ୍କାର ମୂଳଧନରେ ଘର ତିଆରି ଆରମ୍ଭ । ତେର ହଜାର ସରକାରୀ ଲୋନ୍- ହାତ ଧାରି ବାକି ତକ ।

ତେଇଶି ହଜାରରେ ଏ ଘର । ସାଇକେଲର ବାସ୍କେଟ୍‌ରେ ପାଣି ନୁହଁ, ତୋରାଣୀ ବୋତଲେ ଓ ବିସ୍କୁଟ୍ ପ୍ୟାକେଟ୍‌ଟିଏ । ଏଠି ତ ଦୋକାନ ବଜାର ନ ଥାଏ । ବି.ଜେ.ବି. କଲେଜ୍‌ରୁ ସହୀଦ୍ ନଗର ଦିନକୁ ଦୁଇଥର ତ ନିଶ୍ଚୟ; ବେଳେବେଳେ ତିନିଥର ମଧ୍ୟ ଯିବା ଆସିବା କରନ୍ତି । କୁହନ୍ତି- "ଯେତୋଟି ପଥର ଏ ଘରେ ଲାଗିଛି, ପ୍ରତ୍ୟେକକୁ ମୁଁ ଛୁଇଁଚି ।" କାଳୀୟ ଦଳନ ଏକଦଶ (ପରବର୍ତ୍ତୀ ସମୟରେ ସାନଝିଅର ଜନ୍ମ ତିଥି) ରେ ଶୁଭ ଦିଆ ଯାଇଥିଲା ଓ ମେ ଚାରି ଆମ ବିବାହ ବାର୍ଷିକୀରେ ଘର ପ୍ରତିଷ୍ଠା କରି ଗୃହ ପ୍ରବେଶ କଲୁ ।

ଏ ଅପନ୍ତରାରେ ଗୋଟିକିଆ ଘରଟିଏ ପାଖଯାକ ଖୋଲା ପଡ଼ିଆ- ଆଗରେ ମୋରମ ରାସ୍ତା । କାଁ ଭାଁ ସାଇକେଲ ଖଣ୍ଡେ । ନହେଲେ ସାମ୍ନା ପଥର ଖଣିରୁ ପଥର ବୋହିବା ପାଇଁ ଶଗଡ଼ ଖଣ୍ଡେ ଅଧେ । ଶହେ ଗଜ ଦୂରରେ ଟ୍ରେନ୍ ଲାଇନ୍ । ଟ୍ରେନ୍ ଯିବାର ଦୃଶ୍ୟ । ବି.ଜେ.ବି କଲେଜ କଲୋନି ଛାଡ଼ି ଏ କୁନି କୁନି ଝିଅ ଦୁଇଟାଙ୍କୁ ଧରି ଏ ଅପନ୍ତରାରେ ରହିବାକୁ ରାଜି ହେଲି ନାହିଁ ମୁଁ ।

ଯେଉଁମାନେ ଘର କରିଛନ୍ତି, ସରକାରୀ କ୍ୱାଟର ଛାଡ଼ି ଦେବାପାଇଁ ସରକାର ନୋଟିସ୍ ଦେଇଛନ୍ତି ବୋଲି ଶୁଣି ଆସିଲେ । ସେଇଦିନ ମତେ କହିଲେ ଆମେ ଚାଲିଯିବା । ମୁଁ ରାଜି ହେଲି ନାହିଁ । ବଡ଼ ଝିଅ ୫ମ ଶ୍ରେଣୀର ବୃତ୍ତି ପରୀକ୍ଷା ଦେବାକୁ ଥାଏ; ରାମକୃଷ୍ଣ ମିଶନ ସ୍କୁଲ୍‌ରେ । ସହୀଦ୍‌ନଗରରୁ ଓଲଡ୍‌ଟାଉନ୍ କ'ଣ ଖେଳ କଥା ? ''ବାସ୍ ତୁମେ ତେବେ ଏଇଠି ଥାଅ, ମୁଁ ଯାଉଛି" କହି ଚାଲି

ଆସିଲେ ଯାଡ଼େ -ରହିଗଲେ । ରାତିରେ ଫେରିଲେ ନାହିଁ । ଖବର ନବା ଆଣିବାର କ'ଣ ବା ବ୍ୟବସ୍ଥା ଥିଲା ମୋର ?

ପରଦିନ ସକାଳୁ ନନାଙ୍କୁ ଫୋନ୍ କରି କହିଦେଲେ- "କୁନି ଆସିବ ନାହିଁ ବୋଲି କହିଲା । ମୁଁ କାଲି ରାତିରେ ଫେରି ନାହିଁ । ଏଠି ନୂଆ ଘରେ ଅଛି ।"

ନନା ବୋଉ ଟ୍ୟାକ୍ସିଟିଏ କରି ଆସିଲେ କଟକରୁ । ତାଙ୍କୁ ଏଠୁ ନେଇ ବି.ଜେ.ବି. କ୍ୱାଟରକୁ ଗଲେ ।

କଥା ଠିକ୍ ହେଲା- ଝିଅର ପରୀକ୍ଷା (୧୦ ଦିନ ଥାଏ) ସରିଲେ ଆମେ ଘରେ ଛାଡ଼ିବୁ ।

ପରୀକ୍ଷା ସରିଲା । ପରଦିନ ସକାଳୁ ଟ୍ରକ୍‌ଟିଏ ଡାକି ଆଣି ସବୁ ଜିନିଷ ତା' ଉପରେ ଅଜାଡ଼ି ଦେଇ (କିବା ଜିନିଷ ସେତେବେଳେ ଥିଲା ବା ଆମ ଘରେ) ଚାଲି ଆସିଲେ । ଦିହି' ପହରକୁ ମୁଁ ରିକ୍ସା ଖଣ୍ଡକରେ ପିଲାଙ୍କୁ ଧରି ଏଠି ପହଞ୍ଚିଲା ବେଳକୁ ଏକା ଏକା ସବୁ ସଜାଡ଼ି ଦେଇଛନ୍ତି । ଖଟ ବିଛଣା ଠାରୁ ଆରମ୍ଭ କରି ରୋଷେଇ ସରଞ୍ଜାମ ପର୍ଯ୍ୟନ୍ତ । ତା'ପରଦିନ କ୍ୱାଟର୍ ହସ୍ତାନ୍ତର କଲେ ।

ପ୍ରତିଟି ପଥରକୁ ହାତରେ ଛୁଇଁଥିବା ଏ ଘର ତାଙ୍କୁ ବହୁ ପ୍ରକାରେ "ଓ" କରିଚି ।

ସାନ ଝିଅର ଜନ୍ମ ଏଇଠି । ତାଙ୍କ ତିନି ଝିଅ ପାଠ ପଢ଼ିଲେ ଏଇଠି । ଏଇଠୁ ଶାଶୁ ଘରକୁ ଗଲେ । ଦୁଇଟି ନନାଙ୍କୁ ବିଦାୟ ଦେଲୁ ଏଇ ଘରୁ । ତାଙ୍କର ଗୋଟିଏ ଝିଆରୀ; ମୋର ଗୋଟିଏ ଭଉଣୀର ବାହାଘର ମଧ୍ୟ ଏଇ ଘରେ ହେଲା ।

ଲେଖକ-ସାମୁଖ୍ୟର ମୂଳଦୁଆ ପଡ଼ିଲା ଏଇ ଘର ଛାତ ଉପରେ । କି ଉତ୍ସାହ ଉଦ୍ଦୀପନା ଭିତରେ ଆରମ୍ଭ ତାର । କେତେ ସ୍ୱପ୍ନ ଓଡ଼ିଆ ଲେଖକ ସମାଜର । ଅଢ଼େଇ ବର୍ଷଯାଏ ଚାଲିଲା ସେ ପୂର୍ଣ୍ଣ ପ୍ରାଣରେ । ପ୍ରତି ମାସରେ ସଭ୍ୟମାନଙ୍କ ଭିତରୁ କାହାରି ଜଣକ ଘରେ ସଭା ଅନୁଷ୍ଠିତ ହୁଏ । ଅଖିଳ ମୋହନ ପଟ୍ଟନାୟକ ସଭାପତି, ଶାନ୍ତନୁ କୁମାର ଆଚାର୍ଯ୍ୟ ସେକ୍ରେଟେରୀ । ଲେଖକ ଲେଖିକାମାନଙ୍କୁ ନିମନ୍ତ୍ରିତ ଭାବରେ ଦେଖିବାର କି ଆନନ୍ଦ ଆମର । ପଚାଶ ପାଖାପାଖି ସାହିତ୍ୟିକ ତାଙ୍କ ପରିବାର ସହିତ ଏକାଠି ହେଉଥାନ୍ତି । ଗହ ଗହ କମ୍ପୁଥାଏ ସେ ଆସର ।

ପିଲାଦିନେ ବହି ପଢ଼ି ଲେଖକଙ୍କୁ ଦେଖିବାର ଲୋଭ ଏଇଠି ପୂରଣ ହେଲା ମୋର । 'ଖାରବେଳ'ର ଲେଖକ ନୃସିଂହ ଚରଣ ପଣ୍ଡା; 'ସ୍ମୃତିର ଅତଳେ'ର ଲେଖକ ବାମା ଚରଣ ମିତ୍ର; 'ସିଂହକଟି'ର ଲେଖକ କୃଷ୍ଣ ପ୍ରସାଦ ମିଶ୍ର , 'ଝଡ଼ର ଈଗଲ ଓ ଧରଣୀର କୃଷ୍ଣସାର'ର ଲେଖକ ଅଖିଳ ମୋହନ ପଟ୍ଟନାୟକ; 'କପୋତ ପକ୍ଷୀ ଗୁରୁମୋର'ର ଲେଖକ ମହାପାତ୍ର ନୀଳମଣି ସାହୁ । 'ଅସ୍ତିତ୍ୱବାଦର ମର୍ମକଥା'ର ଲେଖକ ଶରତ ମହାନ୍ତି; 'ଯନ୍ତ୍ରାରୂଢ଼'ର ଲେଖକ ଚନ୍ଦ୍ରଶେଖର ରଥ ଇତ୍ୟାଦି । ଲେଖିଲେ ଏମିତି ଲମ୍ବି ଯିବ ଏ ଧାରା । ଏମାନେ ସମସ୍ତେ ସତେକି ଏକ ପରିବାରଭୁକ୍ତ ହୋଇଥିଲେ । ସେ ପରିବାରର ନାଁ ଥିଲା 'ଓଡ଼ିଆ ଭାଷା ସାହିତ୍ୟ' ଏବଂ ଯାହାର ଉନ୍ନତି ଥିଲା ଏମାନଙ୍କର ଏକାନ୍ତ ଲକ୍ଷ୍ୟ ।

କିନ୍ତୁ ଓଡ଼ିଶାର ଲୋକେ କାହିଁକି କେଜାଣି ବେଶୀଦିନ ଏକାଠି ଚାଲି ପାରନ୍ତି ନାହିଁ । ବଙ୍ଗଳାର ରାମକୃଷ୍ଣ ମିଶନ କୋଉ କାଳର । ବଢ଼ି ବଢ଼ି ଚାଲିଚି ସେ ଅନୁଷ୍ଠାନମାନଙ୍କ କାୟା । ଆମର କ'ଣ ହୁଏ

କେଜାଣି ? ଏ ପାଠୁଆ ଲୋକମାନେ ବି ଚଳାଇ ପାରିଲେ ନାହିଁ । ଅଢ଼େଇ ବର୍ଷ ପରେ ଭାଙ୍ଗିଗଲା ତା ଉଷୁମ । ଏଇ ଘରୁ ଆରମ୍ଭ ହୋଇ ଏଡ଼େ ଚଞ୍ଚଳ ସେ ସ୍ୱପ୍ନ ଭାଙ୍ଗିଗଲା ବୋଲି ଶାନ୍ତନୁ ଆଚର୍ଯ୍ୟ ଦୁଃଖ ପାଇଛନ୍ତି ଜାଣିଚି ।

ଶିଷ୍ୟ କେବଳ ଗୁରୁ ଖୋଜନ୍ତି ନାହିଁ । ଗୁରୁ ମଧ ଶୁଭ ସଂସ୍କାର ଯୁକ୍ତ ଶିଷ୍ୟ ଖୋଜିଥାନ୍ତି । ସେହି ନ୍ୟାୟରେ ଏ ଘରେ ଭେଟିଥିଲି ଓଡ଼ିଆ ସାହିତ୍ୟ ଆକାଶର ଉଜ୍ୱଳ ନକ୍ଷତ୍ର ଶ୍ରୀ ଗୋପୀନାଥ ମହାନ୍ତିଙ୍କୁ । ଏ ଲେଖକଙ୍କ ସହିତ ମୋର ପରିଚୟ ହୁଏ ଅଷ୍ଟମ ଶ୍ରେଣୀରେ । ପରିଚୟର ମାଧ୍ୟମ ଥିଲେ ତାଙ୍କ ଜିଲି, ବିଲି, କାଜୋଡ଼ିମାନେ । ସେମାନଙ୍କୁ ପଢ଼ିଲା ବେଳେ ସେଇ ପିଲାମନ ମୋର ଲେଖକଙ୍କ ବିରୁଦ୍ଧରେ ବିଦ୍ରୋହ କରି ଉଠିଚି ବାରମ୍ବାର । ମନେ ହୋଇଛି ଦେଖାହେଲେ ପଚାରି ଦିଅନ୍ତି "ତୁମେ ପରା ସ୍ରଷ୍ଟା, ଏମାନଙ୍କୁ ଜନ୍ମ ଦେଇଚ । ତାଙ୍କୁ ଏମିତି କଲ କାହିଁକି ? ବଞ୍ଚିବାର ସର୍ବନିମ୍ନ ଆବଶ୍ୟକତା ଖାଇବା ପିଇବାରେ ଅନ୍ୱେଷଣ ଛଡ଼ା, ଜୀବନର ସୁଖ ବୋଲି କ'ଣ ବା ତାଙ୍କୁ ଦେଇଛ ? ବଣରେ ବୁଲିବା ଛଡ଼ା ଆଉ କ'ଣ ବା ସୁଖ ରଖିଲ ଯେ ? ତାଙ୍କ ଭଲ ପାଇବାର ମୂଲ୍ୟ ବି ରଖିଲନି ? କାହିଁକି ଜିଲିର ପ୍ରେମିକ ବାଗଲା ନେଇ ଚାଲିଯିବ ମାଣ୍ଡିଆଜାନିର ପ୍ରେମିକା କାଜୋଡ଼ିକୁ; କାହିଁକି ଅପମାନିତ । ଜିଲିର ମନ ବୁଝେଇବାକୁ ଯାଇ ବିଲି କହୁଥିବ ?

"ଦିଶାରୀର ତଣ୍ଟି ବସିଚି ଭଲ ବୋଲି ପାରିଲା ନାହିଁ । କୋଉଠୁ ଖଣ୍ଡେ ଫଟା ଢ଼ୋଲ ମାଗିଆଣିଛନ୍ତି ଯେ ଭଲ ବାଜୁନାହିଁ । ଆଉ ବର, କନ୍ୟା କାଜୋଡ଼ି ତ କୋଉ କାଳର ବୁଢ଼ୀ । ମାଣ୍ଡିଆ ତାକୁ ଓଟାରି ଓଟାରି ଲମ୍ୱେଇ ପକେଇଚି । ଆଉ ବର ! ଠିକ୍ ଘୋଡ଼ା ପରି ମୁହଁ କରି ଥିରି ଥିରି ବାଟ ଚାଲି ଚାଲି ଯାଉଚି ।" ଏତକି ପଢ଼ି ଦେଲା ପରେ ମୁଁ ଅପମାନରେ ଜଳିଯାଏ । କାହିଁକି କଷ୍ଟ ଦେଲ ଏମାନଙ୍କୁ ? କାହିଁକି ସହଜ ସରଳ ପରିସମାପ୍ତି ଘଟାଇଲ ନାହିଁ ତାଙ୍କ ଜୀବନର । ତାଙ୍କୁ ଜନ୍ମ ଦେଇ କଷ୍ଟ ଦେଲ ପୁଣି ତାକୁ ପଢ଼ି ଆମକୁ କଷ୍ଟ ଦେବାର ଅଧିକାର କିଏ ଦେଇଚି ତୁମକୁ ?

ପ୍ରଥମଥର ଭେଟ ହେଲା ତାଙ୍କ ସହିତ ଏ ସହରରେ ୧୯୬୧ ମସିହାରେ । କେତେଖଣ୍ଡ ଗାଡ଼ି ବା ଥିଲା ସେତେବେଳ ଭୁବନେଶ୍ୱରରେ ? ଅନେକ ସନ୍ଧ୍ୟାରେ ତାଙ୍କ ଗାଡ଼ି ଆମ ବି.ଜେ.ବି. କଲେଜ୍ କ୍ୱାଟର ଆଗରେ ରୁହେ । ଗୋପୀନାଥ ମହାନ୍ତିଙ୍କ ଗାଡ଼ି ଆମ ଦାଣ୍ଡରେ- ଭାରି ଗର୍ବ ଆମର ।

କେତେ ସନ୍ଧ୍ୟା କଟିବ । ରାତି ବଢ଼ିବ । ସେ ଗପ ସରୁନଥିବ । ସେ ଆଲୋଚନା ଖାଲି ଓଡ଼ିଆ ଭାଷା ସାହିତ୍ୟର ନୁହେଁ; ସାହିତ୍ୟରେ ବିଶ୍ୱ ସାହିତ୍ୟ, ବିଜ୍ଞାନରେ ବ୍ରହ୍ମାଣ୍ଡ ତତ୍ତ୍ୱ, ଦର୍ଶନରେ ଭଗବତ୍ ଦର୍ଶନ; ପୁଣି ବିଶ୍ୱମାନବର ଚରମ ଅଭିବ୍ୟକ୍ତିର କଥା । ଏ ତାତ୍ତ୍ୱିକ ଆଲୋଚନାର କ'ଣ ଶେଷ ଅଛି ? ମାଉସୀତ ଏ ଅସରନ୍ତି ଆଲୋଚନା ସହିତ ଅଭ୍ୟସ୍ତ । ବ୍ୟସ୍ତ ହୁଅନ୍ତି ନାହିଁ । ଟିଟା ମୋ ଦୁଇ ଝିଅଙ୍କ ସାଙ୍ଗରେ ଖେଳ ଗପ ପରେ, ଦିନେ ଦିନେ ଖାଇ ପିଇ ଶୋଇ ପଡ଼େ । ସେମିତି ନିଦରେ ଟେକା ହୋଇଯାଏ ଗାଡ଼ିକୁ । ଏ ସମ୍ବନ୍ଧ ଅନ୍ତରଙ୍ଗରୁ ଅନ୍ତରଙ୍ଗତମ ହେଲା । ବି.ଜେ.ବି. କଲେଜ ଛାଡ଼ି ଆମେ ସହୀଦ ନଗର ଆସିଲୁ । ଆମ ଘର ପାଖ ହେଲା ପରଜାର ଲେଖକଙ୍କ ଘରକୁ । ରାତି ଏଗାର ବାଜିଗଲେ ଯଦି କେବେ ଘରକୁ ନ ଫେରିଛନ୍ତି ତ, ଜାଣିଯାଏ ସେଇଠି ଥିବେ । ଆଉ ଏତେ ରାତିଯାଏ କାହାଘରେ ରହିହେବ ?

ମୁଁ ତାଙ୍କୁ ଯେତେ ଜାଣିଥିଲେ ମଧ କେବେ ସାମ୍ନାସାମ୍ନି ବସି କଥାବାର୍ତ୍ତା ହୋଇନି । କ'ଣ କଥା ହେବି, କେମିତି ମାଡ଼ି ମାଡ଼ି ପଡ଼େ ମତେ । ଦିନେ ଦିହିପହରେ ଥାଉ ତାଙ୍କ ଘରେ- ସାନଝିଅ ଦୁଧ ପିଇବ ନାହିଁ ବୋଲି ଜିଦି କରୁଥାଏ । ଦୁଆର ସାରା ସେ ଦୌଡୁଥାଏ । ମୁଁ ଦୁଧ ଗିଲାସକ ଧରି ତା ପଛରେ ଗୋଡ଼େଇଥାଏ । ମୁଁ ତାକୁ ବୁଝଉଥିବାର ସେ ଦେଖୁଛନ୍ତି । ସେ ବାଟେ ଗଲାବେଳେ ତାକୁ କହିଲେ- "ଦୁଧ ପିଇଦିଅ- ନହେଲେ ବାଘ ଆସିବ ।" ସେ ଚାଲିଗଲେ ।

ପାଖରେ ହଠାତ୍ ମହାବଳ ବାଘର ଗର୍ଜ୍ଜନରେ ମୁଁ ଚମକି ପଡ଼ିଲି । ଝିଅ ଦୌଡ଼ି ଆସି ମତେ ମାଡ଼ି ବସିଲା । ପରକାର ସ୍ରଷ୍ଟା ଯେ ରୋଷେଇଘର ପଛପଟକୁ ଯାଇ ଏମିତି ବାଘ ଗର୍ଜ୍ଜନ କରିଛନ୍ତି ତାଙ୍କୁ ଝର୍କାବାଟେ ଦେଖିଲା ପରେ ମଧ ମତେ ବୁଝିବାକୁ ସମୟ ଲାଗିଲା । ୧୯୬୧ରୁ୧୯୯୧- ନିରବଚ୍ଛିନ୍ନ ଭାବରେ ଏ ସମ୍ପର୍କ ।

ସେ ଥିଲେ ତାଙ୍କ ସମୟର ସାହିତ୍ୟିକମାନଙ୍କର ମେରୀଖୁଣ୍ଟ- ତାଙ୍କୁ ଇ ମଝିରେ ରଖି ଘୂରୁଥିଲା ସେ ସମୟର ଯୁବପିଢ଼ି । ଏବେ କେତେ ବହି, କେତେ ପୁସ୍ତକ ପ୍ରଦର୍ଶନୀ, କେତେ ସମ୍ବାଦ ପତ୍ର, କେତେ ମ୍ୟାଗାଜିନ୍ କିନ୍ତୁ କାହିଁକି କେଜାଣି ସେ ଅନ୍ତରଙ୍ଗତା ଆଖିରେ ପଡୁନାହିଁ । କେଜାଣି ମେରୀଖୁଣ୍ଟିଟିଏ ପାଇନାହାନ୍ତି ବୋଧେ ଏବର ଯୁବ ସାହିତ୍ୟିକମାନେ । ପ୍ରତ୍ୟେକ ଏକା ଏକା ଠିଆ ହୋଇଛନ୍ତି । ନହେଲେ ଏ ଘରେ ସାହିତ୍ୟିକ ଆସର ଦେଖୁ ନ ଥାନ୍ତି ମୁଁ ଏବେ ?

ଏ ଘର ତାଙ୍କ ସାଧନାର ପୀଠ । 'ତିନୋଟି ରାତିର ସକାଳ', 'ଦକ୍ଷିଣାବର୍ତ୍ତ', 'ଶକୁନ୍ତଳା' ଠାରୁ 'ଅନୋମାର କନ୍ୟା' ପର୍ଯ୍ୟନ୍ତ ସମସ୍ତେ ଜନ୍ମଗ୍ରହଣ କରିଛନ୍ତି ଏଇଠି । ଆଉ ଶହ ଶହ ଚରିତ୍ର ତ ରୂପ ନେଇଛନ୍ତି ଗଳ୍ପ ମାଧମରେ । ସେମାନେ ପୁଣି ସମସ୍ତେ ମିଶି ତାଙ୍କୁ ଆନନ୍ଦ ଦେଇଚନ୍ତି, ଆଭ୍ୟର୍ଥନା କରିଛନ୍ତି, ପୁରସ୍କୃତ କରିଛନ୍ତି ଜାତୀୟ ସ୍ତରରେ ।

୧୯୭୦/୭୧ ର କଥା ହେବ ବୋଧେ । ସେଦିନ ସକାଳୁ ମୁଁ କଟକ ବାହାରି ଗଲି । ଦଶଟି ଟଙ୍କା ମୋ ବ୍ୟାଗ୍‌ରେ। ନବେ ପଇସା ତ ବସ୍ ଭଡ଼ା । ଆଉ ରିକ୍ସା ଭଡ଼ା ଦୁଇଟଙ୍କା । ବାସ୍- ମାସର ଶେଷ ଶେଷ ବେଳ । ଘରେ ଦୁଇଶହ ଟଙ୍କା ଥିଲା । ଆମର ତ ଆଲମାରୀରେ ଚାବି ଲାଗିଥାଏ । ମୁଁ ଚାଲିଗଲା ପରେ ସେ ଘରୁ ବାହାରି ଯାଇଛନ୍ତି ଯେ ଫେରିଲେ ରାତି ଦଶଟାରେ । କବାଟ ଖୋଲିଲି । ପ୍ୟାକେଟ୍‌ଟିଏ ମୋ ହାତକୁ ବଢ଼ାଇ ଦେଲେ । ଖୋଲି ପକାଇଲି । ଦି ଖଣ୍ଡ ଇଂରାଜୀ ବହି । ସେ ବହିକୁ ସେମିତି ସେଇଠି ଟେବୁଲ୍ ଉପରେ ଥୋଇ ଦେଇ ଆମେ ଭିତରକୁ ଗଲୁ । ଏତେ ରାତିରେ ସେ ବହିକୁ ଖୋଲି ଦେଖିବାର ଆଗ୍ରହ ମୋର ଆଉ ନଥିଲା । ପରିଦିନ ବାହାରୁଥାନ୍ତି ଅଫିସ୍ । ମୁଁ ଠିଆ ହୋଇଥାଏ । ସବୁଦିନେ ସେ ବାହାରିଲା ବେଳକୁ ଏମିତି ଠିଆ ହବାତ ଅଭ୍ୟାସ । ବାହାରିଗଲା ପରେ ଦାଣ୍ଡ କବାଟ ବନ୍ଦ କରି ଆସିବି । ଏଥର ଓଲଟେଇଲି ସେ ବହି ପ୍ୟାକେଟ୍‌ଟିକୁ । ଆଖିରେ ପଡ଼ିଲା କ୍ୟାସ୍‌ମେମୋଟିଏ । ୧୯୮ ଟଙ୍କା। ମୋ ଆଖି କ'ଣ ଦେଖୁଛି ସେ ଦେଖି ପାରିଲେ ନିଶ୍ଚୟ । କହିଲେ "ମୁଁ ଜାଣିଚି ତୁମ ପାଖରେ ଆଉ ଟଙ୍କା ନାହିଁ । କିନ୍ତୁ ଏ ବହି ତ ସବୁବେଳେ ମିଳେନି । ସେଥିପାଇଁ କିଣି ଆଣିଲି । ଏ ଜନ୍ମରେ ତ କିଛି ହେଲାନି । ଏତକ ପଢ଼ା ହୋଇଥିଲେ ଆର ଜନ୍ମକୁ ପ୍ରାରବ୍ଧ ହୋଇଥିବ ।"

ତାପରେ ହଠାତ୍ କଣ ଭାବିଲେ କେଜାଣି, ଏକ ଅସ୍ୱାଭାବିକ ପ୍ରଶ୍ନ ପଚାରିଲେ- "ସେତେବେଳେ ତୁମେ ମୋ ସାଙ୍ଗରେ ଥିବଟି ?" ଏମିତି କଥା ସେ କେବେ କହନ୍ତିନି । ଚେୟାରରେ ବସି ନଇଁ ପଡ଼ି ଜୋତାର ଲେସ୍ ବାନ୍ଧୁଥାନ୍ତି । ତାଙ୍କ ପ୍ରଶ୍ନର ଉତ୍ତର ମୁଁ ଚଟ୍ କରି ଦେଲି -

"ନାଇଁ, ମୁଁ ନ ଥିବି ।"

ମୁହଁ ଉଠାଇ ଏଥର ମତେ ଚାହିଁଲେ ଓ ପଚାରିଲେ- "କାହିଁକି ?" କହିଲି- "ଦେଖ, ଏଇ ଜନ୍ମରେ ତୁମ ମୋ ଭିତରେ ଦୂରତ୍ୱ ବହୁତ । ସଂସାରର ଏ ଗହଳି ଭିତରେ ତୁମେ ମୋ ଠାରୁ ବହୁତ ଆଗରେ ଚାଲୁଥିଲେ ମଧ୍ୟ, ସାଧାରଣଙ୍କ ଠାରୁ ତୁମ ଉଚ୍ଚତା ବେଶୀ ତ, ତେଣୁ ମୁଁ ତୁମ ପାଖ ଧରି ନ ପାରିଲେ ବି ତୁମକୁ ଦେଖି ପାରୁଛି । ଆଉ ଜୀବନସାରା ଦୌଡୁଛି ତୁମ ପଛରେ । ତୁମେ ଅଟକି ଯାଇନ, କି ମୋ ହାତ ଧରି ତୁମରି ସ୍ପିଡ୍‌ରେ ଘୋଷାଡ଼ି ନେଇଯିବ, ସେ ତୁମ ପ୍ରକୃତି ନୁହେଁ ।

ଆଉ ଆର ଜନ୍ମକୁ ଯେତେବେଳେ ଏ ବହିମାନ ତୁମ ପ୍ରାରବ୍ଧ ହେବେ, ଆମ ଦୂରତ୍ୱ ଏତେ ବଢ଼ିଯିବ ଯେ ମୁଁ ତୁମକୁ ଆଉ ଦେଖି, ମଧ୍ୟ ପାରିବି ନାହିଁ । ଅନ୍ଧାଧୁଳିଆ ହୋଇ କେବଳ ଦୌଡ଼ିବା ସାର ହେବ । ତେଣୁ ମୁଁ ସେ ଦୁଃସାହସ କରିବି କାହିଁକି ?"

ମୁଁ ଜାଣିଚି ମୋ କଥା ହୁଏତ ତାଙ୍କୁ ବାଧିଥାଇ ପାରେ, କିନ୍ତୁ ଏହା ଯେ ସତ୍ୟ ।

ଏ ଗଲା ଜୀବନର ଗୋଟିଏ ଦିଗ । ଅନ୍ୟ ଦିଗଟିରେ ତ ସେ 'ଗଙ୍ଗା କହିଲେ ଥିବି, ଗାଙ୍ଗୀ କହିଲେ ଯିବି'ର ମଣିଷ ।

ନିଜ ଭୁଲ ବୁଝିପାରିଲେ କ୍ଷମା ମାଗିବା ତାଙ୍କ ପାଇଁ ଯେତିକି ସହଜ, ତାଙ୍କ ଭୁଲ କିଏ ବାଛିଦେଲେ ଚିରକାଳ ପାଇଁ ତାଙ୍କ ମୁହଁ ନ ଚାହିଁବା ମଧ୍ୟ ସେତିକି ସହଜ ।

ଉପର ଘର ଦୁଇ ବଖରା ଛାତ ପଡ଼ିଥାଏ । ଲୋକଟିଏ ଆମ ଘରେ ଥାଏ ଯେ (ତାଙ୍କରି ବୟସର ହେବ) ସେ ଉପରେ ସିଡ଼ି ଘରେ ଶୁଏ । ଘର ତିଆରି ଚାଲିଥାଏ ତ, ଛାତ ଉପରେ କିଛି ବାଲି ଜମା ହୋଇଥିଲା । ଦିନେ ହଠାତ୍ ଛାତ ଉପରକୁ ଯାଇ ଫେରି ଆସି ଚିତ୍କାର ଆରମ୍ଭ କରିଦେଲେ । କିଏ ଛାତ ଉପରେ ବାଲି ଗଦାରେ ମୁତିଛି । ଖରାପଡ଼ି ଗନ୍ଧରେ ନାକ ଫାଟିଯାଉଛି । କିଏ ଆଉ ସେଠିକି ଯିବ ? ନିଶ୍ଚେ ସୋମନାଥ । ଏତେବଡ଼ ମଣିଷଟାକୁ ଏମିତି ଗାଳି ଦେଉଥାନ୍ତି ଯେ ସହି ହବନି । ମୁଁ ଜାଣିଚି ଏ ବେଳରେ କଥା କହିଲେ ପ୍ରଳୟ । ତେଣୁ ମୁଁ କିଛି ନ କହି ସେଠୁ ଚାଲିଗଲି । ସୋମନାଥ ଥରଟାଏ ମନା କରିଦେଇ ନିର୍ବିକାର ଚିତ୍ତରେ ଘର ପୋଛୁଥାଏ । କିଛି କହୁ ନଥାଏ । ଆଠ ନଅ ବର୍ଷର ଝିଅ ଦୁଇଟି ଲାଜରେ ଦାଣ୍ଡକୁ ଚାଲିଗଲେଣି । ଶେଷ କଥା ହେଲା- ସୋମନାଥ ଏଇଲେ ବିଦା ହେବ । ଗରିବ ଲୋକଟିର ମୁହଁକୁ ଚାହିଁ ବଡ଼ ବିକଳ ଲାଗୁଥାଏ । ସହଜେ ଟିକେ ଦୁର୍ବଳିଆ ଲୋକ । ଏଠୁ ଚାଲିଗଲେ ଯେ ସାଙ୍ଗେ ସାଙ୍ଗେ କୋଉଠି ଗୋଟେ ରହିଯାଇ ପାରିବ, ଏ ବିଶ୍ୱାସ ତାର ନଥାଏ ନିଶ୍ଚୟ । ସେତେବେଳ ଆମ ଘରେ ଆହୁରି କେତେ ଲୋକ । ଜଣେ ବନ୍ଧୁ ସ୍ୱତଃ ପ୍ରବୃତ ହୋଇ ଆସି ନିଜ ଦୋଷ ସ୍ୱୀକାର କଲେ । ତାପରେ ଆଉ ଏକ ଦୃଶ୍ୟ । ସୋମନାଥ ଘର ପୋଛୁଥାଏ । ଇଏ ତା ଗୋଡ଼ ଦୁଇଟି ଯାବୁଡ଼ି ଧରି କ୍ଷମା ମାଗୁଥାନ୍ତି ।

"ମୁଁ ନଜାଣି ତୁମକୁ ଗାଳି ଦେଇଚି ସୋମନାଥ, ତୁମେ ମତେ କ୍ଷମା କରିଦିଅ"- ନନାଙ୍କର ଏମିତି କଥାରେ ଝିଅ ଦୁହିଁଙ୍କୁ ଯାହା କାନ୍ଦ ମାଡୁଥାଏ ନ କହ ।

ଆଉ ଆର ପଦକ ? ତାଙ୍କ ଦୋଷ ବାଛିଲେ ? ସେ କଥାର ଆଲୋଚନା ନ କରିଲେ ଭଲ ।

ଆମର ପରା ଢ଼ଗ ପକାନ୍ତି ଗାଁରେ-

କି କରିନାହିଁ ନଈବଢ଼ି ସୁଅ କି ସହି ନାହିଁ ନାଆ ।

କି କରିନାହିଁ ଘର ଘଇତା କି ସହିନାହିଁ ମାଆ ।

ନଈବଢ଼ି ସୁଅର ଦୋଷ ବା କଣ ? ସେ ତ ତାର ଧର୍ମ । ଏଇ ସବୁ 'ଗାଙ୍ଗୀ କହିଲେ ଯିବି' ବେଳରେ ଠାକୁର ତାଙ୍କୁ ରକ୍ଷା କବଚଟିଏ ଦେଇଛନ୍ତି । ମହାପାତ୍ର ନୀଳମଣି ସାହୁଙ୍କ ଅବଦାନ ତାଙ୍କ ଜୀବନରେ ଅତୁଳନୀୟ । ସେ ନରକିନ୍ନର ବହିରେ ଉତ୍ସର୍ଗ ପତ୍ରରେ ଯାହା ଲେଖିଛନ୍ତି "ସେ" ତାଙ୍କ ପଥ ପ୍ରଦର୍ଶକ- ପ୍ରକୃତରେ ତାହା ସତ୍ୟ । କେବଳ ସାହିତ୍ୟିକ କ୍ଷେତ୍ରରେ ନୁହେଁ ସାଂସାରିକ ଜୀବନରେ ମଧ୍ୟ ସେ ପ୍ରକୃତ ବନ୍ଧୁ ,ସାଥି,ସହଚର ।

ଦେବୀ ସରସ୍ୱତୀଙ୍କର ଅଶେଷ କରୁଣା, କି ଯୋଗରେ ପ୍ରଥମ ଋକିରି ବେଳରେ ପାରଳାଖେମୁଣ୍ଡିରେ ସେମାନଙ୍କର ଦେଖା ହୋଇଥିଲା, ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଏକାଠି ରହିଛନ୍ତି, ରହିଥିବେ ମଧ୍ୟ ।

ଏବେ ନାତି ନାତୁଣୀଙ୍କୁ ଝୁରନ୍ତି ବେଳେବେଳେ । ସବୁ ପିଲାଏ ତାଙ୍କର ରହିଲେ ଦୂରରେ, ବହୁ ଦୂରରେ । ଆମେରିକା ଯାଇ ରହିବାରେ ତାଙ୍କର ଆନନ୍ଦ ନାହିଁ । ସେ ବନ୍ଧନ ଭିତରେ ମୁଣ୍ଡ ଗଳାଇବାକୁ ସେ ରାଜି ନୁହଁନ୍ତି । ତେଣୁ ପିଲାଏ ଡାକିଲେ ଏ ବର୍ଷ ନୁହେଁ, ଆରବର୍ଷ କହି କଥା ଟାଳୁଛନ୍ତି । ଏବେ ସମୟ କଟୁଛି କମ୍ପ୍ୟୁଟର ପାଖରେ । ସେଇଠି ବସି ଲେଖାଲେଖି କରୁଛନ୍ତି । କଲମର ବ୍ୟବହାର କମିଲାଣି ତାଙ୍କର । ଘଣ୍ଟା ଘଣ୍ଟା ବସି ପଢ଼ିବା ଲେଖିବାର ଅଭ୍ୟାସ ରଖିଛନ୍ତି । ଏବେ ତାଙ୍କ ସମୟ କଟୁଚି ଚମତ୍କାର । ନହେଲେ 3rd Yearରେ ସନ୍ୟାସୀ ହେବା ପାଇଁ ହିମାଳୟ ଯିବାକୁ ବାହାରି, ଜଣେ ଅଚିହ୍ନା ଅଦ୍ଭୁତ ମଣିଷଙ୍କ ହସ୍ତକ୍ଷେପ ଫଳରେ ଭଦ୍ରକ ଷ୍ଟେସନ୍‌ରୁ ଘରକୁ ଫେରିଥିବା ମଣିଷ, 5th Yearରେ ଭଗବାନ ଅଛନ୍ତି କି ନାହିଁ ଜାଣିବାକୁ ପୋଟାସିୟମ ସାନାଇଡ୍ ଲ୍ୟାବ୍‌ରୁ ଆଣି ହାତରେ ଧରି ପରୀକ୍ଷା କରୁଥିବା ମଣିଷ, ଘରଦ୍ୱାର କରି ଝିଅ ବାହାଘର କରି ଗାଡ଼ି ଚଢ଼ି ବୁଲୁଥାନ୍ତେ ?

ସେଦିନ ନାଏଗ୍ରା ଫଲ୍‌କୁ ଦେଖିଦେଲା ମାତ୍ରେ ଆଖି ପୋଛି ପକେଇ ବାରମ୍ବାର କହୁଥାନ୍ତି, ''ଏ ଜାଗାରେ କେହି ସନ୍ଥ ପହଞ୍ଚି ନାହାନ୍ତି ।'' ଆଚାର୍ଯ୍ୟ ଶଙ୍କର ଏ ଜାଗାରେ ପହଞ୍ଚିଥିଲେ ଏ ମହା ଶିବ କ୍ଷେତ୍ରରେ ପରିଣତ ହୋଇଥାନ୍ତା । ଗଙ୍ଗା ଧରାବତରଣ କରି ଶିବଙ୍କ ଜଟା ଉପରେ ଶତଧାର ହୋଇ ବହୁଛନ୍ତି ଏଠି ।-''

ସ୍ୱୟଂ ସମ୍ପୂର୍ଣ୍ଣ ମୋହ ମୁକ୍ତ ମଣିଷ ସେ । ଆଜି ବୟସ ବଢ଼ିଲାରୁ ନୁହେଁ ସବୁଦିନେ । ନୀଳମଣିବାବୁ ମର୍ଯ୍ୟାଦାବନ୍ତ ଭାବରେ ବଞ୍ଚିବାର ପଥପ୍ରଦର୍ଶକ ହେଲେ । ମୁଁ ସଂସାର ସହିତ ଜଡ଼ିତ କରି ବାନ୍ଧି ରଖିଲି ।



# ଅନ୍ତଶ୍ଚେତନର ଶିଳ୍ପୀ ଶାନ୍ତନୁ ଆଚାର୍ଯ୍ୟ

ପ୍ରଫେସର ଆଦିକନ୍ଦ ସାହୁ

ମଣିଷ ଜୀବନର ଅଭ୍ୟନ୍ତରକୁ ଦେଖି ପାରିବା ଜଣେ ଶିଳ୍ପୀର ବଡ଼ ସାର୍ଥକତା । କଥାଶିଳ୍ପୀ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କର ବିଶେଷତ୍ୱ ହେଲା ସବୁ କଥାରେ ସବୁ ମଣିଷଙ୍କ ସବୁକିଛି ପରିଚୟ ଊର୍ଦ୍ଧ୍ୱରେ ସମସ୍ତଙ୍କର ଅନ୍ତଶ୍ଚେତନକୁ ଦେଖିବା । ମଣିଷ ଭିତରଟା କେତେ ନିଦା, ଆଉ କେତେ ପୋଲା, କେତେ ଚୈତ୍ର ଉପବନ ପରି, ଅବା କେତେ ପଙ୍କିଳ, ଆଉ କର୍ଦ୍ଦମାକ୍ତ ।

ଜଣେ ସମର୍ଥ ସାରସ୍ୱତ ଶିଳ୍ପୀ ସବୁମତେ ମଣିଷର ଅନ୍ତଶ୍ଚେତନ (Innerself)କୁ ହିଁ ଅଙ୍କନ କରିଥାଏ । କେତେ କ୍ଷୁଧା, କେତେ ଅତୃପ୍ତିର ଜାଙ୍ଗଳିକ ସେ ଅଭ୍ୟନ୍ତର । ପୁଣି କେତେ ସୃଜନଶୀଳ ସ୍ୱପ୍ନ ଓ ସଦିଚ୍ଛାର ପଦ୍ମପୋଖରୀ ପରି ସେ ଭିତର ଖଞ୍ଜାର ଦୃଶ୍ୟ ।

ଆମ କଥା ସାହିତ୍ୟର ସୁଦୀର୍ଘ ପରମ୍ପରାରେ ଶାନ୍ତନୁ ଆଚାର୍ଯ୍ୟ ଏହି ଅନ୍ତଶ୍ଚେତନର ଚିତ୍ରଣ ଯୋଗୁଁ ଭାରି ନୂଆ ଲାଗନ୍ତି । ଭାରି ଅନ୍ତର୍ମୁଖୀ ଲାଗେ ତେଣୁ ତାଙ୍କର ଗଳ୍ପ ଉପନ୍ୟାସ । ଚରିତ୍ର ଗୁଡ଼ିକ ବି ସେପରି । ଭିତରେ ଗୁମସୁମ ହୋଇ କୁହୁଳୁଥିବା ଭାବ, ଉପରକୁ ଫିଟି ପଡ଼ିବ, ଫିଟି ପଡ଼ିବ ବୋଲି ହେଉଥାଏ । ଏମିତି ଯୌଗିକ ଚରିତ୍ର (compound characters) ସବୁ ଓଡ଼ିଆ ସାହିତ୍ୟରେ ଆଗରୁ ପ୍ରାୟ ନଥିଲା । ଶାନ୍ତନୁ ଆଚାର୍ଯ୍ୟଙ୍କ ଗଳ୍ପ ଉପନ୍ୟାସର ଚରିତ୍ରସବୁ ଅଧିକାଂଶରେ ଦସ୍ତୋଭସ୍କୀୟ । ପାପ-ପୁଣ୍ୟ, ଭଲ-ମନ୍ଦର ସମଷ୍ଟିରେ ସେ ଚରିତ୍ର ସବୁ ଗଢ଼ା । ସାଧୁତା ଓ ସଇତାନି, ସେ ସବୁ ଚରିତ୍ରମାନଙ୍କରେ ମିଶାମିଶି ହୋଇ ରହିଥାଏ । ଫକୀରମୋହନ, କାଳିନ୍ଦୀଚରଣ କିମ୍ବା କାହ୍ନୁଚରଣଙ୍କ ଗଳ୍ପ ଉପନ୍ୟାସର ଚରିତ୍ରମାନଙ୍କଠାରୁ ପାଠକ ଶାନ୍ତନୁ ଆଚର୍ଯ୍ୟଙ୍କ ଚରିତ୍ରକୁ ଅଲଗା ଭାବରେ ତେଣୁ ଅନୁଭବ କରେ । ଏଇଥିପାଇଁ ଶାନ୍ତନୁ ଆଚାର୍ଯ୍ୟଙ୍କ ଚରିତ୍ର ସବୁ ଷୋଳଣା ଭଲ କିମ୍ୱା ଷୋଳଣା ମନ୍ଦ ଏପରି ଭାବରେ ଆଦୌ ଟାଇପ୍ ଚରିତ୍ର ନୁହନ୍ତି ।

ମଣିଷ ସବୁବେଳେ ଇନ୍ଦ୍ରିୟ ଦେଇ ବଞ୍ଚେ । ଏମିତି ବଞ୍ଚିବା ଭାରି କଞ୍ଚା ଓ ଉଷ୍ମ ଲାଗେ । ସେହି ଇନ୍ଦ୍ରିୟ ଦେଇ ବଞ୍ଚୁଥିବା ମଣିଷର ଜୀବନ ମଧ୍ୟ ଭାରି ଗତିଶୀଳ ଓ ଜୀବନ୍ତ ମନେହୁଏ । ଇନ୍ଦ୍ରିୟ ନିରପେକ୍ଷତା ସେଥିପାଇଁ ବେଳେ ବେଳେ ଭାରି ଅବାସ୍ତବ ଲାଗେ । ଆଦର୍ଶାୟିତ ଚରିତ୍ରସବୁ ନିଷ୍ପ୍ରାଣ ମନେ ହୁଅନ୍ତି । କାମ୍ୟୁ ଓ କାଫକାଙ୍କ ଚରିତ୍ରସବୁ ଜୀବନ୍ତ ଓ ପରିଚିତ ଲାଗିବାର କାରଣ ସେମାନଙ୍କର ଇନ୍ଦ୍ରିୟପରାୟଣତା । ଇନ୍ଦ୍ରିୟର ଶକ୍ତି ଆମ ଜୀବନକୁ ସ୍ପନ୍ଦିତ କରେ । ଆଗକୁ ବୋହିନେଇଯାଏ । ନୀତି, ଆଦର୍ଶ ବା ସେହିପରି କୌଣସି ନୈତିକ ଶ୍ଳୋଗାନ ମଣିଷକୁ କଦାପି ଗୋଟେ କଞ୍ଚା ଜୀବନ ଦାନ କରିପାରେ ନାହିଁ । କେତେ କଞ୍ଚା ଲାଗେ ଜର୍ଜର ଜୀବନ । କେତେ ସ୍ପନ୍ଦିତ ଓ ପ୍ରସାରଣଶୀଳ ସେ

ପ୍ରାଣ । କେତେ ଉନ୍ମୋଖତା ରହିଛି ତା ଜୀବନରେ । କେତେ ତେଜ ଦୀପ୍ତି ରହିଛି ତା ଆତ୍ମାର । ଫୁଲ ପରି କଅଁଳ ଓ ନିଷ୍କପଟ ଲାଗେ ତା'ର ଆତ୍ମା । ଇନ୍ଦ୍ରିୟ ମାର୍ଗରେ ବଞ୍ଚୁଥିବା ଆତ୍ମାକୁ କେହି କେବେ କଳୁଷିତ କରି ଦେଇ ପାରେନା, କାରଣ ମଣିଷର ଇନ୍ଦ୍ରିୟପରାୟଣତା ଏକ ପ୍ରାକୃତିକ ପ୍ରକ୍ରିୟା; ଯାହା ଈଶ୍ୱରଦତ୍ତ ।

ଶାନ୍ତନୁଙ୍କ ଚରିତ୍ରସବୁ ପ୍ରାୟ କେହି ନୀତି ଓ ଆଦର୍ଶର ମୁଖା ପିନ୍ଧି ନାହାଁନ୍ତି । ସେମିତି ସଂସ୍କାର ଓ ଆଟୋପର ଅର୍ଗଳି ସେମାନଙ୍କୁ ବାନ୍ଧିନେଇନି । ସେମିତି ଦୂର ଅତୀନ୍ଦ୍ରିୟତା ସଂଘ ବା ଶ୍ଳୋଗାନ ସେମାନଙ୍କୁ କବଳିତ କରିନେଇନି, ନିଷ୍ପ୍ରାଣ କରିଦେଇନି । ଯେଉଁ ଶିଳ୍ପୀ ଜୀବନର ସ୍ଖଳନ ପ୍ରତି ବିମୁଖ, ସେମାନେ ହୁଏତ ଶକ୍ତିଶାଳୀ ସାହିତ୍ୟ ଲେଖି ପାରନ୍ତିନି କାରଣ ଜୀବନ ବଞ୍ଚିବାଠାରୁ ଶକ୍ତିଶାଳୀ କିଛି ନାହିଁ । ଜୀବନବାଦୀର ସବୁ ପ୍ରବଣତା ହିଁ ବାସ୍ତବ । 'Human Passion' ହିଁ ଉଭୟ ଗଛର ଫୁଲ ଓ ଫଳ । ଯୌନ ଜୀବନ ବୃତ୍ତ ଭିତରେ ସବୁଠାରୁ ଶକ୍ତିଶାଳୀ ସମ୍ବେଗ, ଯାହା ସୁନ୍ଦର ଓ ସ୍ୱର୍ଗୀୟ । ଜୀବନ ପରିଧି ଭିତରୁ ଯୌନକୁ ବାଦଦେବା ବସ୍ତୁତଃ ଈଶ୍ୱରଙ୍କୁ ଦ୍ରୋହକଲାଭଳି; ଯାହା ବିବର୍ତ୍ତନର ଧାରକ । 'Instrument of evolution'.

ଶାନ୍ତନୁ ଆଚାର୍ଯ୍ୟ ଅନେକାଂଶରେ ଯେପରି ସ୍ଥିତିବାଦୀ, ସେହିପରି ପ୍ରକୃତିବାଦୀ । ତାଙ୍କର ଜୀବନଦୃଷ୍ଟି ଓ କଳାଚେତନା ଏହି ଭାବରେ ରଚିତ । ସେ ସୁସଜ୍ଜିତ ଡ୍ରଇଁରୁମ୍ ଭଳି ବାହାରର ପରିଶୀଳିତ ତଥା ଅଧିକ ଭଦ୍ର ମଣିଷକୁ ଚିତ୍ରଣ କରିବା ଅପେକ୍ଷା ବେଡ଼ରୁମ୍ ପରି ଅସଂଯତ ଭାବରେ ଥିବା ଅପେକ୍ଷାକୃତ ଲଙ୍ଗଳା ମଣିଷକୁ ଚିତ୍ରଣ କରିଛନ୍ତି । ତାଙ୍କ ଗଳ୍ପ ଉପନ୍ୟାସର ପ୍ରାୟ ଅଧିକାଂଶ ଚରିତ୍ର ତେଣୁ ଜୀବନ୍ତ ଓ ଚଳମାନ; ବଞ୍ଚୁଥିବା ମଣିଷ ସ୍ୱଭାବତଃ ଯେପରି ଆଚରଣ କରେ । ତାଙ୍କ ଚରିତ୍ରଗୁଡ଼ିକୁ ସେ ଅନାବଶ୍ୟକ ଭାବେ ନୀତିମାନ ଅବା ଆଦର୍ଶମାନ କରି ଆଦୌ କୃତ୍ରିମ କରି ଦେଇ ନାହାଁନ୍ତି । ତାଙ୍କ ଗଳ୍ପ ଉପନ୍ୟାସରେ ଚିତ୍ରିତ ନରନାରୀମାନେ ତେଣୁ ଯେତେ ଅଧିକ ଜୀବାଧର୍ମୀ, ସେତେ ବେଶୀ ଜୀବୀଧର୍ମୀ ସାମାଜିକ ନୁହଁନ୍ତି । ମଣିଷ ସାମାଜିକ ହେବା, ଧାର୍ମିକ ହେବା ଅର୍ଥ ଉଦ୍ଦାମ ଜୀବନଠାରୁ ହୁଏତ ନିଜକୁ ଘୁଞ୍ଚାଇନେବା ।

ଏହି ଭାବରେ ସମକାଳୀନ ଶିଳ୍ପୀମାନଙ୍କ ମଧ୍ୟରେ ଶାନ୍ତନୁଙ୍କର ଗୋଟେ ତୀକ୍ଷ୍ଣ ନିଜସ୍ୱ ଜୀବନଦୃଷ୍ଟି ପ୍ରତି ବିଶେଷ ପ୍ରବଣତା ଥିଲା । ଏଥିପ୍ରତି ତାଙ୍କର ଆନ୍ତରିକତା ତଥା ସମ୍ବେଗ ବାରି ହୋଇପଡୁଥିଲା । କାହ୍ନୁଚରଣଙ୍କ ଚରିତ୍ର ଢ଼ାଞ୍ଚାରେ ଯେତେବେଳେ ଓଡ଼ିଆ ଗଳ୍ପ ଉପନ୍ୟାସରେ ଚରିତ୍ରସବୁ ସଂଯୋଜିତ ହେଉଥିଲେ, ଶାନ୍ତନୁ ସେତେବେଳେ ଉଲ୍ଲେଖଯୋଗ୍ୟ ଭାବେ ପରମ୍ପରା, ତଥା ଗତାନୁଗତିକତାକୁ ବେଖାତିର କରି ଆମ ଓଡ଼ିଆ ଗଳ୍ପ ଉପନ୍ୟାସର ଚରିତ୍ର ସୃଷ୍ଟି ଢ଼ାଞ୍ଚାକୁ ସମ୍ପୂର୍ଣ୍ଣ ବଦଳାଇଦେଲେ । ତାଙ୍କୁ ଏହି ଚରିତ୍ର ନିର୍ମାଣଗତ ନୂତନତା ଦୃଷ୍ଟିରୁ ଓଡ଼ିଆ କଥାସାହିତ୍ୟ ଧାରାରେ ଜଣେ ଅଗ୍ରଗାମୀ ଶିଳ୍ପୀ ବୋଲି କୁହାଯାଇପାରେ । ହୁଏତ ତାଙ୍କୁ ଉଗ୍ର-ବାସ୍ତବବାଦୀ, କିମ୍ବା ନିରୁତା ସ୍ଥିତିବାଦୀ ବୋଲି କୁହାଯାଇପାରେ । ଏସବୁ ସାହିତ୍ୟିକବାଦ ବା ଆନ୍ଦୋଳନର ଅର୍ଗଳି ବାହାରେ ଶାନ୍ତନୁ ବରଂ ଜଣେ ସଚ୍ଚା ଜୀବନବାଦୀ । ସେ ମଣିଷର ଅନ୍ତଃସ୍ଥଳରେ ଜୀବନର ଗଭୀର ପ୍ରାଣ ପ୍ରାଚୁର୍ଯ୍ୟ (abundance of life)କୁ ହିଁ ଦେଖିବାକୁ ଚାହିଁଛନ୍ତି ।

ଶାନ୍ତନୁ ଅନେକତ୍ର ବ୍ୟବସ୍ଥା (Establishment)ବିରୋଧୀ । ପୁରୁଣା ସାମାଜିକ ନୀତି ନିୟମ ତଥା ମୂଲ୍ୟବୋଧସବୁ ଭାଙ୍ଗିପଡୁଥିବାର ବାସ୍ତବତା ପ୍ରତି ତାଙ୍କ ଶିଳ୍ପୀପ୍ରାଣ ଅଧିକ ଆଗ୍ରହୀ ଥିଲା । ସେ

ଉତ୍ସାହିତ ହୋଇ ସର୍ବତ୍ର ଭାଙ୍ଗିପଡୁଥିବାର ଦୃଶ୍ୟପଟକୁ ନିବିଷ୍ଟ ଚିତ୍ତରେ ଲେଖିଛନ୍ତି । ପ୍ରେମ, ବିବାହ, ଧର୍ମ, ସମାଜ, ସଂଘ ଆଦି ପ୍ରତି, ତାଙ୍କ ଶିଳ୍ପୀ ମନରେ ସେତେ ବେଶୀ ମାନ୍ୟତା ନାହିଁ ଯେପରି ; ସାଧାରଣ ସୁଖ ତଥା ବ୍ୟକ୍ତିଗତ ନିରୋଳା ଅନୁଭବ ପ୍ରତି ତାଙ୍କ ଚରିତ୍ରସବୁ ଅଧିକ ଅନୁରକ୍ତ । ପିଲାପିଲି, ଘରଦ୍ୱାର, ସତୀତ୍ୱ, ନୈତିକତା, ଆଉସବୁ ଯେତେ ଆନୁଷ୍ଠାନିକତା ଯଦି ନିରୋଳା ଅନୁଭବ ଲାଭର ବାଧକ, ତାହେଲେ ଜଣେ ହୁଏତ ଏସବୁକୁ ଉପେକ୍ଷା କରୁ; ଏମିତି କିଛି ଇଙ୍ଗିତ, କିଛି ପ୍ରୋତ୍ସାହନ ଶାନ୍ତନୁଙ୍କ ରଚନାରେ ହୁଏତ ରହିଥିବା ମନେହୁଏ । ଶାନ୍ତନୁ ତାଙ୍କ 'ନରକିନ୍ନର'ରେ ଯେଉଁ ପରିବେଶ ସୃଷ୍ଟି କରିଛନ୍ତି ତାହା ପୁରୁଣା ବ୍ୟବସ୍ଥା ବିରୋଧୀ ନୁହେଁ ତ, ଆଉ କ'ଣ ? ସେଠି ସେ ପରିବେଶରେ ଅତି ସହଜ ଭାବେ ନଜିର ମିଆଁ ଗୋଦରୀବୁଢ଼ୀକୁ ଭୋଗ କରୁଛି । ସାରା ରାତି ତାକୁ ନିବିଡ଼ ଭାବେ ରମଣ କରିବାକୁ ପାଉଛି; ଅଥଚ ଜାତି, ବିବାହ ତଥା ସାମାଜିକ ବ୍ୟବସ୍ଥା ବାହାରେ । ଶାନ୍ତନୁ ସେମିତି ପରିଚୟହୀନ ଜର୍ଜ, ବୀରସାମଲ, ଚରଣରାଓ ଆଦି ଅନେକଙ୍କୁ ସମାବିଷ୍ଟ କରିଛନ୍ତି । କାରଣ ଶାନ୍ତନୁଙ୍କ ଶିଳ୍ପୀପ୍ରାଣ ଜୀବନକୁ ସବୁଠୁ ବଡ଼ କରି ଦେଖିଚି । ଜୀବନ ବଞ୍ଚିବାର ନିରୋଳା ଅନୁଭବ ଓ ତଜ୍ଜନିତ ମାଦକତାହିଁ ଏ ସଂସାରରେ ଜୀବନ୍ତ ସୌନ୍ଦର୍ଯ୍ୟ । ତାହାକୁ ଆଙ୍କିବା ହିଁ ମହାନ୍ ଶିଳ୍ପକର୍ମ । ଏତେ ସ୍ୱର୍ଗୀୟ, ଏତେ ଗୌରବାନ୍ୱିତ ସେ ବିଷୟ; ଯାହାକୁ ନୀତିନାମରେ, ଧର୍ମ ନାମରେ ହୁଏତ କଦାପି ମାପିହେବନି । ନିରାମିଷ ଆହାର, ସୂର୍ଯ୍ୟସ୍ନାନ, ଘୃତାହୁତି, ଆତ୍ମ ସମର୍ପଣଠାରୁ ଜଣେ ବେଶ୍ୟାପଡ଼ାର ଗଭୀର ଅନ୍ଧକାର ଭିତରେ ଲାଭ କରିଥିବା ପ୍ରାଣର ଏକାନ୍ତ ବିରଳ, ପରିବୋଧନୀୟ ମୁହୂର୍ତ୍ତମାନଙ୍କ ପ୍ରତି ବିଶମ୍ବଦ ହେଉ ଏହା ହେଉଛି ଜୀବନପ୍ରତି ସତ୍ୟଶୀଳ, ସ୍ୱାଧୀନତା ଓ ସ୍ୱାଭିମାନୀ ଶିଳ୍ପୀପ୍ରାଣର ସୃଜନଇଚ୍ଛା ।

'ନରକିନ୍ନର'ର ଚରିତ୍ର ସବୁ କୁଆଡୁ ଆସିଛନ୍ତି କେହି ଜାଣେନା । ସେମାନଙ୍କର ସବୁକିଛି ଉର୍ଦ୍ଧ୍ୱରେ ବଞ୍ଚିରହିବା ହିଁ ଅଧିକ ସତ୍ୟ । ସେମାନଙ୍କୁ ଜୀବନର ଏକାକୀତ୍ୱହିଁ ମୂଳସତ୍ତା । ଏହି ଏକାକୀତ୍ୱ ଏକ ଆତ୍ମଲୀନ ଅନ୍ତର୍ମୁଖୀ ବିଷ; ଯାହାର ଚିତ୍ରଣ ହୁଏତ ସେମିତି ଏକ ଅନ୍ତରୀଣ ଶିଳ୍ପାୟନର ଅପେକ୍ଷା ରଖେ । 'ଦକ୍ଷିଣାବର୍ତ୍ତ'ର ପରିବେଶଟି ମଧ୍ୟ ଠିକ୍ ସେହିପରି । ଗହଳ ଚହଳ ସତ୍ତ୍ୱେ ଏକ ମୌନତା, ଏକ ନିର୍ଜ୍ଜନତାର ଅସ୍ତିତ୍ୱ ସମସ୍ତଙ୍କୁ ଯେପରି ଆବୋରି ବସିଛି । ମୁକ୍ତିର ସ୍ୱାଦ ପାଇଁ ହୁଏତ ଜଣେ ସ୍ୱେଚ୍ଛାକୃତ ଭାବେ ଏକାକୀତ୍ୱକୁ ବରଣ କରିଥାଏ । ଏହା ସତରେ ମଣିଷର ଭିତିରି ଇଚ୍ଛା । ସଂଯୋଗିତ ହେବାର ପ୍ରବଳ ବାସନା ସତ୍ତ୍ୱେ ନାରୀପୁରୁଷ ନିର୍ବିଶେଷରେ ସମସ୍ତେ ସହ୍ୟ କରିହେଉଥିବା କିଛି ଏକାକୀତ୍ୱ ଲୋଡ଼ନ୍ତି । ଅଥଚ ଏହି ଏକାକୀତ୍ୱର ଯନ୍ତ୍ରଣା ଏତେ ବେଶୀ, ଯେ ସେଥିରୁ ମୁକ୍ତି ପାଇଁ ମଣିଷ ଯୌନ ପ୍ରେମ କରେ । ଯୌନ ପ୍ରେମ ମଣିଷକୁ ସତରେ ଭାରି ମସଗୁଲ କରି ରଖେ । ନିଶାଗ୍ରସ୍ତ ମଣିଷ ଯେପରି ଭୋଳ୍ହ ହୋଇଥାଏ ସେମିତି ଯୌନ ପ୍ରେମରେ ମାତିଥିବା ମଣିଷ । ଶାନ୍ତନୁଙ୍କ 'ନରକିନ୍ନର', 'ଦକ୍ଷିଣାବର୍ତ୍ତ' ଆଦି ଉପନ୍ୟାସ ସବୁ ଜୀବନବୃତ୍ତର ଯୌନତାକୁ ଅଧିକ ପ୍ରତ୍ୟକ୍ଷ ବଳଶାଳୀ କରି ଦେଖାଦେଇଛି ।

ଶାନ୍ତନୁଙ୍କ ରଚନାରେ ଗୋଟିଏ ବିଶେଷ ଆକର୍ଷଣ ଅଙ୍କିତ ହୋଇଛି –ତାହା ମଣିଷର ମାଟିପ୍ରତି, ଆକାଶ ପ୍ରତି, ମହାକାଶ ପ୍ରତି । ମଣିଷର ଜୀବନପ୍ରିୟତାକୁ ଏହିସବୁ ଯେମିତି ପ୍ରଭାବିତ କରୁଛି । ସବୁ ଚରିତ୍ର ଯୋଡ଼ିହେଉଥିବା ସତ୍ତ୍ୱେ ସେମାନଙ୍କ ଭିତରେ ବହୁତ ଫାଟ ରହିଛି । ବହୁତ ନୈରାଶ୍ୟ ଓ ଅସହାୟତା ସେମାନଙ୍କ ଅନ୍ତଃସ୍ଥଳକୁ ଥରାଇ ଦେଉଛି; ଯଦିଓ ସେମାନେ ଅସମ୍ଭବ ଭାବେ କାମାସକ୍ତ ଓ ସମସ୍ତେ ଖାଦ୍ୟ ଖାଇବା ପ୍ରତି, ରମଣ ପ୍ରତି ଅଧିକ ଆଗ୍ରହୀ ।

ନରକିନ୍ନର ପରି ଉପନ୍ୟାସଟିଏ ଏତେ ଜୀବନପ୍ରବୃତ୍ତି (Lifeinstict) ର କଥାକୁ ଲେଖିଛି, ଯେ ହୁଏତ ତା'ର ସବିଶେଷ ଇଙ୍ଗିତକୁ ସାଧାରଣ ଗଳ୍ପପ୍ରିୟ ପାଠକ ବୁଝି ପାରନ୍ତି ନାହିଁ । ଉପନ୍ୟାସଟି ଯେଉଁ ଭାବରେ ଅଧିକ ଅର୍ଥପୂର୍ଣ୍ଣ, ତାହାକୁ ବୁଝିପାରିଲେ ଜଣେ ଯାଇ ଉପନ୍ୟାସଟିର ଅନ୍ତରୀଣ ଜୀବନମୁଖୀନତାକୁ ଧରିପାରିବ । ମନେହୁଏ ସତେଯେପରି ଶାନ୍ତନୁଙ୍କ ଗଳ୍ପ ଉପନ୍ୟାସର ଚରିତ୍ରସବୁ ନିଜ ନିଜର ଅନ୍ତଶ୍ଚେତନକୁ ନାନା ଭାବରେ ଲୀଳାୟିତ କରିଛନ୍ତି । ଜୀବନର ନିବିଡ଼ ଅନ୍ତଶ୍ଚେତନ ଯେପରି ଚରିତ୍ରମାନଙ୍କୁ ମାଧ୍ୟମ କରି ବାହାରକୁ ପ୍ରକଟିତ ହୋଇଛି କେବଳ ।

ଗୋଟିଏ ଛୁଟିଦିନର ଅନୁଭବକୁ ଆମେ କିପରି ଚିତ୍ରଣ କରିବା ? କିପରି ଚିତ୍ରଣ କରିବା ଗୋଟିଏ ପରିଚ୍ଛନ୍ନ ଆସକ୍ତିକୁ ? ହୁଏତ ରୂପକ (Allegory) ଏ ବିଷୟରେ ଆମକୁ ସହାୟତା କରିବ । ଶାନ୍ତନୁଙ୍କ ଉପନ୍ୟାସର ଚିତ୍ର ଚରିତ୍ରସବୁ ଏହି ଦୃଷ୍ଟିରୁ ବହୁଭାବରେ ସେପରି ରୂପକାତ୍ମକ । ଶାନ୍ତନୁଙ୍କ ଚରିତ୍ରସବୁ ଆପାତତଃ, ପୁଣି ଜାନ୍ତବ ମନେହୁଅନ୍ତି; ଯେଉଁମାନଙ୍କ ଭିତରେ ଜୈବିକ କ୍ଷୁଧା ହୁଏତ ଭାରି ପ୍ରବଳ । ଅଥଚ ଶାନ୍ତନୁ ଖାଇବା, ପିଇବା, ସଙ୍ଗମ କରିବା ଆଦି ଜୈବିକ ପ୍ରକ୍ରିୟା ଭିତରେ ଜୀବନକୁ ସୀମିତ କରି ଦେଖିନାହାଁନ୍ତି; ଯଦିଓ ସେ ସେସବୁକୁ ପ୍ରାଥମିକ ବୋଲି ଯୁକ୍ତି କରିଛନ୍ତି । ସାମଗ୍ରିକ ଭାବେ ପରମାର୍ଥବାଦୀମାନଙ୍କ ଧୂଆଁଳିଆ ପୁରୁଣା ବିଶ୍ୱାସକୁ ସେ ଏହାଦ୍ୱାରା ଖଣ୍ଡନ କରିଛନ୍ତି ।

ଶାନ୍ତନୁ ଆଚାର୍ଯ୍ୟଙ୍କ ଉପନ୍ୟାସର ଅନ୍ୟ ଏକ ବିଶିଷ୍ଟତମ ଦିଗ ହେଲା ତା'ର ନୃତାତ୍ତ୍ୱିକତା- ମଣିଷ କିପରି ହଜାର ହଜାର ବର୍ଷର ବିବର୍ତ୍ତନ ଭିତରେ ଦେଇ ଆସିଛି; ମଣିଷ କିପରି ତା'ର ବିବିଧ ଅଭିଜ୍ଞତାକୁ କିମ୍ବଦନ୍ତୀ, ଉପକଥା, ବିଜ୍ଞାନ, ଦର୍ଶନ, ଇତିହାସରେ ପ୍ରକାଶ କରିଛି ଓ ସେଥିରେ ପୁଣି ଉଭୟ ପ୍ରାକୃତିକ ତଥା ସାମାଜିକ ବିବର୍ତ୍ତନର ପ୍ରକ୍ରିୟା କିପରି ପ୍ରତୀକିତ ହୋଇଛି । ଏ ସମସ୍ତ ବିଷୟର କିଛି ଇଙ୍ଗିତ, କିଛି ବିଶ୍ଳେଷଣ, ବିଷୟ-ବିନ୍ୟାସ ତଥା ତା'ର କ୍ରମିକତା ଭିତରେ ଅବଶ୍ୟ ପ୍ରଦତ୍ତ ହୋଇଛି । ଏହା କିଛି ଅଧିକ ପାଣ୍ଡିତ୍ୟ, ପ୍ରତିଭା ଓ ପଢ଼ାପଢ଼ି ଉପରେ ନିର୍ଭର କରେ । କାରଣ ମଣିଷ ଭିତରକୁ ଦେଖିବା ପାଇଁ ବିଜ୍ଞାନର ଅପେକ୍ଷାରଖେ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଦର୍କାର ହୁଏ । ଜୀବନ ବଞ୍ଚିବା ସମ୍ପର୍କରେ କିଛି ସତ୍ୟ ପରିବେଷଣ କରିବା ସବୁବେଳେ ଏକ ଗାମ୍ଭୀର୍ଯ୍ୟର ବିଷୟ । ସବୁବେଳେ ତାହା ପୁଣି ଅଧିକ ଇଙ୍ଗିତଧର୍ମୀ । ଶାନ୍ତନୁଙ୍କ ଉପନ୍ୟାସ ଗୁଡ଼ିକ ଏଇଥିପାଇଁ ଗତାନୁଗତିକ ଗଳ୍ପପ୍ରଧାନ ଉପନ୍ୟାସଗୁଡ଼ିକଠାରୁ ଅଲଗା ପ୍ରକାରର ହୋଇଛି । ଶାନ୍ତନୁଙ୍କ ରଚନା ବହୁବିଦ୍ୟାର ଗୋଟେ ଫେଣ୍ଟା ଫେଣ୍ଟି ରୂପ ।

ନାରୀ ପୁଣି ଶାନ୍ତନୁଙ୍କ ଗଳ୍ପ ଉପନ୍ୟାସର ଏକ କେନ୍ଦ୍ର ହୋଇ ରହିଛି । ନାରୀ ସତ୍ତାଟି ଶାନ୍ତନୁଙ୍କ ଉପନ୍ୟାସରେ ସ୍ନିଗଧ ସମ୍ମୋହନର ବିଷୟ ନୁହେଁ । ଆପାତତଃ ଉଲଙ୍ଗ ମନେ ହେଲେହେଁ, ଅଧିକ ବାସ୍ତବ ଓ ଆମର ଆଦିମତମ ଜୀବନ ପ୍ରବୃତ୍ତି ସହିତ ସମ୍ବନ୍ଧିତ ।

ଜୀବନ ଭିତରକୁ ଦେଖିବା ପାଇଁ, ଜୀବନର ମୂଳ ସତ୍ତାକୁ ବୁଝିବା ପାଇଁ, ସେ ସତେଯେପରି ନାରୀକୁ ଅବଲମ୍ବନ କରିଛନ୍ତି । ମଣିଷ ଭିତରେ ଜନ୍ତୁଟିଏ ସଦାସର୍ବଦା ଯେପରି ବଞ୍ଚିଥାଏ, ସେ ଜନ୍ତୁଟି ଗୋଟିଏ ବୃତ୍ତ ଭିତରେ, ଗୋଟିଏ ନିର୍ଧାର୍ଯ୍ୟ ଜଗତ (deterministic world) ଭିତରେ ବିଚରଣ କରୁଥାଏ । ବେଳେବେଳେ ଦେହ-ନୀରପେକ୍ଷ କରିବା ପାଇଁ ଗୋଟେ ପ୍ରକାର ଉନ୍ମୁଖତା ଦେଖାଏ ।

ତାହାରି ଭିତରେ ହୁଏତ ତା'ର ଗଭୀର ପ୍ରାଣପିପାସା (Abundance of Life),ଆଉ ତା'ର ଶୀର୍ଷାନୁଭୂତି ଲାଭର ଅଭିଳାଷ ।

ମଣିଷର ଜୀବନ ଜାଣିବାକୁ କଥାଶିଳ୍ପୀ ଶ୍ରୀ ଆଚାର୍ଯ୍ୟ ସବୁ ଦୃଷ୍ଟିରୁ ବୁଝିବାକୁ ଚାହିଁଛନ୍ତି । ତାଙ୍କ ଉପନ୍ୟାସର ବିଷୟବିନ୍ୟାସ ଓ ଚରିତ୍ରସବୁ ବେଳେବେଳେ ଗୋଟିଏ ଗୋଟିଏ ବିମ୍ବ ଭଳି ମନେହୁଏ । ମଣିଷର ଜୀବନ ଓ ତା'ର ଯୌନ ବିବର୍ତ୍ତନର ଧାରକ ଚରିତ୍ରସବୁ ଶାନ୍ତନୁ କୁମାରଙ୍କ ଉପନ୍ୟାସରେ ଅଧିକ ରୂପକାତ୍ମକ ହୋଇଛନ୍ତି ଏ ଦୃଷ୍ଟିରୁ ।

ଶାନ୍ତନୁଙ୍କ ଜୀବନଦୃଷ୍ଟି ଅତ୍ୟନ୍ତ ନିମଜ୍ଜିତ ଦୃଷ୍ଟି । ଗାଢ଼ ଓ ନିବିଡ଼ ମନେହୁଏ । ବହୁତ ତଳୁ ସେ ମଣିଷର ଜୀବନ ଆରମ୍ଭକୁ ଦେଖିଛନ୍ତି । ଜର୍ଜର ଜନ୍ମ, ରୈକ୍ୱର ଜନ୍ମ ପରିକଳ୍ପନା ତା'ର ଏକ ଏକ ପ୍ରମାଣ ।

ଶାନ୍ତନୁବାବୁଙ୍କ 'ନରକିନ୍ନର' ବା 'ଦକ୍ଷିଣାବର୍ତ୍ତ' ଉପନ୍ୟାସର ଅଂଶବିଶେଷ ମେଜିକ ରିଏଲିଟି (Magic reality)ର ଦୁର୍ବୋଧ ପ୍ରକାଶ ପରି ମନେହେବ । ସ୍ଥଳ ବିଶେଷରେ ଉଦ୍ଭଟ କିମ୍ବା ଅତିକଳ୍ପନା ପରି ମନେହେବ । ଜଣେ ସଚ୍ଚା ନିଷ୍ଠାପର ଆଧୁନିକ ଭାବେ ସେ ଜୀବନ ପରିଧିର ବାସ୍ତବତା ସବୁକୁ ଦେଖିବାରେ ଆଦୌ କୁଣ୍ଠିତ ହୋଇନାହାନ୍ତି ।

ମଣିଷର ସାମାଜିକ ପରିଚୟକୁ ସେ ଯେପରି ଉପହାସ କରିଛନ୍ତି । ଆମକୁ ଅଧିକାଂଶରେ ଯେଉଁ ବ୍ୟବଧାନ ସବୁ ପଙ୍ଗୁ କରିଦେଇଛି, ଆମ ଚତୁଃପାର୍ଶ୍ୱରେ ସେ ସବୁ ବୁର୍ଜୁଆ ରିଏଲିଜିମ (bourgeios realisim) ଅର୍ଗଳି ରୂପେ ଶୁଦ୍ଧ ହୋଇ ରହିଛି । ଆମର ସ୍ୱଚ୍ଛଳ ମାନସିକ ବିଚାରଧାରାକୁ ତାହା ଅବରୁଦ୍ଧ କରି ରଖୁଛି । ଏହି ଧାରଣା ଜଣେ ଶିଳ୍ପୀର କଳାଦୃଷ୍ଟିକୁ ନିୟନ୍ତ୍ରଣ କରେ । ଶାନ୍ତନୁ ଆଚର୍ଯ୍ୟଙ୍କ ଉପନ୍ୟାସର ଭାଷା ତଥା ଶୈଳୀଗତ ମଣ୍ଡଳ ପୂରାପୂରି ବଦଳିଯାଇଛି । ଅସ୍ତିତ୍ୱବାଦୀ ଶିଳ୍ପୀମାନେ ଯେପରି କଳାପକ୍ଷକୁ ବଦଳାଇ ଦେଇଚନ୍ତି ତଥା କଳା ଓ ଜୀବନ ଭିତରେ ଖୁବ୍ କମ୍ ବ୍ୟବଧାନରେ ମଧ୍ଧ ଦେଖିଛନ୍ତି ।

ଶାନ୍ତନୁ ଆଚାର୍ଯ୍ୟ ମଣିଷ ଭିତରେ ଯେଉଁ ନିର୍ଜ୍ଜନତାକୁ ଠାବ କରିଛନ୍ତି, ତାହା ବିଭିନ୍ନ କାରଣରୁ ବ୍ୟକ୍ତିର ବିଯୋଗିତ ଜୀବନ କେବଳ ନୁହେଁ । କାଫକାଙ୍କ ମଣିଷମାନେ ଯେଉଁ ନିଃସଙ୍ଗତାର ଯନ୍ତ୍ରଣା ଭୋଗିଛନ୍ତି, ଶାନ୍ତନୁଙ୍କ ମଣିଷମାନେ ସେମିତି ଯନ୍ତ୍ରଣା ଭୋଗିଛନ୍ତି । ତାହା ପରିବର୍ତ୍ତିତ ସାମାଜିକ ଏକାକୀତ୍ୱବୋଧ ନୁହେଁ; ହୁଏତ ଯାହା ଆମ ପ୍ରାଦେଶିକ ସାହିତ୍ୟ ସହିତ ବିଶ୍ୱ ସାହିତ୍ୟରେ ଗତାନୁଗତିକ ଭାବେ ଚିତ୍ରିତ ହୋଇଛି । ଏମିତି ସ୍ଥିତିବାଦୀୟ ନିଃସଙ୍ଗତା ସମ୍ପର୍କରେ କହିବାକୁ ଯାଇ ଜର୍ଜ ଲୁକାସଙ୍କ ପରି ଜଣେ ବିଶିଷ୍ଟ ସମାଲୋଚକ କହିଛନ୍ତି- "This basic solitariness of men must not be confused with that individual solitariness to be found in the literature of traditional relism.'ଏମିତି ନିଃସଙ୍ଗତା ସହିତ ମଣିଷ ଜୀବନର ଅନିର୍ବାର୍ଯ୍ୟ କିଛି ପରିସ୍ଥିତିର ପ୍ରତ୍ୟେକ୍ଷ ସମ୍ବନ୍ଧ ରହିଛି । ମଣିଷର ଜୀବନ ବହୁ ଭାବରେ ଅବସ୍ଥାଧୀନ । ଏସବୁକୁ ଅତିକ୍ରମ କରିଯିବା ପାଇଁ ମଣିଷକୁ ବହୁ ଶ୍ରମ ସ୍ୱୀକାର କରିବାକୁ ପଡ଼େ । ଶାନ୍ତନୁ ତାଙ୍କ ଗଳ୍ପ ଉପନ୍ୟାସର ଅନେକ ଚରିତ୍ରକୁ ସେମିତି ଅବସ୍ଥାଧୀନ କରିଛନ୍ତି । ତାହା ଅନେକ ପୁରୁଣା ଉପନ୍ୟାସର ଅବସ୍ଥାଚକ୍ରଠାରୁ ଅଲଗା ବୋଲି ଏଠାରେ ହୁଏତ ଉଲ୍ଲେଖ କରାଯାଇପାରେ ।

ମଣିଷ ଜୀବନର ଏହି ଅନିବାର୍ଯ୍ୟ ପରିସ୍ଥିତିର ଚାପକୁ ନିଷ୍ଠାର ସହିତ ପର୍ଯ୍ୟବେକ୍ଷଣ କରିବାର ଆନ୍ତରିକତାରେ ହିଁ ଶାନ୍ତନୁ ଆଚାର୍ଯ୍ୟଙ୍କ କଳାତ୍ମକ ଚମତ୍କାରିତା (Aesthetic excellency) ରହିଛି । ହୁଏତ ତାଙ୍କ ଉପନ୍ୟାସର ଅନ୍ୟ କୌଣସି ଉପାଦାନରେ ସେହି ସୌନ୍ଦର୍ଯ୍ୟ ସେତିକି ଭାବରେ ନାହିଁ । କାମ୍ୟୁ, କାଫକା, ଦସ୍ତୋଭସ୍କି ଆଦି ଜୀବନବାଦୀ କଥାଶିଳ୍ପୀମାନେ ମଣିଷ ଜୀବନର ଅତି ଦୁଃଖଦ ଅବସ୍ଥାଗୁଡ଼ିକୁ ହିଁ ବିଶେଷ ଲକ୍ଷ୍ୟ କରିଛନ୍ତି ।

ଶାନ୍ତନୁ କୁମାର ଆଚର୍ଯ୍ୟ ତାଙ୍କ ଗଳ୍ପ, ଉପନ୍ୟାସରେ ଦେହ କଥା, ମଣିଷର ଦୈହିକ ପ୍ରବୃତ୍ତି କଥା ଅଧିକ କହିଛନ୍ତି ବୋଲି ମନେହୁଏ । ଔପନ୍ୟାସିକ ଜୋଲା (Zola)ଙ୍କୁ କେତେଜଣ ଜଣେ ଶରୀରତତ୍ତ୍ୱବିଦ୍‌ଙ୍କ ସହିତ ତୁଳନା କଲାପରି; ଶାନ୍ତନୁଙ୍କୁ ଜଣେ କେହି ସେମିତି ଶରୀର ବିଶେଷଜ୍ଞ ବୋଲି ହୁଏତ କହିନପାରେ । ଅନ୍ତଶ୍ଚେତନର ଶିଳ୍ପୀଭାବେ ସେ ଉଭୟ ଦେହ ଓ ମନର ଚିତ୍ରକର । ଏ ପ୍ରସଙ୍ଗରେ ଜୋଲାଙ୍କ ମନ୍ତବ୍ୟ ଅଧିକ ପ୍ରଣିଧାନଯୋଗ୍ୟ । ସେ ନିଜକୁ ଜଣେ ଚିତ୍ରକର ବୋଲି ଅଭିହିତ କରି କହିଛନ୍ତି, 'ମୁଁ ନିଜର ସ୍ଥାନ ଠିକ୍ ସେହିପରି ରଖିଛି; ଚିତ୍ରକର ଗୋଟିଏ ନଗ୍ନଚିତ୍ର ଅଙ୍କନ କଲାବେଳେ ଯେମିତି ନଗ୍ନତାକୁ ସ୍ପର୍ଶ କରେନା କିମ୍ବା ଆପଣା ପ୍ରାଣରେ ସେଥିପ୍ରତି ତିଳେମାତ୍ର ଉତ୍ତେଜନା ଅନୁଭବ କରେନା, ବରଂ ନିଜକୁ ସୁରକ୍ଷିତ ଦୂରତାରେ ରଖିଥାଏ, ଠିକ୍ ସେମିତି ଔପନ୍ୟାସିକ ଉପନ୍ୟାସଠାରୁ ସେତିକି ଦୂରତା ରକ୍ଷା କରେ ।

ଜଣେ ଉତ୍ତମ ଲେଖକ ଆସକ୍ତି ଅନାସକ୍ତିର ଊର୍ଦ୍ଧ୍ୱରେ ଜଣେ ବର୍ଣ୍ଣନାକାରୀ କେବଳ; ଯେ ମଣିଷର ପାପ-ପୁଣ୍ୟ, ଭଲ-ମନ୍ଦ, ଆସକ୍ତି-ଅନାସକ୍ତିକୁ ଉତ୍ତମ ଭାବେ ବର୍ଣ୍ଣନା କରିବା ପାଇଁ ଅଙ୍ଗୀକାରବଦ୍ଧ ହୋଇଥାନ୍ତି । ଜୋଲାଙ୍କ ପରି ଶାନ୍ତନୁ ଆଚର୍ଯ୍ୟ ମନେ କରନ୍ତି, ମଣିଷ ପରି ଏକ ଜୀବିତ ନଗ୍ନ ପ୍ରାଣୀଙ୍କ ଗହଣରେ ସେ ଅଛନ୍ତି; ସେଥିପାଇଁ ସେ ଲଜ୍ଜିତ ନୁହଁନ୍ତି ।

ଜଣେ ଶିଳ୍ପୀ ମଣିଷର ଜୈବିକ ବାସ୍ତବତାକୁ ବର୍ଣ୍ଣନା କଲାବେଳେ ତା'ର ସାମାଜିକ ମନ ତାହାକୁ ଅଶ୍ଳୀଳ ବୋଲି ଆଦୌ ମନେ ନକରୁ । ଯୌନ ମଣିଷର ଜୀବନ ପରିଧି ଭିତରେ ଏକ ଅସରନ୍ତି କାମନା । ଫ୍ରୟେଡ଼ ସେଥିପାଇଁ କହିଛନ୍ତି, 'Sex is the master motif and the strongest urge which is originated in the mother's womb.' 'ଲେଭିଆଥାନ' ଗ୍ରନ୍ଥର ରଚୟିତା ମହାନ୍ ଦାର୍ଶନିକ ହୋବସ୍ ଥରେ କହିଥିଲେ ''ଗୋଟେ ଉତ୍ତମ ଶିଳ୍ପରେ ଆମେ ବସ୍ତୁତଃ ନାରୀ ପୁରୁଷ ମଧ୍ୟରେ ଧିବା ମୂଳ ସମ୍ପର୍କର ସୂଚନା ଦେଖିଥାଉଁ । ନାରୀ ପୁରୁଷ ମଧ୍ୟରେ ସେହି ମୂଳ ସମ୍ପର୍କଟି ହେଉଛି ପରସ୍ପରର ସାନ୍ନିଧ କାମନା; ଯାହା ହୁଏତ ଯେ କୌଣସି ନିବିଡ଼ତାର ମୂଳ ପ୍ରୋତ୍ସାହନ । ଯୌନ କାମନାକୁ କେତେବେଳେ ତେଣୁ ଅସ୍ପର୍ଶୀୟ ଜ୍ଞାନ କରିବାର କୌଣସି କାରଣ ନାହିଁ ।''

ଜଣେ ଜୀବନ ଚିତ୍ରଣ କରୁ କିମ୍ବା ଜୀବନରେ ପ୍ରେମର ଚିତ୍ର ଅଙ୍କନ କରୁ, ସବୁ ଭଲ ଶିଳ୍ପୀ ବୋଧହୁଏ ସର୍ବକାଳୀନ ଜୀବନର ମହିମାମଣ୍ଡିତ ଅର୍ଥ ହିଁ ଖୋଜିଥାନ୍ତି । ମଣିଷର ଜୀବନ ବଞ୍ଚିବାକୁ ତେଣୁ ସେମାନେ ନାନାମତେ ବିଶ୍ଳେଷଣ କରିଥାନ୍ତି । ପୂରାପୂରି ବ୍ୟବଚ୍ଛେଦ (Dissection)- ପ୍ରକୃତିବାଦୀ, ସ୍ଥିତିବାଦୀମାନେ ଯେପରି କରିଥାନ୍ତି; ଜୀବନର ପବିତ୍ର ସ୍ପନ୍ଦନକୁ ଆହୁରି ଅନାବୃତ୍ତ କରି ଦେଖିଥାନ୍ତି । ଗୋଟିଏ ଉତ୍ତମ ଆଧୁନିକ ଉପନ୍ୟାସକୁ ଗୋଟିଏ ଶକ୍ତିଶାଳୀ ଆର୍କିଟାଇପ୍‌ର ରୂପକାତ୍ମକ ଅଭିବ୍ୟକ୍ତି ବୋଲି

କହିବା ତେଣୁ ଅଧିକ ଯଥାର୍ଥ । ଶାନ୍ତନୁଙ୍କ 'ଦକ୍ଷିଣାବର୍ତ୍ତ', 'ଯାତ୍ରାର ପ୍ରଥମପାଦ', 'ନରକିନ୍ନର' ଆଦି ଉପନ୍ୟାସ ମଣିଷର ପ୍ରାଥମିକ ଜୈବିକ ସତ୍ତାର ଏକ ଏକ ଉଚ୍ଚକୋଟୀର ବିଶ୍ଳେଷଣ; ଯାହାକୁ ହୁଏତ ଯତ୍ନପୂର୍ବକ ଔପନ୍ୟାସିକ ଟିକିଏ ଟିକିଏ କଥାଭାଗ ଦେଇ କାହାଣୀଧର୍ମୀ କରିପାରିଚନ୍ତି; ଯଦିଓ ତାଙ୍କର ଅଧିକାଂଶରେ ପ୍ରତିପାଦନଧର୍ମୀ ଭାବ ଓ ବକ୍ତବ୍ୟପ୍ରଧାନ । ସେ ସାର୍ବଜନୀନ ମଣିଷ ତାର ଚିତ୍ରକର (Universal humanity) ।

ଶିଳ୍ପାୟନ ଦୃଷ୍ଟିରୁ ଶାନ୍ତନୁଙ୍କ ଉପନ୍ୟାସ ଗୁଡ଼ିକ ଆଦୌ ଅସଫଳ ନୁହଁନ୍ତି । ଆଧୁନିକ ଉପନ୍ୟାସର ଗୌରବ ତାଙ୍କ ଉପନ୍ୟାସମାନଙ୍କରେ ଭର୍ତ୍ତି ହୋଇ ରହିଛି । ମଣିଷ ଅଭ୍ୟନ୍ତରର ସ୍ୱପ୍ନ, ସୃଜନଶୀଳତା, ଯୌନ ଇଚ୍ଛା ଆଦିକୁ ପ୍ରକଟନ କରିବା ପାଇଁ ସଚେଷ୍ଟ ଶିଳ୍ପୀ ଶାନ୍ତନୁ ସୁବିନ୍ୟସ୍ତ ଗଳ୍ପ ନିର୍ମାଣ ପ୍ରତି ଯତ୍ନବାନ ହୋଇ ପାରି ନାହାଁନ୍ତି । ବାହ୍ୟ ଦ୍ୱନ୍ଦ୍ୱ କ୍ୱଚିତ୍ ତାଙ୍କ ଉପନ୍ୟାସର ବିଷୟପଞ୍ଜର ଭିତରକୁ ଆସିଛି । ତା ବ୍ୟତୀତ ବାସ୍ତବତା ବିନିମୟରେ ସେ ଯେ କୌଣସି ପ୍ରକାରର ସୃଜନଶୀଳତାକୁ ଅର୍ଥହୀନ ବୋଲି ମନେ କରିଛନ୍ତି, କାରଣ ସେ ପ୍ରକାର ସୃଜନଶୀଳତା ସତ୍ୟର ପ୍ରକାଶମାନତାକୁ ଧୂଆଁଳିଆ ଓ ଅସ୍ପଷ୍ଟ କରିଦିଏ । କୃତ୍ରିମ ଗଳ୍ପପିଣ୍ଡ ନିର୍ମାଣରେ ସେ ତାଙ୍କର ସୃଜନଶକ୍ତିକୁ ନିଶେଷ କରି ଦେଇ ନାହାଁନ୍ତି ।

ପୁରୁଣା ଗଳ୍ପ ଉପନ୍ୟାସର କାହାଣୀ ପ୍ରିୟ ସାଧାରଣ ପାଠକମାନେ ଶାନ୍ତନୁ ଆଚାର୍ଯ୍ୟଙ୍କ ଉପନ୍ୟାସ ପାଠକରି ଅଳ୍ପକେ ହୁଏତ କ୍ଳାନ୍ତ ହୋଇପଡ଼ନ୍ତି ଓ ସେପରି ବିସ୍ତାର ପ୍ରେମମୂଳକ କାହାଣୀ ସେମାନଙ୍କୁ ଇନ୍ଦ୍ରିୟ ପରାୟଣତା ଭିତରେ ଅଧା ଆଲୁଅ ଓ ଅଧାଛାଇର ପରିମଣ୍ଡଳ ଭିତରକୁ ନେଇଯାଇପାରେନା ।

ଶାନ୍ତନୁ ଆଚାର୍ଯ୍ୟଙ୍କ ଗଳ୍ପ ଉପନ୍ୟାସଗୁଡ଼ିକର ବହୁ ଅଂଶ ପୁଣି ବିମ୍ବପ୍ରଧାନ; ଯାହା ସର୍ବାଦୌ ଏକ ଏକ ସୂକ୍ଷ୍ମ ଓ ସମ୍ବେଦନଶୀଳ ଉପକଥା ପରି ମନେହୁଏ । ସେହି ସବୁ ଉପକଥାଗୁଡ଼ିକ ଛିନ୍ନଚିତ୍ର (broken image) ପରି, ଉପନ୍ୟାସର ମୂଳର ସମ୍ବେଗକୁ ଟାଣ କରିବା ପାଇଁ, ଗ୍ରଥିତ ହୋଇଛନ୍ତି ଯେପରି । ଶାନ୍ତନୁଙ୍କ ସୃଜନ ଆବେଗକୁ ବୁଝିନପାରିଲେ ଜଣେ ପାଠକ, ତାଙ୍କ ଉପନ୍ୟାସର ବିମ୍ବଗୁଡ଼ିକୁ ଆଦୌ ଅର୍ଥପୂର୍ଣ୍ଣ, ତଥା ଇଙ୍ଗିତଧର୍ମୀ ବୋଲି ମନେକରି ପାରିବନି । ଶାନ୍ତନୁଙ୍କ ଉପନ୍ୟାସର ଉପକଥା (Parable)ଗୁଡ଼ିକ ଆଦୌ ନୀତିପ୍ରଧାନ ଓ ଉପଦେଶାତ୍ମକ ନୁହଁନ୍ତି । ଜୀବନଭର୍ତ୍ତୀ କିଛି ସାନିଧ, କାମନା, ସୁହାଗ, ସ୍ନେହ ସଂପର୍କ ତଥା ଯୌନ ଲାଳସାକୁ ଉପଲବ୍ଧି କରିବା ପାଇଁ ସେ ସମସ୍ତ ଉପକଥା ସହାୟତା କରିଥାନ୍ତି । ଶାନ୍ତନୁଙ୍କ ଉପନ୍ୟାସର ଅନେକ ଚିତ୍ର ତେଣୁ ଅବିକଶିତ, ଅସଜଡ଼ା ରୂପକଥା ପରି ଲାଗେ; ଯାହା ହୁଏତ ପାଠକର ପରିଚିତ ଅନୁଭୂତି-ସଂଜାତ ପ୍ରଗାଢ଼ ରସଚେତନାକୁ ଆହୁରି ସିକ୍ତ କରିଦିଏ । ଶାନ୍ତନୁଙ୍କ ଉପନ୍ୟାସର ଉପକଥାଗୁଡ଼ିକ ପୁଣି ଅତିମାତ୍ରାରେ ରୂପକାତ୍ମକ (Allegorical); ଯାହାକୁ ହୁଏତ ଗଳ୍ପବଦ୍ଧ କରିବା ପାଇଁ ଚେଷ୍ଟା କରିବା ସତ୍ତ୍ୱେ କାଫକାଙ୍କ ଉପନ୍ୟାସ ପରି ଶିଥିଳ ହୋଇଛି । ଅନେକ ସ୍ଥିତିବାଦୀ ବାସ୍ତବତାର ନିଜସ୍ୱ ଏକ କାବ୍ୟିକ ପ୍ରଭାବ ରହିଛି; ହୁଏତ ଯାହା ଗଳ୍ପ ଯୋଡ଼ି ଘଟଣାକ୍ରମ ତିଆରି କରିବାକୁ ଅନାବଶ୍ୟକ ବୋଲି ମନେକରେ ।

ଶାନ୍ତନୁ ଆଚର୍ଯ୍ୟ ଅଳ୍ପ ଗଳ୍ପରେ ଅସୁମାରୀ ଅନୁଭୂତିର କଥା କହିପାରିଛନ୍ତି । ମଣିଷ ଜୀବନର ଭିତରକୁ ଦେଖିବାର ଆଗ୍ରହ ଯୋଗୁଁ ପୁଣି ଶାନ୍ତନୁ ଅନୁଭୂତି ପ୍ରତି, ଅନୁରକ୍ତ ରହିବା କାରଣରୁ,ତାଙ୍କୁ ଏ ପ୍ରକାର ସଫଳତା ମିଳିପାରିଛି । ତାଙ୍କ ସମକାଳୀନ ଗୋପୀନାଥ ମହାନ୍ତି ଓ ସୁରେନ୍ଦ୍ର ମହାନ୍ତିଙ୍କ ପରି ଅନ୍ୟ

ଦୁଇଜଣ ବିଶିଷ୍ଟ ଓଡ଼ିଆ କଥାଶିଳ୍ପୀ, ଯେଉଁମାନେ ହୁଏତ ସେହିଭାବରେ ସମୁଦାୟ ଶିଳ୍ପଚେଷ୍ଟାକୁ କେବଳ ଅନୁଭୂତିପ୍ରଧାନ କରି ପାର ନାହାଁନ୍ତି ।

ଏତଦ୍‌ଭିନ୍ନ ଶାନ୍ତନୁ ଜୀବନ ବିଷୟରେ ଭାରି କୌତୂହଳୀ । ବହୁ ଆନନ୍ଦବୋଧ ଓ ଅଜସ୍ର ସମ୍ଭାବନାର ଜୀବନକୁ ସେ ସ୍ୱପ୍ନ ଦେଖିଛନ୍ତି; ଅଥଚ ସେ ଆଦୌ ପୁରୁଣା କଳ୍ପନାବାଦୀ କବିଙ୍କ ପରି ରୋମାଣ୍ଟିକ ନୁହଁନ୍ତି । ରୋମାଣ୍ଟିକ ଶିଳ୍ପୀମାନେ କାରଣ ଅକାରଣରେ ଆଶାବାଦୀ ହୋଇପଡ଼ନ୍ତି; ଯଦିଓ କୁଡ଼କୁଡ଼ ନୈରାଶ୍ୟର ବାସ୍ତବତା ସେମାନଙ୍କ ଆଗରେ ସ୍ତୁପୀକୃତ ହୋଇଥାଏ; ଏବଂ ବାସ୍ତାବତାର ଅର୍ଗଳି ଭିତରୁ ମୁକୁଳିବାର ଜ୍ଞୁ ମଧ୍ୟ ନଥାଏ । ଜୀବନ ବେଳେବେଳେ ନିଜର ଅଣଆୟତ୍ତ । ଅନାଗତ ମୁହୂର୍ତ୍ତଟି ଜୀବନ ପାଇଁ କି ପରିସ୍ଥିତି ସୃଷ୍ଟିକରିବ, ଅନୁକୂଳ, କି ପ୍ରତିକୂଳ, ତାହା ଜାଣିନପାରିବା ସତ୍ତ୍ୱେ ଆମେ ଜୀବନ ବିଷୟରେ ନିଶ୍ଚିନ୍ତ ଥାଉଁ ଓ ଛେଳି କୁକୁଡ଼ାଙ୍କ ପରି ମରିବା ଆଉ ଦି'ଦଣ୍ଡ ବାକି ଥିଲେ ବି, ସାମ୍ନାରେ ହତ୍ୟାର ଆୟୋଜନ ହେଉଥିଲେ ବି, ଆମେ ରମଣ ସୁଖ ପାଇଁ ବ୍ୟାକୁଳ ହେଉଥାଉଁ । ଗୋଟିଏ ପକ୍ଷରେ ମୃତ୍ୟୁ, ଜୀବନର ସବୁ କିଛିର ଦାରୁଣ ପରିସମାପ୍ତି ଓ ଅନ୍ୟ ପକ୍ଷରେ ନିହାତି ପ୍ରବୃତ୍ତି-ପ୍ରବଣ ଗୋଟେ ଜୀବନ ବଞ୍ଚିବା । ଏମିତି ବିପୁଳ ସୂଚନା ଶାନ୍ତନୁଙ୍କ ଉପନ୍ୟାସମାନଙ୍କରେ ରହିଛି । ଆମର ସକଳ ସ୍ନିଗ୍‌ଧ ଶୁଭଗମନ୍ୟତା ସହିତ ଆମର ଆଦିମ କିନ୍ନରତ୍ୱ ମାଟି ଓ ଆକାଶ ମଧ୍ୟରେ ଆମକୁ ଶହଶହ ବର୍ଷ ଧରି ଏକ ଦୋଳାୟିତ ଅବସ୍ଥାରେ ରଖିଛି । ଆମେ ସଭିଏଁ ଯେପରି ଆମର ଅଲଂଘନୀୟ ଦୁର୍ଦ୍ଦଶା କଥା ବୁଝିପାରୁଛୁ। ଆମର ଏକାକୀତ୍ୱ, ଆମ ଭିତରର ହାହାକାର, ଶୂନ୍ୟତାବୋଧ, ଆମର ଯାବତୀୟ ବଞ୍ଚନା ସବୁକୁ ଆମେ ବୁଝିପାରିବା ପରି ଏକ ପରିବେଶ ସୃଷ୍ଟି କରାଯାଇଛି ଯେପରି ଶାନ୍ତନୁ କୁମାରଙ୍କ ଉପନ୍ୟାସରେ । ନିଜକୁ ଜାଣିବା ପାଇଁ ଆଜି ଉପନ୍ୟାସ ହୁଏତ ସେମିତି ଗୋଟେ ମାର୍ମିକ ପରିବେଶ । ଯେ କୌଣସି ଆଧୁନିକ ଉପନ୍ୟାସର ଏହା ଏକ ବିଶେଷତ୍ୱ ।

ଆମେ ଯେତେବେଳେ ଆମର ଅନ୍ତିମ ଭାଗ୍ୟ କଥା ବୁଝିପାରୁ, ସେତେବେଳେ ଶ୍ରେଣୀ, ଜାତି, ବର୍ଣ୍ଣ ଏସବୁର ଅର୍ଥ ଆମ ପାଖରେ କିଛି ହିଁ ନଥାଏ । ଆମେ ଏ ସବୁକୁ ଆଉ କୌଣସି ସମର୍ଥନ ଦେଉନୁ। ଆମର ସମ୍ପତ୍ତି, ଆମର ପ୍ରତିପତ୍ତି ସବୁ ମଧ୍ୟ ମୂଲ୍ୟହୀନ ମନେହୁଏ । ଗୋଟେ ନିତ୍ୟକାଳର ମଣିଷ ଓ ତା'ର ଜୀବନ ବଞ୍ଚିବାର ଭାବପୂର୍ଣ୍ଣଚିତ୍ର ଶାନ୍ତନୁ ଆଙ୍କିଛନ୍ତି ।

ନାରୀ, ଯୌନ ପ୍ରକ୍ରିୟା, ତଜ୍ଜନିତ ଈର୍ଷା, ହତାଶା, କାମୁକତା, ଅନେକଙ୍କ ଯୌନବିକାର (Perversion) ,ଧର୍ଷଣ, ପ୍ରବଣତା, ଜୀବନର ଅର୍ଥ ଖୋଜିବା, ପୁଣି ପ୍ରଗାଢ଼ ଏକ ଆଧ୍ୟାତ୍ମିକ ଅଭିଳିପ୍‌ସାର ଚାପ ଭିତରେ ମଣିଷ ନିରନ୍ତର ବଞ୍ଚୁଛି । ତାହା ଚତୁଃପାର୍ଶ୍ୱର ନିକଟତମ ନିଦା ବାସ୍ତବତା ବୋଧ ହେଉଛି । ଏହା କେବଳ ଖାଇବା, ପିଇବା, ରମଣ କରିବା ଭିତରେ ସମୟ କଟାଇବା ଆଦୌ ଗୋଟେ ମହତ୍ତର ଜୀବନ ବଞ୍ଚିବା ନୁହେଁ । ମହତ୍ତର ଜୀବନଟି ପୁଣି କ'ଣ ତାହାକୁ ଜାଣିବାପାଇଁ ଆମେ ଶାନ୍ତନୁଙ୍କ ଉପନ୍ୟାସମାନଙ୍କର ସମଗ୍ର ପରିବେଶଗୁଡ଼ିକୁ ହୁଏତ ବେଳେବେଳେ ତା'ର ବିପରୀତ ଚିତ୍ର ବୋଲି ମନେକରୁ । ଆମେ ଅନ୍ଧାର ଦେଖିଲେ ଆଲୁଅର ମନୋହାରିତ୍ୱକୁ ଯେପରି ବୁଝିପାରୁ । ଆମର ପ୍ରବଳ ଇଚ୍ଛାଶକ୍ତି (ଙସକ୍ଷକ୍ଷ ବ୍ଲକ୍ସଙରଦ୍ୱ) ଆମକୁ ପ୍ରକୃତରେ ବାଟ ଦେଖାଏ । ଏହାର ସମ୍ଭାବନା ପ୍ରବଳ ଭାବରେ ଆମ ଜୀବନ ଭିତରେ ଅଛି । କିନ୍ନରଙ୍କ ପରି କ୍ଷୁଧାର ତାଡ଼ନା, ନାରୀମାଂସ ଲୋଭ, ଯୌନଈର୍ଷା ଓ ଇତର ପାଶବିକତା ଭିତରେ ଆମେ ଆମର ଜୀବନ ଶେଷକରିଦେବା ଉଚିତ୍ ନୁହେଁ । ଏହିପରି ଇଙ୍ଗିତ

ଶାନ୍ତନୁଙ୍କ 'ନରକିନ୍ନର'ରେ ହୁଏତ ରହିଛି । ଗୋଟେ ବିଲୋଳ ପ୍ରଶାନ୍ତି ଲାଭର ଇଙ୍ଗିତ ମଧ୍ୟ ସେହିପରି 'ଦକ୍ଷିଣାବର୍ତ୍ତ'ରେ ରହିଛି ।

ଏ ଜୀବନରେ ଉପାର୍ଜନ କରିବା ଅର୍ଥ ଥରେ ଥରେ ଅନୁଭବ କରିବା; ଉଚ୍ଚାଟିତ ହେବା, ବୁଝିପାରିବା, ଭେଦିପାରିବାର ଆନନ୍ଦ ଲାଭ କରିବା । ଶାନ୍ତନୁଙ୍କ ଗଳ୍ପ ଉପନ୍ୟାସର ତେଣୁ କନ୍‌ଫେସନ-ଧର୍ମ ବେଶୀ । ନିଜକୁ ସର୍ବାଧୀନ ନକରି ପ୍ରକାଶ କରିବା, ଗୋଟେ ଅବରୁଦ୍ଧ ବଳୟ ଭିତରୁ ସୁବର୍ଣ୍ଣଦୀପ୍ତ ଜୀବନକୁ ବାହାରକୁ ଓଟାରି ଆଣିବା ।

ଯୌନ ସୁଖ, ସ୍ପର୍ଶସୁଖଜନିତ ବିଳମ୍ବିତ ସମ୍ଭୋଗ ଇଚ୍ଛା ମଣିଷର ସୃଜନଶୀଳ ଅଭିଳାଷ ନୁହେଁ, ପରମ ଇଚ୍ଛାର ବିଷୟ ନୁହେଁ; ମାତ୍ର ଏହା ଆମ ମୂଳ ପ୍ରବୃତ୍ତି । ଏକାନ୍ତ ଆଦିମ ଇଚ୍ଛା । ଏହାରି ଉପରେ ଛିଡ଼ାହୋଇ ମଣିଷ ଆପଣାର ଜୀବନ ପାଇଁ ଗୋଟେ କୋମଳ ସୌନ୍ଦର୍ଯ୍ୟାନୁଭୂତି ଓ ମନୁଷ୍ୟ ଜୀବନ ସହିତ ଏକାତ୍ମତାହିଁ ଖୋଜୁଛି । ସୁଖର ଇଚ୍ଛା, ସମ୍ଭୋଗ ପାଇଁ ଅଭିଳାଷ ଜୀବନର ମୂଳ ପ୍ରବୃତ୍ତି ନୁହେଁ । ଜୀବନର ସତ୍ୟାର୍ଥ ଅନ୍ୱେଷଣ ଆମର ମୂଳଇଚ୍ଛା । ନିଜକୁ ଜାଣିବାର ଉତ୍ସୁକତା ଆମକୁ ନିରନ୍ତର ଉଦ୍ୟମୀ କରାଏ । ଆଗକୁ ନିଏ । ବିଭିନ୍ନ ପରିସ୍ଥିତିରେ ପଡ଼ି ନିଜକୁ ଜାଣିବାର ସୁଯୋଗ ଅଧିକ ହୁଏ ।

ଶାନ୍ତନୁ ଆଚାର୍ଯ୍ୟଙ୍କ ଉପନ୍ୟାସର ଛିନ୍ନଚିତ୍ର, ତଥା ଖଣ୍ଡିତ ବକ୍ତବ୍ୟ ସବୁ ଉଲ୍ଲିଖିତ ଭାବଧାରାକୁ ଗୁମ୍ଫିତ କରିଛି । ତାଙ୍କ ଉପନ୍ୟାସରୁ ଏହି ମୂଲ୍ୟବାନ୍ ଖଣ୍ଡିତ ବକ୍ତବ୍ୟ ସବୁକୁ ଆମେ କଦାପି ବାଦ୍ ଦେଇପାରିବାନି । ଗୋଟିଏ ଉନ୍ନତ ସ୍ଥିତିବାଦୀ ଉପନ୍ୟାସ ପ୍ରାୟ ଏହିପରି; ଯେଉଁଥିପାଇଁ ସେସବୁକୁ କେତେକ ଉପନ୍ୟାସ ନକହି ଗ୍ରନ୍ଥବୋଲି କହିଥାନ୍ତି ।

ଶାନ୍ତନୁଙ୍କ ଉପନ୍ୟାସର ଶିଳ୍ପାୟନକୁ ଏହି ଦୃଷ୍ଟିରୁ ନିଃରସ ଓ ପଦ୍ୟମୟ ବୋଲି ହୁଏତ ଆମେ କହିପାରିବାନି । ସବୁଠି ମଣିଷର ଅନ୍ତଃସ୍ଥଳର ପ୍ରବଣତାକୁ ଲେଖିବାର ସେ ନିମଜ୍ଜିତ ହୋଇ ଲେଖିଛନ୍ତି । ଅବଶ୍ୟ ତାଙ୍କ ନିମଜ୍ଜମାନତା, ତାଙ୍କ ଗଳ୍ପାୟନ, ଆମକୁ ଆମ ଧାରାରେ ନୂଆ ଲାଗେ ।

ମଣିଷର ସକଳ ବାସ୍ତବତା ସତ୍ତ୍ୱେ ତଥାପି ମଣିଷ ଭିତରେ କିଛି ଭଲ ଅଛି; ଯାହାକୁ ସ୍ୱୋକ୍ତି ଭିତରେ କହିବାର ଉତ୍ତମ ଇଚ୍ଛା ଓ ଦର୍ପ ଜଣେ ଶିଳ୍ପୀର ରହିବା ଉଚିତ । ମଣିଷ ଭିତରେ ତା'ର ଧାର୍ମିକ ଓ ବୌଦ୍ଧିକ ବିକାଶ ଓ ଅଭିବୃଦ୍ଧିର ଗୋଟେ ସହଜାତ ପ୍ରବଣତା ଅଛି । ଆମେ ବଞ୍ଚିବାର ସାର୍ଥକତା ସେହି ଅଭିବୃଦ୍ଧିରେ । ଯେଉଁ ମଣିଷ ଅଭିବୃଦ୍ଧିମୁଖ; କେବଳ ଜନ୍ତୁଟିଏ ପରି ବଞ୍ଚେ, ସେ ତା ଆତ୍ମାର କ୍ଷୟ କରେ । ଏମିତି ସୂଚନା ଶାନ୍ତନୁଙ୍କ 'ନରକିନ୍ନର', 'ଦକ୍ଷିଣାବର୍ତ୍ତ', 'ଶତାବ୍ଦୀର ନଚିକେତା' ଆଦି ଉପନ୍ୟାସମାନଙ୍କରେ ରହିଛି । ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସଗୁଡ଼ିକରେ ନାରୀ, ମହାକାଳ ଓ ମାଟି ସମ୍ପର୍କିତ ଯେପରି ସୂଚନାମାନ ରହିଚି, ଯାହା ପାଠକକୁ ନିଜକୁ ଜାଣିବାପାଇଁ ଚିତ୍ତ-ପ୍ରବୋଧକ ହେବ, ସେହିପରି ଜୀବନ, ପ୍ରେମ, ଇହକାଳ, ପରକାଳ, ମାତୃତ୍ୱ, ସତୀତ୍ୱ ଆଦି ବହୁ ବିଷୟରେ ଶାନ୍ତନୁ ଆଚର୍ଯ୍ୟଙ୍କ ଉପନ୍ୟାସରେ ବିଶେଷ ସୂଚନାମାନ ରହିଛି; ଯାହାକୁ ମାଧ୍ୟମ କରି ପାଠକ ନିଜକୁ ଜାଣିବାପାଇଁ ପ୍ରବୋଧିତ ହେବ । ଏହି ଭାବରେ ତାଙ୍କ ଚିତ୍ରକଳ୍ପଗୁଡ଼ିକର ବୈଶିଷ୍ଟ୍ୟକୁ ଲକ୍ଷ୍ୟ କରାଯାଇପାରେ ।

ପୃଥିବୀର ଉତ୍ତମ ଉପନ୍ୟାସଗୁଡ଼ିକ ଏହି ଭାବରେ ଅଧିକ ସଚେଷ୍ଟିତ ସୂଚନାଧର୍ମୀ । ଜୀବନ ମରଣ ସମ୍ପର୍କରେ ଏମିତି ସୂଚନାମାନ ନଥିବାରୁ ହୁଏତ ଶତାଧିକ ଉପନ୍ୟାସ ଲେଖିଥିବା କେତେକ ଔପନ୍ୟାସିକ ଏମାନଙ୍କ ସମାସୀନ ହୋଇପାରନ୍ତିନି ।

ମଣିଷର ନିତିଦିନିଆ ହତାଶିଆ ତଥା ଆଇଁସିଆ ପରିବେଶ, ମଣିଷ ଭିତରେ ଥିବା ସ୍ଥୁଳ ମାଂସଳତାକୁ ଦେଖାଇବା ଦୃଷ୍ଟିରୁ ହୁଏତ ଆପାତତଃ ଶାନ୍ତନୁଙ୍କ ଉପନ୍ୟାସ ମଣିଷର ବର୍ବରତା ଓ ମାନସିକ ଅସୁସ୍ଥତାର କଥା ଲେଖିଛି ବୋଲି ମନେହୁଏ । ମାତ୍ର ଜୀବନପ୍ରତି ତାଙ୍କର ଏକାନ୍ତ ଅସ୍ୱାଭିକ ତଥା ଅନୁପମ ଦୃଷ୍ଟିଭଙ୍ଗୀ ରହିଛି । ସେ ଜୀବନକୁ ସେହି ଭାବରେ ଅବଲୋକନ କରିବାକୁ ଚାହିଁଛନ୍ତି । ଯେଉଁ ଶିଳ୍ପୀ ଜୀବନ ବୃତ୍ତିରେ ଯେତେ ଅଧିକ ସୂକ୍ଷ୍ମ କୋମଳତାର ସ୍ୱପ୍ନ ଦେଖେ, ସେ ସେତେ ବେଶୀ ସ୍ଥୁଳ ଜାନ୍ତବତାକୁ ବୋଧେ ଦେଖିଛି । ମଣିଷ ଭିତରେ ସାଧୁତାର ଅନ୍ୱେଷଣ କରିବାକୁ ଯାଇ ବହୁ ଶିଳ୍ପୀ ମଣିଷର ଇତର ତଥା ଅଭଦ୍ରୋଚିତ, ଅନୁଦାରତା ତଥା ସଇତାନିର ସବକ ଲେଖିଛନ୍ତି ।

ଦିବ୍ୟଜୀବନ ପ୍ରତି ଶାନ୍ତନୁଙ୍କ ଶିଳ୍ପୀପ୍ରାଣ ଅତ୍ୟନ୍ତ ଆଗ୍ରହୀ । ତାଙ୍କର ଜୀବନଦୃଷ୍ଟି ଓ ତା'ର ବ୍ୟାଖ୍ୟା ସେହି ଭାବରେ ଉଦ୍ଦିଷ୍ଟ । ମଣିଷର ଜୀବନ ଛବିଟିକୁ ସେ ସୁନ୍ଦରର ଆଲୋକରେ ଉର୍ଦ୍ଧ୍ୱକୁ ଟେକିଧରିବାପାଇଁ ଚାହିଁଛନ୍ତି । ଏହି ଇଙ୍ଗିତକୁ ଧରି ନପାରିଲେ ଆମେ ଶାନ୍ତନୁଙ୍କ ଶିଳ୍ପୀପ୍ରାଣର ବିଶ୍ୱାସ ଓ ଶ୍ରଦ୍ଧାଶୀଳତାକୁ ଚିହ୍ନିପାରିବା ନାହିଁ ।

ମଣିଷର ଏହି ସଂସାରକୁ ସେ ଅଶୁଦ୍ଧ ବୋଲି କଦାପି ଭାବିନାହାନ୍ତି । ମଣିଷ ଜୀବନର ଶ୍ରଦ୍ଧା ଓ ସମବାୟକୁ ସେ ଅବିଶ୍ୱାସ କରିନାହାଁନ୍ତି । ସେଇଥିପାଇଁ ବୋଧେ ଏସବୁର ବାଧକ, ମଣିଷ ଜୀବନର ହିଂସ୍ର କାମୁକତା, ସ୍ୱାର୍ଥପରତା ଏବଂ ଆଉସବୁ ଅଳୀକ ପ୍ରଲୋଭନଗୁଡ଼ିକୁ ସେ ସେହି ମଣିଷମାନଙ୍କ ଜରିଆରେ ପ୍ରଦର୍ଶନ କରିବାକୁ ଚାହିଁଛନ୍ତି ।

ଆଧୁନିକ ମଣିଷର ଆବିର୍ଭାବକୁ ସେ ତଥାପି ଆମ ଅତୀତର ଆଦିମ ସଂସ୍କାର ପ୍ରଭାବରୁ ସମ୍ପୂର୍ଣ୍ଣ ମୁକ୍ତକରି ଦେଖିନାହାଁନ୍ତି । ଏ ପୃଥିବୀର ଶିକ୍ଷିତ ଅଶିକ୍ଷିତ ସବୁ ମଣିଷମାନଙ୍କୁ ଏକ ମଧବର୍ତ୍ତୀ ଅବସ୍ଥାରେ ସେ ଦେଖିବାକୁ ଚାହିଁଛନ୍ତି । କାହାକୁ ସମ୍ପୂର୍ଣ୍ଣ ବୈରାଗ୍ୟ ଦେଇନାହାଁନ୍ତି, କି କାହାକୁ ଗୁଡ଼ିଏ ମୋହ ଓ ଆସକ୍ତିର ଅନ୍ଧକାର ଭିତରେ ରଖିନାହାଁନ୍ତି ।

ତାଙ୍କ ଗଳ୍ପ ଉପନ୍ୟାନସକୁ ସେ ଯଥାସମ୍ଭବ ଆମର ଏହି ବାସ୍ତବ ଜୀବନ ଓ ଜଗତ ଆଡ଼କୁ ଟାଣିଆଣିବାପାଇଁ ଚେଷ୍ଟା କରିଛନ୍ତି । ତାଙ୍କ ରଚନାକୁ କାହାଣୀନିଷ୍ଠ କରିବାର ନାଟକୀୟ ଯୋଜନା ତାଙ୍କୁ କାହାଣୀ ସୃଷ୍ଟିରେ ସୀମିତ କରି ରଖିଦେଇନି । ଜୀବନ ଭିତରେ ପୁଣି ଜୀବନ ବିତାଇବାରେ ଏତେ କାହାଣୀ କେଉଁଠୁ ଆସିଲା ? ଏତେ ନାଟକୀୟତା ପ୍ରକୃତରେ କେଉଁଠୁ ଆସିଲା ? ଜୀବନକୁ ବଦ୍ଧମୂଳ କୌଣସି ନୀତି, କୌଣସି ସଂସ୍କାର ବନ୍ଧନଯୁକ୍ତ କରୁ, ଜୀବନ ତା'ର ଗଭୀର ପ୍ରାଣପ୍ରାଚୁର୍ଯ୍ୟ (abundance of life) ଠାରୁ ଘୁଞ୍ଚିଆସୁ , ଏକଥା ବୋଧେ ଶାନ୍ତନୁଙ୍କ ପରି ଜୀବନବାଦୀ, ଶିଳ୍ପୀ ଆଦୌ ଚାହାନ୍ତିନି । ଗୋଟେ ସୁନ୍ଦର ଜୀବନର ସ୍ୱପ୍ନ, ଗୋଟେ ଆଶାବାଦ, ଗୋଟେ ଦିବ୍ୟଆନନ୍ଦ ଲାଭର ସମ୍ଭାବନା ପ୍ରତି ଆମ ଏ ସମୟର ଅଧିକାଂଶ ଓଡ଼ିଆ କଥାଶିଳ୍ପୀଙ୍କର ଏକ ଉନ୍ମୁଖତା ରହିଛି । ମନୋଜ ଦାସ, ଚନ୍ଦ୍ରଶେଖର ରଥ, ମହାପାତ୍ର ନୀଳମଣି ସାହୁ, ଶାନ୍ତନୁ କୁମାର ଆଚାର୍ଯ୍ୟ, ଚିତ୍ତରଞ୍ଜନ ଦାସ ତଥା

ଶରତ କୁମାର ମହାନ୍ତିଙ୍କ ପରି ବଡ଼ ବଡ଼ ସାହିତ୍ୟିକ ବୋଧେ ଉଲ୍ଲିଖିତ ଉନ୍ମୁଖତା କାରଣରୁ ଅରବିନ୍ଦ ଦର୍ଶନ ପ୍ରତି ଅଧିକ ଅନୁରକ୍ତ ।

ଜୀବନୋତ୍ତର ଉଲ୍ଲାସ ପ୍ରତି ତାଙ୍କ ଶିଳ୍ପୀ ଆତ୍ମାର ସମର୍ଥନ ରହିଛି । ଜୀବନ ପବିତ୍ର ହେଉ, ଜୀବନର ଉଚ୍ଚାରଣ ମନ୍ତ୍ର ପରି ହେଉ, ବୌଦ୍ଧିକତା ପ୍ରତି ଜୀବନର ଉନ୍ମୁଖତା ସୃଷ୍ଟି ହେଉ, ଏମିତି ଅଭିଳାଷ ଶାନ୍ତନୁଙ୍କ କେତେକ ଗଳ୍ପ ଉପନ୍ୟାସରେ ପ୍ରତୀକିତ ହୋଇଛି । ଶାନ୍ତନୁ ଯେତେ ନିରୁତା ଆଧୁନିକ ଶିଳ୍ପୀ ପରି ମନେହେଲେ ହେଁ , ସଂସ୍କୃତି ପ୍ରତି ତାଙ୍କର ମାନ୍ୟତା ଅନେକ ବେଶୀ । ବେଦ, ପୁରାଣ, ଗୀତା, ଭାଗବତର ବହୁ ଦାର୍ଶନିକ ଇଙ୍ଗିତ ତାଙ୍ଗ ଗଳ୍ପ ଉପନ୍ୟାସ ମାନଙ୍କରେ ମଧ ରହିଛି । ଯେତେ ବାସ୍ତବବାଦୀ ହେଲେ ବି ତାଙ୍କ ଗଳ୍ପ ଉପନ୍ୟାସର ଉଚ୍ଚ ଦାର୍ଶନିକ ଅନୁଷଙ୍ଗକୁ କଦାପି ଅସ୍ୱୀକାର କରିହେବନି ।

ଭାବପ୍ରଧାନତା ଓ ସେହିପରି ଅନେକ କାରଣରୁ ଉଭୟ ଗଳ୍ପ ଉପନ୍ୟାସରେ ସେ ପ୍ରାକ୍ତନ ତଥା ଗତାନୁଗତିକ ଗଳ୍ପବନ୍ଧକୁ ଯଥାସମ୍ଭବ ପରିହାର କରିଛନ୍ତି । ତାଙ୍କ ଶୈଳୀ ଭାରି କ୍ଷିପ୍ର । ବକ୍ତବ୍ୟରେ ସେ ପୁଣି ଅତ୍ୟନ୍ତ ପ୍ରଗଲ୍‌ଭ । ଭାଷାଯୋଜନାରେ ସେହିପରି ଭାରି ଆଧୁନିକ । ସାହିତ୍ୟରେ ଆତ୍ମା ବଦଳିଲେ ଫର୍ମ ଗତିଶୀଳ ହେଲାପରି ଶାନ୍ତନୁଙ୍କ ଶିଳ୍ପ, ଶୈଳୀ, ଭାଷା ଅଲଗା ପ୍ରକାରର ହୋଇଚି । ମୁଖ୍ୟତଃ ଥିମ୍ ବଦଳିବା କାରଣରୁ । ଶାନ୍ତନୁଙ୍କ ବ୍ୟବହୃତ ଭାଷାର ବିଶେଷ ସୃଜ୍ୟମାନ ଶକ୍ତିକୁ ଲକ୍ଷ୍ୟ କରାଯାଇପାରେ । ମଣିଷର ଅନ୍ତର୍ଗତ ଉଦ୍ଦାମ ପ୍ରବଣତା, ଭିତରର ସ୍ୱପ୍ନ, ଅବଦମିତ ପ୍ରବୃତ୍ତି ଫିଟିପଡ଼ିବାକୁ ଚାହେଁ । ମଣିଷ ମନରେ, ପ୍ରାଣରେ ଶକ୍ତି ସଞ୍ଚାର ହୁଏ ଏଇଥିପାଇଁ । ଜୀବନର ସ୍ୱପ୍ନିଳ ଉଦ୍‌ବେଳନକୁ ରୂପାୟିତ କରିବାକୁ ଯାଇ କଥାକାର ଶାନ୍ତନୁ ଆଚାର୍ଯ୍ୟ ମନୋଜ ଦାସଙ୍କ ପରି ସ୍ଥଳବିଶେଷରେ ଅତିକଳ୍ପନା ବା ଫାଣ୍ଟାସି ବ୍ୟବହାର କରିଛନ୍ତି ।

ଶାନ୍ତନୁ ଆଚାର୍ଯ୍ୟ ଲେଖିଥିବା କେତେକ ଗଳ୍ପ ଗ୍ରନ୍ଥ ହେଉଛି– 'ମନମର୍ମର' (୧୯୬୨), 'ଦୁର୍ବାର' (୧୯୬୫), 'ଏଇ ଶେଷ ପଦଟି '(୧୯୭୨), 'ଅରଣ୍ୟର ଚୂଳ' (୧୯୭୪), 'ଅଦିନ ବଉଳ' (୧୯୭୮) । ତାଙ୍କ ରଚିତ ପ୍ରସିଦ୍ଧ ଉପନ୍ୟାସଗୁଡ଼ିକ ହେଲା– 'ଶତାବ୍ଦୀର ନଚିକେତା', 'ତିନୋଟି ରାତିର ସକାଳ', 'ନରକିନ୍ନର', 'ଦକ୍ଷିଣାବର୍ତ୍ତ', 'ଅନ୍ୟ ଏକ ଭାରତ', 'ଯାତ୍ରାର ପ୍ରଥମ ପାଦ', 'ଶକୁନ୍ତଳା', 'ମନ୍ତ୍ରୀଙ୍କ ସେୟାର', 'ଧରିତ୍ରୀର କାନ୍ଦ' ଇତ୍ୟାଦି । ଏ ପ୍ରତ୍ୟେକଟି ଗଳ୍ପ, ଉପନ୍ୟାସ ଆମ ପାରମ୍ପରିକ ରଚନାଠାରୁ ଅନେକ ଦୃଷ୍ଟିରୁ ନୂତନ । ବହୁକାଳଧରି ଅନୁସୃତ ଗୋଟିଏ ପୁରୁଣା ବନ୍ଧ ବା ଢ଼ାଞ୍ଚାକୁ ଭାଙ୍ଗିଦେବା କମ୍ ଶକ୍ତି ଓ ସାହସର ଅପେକ୍ଷା ରଖେନା । ଗଳ୍ପ, ନାୟକ ପ୍ରକରଣ, ଅନେକ ବିଷୟକୁ ଅବାସ୍ତବଭାବେ ଆଦର୍ଶାୟିତ କରିବା ଆଦି ବିଷୟକୁ ଭାଙ୍ଗି ସମ୍ପୂର୍ଣ୍ଣ ବଦଳାଇ ଦେଇଥିବା ଶାନ୍ତନୁ ଆଚାର୍ଯ୍ୟ ସେପାଇଁ ଓଡ଼ିଆ କଥାସାହିତ୍ୟ ଧାରା ସହିତ ପରିଚିତ ପାଠକ ଓ କଥା ସମାଲୋଚକଙ୍କ ସମ୍ମୁଖରେ ଜଣେ ବୈପ୍ଳବିକ ପ୍ରତିଭା ।

କଥା ସାହିତ୍ୟ ପାଇଁ ନୋବେଲ ପୁରସ୍କାର ପାଇଥିବା ଶିଲାନପ୍‌ପାଙ୍କ 'Fallen Asleep White Young'ର ଉପନ୍ୟାସର ବର୍ଣ୍ଣନାଶୈଳୀ ପରି ଶାନ୍ତନୁ ଆଚାର୍ଯ୍ୟଙ୍କ ଶୈଳୀ । ଉପନ୍ୟାସରେ ଘଟଣାବିନ୍ୟାସଜନିତ ନାଟକୀୟତା ଅପେକ୍ଷା, ସାଧାରଣ ମଣିଷ ଓ ତା'ର ନିତିଦିନିଆ ମାମୁଲି ପରିବେଶ,

ତା'ର ସ୍ୱପ୍ନ, ସମ୍ପର୍କିତ ହେବାର ଇଚ୍ଛା, ତା ଚାରିକଡ଼ର କ୍ଷୁଦ୍ରକ୍ଷୁଦ୍ର ବାସ୍ତବ ଘଟଣାର ଅନାଳଙ୍କାରିକ ବର୍ଣ୍ଣନା ଦେବାକୁ ଶିଳାନ୍ୟପ୍ପା ଯେପରି ଭଲପାଉଥିଲେ, ଅନୁରୂପ ସାଦୃଶ୍ୟ ଆମେ ଶାନ୍ତନୁ ଆଚାର୍ଯ୍ୟଙ୍କ ଅଧିକାଂଶ ଗଳ୍ପ ଉପନ୍ୟାସର ବିଷୟଚୟନ ଓ ବର୍ଣ୍ଣନା ଶୈଳୀରେ ଦେଖୁଁ । ନିରୀହ ମିଣଷମାନଙ୍କ ଜୀବନ କଥାକୁ ପ୍ରକଟନ କରିବା ପାଇଁ ବିଷୟ ଖଞ୍ଜିବା ବ୍ୟାପାରଟି ଅଧିକାଂଶରେ କଥା ଓ କଳ୍ପନାବିରୋଧୀ ତଥା ଅଣରୋମାଣ୍ଟିକ ମଧ୍ୟ । ଏଇ ମାଟି ଓ ମଣିଷର କଥାକୁ ସେମିତି ଅନ୍ତର ଦେଇ କହିଜାଣିଲେ ସେ ଗୋଟେ କାହାଣୀ ପରି ପ୍ରତୀୟମାନ ନହେଉ ପଛେ, ତାହାର ଶୈଳୀ ଅବଶ୍ୟ ଅନେକ ମଣିଷଙ୍କ ହୃଦୟକୁ ଛୁଇଁବ । କାରଣ ମାଟି ଓ ମଣିଷ କାହାକୁ ପ୍ରିୟ ନଲାଗେ ? କାରଣ ଏ ସୁନ୍ଦର ପୃଥିବୀର ସରଳ କଥାସବୁକୁ ଅତି ନିଷ୍ଠୁର ଓ କୃତ୍ରିମ ଭାବରେ ଗଳ୍ପାୟିତ କରିଦେବାର ଅର୍ଥ ଛଳନା କଲାପରି ହୁଅନ୍ତା । କାଫକା ତେଣୁ ତାଙ୍କ ରଚନାରେ ଯଥାସମ୍ଭବ ଫେବଲ (Fable) ଓ ଏଲିଗୋରୀ (Allegory) ବିରୋଧୀ ଥିଲେ ।

ମୋଟ ଉପରେ କହିଲେ କୃତ୍ରିମ ଗଳ୍ପ ତିଆରି କରିବା ଅପେକ୍ଷା, ମାଟି ଓ ମଣିଷର କଥା, ତା'ର ଜନ୍ମ ମୃତ୍ୟୁର କଥା, ତା'ର ଭଲ-ମନ୍ଦ, ପାପ-ପୂଣ୍ୟର କଥା କହୁଥିବାବେଳେ କଥାଶିଳ୍ପୀ ଶାନ୍ତନୁ ଆଚାର୍ଯ୍ୟ ଅଧିକ ଦାର୍ଶନିକତା ଓ ଏସ୍‌ଥେଟିକ୍ (Aesthetic) ଉପରେ ଗୁରୁତ୍ୱ ଦେଇଛନ୍ତି । ସମସ୍ତେ ଲକ୍ଷ୍ୟ କରିଥିବେ ଶାନ୍ତନୁ ଆଚାର୍ଯ୍ୟଙ୍କ ଗଳ୍ପ ଉପନ୍ୟାସରେ କେତେ କମ୍ କଥା ଓ କଳ୍ପନାଧର୍ମ (fictiousness) ରହିଛି । ବେଶୀ ରହିଛି ବରଂ ମଣିଷର ଭିତିରି ଇଚ୍ଛା । ଭିତରର ଦୁଃଖକୁ ବର୍ଣ୍ଣନା କରିବାର ଗୋଟେ ସହଜ ପ୍ରବଣତା । ଛୋଟ ଛୋଟ ଈର୍ଷା, ଦ୍ୱେଷ, ଟିକିଏ ଦେହସୁଖ ପାଇବାର ଲାଳସା, ନିଜ ଜୀବନର ଦୁଃଖ ଓ ବଞ୍ଚନା ପାଇଁ ଲୁହ ଗଡ଼ାଇବା ଆଦି ଶାନ୍ତନୁଙ୍କ ଉପନ୍ୟାସର ଏକ ଏକ ଅଂଶ । ଅନ୍ୟ ବିଷୟଠାରୁ ଏହାର ସମଷ୍ଟି ବରଂ ବେଶୀ ।

ହୃଦୟ, ମନ ଓ ଆତ୍ମା ପରି ପବିତ୍ର ସତ୍ତାର ଗଭୀରତମ ପ୍ରଦେଶକୁ ଯାଇ ଆଇଁସିଆ କାଦୁଆ ପଙ୍କର ସନ୍ଧାନ କରିବା, କିମ୍ବା ଅନ୍ଧାର ପହଁରିବାଜନିତ ସତ୍ୟ ଅନ୍ୱେଷଣ ଯଦି ଜଣେ ଶିଳ୍ପୀର ଧ୍ୟେୟ ହୁଏ, ତାହେଲେ ସେତେ କାହାଣୀର ଆରୋହଣ ଅବରୋହଣ ବିଷୟରେ ଧ୍ୟାନ ନଦେଇ ମଣିଷର ଅନ୍ତଶ୍ଚେତନ ଚିତ୍ରଣରେ ଅଧିକ ନିମଜ୍ଜିତ ହୋଇ ରହିବ ।

ଶାନ୍ତନୁ ସ୍ଥିତିବାଦୀ ଶିଳ୍ପୀମାନଙ୍କ ପରି ମଣିଷକୁ ପୁରୁଣା ନୀତିଶାସ୍ତ୍ର ନିୟମରେ ବିଚାର କରିନାହାନ୍ତି; ବରଂ ଚିତ୍ରଣ କରିଛନ୍ତି । ଶବ୍ଦ ଜରିଆରେ ସେ ପୃଥିବୀ ବିଷୟରେ କିଛି କଥା କହିପାରିବେ ଏମିତି ଭରସା ଶାନ୍ତନୁ କରିପାରିନାହାନ୍ତି । ପରସ୍ପର ବିରୋଧୀ କିଛି ଦାର୍ଶନିକ ଦ୍ୱନ୍ଦ ଭିତରେ ତଥାପି ସେ ରହିଛନ୍ତି । ପୁଣି ଜୀବନ ସୁନ୍ଦର ବୋଲି କହିବାର ସର୍ବଶେଷ ଦୃଢ଼ତା ତାଙ୍କର ଆସିନି । ତା ଅପେକ୍ଷାରେ ଅଛନ୍ତି । ଶିଳାନପ୍ପା ଯେପରି ଏ ପୃଥିବୀ ସୁନ୍ଦର, କେତେ ସୁନ୍ଦର ସେ ଦେଶର ଚଷାଘର ଓ ଦାସୀର ଜୀବନ ବୋଲି କୌଣସି ଦ୍ୱନ୍ଦ୍ୱରେ ନପଡ଼ି, କୌଣସି ସଂଶୟ ନଖି କହିଦେଲେ, ଶାନ୍ତନୁ ଅନେକତ୍ର ତଥାପି ସେପରି ସଂଶୟହୀନ ଭାବେ କହି ପାରି ନାହାନ୍ତି । ଏ ମାଟି, ପାଣି ପବନକୁ ସୁନ୍ଦର କରିଦେବା, ଏ ଆକାଶ ଦିଗ୍‌ବଳୟର ଶୋଭାରେ ବିମୋହିତ ହୋଇଯିବା, ମଣିଷ ଜୀବନକୁ ସବୁ ସନ୍ତାପ ସତ୍ତ୍ୱେ ସୁନ୍ଦର ବୋଲି ଜ୍ଞାନ କରିବାକୁ ବୋଧେ ଶାନ୍ତନୁ ଗୋଟେ ପ୍ରଚାର ବା ପ୍ରୋପାଗଣ୍ଡା କିମ୍ବା ତାଙ୍କର ଅହେତୁକ ଭାବପ୍ରବଣତା ହୋଇଯିବ ବୋଲି ଭାବିଛନ୍ତି ଓ ସେଥିରୁ କ୍ଷାନ୍ତ ହୋଇଛନ୍ତି ।

ଆମେ କଳା ଜରିଆରେ ଜୀବନର ସତ୍ୟ କ'ଣ ଜାଣିବାକୁ ଚାହୁଁ । ଯେ କୌଣସି ଭଲ ଉପନ୍ୟାସର ଲକ୍ଷ୍ୟ ହେଉଛି ସତ୍ୟାନୁସନ୍ଧାନ । ତାହା ଯେଉଁ ଭାଷାରେ ଯେପରି ଭାବେ ଲେଖାହୋଇଥାଉ ପଛେ, ସେ ପ୍ରୟାସ ଶାନ୍ତନୁ ଆଚାର୍ଯ୍ୟଙ୍କ ଗଳ୍ପ ଉପନ୍ୟାସରେ ରହିଛି । ଜର୍ଜ ଓ ରୈକ୍ସ, ନଟବର ଆଦି ଚରିତ୍ର ଚିତ୍ରଣ ଭିତରେ ଶାନ୍ତନୁଙ୍କ ସେ ସତ୍ୟାନୁସନ୍ଧାନର ପ୍ରୟାସକୁ କଳନା କରାଯାଇପାରେ । ତାଙ୍କର ଏହି ପ୍ରୟାସ ପାଇଁ ମଧ୍ୟ ତାଙ୍କୁ ପ୍ରଶଂସା କରାଯାଇପାରେ । ଜୀବନହିଁ ସବୁଠୁଁ ବଡ଼ । ତା'ର ମାଦକତା, ତା'ର ଉଦ୍ଦାମ ପ୍ରାଣପିପାସା, ତା'ର ଗୌରବ ହିଁ କଳାକାରର ଆଲେଖ୍ୟ ଓ ଉପଲବ୍ଧି । କଳା ଆନନ୍ଦ ଉପଭୋଗରେ ସହାୟତା କରେ । ଆମ ନିଜ ଜୀବନକୁ ବୁଝିବା ପାଇଁ କଳା ପ୍ରକୃତରେ ମନ୍ତ୍ର ପରି ।

ଏ ଜଗତରେ ନାନା ଦୁର୍ଭାଗ୍ୟଜନକ ପରିସ୍ଥିତି ସତ୍ତ୍ୱେ ବଞ୍ଚିରହିବାର ଉଲ୍ଲାସ ସତରେ ଏକ ବଡ଼କଥା । ଆମ ଜୀବନ ଅଭ୍ୟନ୍ତରର ମୂଳ ପ୍ରବଣତା ହେଉଛି ଆନନ୍ଦ । ଜଣେ ଉତ୍ତମ କଳାକାର ସେହି ଆନନ୍ଦ, ସେହି ସତ୍ୟର କୀର୍ତ୍ତନ କରିବା ଉଚିତ୍ ।



# ସମ୍ଭାବନାର ପଦଯାତ୍ରା

(ଶାନ୍ତନୁ ଆଚାର୍ଯ୍ୟଙ୍କ ଗଳ୍ପ– ଦିଗନ୍ତ)

ଇନ୍ଦୁ ମିଶ୍ର

ବ୍ୟକ୍ତିଗତ ଜୀବନର ଅନୁଭୂତି ସହ ବ୍ୟାପକ ବିଶ୍ୱର ଘଟଣା ଗୁଚ୍ଛ ତଥା କ୍ରିୟା–ପ୍ରତିକ୍ରିୟା ଗୋଟିଏ ସୂତ୍ରରେ ଗୁନ୍ଥି–ରଖିବାର ଏକ ପ୍ରକୃଷ୍ଟ ମାଧମ ହେଉଛି ଗଳ୍ପ-କଳା । ମୁହୂର୍ତ୍ତକର ଝଲକ ଭିତରେ ନିଖିଳ ପୃଥିବୀର ସାମାଜିକ, ସାଂସ୍କୃତିକ ତଥା ରାଜନୀତକ ଚେତନାକୁ ଏକ ବିନ୍ଦୁର ପରିଧିରେ ସମାହିତ କରିବାର ବିସ୍ମୟକର ଶକ୍ତି ରହିଥାଏ ଗଳ୍ପ–ସାହିତ୍ୟର । ଯୁଗ ଓ ଜୀବନର ଜଟିଳତା ସହ ଗଳ୍ପର ଧାରା ବଦଳେ। ସମାଜ ନୂଆ ନୂଆ ଦିଗ୍‌ବଳୟକୁ ଛୁଇଁବା ସହ ସାହିତ୍ୟର ଦିଗ ଓ ବାଗ ବଦଳିଯାଏ । ଗଳ୍ପକାର ପାରମ୍ପରିକ ତ୍ରିଭୁଜାୟିତ ପ୍ରେମର ଗଳ୍ପଟିଏ ନକହି ଜଟିଳ ଜୀବନ-ଧାରା ସହ ମାନବିକ ସତ୍ତାର ସଂଘର୍ଷକୁ ନୂଆ ନୂଆ ରୀତିରେ ଉପସ୍ଥାପିତ କରନ୍ତି । ସାହିତ୍ୟରେ ନବତରଙ୍ଗ ସୃଷ୍ଟି ହୁଏ ।

କଥାକାର ଶାନ୍ତନୁ କୁମାର ଆଚାର୍ଯ୍ୟ ଓଡ଼ିଆ ଗଳ୍ପର ନବତରଙ୍ଗ ପର୍ଯ୍ୟାୟର ଜଣେ ଶକ୍ତିମାନ ସ୍ରଷ୍ଟା । ଉଭୟ ଉପନ୍ୟାସ ଓ ଗଳ୍ପ କ୍ଷେତ୍ରରେ ତାଙ୍କର ଏକନିଷ୍ଠ ତଥା ଏକାଗ୍ର ସାଧନା ଓଡ଼ିଆ କଥା-ସାହିତ୍ୟକୁ ଯେ ବିପୁଳ ଭାବରେ ସମୃଦ୍ଧ କରିଛି – ତାହା ଅନସ୍ୱୀକାର୍ଯ୍ୟ । ସ୍ୱାଧୀନତା ପରବର୍ତ୍ତୀ କାଳରେ ଯେଉଁ କଥାକାରଗଣ ଭାବଧର୍ମୀ ଗଳ୍ପ ଓ ଉପନ୍ୟାସ ରଚନା କରି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖିଛନ୍ତି ଆଚାର୍ଯ୍ୟ ସେମାନଙ୍କ ମଧ୍ୟରୁ ଅନ୍ୟତମ । ତାଙ୍କର ଜଟିଳ ଭାବ ଜଗତରେ ଗୁଂଫିତ ହୋଇଛି ବହୁ ରହସ୍ୟବାଦୀ ଆଧିଭୌତିକ ଜୀବନ-ଜିଜ୍ଞାସା । ସମାଜର ପତନ-ଅଭ୍ୟୁଦୟର ବନ୍ଧୁର ଗତିବେଗ ପୁଣି ରାଜନୀତିର ବିଶ୍ୱବ୍ୟାପୀ ବିବର୍ତ୍ତନ । ସଂସ୍କୃତିର କ୍ରମବିଲୟନ ମଧ୍ୟରେ ପ୍ରାୟ କ୍ରିୟାଶୀଳ ରହିଛି ତାଙ୍କର ଭାରତୀୟ ମାନସିକତା । ରାଜନୀତିର ନୂଆ ନୂଆ ହଟଚମଟ ଭିତରେ, ସମାଜର ପାଶ୍ଚାତ୍ୟ ଢ଼ାଞ୍ଚା ଭିତରେ ସେ ସନ୍ଧାନ କରିଛନ୍ତି ଭାରତର ସାଂସ୍କୃତିକ ଆତ୍ମା । ଯୁଗଚେତନାର ଅଧୋପତନ ଭିତରେ ସମ୍ଭାବନାର ପଦଯାତ୍ରା ଅବ୍ୟାହତ ରହିଛି ତାଙ୍କ ସୃଷ୍ଟିରେ । ଜୀବନର ପ୍ରାତ୍ୟହିକ ଓ ଆଧାତ୍ମିକ ସମସ୍ୟାବଳୀକୁ ଉତ୍‌ଥାପିତ କରିବା ସଙ୍ଗେ ସଙ୍ଗେ ବ୍ୟାପକ ଜୀବନ- ପରିଧି ସହ କଳାତ୍ମକ ରୀତିରେ ଏହାକୁ ସଂଯୁକ୍ତ କରିଥାନ୍ତି କଥାକାର । ଏହି ଧାରାରେ ତାଙ୍କର ରହିଛି ଏକ ବିଶାଳ କଥା– ସାହିତ୍ୟର ଜଗତ । 'ଦକ୍ଷିଣାବର୍ତ୍ତ', 'ନରକିନ୍ନର', 'ଶତାବ୍ଦୀର ନଚିକେତା', 'ତିନୋଟି ରାତିର ସକାଳ', 'ଅନ୍ୟ ଏକ ସମୟ ଅନ୍ୟ ଏକ ଭାରତ', ଓ 'ଶକୁନ୍ତଳା', ଭଳି ଉପନ୍ୟାସ ସହ ସେ ସୃଷ୍ଟି କରିଛନ୍ତି 'ମନ ମର୍ମର', 'ଏଇ ଶେଷ ପଦଟି', 'ହୃଦ କୋଳପ', 'ଧର୍ମହାଟ', 'ସର୍ପ ଯାନ', ଓ 'ଚଳନ୍ତି ଠାକୁର' ଭଳି ବହୁ କ୍ଷୁଦ୍ରଗଳ୍ପ ଏବଂ ଗଳ୍ପ ସଂକଳନ ।

ଆଚାର୍ଯ୍ୟଙ୍କ କଥା ସାହିତ୍ୟର ମୁଖ୍ୟ ସ୍ୱର ମାନବିକ ଜୀବନାଭୂତି । ଯେଉଁଠାରେ ଏହି ଜୀବନାନୁଭୂତି ଖଣ୍ଡିତ ଅଥବା ବିକୃତ ହୋଇଛି ସେଠାରେ ପତନର ଚିତ୍ରକୁ ସେ ଯଥାସାଧ ପ୍ରଦର୍ଶିତ କରିଛନ୍ତି । ସର୍ବତ୍ର ସମାଧାନ ପାଇଁ ଇଙ୍ଗିତ ହୁଏତ ଦେଇପାରି ନାହାଂନ୍ତି। ବ୍ୟାପକ ବିଷାଦ ଓ ବିମର୍ଷ ଭାବସତ୍ତା ପରିଣତି ଯାଏ ହୁଏତ ଆବୋରି ବସିଛି ଗଳ୍ପସ୍ୱରକୁ । ମାତ୍ର ଏହି ବିଷାଦବୋଧ ମଧ୍ୟରେ ଜୀବନର ସତ୍ୟାନୁସନ୍ଧାନ ଜାରି ରହିଛି ତାଙ୍କ ଗଳ୍ପଗୁଚ୍ଛରେ । ପ୍ରଶ୍ନାକୂଳ ଜୀବନରେ ସାମଗ୍ରିକ ତଥା ପୂର୍ଣ୍ଣାଙ୍ଗ ଉତ୍ତର ହୁଏତ ମିଳେ ନାହିଁ ମଣିଷକୁ । ଗୋଟିକ ପରେ ଗୋଟିଏ ପିଢ଼ିର ଅଗ୍ରଗତି ସହ ପ୍ରଶ୍ନର ଗୋଲକ ଧନ୍ଦା କ୍ରମଶଃ ଜଟିଳ ହୁଏ ମାନବିକ ବୁଦ୍ଧିର ବିକାଶ ସହ ପ୍ରଶ୍ନର ସୀମାରେଖା ହୁଏତ ସଂପ୍ରସାରିତ ହୋଇଯାଏ । କ୍ରମଶଃ ପ୍ରସାରିତ ଓ ପରିମାର୍ଜିତ ହୁଏ ଏହାର ଦିଗ୍‌ବଳୟ । ଏଇ ପରିପ୍ରେକ୍ଷୀରେ Isac Asimov ଙ୍କର ଏକ ଉକ୍ତିକୁ ଏଠାରେ ଉଦ୍ଧାର କରାଯାଉଛି –

"The total and complete answer may never come. But with each generation the riddle moves to a higher and more sophisticated level x x x."

(World Literature - P - 109)

ଶାନ୍ତନୁ ଆଚାର୍ଯ୍ୟ ଜୀବନର ସତ୍ୟାନୁସନ୍ଧାନ ବେଳେ ନିଜ ସୃଷ୍ଟିରେ ସର୍ବତ୍ର ପୂର୍ଣ୍ଣାଙ୍ଗ ଉତ୍ତରଟିଏର ଅନ୍ୱେଷାରେ ବ୍ୟାପୃତ ରହିନାହାନ୍ତି । ବହୁ ମାର୍ମିକ ଅନୁଷଙ୍ଗ ସାହାଯ୍ୟରେ ଜୀବନର ଜଟିଳତାକୁ ଉପସ୍ଥାପିତ କରିବା ସହ ପାଠକ ପ୍ରାଣରେ ଅନେକତ୍ର ପଠନୋତ୍ତର ମୁଦ୍ରାଙ୍କ ଛାପି ଦେବାରେ ଅବଶ୍ୟ ସମର୍ଥ ହୋଇଛନ୍ତି । ତାଙ୍କ କଥା ସାହିତ୍ୟର ପାଠକ ସଂଖ୍ୟା ଏହି କାରଣରୁ ସ୍ୱଳ୍ପ ହେଲେ ମଧ୍ୟ ଆଚାର୍ଯ୍ୟଙ୍କ ସୃଷ୍ଟି ପ୍ରତି ସେମାନଙ୍କର ବିଶ୍ୱସ୍ତତା ନିଃସନ୍ଦିଗ୍ଧ । ରେଡିମେଡ୍ କାହାଣୀନିର୍ଭର ଗଳ୍ପ ରଚନା କରି ବିପୁଳସଂଖ୍ୟକ ପାଠକୀୟ ରୋମାଞ୍ଚ ଲାଭ କରିପାରି ନଥିଲେ ମଧ୍ୟ ନିଜସ୍ୱ ସାଧନାର ଧାରା ପ୍ରତି ତାଙ୍କର ଏକନିଷ୍ଠ ବିଶ୍ୱାସବୋଧ ଅନସ୍ୱୀକାର୍ଯ୍ୟ ।

ଶାନ୍ତନୁ ଆଚାର୍ଯ୍ୟଙ୍କ ଗଳ୍ପ-ମାନସର ଏକ ବୈଚିତ୍ର୍ୟମଣ୍ଡିତ ପୃଷ୍ଠପଟ୍ଟ ରହିଛି । ତାହାର ଦିଗନ୍ତ ବହୁ-ପାର୍ଶ୍ୱିକ (multidimensional) । ସାମାଜିକ ଓ ରାଜନୈତିକ ଜୀବନର ଅଧୋପତନକୁ ସେ ବହୁ ଗଳ୍ପରେ ଶାଣିତ ଶ୍ଳେଷ କରିଛନ୍ତି । ସ୍ୱାଧୀନତା ପରବର୍ତ୍ତୀ କାଳରେ ସର୍ବଭାରତୀୟ ସ୍ତରରେ ଉଭୟ କଥା ଓ କବିତାରେ ଏହି ଶ୍ଳେଷଶାଣିତ ସ୍ୱର ପ୍ରାୟ ପରିଲକ୍ଷିତ ହୁଏ । ଗାନ୍ଧିବାଦୀ ଚିନ୍ତାଦର୍ଶର ଅବମୂଲ୍ୟାୟନ ପରିପ୍ରେକ୍ଷୀରେ ଉଭୟ ନେତୃବର୍ଗ ଓ ଅମଲାତନ୍ତ୍ରର ଦୁର୍ନୀତିକୁ ସାହିତ୍ୟିକଗଣ ପ୍ରାୟ ଖୋଲାଖୋଲି ସମାଲୋଚନା କରିଛନ୍ତି । ଗାନ୍ଧୀଜୀ ସ୍ୱାଧୀନତା ପରବର୍ତ୍ତୀ କାଳରେ ହୋଇଛନ୍ତି ଗୃହସଜ୍ଜାର ଉପକରଣ । ମାଛ ତେଲରେ ମାଛ ଭାଜିବା ପରି ଗାନ୍ଧିଟୋପି ଓ ଖଦଡ଼ ପୋଷାକର ଅନ୍ତରାଳରେ ହିଁ ଦୁର୍ନୀତି ଓ ଦୂରାଚାରର ସ୍ରୋତ ବହିଯାଇଛି । ଶାନ୍ତନୁ ଆଚାର୍ଯ୍ୟଙ୍କ 'ଦୁର୍ବାର' ଗଳ୍ପଟିକୁ ଏଠାରେ ପ୍ରସଙ୍ଗକ୍ରମେ ଆଲୋଚନାର ପରିସରଭୁକ୍ତ କରାଯାଉଛି । 'ଅନ୍ତର୍ଭାରତୀୟ ପୁସ୍ତକ ମାଳାର' ଓଡ଼ିଆ ଗଳ୍ପ ମାଳା'ରେ ସ୍ଥାନିତ ଏହି ଗଳ୍ପଟିରେ ଦୁର୍ନୀତିର ପ୍ରତୀକ ହେଉଛି ମୂଷା ତଥା ନବଜାଗ୍ରତ ଯୁବଶକ୍ତିର ପ୍ରତୀକ ହେଉଛି ଧାଡ଼ୁ । ଯୁବଶକ୍ତିର ଦୁର୍ନିବାର ଆକ୍ରମଣରୁ ଆତ୍ମରକ୍ଷାପାଇଁ ମୂଷା ''ଗୋଟାଏ ଗାନ୍ଧୀ ଫଟୋର ପଛଆଡ଼େ'' ଆତ୍ମଗୋପନ କରିବା ଯେଉଭଳି ବ୍ୟଙ୍ଗାତ୍ମକ ସେହିଭଳି ସୂଚନାତ୍ମକ । ଶାନ୍ତନୁ ଆଚାର୍ଯ୍ୟଙ୍କର ବହୁ ଗଳ୍ପରେ ସମାଜିକ ଜୀବନର ଅବକ୍ଷୟ

ପ୍ରତି ଚାହାଣୀ ବେଶ୍ ଶ୍ଳେଷଶାଣିତ । ଅବକ୍ଷୟର ପୃଷ୍ଠପଟରେ ରହିଛି ଚଳନ୍ତି ମଣିଷର ସଂଭୋଗସର୍ବସ୍ୱ ମନ, ସ୍ୱଳ୍ପ କାଳ ଓ ସୀମିତ ଶ୍ରମ ବିନିମୟରେ ବିପୁଳ ଅର୍ଥ ହାସଲ କରିବାର ପ୍ରଣବତା । ସ୍ୱାଧୀନତା ଉତ୍ତରକାଳର ପରିବର୍ତ୍ତିତ ମାନସିକତା ମଧ୍ୟରେ କ୍ରିୟାଶୀଳ ରହିଛି ମଣିଷର ପ୍ରବଞ୍ଚନା । ମୁଖାପିନ୍ଧା ମଣିଷଟି ଅନ୍ତରାତ୍ମାରେ ନର୍ଦ୍ଦମାର କୀଟଠାରୁ ମଧ୍ୟ ଅଧିକ ଘୃଣ୍ୟ ଓ ମାରାତ୍ମକ ଭାବେ କ୍ଷତିକାରକ । ତାଙ୍କ ମତରେ ଆଜିର ଛଳନାପ୍ରିୟ ''ମଣିଷ ସତରେ ଗୋଟାଏ ପଶୁ - ସତରେ ଗୋଟାଏ କୀଟ । ମନୁଷ୍ୟତା କେବଳ ଗୋଟାଏ ମୁଖା, ଗୋଟାଏ ଆବରଣ । '' (କେତୋଟି ମୁହୂର୍ତ୍ତ) ଏହି କୀଟ-ମଣିଷଟିର ଅନ୍ତରାଳରେ ଛପି ରହିଥିବା ବହୁ ଦୁର୍ଭାବନା ଓ କ୍ଷୁଦ୍ରତା ଗାଳ୍ପିକ ଉଦ୍‌ଘାଟିତ କରିଛନ୍ତି ବିବିଧ ଭାବ- କଳ୍ପନାରେ । ମାନବିକତାର ବିପର୍ଯ୍ୟୟ ସହ ସୃଷ୍ଟି ହୋଇଥିବା ଆଧ୍ୟାତ୍ମିକ ସଂକଟସମୂହକୁ ପ୍ରକାଶ କରିଛନ୍ତି ନିଜସ୍ୱ ସୃଷ୍ଟି ଶିଳ୍ପରେ । ବିଧର୍ମୀ ସଂସାରକୁ 'ଧର୍ମହାଟ' ରୂପେ ଅଭିହିତ କରି ଆମ ସମାଜ- ଜୀବନର ପତନୋନ୍ମୁଖୀ ଚିତ୍ରଟିକୁ ଟୋଳି ଧରିଛନ୍ତି ବ୍ୟଙ୍ଗାତ୍ମକ ଶିଳ୍ପ-ସୃଷ୍ଟିର ମାନଚିତ୍ରରେ । ଦୁର୍ନୀତିର ଦ୍ୱାରରେ ଏଠି ହାତୀ ଗଳିଯାଉଥିବା ବେଳେ ନିରୀହ ଦରିଦ୍ର ବାଳକଟିଏ ଦୋକାନରୁ ପଚା ଆଳୁଟିଏ ଚୋରି କରୁ କରୁ କିପରି ସୁନାଚୋରି ଅପରାଧରେ ଅଭିଯୁକ୍ତ ହୋଇଛି ତାହା ଅଭିବ୍ୟକ୍ତ ହୋଇଛି 'ଧର୍ମହାଟ' ଗଳ୍ପରେ । ମୁଣିରେ ଥିବା ପଚା ଆଳୁ ଓ ପଚା ବାଇଗଣଟିକୁ ଆଳ କରି ପିଲାଟିକୁ ସୁନାଚୋରି ଅଭିଯୋଗରେ ନିଷ୍ଠୁର ମାଡ଼ ମାରିଥିବା ତଥାକଥିତ ସଭ୍ୟ ମଣିଷମାନଙ୍କୁ ଗଳ୍ପ ଛଳରେ ଆହ୍ୱାନ ଦେଇଛନ୍ତି ଆଚାର୍ଯ୍ୟ । ବ୍ୟଙ୍ଗ ସହ ସମାନ୍ତରାଳ ଭାବରେ ଜଡ଼ିତ ହୋଇ ରହିଛି କାରୁଣ୍ୟ -

''ଅବିକଳ ବଣି ଚଢ଼େଇଭଳି ଦିଶୁଥିବା ଛୋଟ ପିଲାଟି ଅନେକ ବେଳୁ ତଳେ ପଡ଼ିଯାଇଥିଲା । ତା ଛୋଟ ମୁଣିରେ ଗୋଟିଏ ପଚାଆଳୁ ଓ ଗୋଟିଏ ପଚା ବାଇଗଣ ଛଡ଼ା ଆଉ କିଛି ନଥିଲା ।'' (ଧର୍ମହାଟ - ଏଇ ଶେଷ ପଦଟି) ଅସଲ ସୁନା ଚୋର ସେତେବେଳକୁ ହୁଏତ ମିଶି ଯାଇଥିଲା ତଥାକଥିତ ସଭ୍ୟ-ସମାଜର ବିଶାଳ ଜନସ୍ରୋତରେ । ବାଳକଟିର ମୃତ ଶରୀର ଉପହାସ କରୁଥିଲା ଆମର ସଂଭୋଗପ୍ରବଣ ମନକୁ । ଆଧୁନିକ ମଣିଷର ଏହି ବସ୍ତୁବାଦୀ ମନକୁ ଭାରତୀୟ ଆଧ୍ୟାତ୍ମିକତା ଦିଗକୁ ମୁହାଁଇବା ପୂର୍ବରୁ ଗାଳ୍ପିକ ଉଖାରି ନିଖାରି ଦେଖିଛନ୍ତି ଆମର ସାମାଜିକ ଜୀବନର ବିପର୍ଯ୍ୟୟ ଓ ବିଡ଼ମ୍ବନାକୁ । 'ସମସପ୍ତକ' ଗଳ୍ପରେ ସେଥିପାଇଁ ସେ ଅଭିମତ ଦେଇଛନ୍ତି -

''ଆମେ ସବୁ କେତେଗୁଡ଼ିଏ ସମାନ୍ତରାଳ ସରଳରେଖା ମିଳି ପାରୁନା କେହି କାହା ସହିତ, କିନ୍ତୁ ବେଳେ ବେଳେ କାଟୁ ଆମେ ପରସ୍ପରକୁ । ଯୁକ୍ତ ହେଉ ପରସ୍ପର ସହିତ ମାତ୍ର ତାହା କେବଳ ସେଇ କେତେକ ସୁଦୂରସ୍ଥ ବିନ୍ଦୁରେ । '' (ସମସପ୍ତକ- ମନମର୍ମର)

ଶାନ୍ତନୁ ଆଚାର୍ଯ୍ୟ ବିଜ୍ଞାନର ଛାତ୍ର ହୋଇଥିବା ଯୋଗୁ ସରଳ ରେଖାର ଗାଣିତିକ ବୈଶିଷ୍ଟ୍ୟକୁ ପ୍ରଚଳିତ ସାମାଜିକତା ପରିପ୍ରେକ୍ଷୀରେ ଯଥାଯଥ ଭାବେ ପ୍ରୟୋଗ କରିଛନ୍ତି । ବୈଷମ୍ୟ ଓ ବିଚ୍ଛିନ୍ନତା ମଧ୍ୟରେ ସନ୍ଧାନ କରିଛନ୍ତି ସାମ୍ୟ ଓ ଏକତ୍ୱର । ତାଙ୍କ ଗଳ୍ପ– ସ୍ୱର ସେଥିପାଇଁ ସମାଜ– ଜୀବନର ଚଢ଼ା-ଉତୁରା ଭିତରେ ସର୍ବଶେଷ ମାନବିକ ସଫଳତା ପାଇଁ ଅନେକତ୍ର ଆଶାବାଦୀ । ମଣିଷର ବିଫଳତା ଓ ବୀଭତ୍ସତାକୁ ସେ ଅବଶ୍ୟ ତାଙ୍କ କଥା– ସାହିତ୍ୟରେ ଖୋଲା ଖୋଲି ପଦାରେ ପକେଇ ଦେଇଛନ୍ତି । 'ଅରଣ୍ୟର ଚୂଳ' (ଅରଣ୍ୟର ଚୂଳ), 'ଅପଶବ୍ୟ' (ସର୍ପଯାନ) ଭଳି ଗଳ୍ପ ଗୁଡିକୁ ଏଠାରେ ପ୍ରସଙ୍ଗ

କ୍ରମେ ଆଲୋଚନାର ପରିସରଭୁକ୍ତ କରାଯାଇପାରେ । 'ଅରଣ୍ୟର ଚୂଳ' ଗଳ୍ପ ସଂକଳନର ଶୀର୍ଷକ ଗଳ୍ପ 'ଅରଣ୍ୟର ଚୂଳ' ରେ ମଣିଷର ହିଂସ୍ର, ପାଶବିକ ପ୍ରବୃତ୍ତିର ମୂଳୋତ୍ପାଟନ ସହ ତପୋବନ ସଭ୍ୟତା ଲାଳିତ ଭାରତୀୟ ଆର୍ଯ୍ୟ ଜୀବନର ମହତ୍ୱ ପ୍ରତିପାଦିତ । ପିତା ମାତାଙ୍କୁ ହରାଇବା ପରେ ଅରଣ୍ୟବେଷ୍ଟିତ ନିପଟ ପଲ୍ଲୀ ଗ୍ରାମରୁ ସହରକୁ ଆସିଥିବା ନାଟୁ ଓ ତା'ର ବଡ଼ ଭଉଣୀ ନଗର-ଜୀନବର ନିରର୍ଥକତା ପ୍ରତି ପ୍ରଥମରୁ ହିଁ ସଚେତନ ହୋଇଛନ୍ତି । ନାଟୁର ବଡ଼ ଭଉଣୀ ଯିଏ – ''ଭାରି ଗମ୍ଭୀର, ଭାରି ଉଦାସ - କିନ୍ତୁ ଦୁଃଖରେ ଥିଲା ଭଳି ନୁହେଁ । ତଥାପି ଦୁନିଆ ଯାକର ସବୁ ଦୁଃଖ ସେଇଠି ଜମାଟ ବାନ୍ଧିଥିଲା ପରିଦିଶେ'' – ସହରଟି ତା' ଦୃଷ୍ଟିରେ ଥିଲା ନିତାନ୍ତ କଦର୍ଯ୍ୟ । ରାତିରେ ରାସ୍ତା ଧାରରେ ଆଶ୍ରୟ ନେଇଥିବା ଭଉଣୀ ତା'ର ସାନ ଭାଇ ନାଟୁକୁ କହିଛି–

'ଏଠି ଯେତେ ବଡ଼ ବଡ଼ କୋଠା ଦେଖୁଛୁ ସେଗୁଡ଼ାକ କଅଣ ଜାଣୁ ? ମେଦେ ଗୁହ– ମେଦେ ମେଦେ ଗୁହ ଛଡ଼ା ଆଉ କିଛି ନୁହେଁ ।'' (ଅରଣ୍ୟର ଚୂଳ-ଅରଣ୍ୟର ଚୂଳ)

କଳ ଭଳି ଚାଲିଛି ଶହ ଶହ ଲୋକଙ୍କର ସହର ସଫେଇ କାମ । ''ଯୋଉମାନେ ବାପ-ମା' ଛେଉଣ୍ଡ ହେଇ ଖାଇବାକୁ ନପାଇ, ପୈତୃକ ଡିହ ଛାଡ଼ି ଗାଁ ଟାଉଟରଙ୍କ ହାବୁଡ଼େ ପଡ଼ି ପଳେଇ ଆସିଥିଲେ କୁଆଡ଼େ ନାଇଁ କୁଆଡ଼େ, ଆଉ ଶେଷରେ ଏକଜୁଟ ହେଇଥିଲେ ସେଇଠି, ସେଇ ତୀର୍ଥ ଜାଗା ଭଳି ସହରଟିରେ । '' ସହରର ପୂର୍ବ ଦିଗରେ ଦିଶୁଥିଲା ନିକଟସ୍ଥ ଅରଣ୍ୟର ଶୀର୍ଷ ଦେଶ ମନ୍ଦିରର ଚୂଡ଼ା ଭଳି । ଶାନ୍ତନୁ ଆଚାର୍ଯ୍ୟଙ୍କ ବହୁ ଗଳ୍ପରେ ଆଶାବାଦର ଯେଉଁ ଝଂକାର ଶୁଭେ ତାହା ଭାରତୀୟ ସଂସ୍କୃତିର ଭିତ୍ତିଭୂମି ଉପରେ ଆଧାରିତ । ତାଙ୍କର ଗଳ୍ପ ସ୍ୱର ବହୁ ସମୟରେ ଉପନିଷଦର ମନ୍ତ୍ର ଭଳି ଶୁଭେ । ତା' ମଧ୍ୟରେ ଉଦ୍‌ଘାଟିତ ହୁଏ ସମାଜ ଜୀବନର ବୈଚିତ୍ର୍ୟ । ମାନବିକ ପ୍ରବୃତ୍ତି ସକଳର ଛାୟାଲୋକ ଭିତରେ ଏକାଧାରରେ ଉଦ୍‌ଭାସିତ ହୁଅନ୍ତି ନର ଓ କିନ୍ନର । ଯୁଗବତ୍ ପ୍ରକଟିତ ହୁଅନ୍ତି ବିଦ୍ୟା ଓ ଅବିଦ୍ୟା । ବିଶାଳ ପୃଥିବୀକୁ ଗଳ୍ପର ଗାଲାକ୍‌ସି ଭିତରେ ଧରିରଖି ପାରୁଥିବା ତାଙ୍କର ଅନ୍ତର୍ଦୃଷ୍ଟି ମଣିଷ ଚରିତ୍ରର ଅନ୍ତଃରୂପକୁ ଉଖାରି ନିଖାରି ଦେଖୁଥିବା ଯୋଗୁ ଦାନବ ଭିତରେ ଦେବତ୍ୱର ସତ୍ତାକୁ ଯେଭଳି ଅବଲୋକନ କରିଛି, ସାମାଜିକତାର ଛଦ୍ମାବରଣ ତଳେ ଆତ୍ମଗୋପନ କରିଥିବା ହିଂସ୍ର ପାଶବିକତାକୁ ମଧ୍ୟ ସେହିଭଳି ଉନ୍ମୋଚିତ କରିଛି । ଯୁଗଚେତନାର ବିବର୍ତ୍ତନ ସହ ତାଙ୍କ ଗଳ୍ପରେ ରୂପାୟିତ ହୋଇଛନ୍ତି ବହୁ ବିଚିତ୍ର ଓ ବିପରୀତଧର୍ମୀ ଚରିତ୍ର । 'ଶତାବ୍ଦୀର ନଚିକେତା' ନାମରେ ଏକଦା ସେ ଉପନ୍ୟାସଟିଏ ରଚନା କରିଥିଲେ । ତାଙ୍କର ବହୁ ଗଳ୍ପରେ ମଧ୍ୟ ଦେଖିବାକୁ ମିଳେ ଅନ୍ୟ ଏକ 'ନଚିକେତା' ଯୁଗୀୟ ଜୀବନଧାରା, ସଂଘର୍ଷ ଓ ଉତ୍ପୀଡ଼ନ ଭିତରେ ଏହି ନଚିକେତା ଅନେକତ୍ର ଶ୍ୱାସରୁଦ୍ଧ । ମୃତ୍ୟୁଲୋକର ସନ୍ଧାନ ପାଇଁ ତା'କୁ ଆଉ ଯମଲୋକକୁ ଯାତ୍ରା କରିବାକୁ ପଡ଼େ ନାହିଁ । ଏହି ମର୍ତ୍ତ୍ୟଲୋକରେ ହିଁ ସେ ଅନୁଭବ କରିପାରେ ମୃତ୍ୟୁର ଯାତନା । ମାନବିକତା ବିବର୍ଜିତ ମଣିଷଟିଏ ମୃତ୍ୟୁଭିନ୍ନ ଜୀବନକୁ ବା କାହିଁ ଦେଖିପାରେ ? ଚଳନ୍ତି ସମୟର ସମସ୍ୟା ସକଳ ପ୍ରତି ଦୃଷ୍ଟିପାତ କରିବାକୁ ଯିବା ବେଳେ ଆଚାର୍ଯ୍ୟ ଯେଉଁ ଘଟଣା ଓ ଚରିତ୍ର ଆବିଷ୍କାର କରିଛନ୍ତି ତାହା ବହୁ ସମୟରେ ମାନବିକତାର ଚରମ ଅବମୂଲ୍ୟାୟନ ସୂଚାଇଦିଏ । ଧିକ୍‌କାର କରେ ମଣିଷ ତା'ର ମାନବିକ ଅସ୍ତିତ୍ୱକୁ । 'ସର୍ପଯାନ' ସଂକଳନର 'ଅପଶବ୍ୟ' (ଅଶୌଚ) ଗଳ୍ପଟି ଏହିଭଳି ଏକ ମାନବିକ ଅବକ୍ଷୟର କାହାଣୀ । ଭାରତୀୟ କଳାକୃଷ୍ଟିକୁ ରାତିର ନିରନ୍ଧ୍ର ଅନ୍ଧକାର ଭିତରେ ଚୋରା ଚାଲାଣ କରୁଥିବା 'ପଟ୍ଟନାୟକ' ଏ ଦୃଷ୍ଟିରୁ ଏକ

ପ୍ରତିନିଧି ସ୍ଥାନୀୟ ଚରିତ୍ର । ଭାରତୀୟ ମନ୍ଦିର ଗାତ୍ରରୁ ମୂର୍ତ୍ତି ଚୋରି ସଂପ୍ରତି ଆମ ସମାଜର ଏକ ବହୁ ଆଲୋଚିତ ମୁଖ୍ୟ ପ୍ରସଙ୍ଗ ରୂପେ ପରିଦୃଷ୍ଟ ହୋଇଛି । ସମ୍ବାଦପତ୍ରରେ ଏହି ମୂର୍ତ୍ତି ଚୋରିର ଚାଂଚଲ୍ୟକର ତଥ୍ୟ ପ୍ରକାଶ ପାଇବା ସହ ସାହିତ୍ୟ ପରମ୍ପରାରେ ମଧ୍ୟ ଏହାଏକ ବିଶେଷ ସତ୍ୟ ଭାବରେ ଅଭିବ୍ୟକ୍ତି ଲାଭ କରିଥିବା ଲକ୍ଷ୍ୟ କରାଯାଇଛି । କଥା–ଶିଳ୍ପୀ ସୁରେନ୍ଦ୍ର ମହାନ୍ତିଙ୍କ ଔପନ୍ୟାସିକ (Novelette) 'ଅଚଳାୟନ' ମୂର୍ତ୍ତିଚୋରି ପରିପ୍ରେକ୍ଷୀରେ ମୂଲ୍ୟବୋଧର ଅବକ୍ଷୟ ଉପରେ ଆଧାରିତ ଏକ ସୃଷ୍ଟି । ଶାନ୍ତନୁ ଆଚାର୍ଯ୍ୟ 'ସର୍ପଯାନ'ର 'ଅପଶବ୍ୟ'ରେ ଦର୍ଶାଇଛନ୍ତି ସେହି ମୂର୍ତ୍ତି ଚୋରିର ନିର୍ଲଜ୍ଜ ଅଥଚ ବାସ୍ତବଧର୍ମୀ ସତ୍ୟ । ଜହ୍ନରାତିର ମାୟା ଭିତରେ ଏଠାରେ ରୋମାଞ୍ଚିତ ହୁଏ ନାହିଁ ଗଳ୍ପ ନାୟକ । ସେ ନାୟକ ନୁହେଁ ବରଂ ଏକ ପ୍ରତି–ନାୟକ; ଏକ ଆଣ୍ଟି–ହୀରୋ ଜହ୍ନ ରାତିର ନିର୍ଜନତା ଭିତରେ ହରୀଶ ପଟ୍ଟନାୟକ ତାଙ୍କ ପତ୍ନୀଙ୍କ କାନରେ ଘୋଷି ଚାଲନ୍ତି -

''ବର୍ଷକୁ କୋଟିଏ ଟଙ୍କା - ଆଃ ବର୍ଷକୁ କୋଟିଏ ଟଙ୍କା !''

ସପ୍ତମ ଶତାବ୍ଦୀର ପ୍ରାଚୀନ କୀର୍ତ୍ତିକୁ ଡଲାର ବିନିମୟରେ ସେ ବିକ୍ରୟ କରି ଦେବାକୁ ଚାହିଁଛନ୍ତି ଆମେରିକାର କଳାପ୍ରେମୀମାନଙ୍କୁ । କଳା ଯେଉଁମାନଙ୍କ ପାଇଁ ବିଳାସ, ମୂର୍ତ୍ତି ଐତିହ୍ୟ ପରିବର୍ତ୍ତେ ଯେଉଁଠାରେ କେବଳ ସାଜସଜ୍ଜାର ଉପକରଣ ମାତ୍ର ସେଠାରେ ଚୋରା ମୂର୍ତ୍ତିକ୍ରୟ ପାଇଁ ମାର୍କିନ ବାସିନ୍ଦାକୁ ଦୋଷୀ ସାବ୍ୟସ୍ତ କରିହୁଏ ନାହିଁ । ମାତ୍ର ଯେଉଁ ଭାରତୀୟମାନେ ରାଷ୍ଟ୍ରୀୟ ଐତିହ୍ୟକୁ ଡଲାର ବିନିମୟରେ ବିକ୍ରୟ କରନ୍ତି, ସେମାନେ ଜଘନ୍ୟ ଭାବେ ଅପରାଧୀ । ସେମାନେ କେବଳ ମୂର୍ତ୍ତି ଚୋରା ଚାଲାଣ କରନ୍ତିନାହିଁ, ସେହି ଚୋରା ଚାଲାଣ ରୂପକ ବ୍ୟବସାୟକୁ ସୁଗମ କରିବାପାଇଁ ପତ୍ନୀଙ୍କୁ ବଳି ଦେବାପାଇଁ ମଧ୍ୟ ଆଗଭର ହୋଇ ବାହାରନ୍ତି । ପୁଣି ପତ୍ନୀ ଏଥିପାଇଁ ଅରାଜି ହେଲେ ଧମକ-ଚମକ ଦେଖାନ୍ତି, ଶେଷକୁ କିରୋସିନ୍ ପକାଇ ଜାଳିଦିଅନ୍ତି । ମାନବିକତାର ଅବକ୍ଷୟ ମଧ୍ୟରେ ବିଦ୍ୟା ଓ ବିମୁକ୍ତିର ନାରକୀୟ ଅଧୋପତନକୁ ଶିଳ୍ପୀ ଶାଣିତ ଭାବେ ବ୍ୟଙ୍ଗ କରିଛନ୍ତି । ମାନବିକ ଜୀବନର ଶୁଚିତା ହରାଇ ଜାନ୍ତବ ପାଶବିକତାର ବନ୍ଧନରେ ପଡ଼ିଥିବା ''ପଟ୍ଟନାୟକ ଗୋଷ୍ଠୀର ଲୋକଙ୍କୁ '' ''ଅପଶବ୍ୟ'' ବା ''ଅଶୌଚ'' କହି ଆକ୍ଷେପ କରିଛନ୍ତି ଆଚାର୍ଯ୍ୟ । ତାଙ୍କର ''ଅସତ୍ୟ ଯୁଗର ପଦଧ୍ୱନି'' ''ରାମରାଜ୍ୟ'' ଓ ''ଏ ଚଢ଼େଇ ନାଁ କଣ'' ଭଳି ଗଳ୍ପରେ ସମୟ ଓ ଜୀବନର ଅବକ୍ଷୟ ସହ ତହିଁରୁ ଉତ୍ତରଣ ପାଇଁ ପ୍ରତ୍ୟାଶା ଜାରି ରହିଛି । କାରଣ ସମାଜର ତଥାକଥିତ ଶୃଙ୍ଖଳ ସତ୍ତ୍ୱେ, ବସ୍ତୁର ଅମାପ ସମ୍ମୋହ ଓ ଆକର୍ଷଣ ମଧ୍ୟରେ ମଣିଷ ତ ଚିରକାଳ ଉତ୍ତାନପାଦୀ । ସେଥିପାଇଁ କେଉଁ ଏକ ଆଦିମ ଆରଣ୍ୟକ ପରିବେଶକୁ ଚତୁଷ୍ପଦ ପ୍ରାଣୀଟିଏ ଦିନେ ଆକାଶକୁ ଚାହିଁବାର ଆକୁଳତା ପ୍ରକାଶ କରିଥିଲା । ଏହି ଆକୁଳ ଆକାଂକ୍ଷାରୁ ସେ ହେଲା ଦ୍ୱିପଦ । ସମୟ କ୍ରମେ ଆଦିମ ମଣିଷ ରୂପାନ୍ତରିତ ହେଲା ଆଣବିକ ମଣିଷରେ । ମାତ୍ର ଆଦିମ ପ୍ରବୃତ୍ତି ସକଳ ତା' ଭିତରେ ବଳବତ୍ତର ରହିଲା ଓ ସମୟେ ସମୟେ କ୍ରିୟାଶୀଳ ମଧ୍ୟ ହେଲା । ଅସ୍ତିତ୍ୱବାଦୀ ଦାର୍ଶନିକମାନେ ଏହି ପାଶବିକ ପ୍ରବୃତ୍ତି ପରିଚାଳିତ ମଣିଷକୁ କହିଲେ "degenerated animal" । ଶାନ୍ତନୁ ଆଚାର୍ଯ୍ୟ ପାଶ୍ଚାତ୍ୟ ଅସ୍ତିତ୍ୱବାଦୀ ଢାଞ୍ଚାରେ ଠିକ୍ ମଣିଷକୁ ଚିତ୍ରିତ କରି ନଥିଲେ ମଧ୍ୟ ଜୀବନର ଅବମୂଲ୍ୟାୟନକୁ ବ୍ୟଙ୍ଗ କରିଛନ୍ତି କଠୋର ଭାବରେ । ଜୀବନର ନିରର୍ଥକତା ଓ ହୃଦୟହୀନତା ଭିତରେ ଅର୍ଥମୟତା ଓ ହୃଦୟବତ୍ତାର ସନ୍ଧାନ କାହିଁ ନା କାହିଁ ଉଙ୍କି ମାରିଛି । ଶତାବ୍ଦୀର ନଚିକେତା ମୃତ୍ୟୁ ଭିତରେ ସନ୍ଧାନ କରିଛି ଅମରତ୍ୱ । ଶାନ୍ତନୁ ଆଚାର୍ଯ୍ୟଙ୍କ ସଦ୍ୟ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାରପ୍ରାପ୍ତ

'ଚଳନ୍ତି ଠାକୁର'ର ଗଳ୍ପଗୁଡ଼ିକୁ ଏଇ ପରିପ୍ରେକ୍ଷୀରେ ସମୀକ୍ଷା କରାଯାଇ ପାରେ । ଚଳନ୍ତି ଜୀବନର ସମସ୍ୟା, ଶଙ୍କଟ, ସ୍ୱବିରୋଧ ଓ ପ୍ରଶ୍ନମନସ୍କତା ଭିତରେ ମାନବିକତାର ପୁନରାବର୍ତ୍ତନ ପାଇଁ ସନ୍ଧାନ ବଳବତ୍ତର ରହିଛି ଏହି ସଙ୍କଳନସ୍ଥ ଗଳ୍ପଗୁଚ୍ଛରେ । ''ଚଳନ୍ତି ଠାକୁର''ରେ ସଙ୍କଳିତ ଏଗାରଟି ଗଳ୍ପ ବିସ୍ତୃତ ହୋଇ ରହିଛି ପଲ୍ଲୀ ଅଞ୍ଚଳ ଠାରୁ ଭାରତର ନଗର ସଭ୍ୟତା ବାଟ ଦେଇ ଋଷିଆ ଓ ଆମେରିକା ପର୍ଯ୍ୟନ୍ତ । ତା' ଭିତରେ ଦେଇ ଫୁଟି ଉଠିଛି ମାନବ ଚରିତ୍ର ତଥା ମାନବ ସଭ୍ୟତାର ବହୁ ଘଟଣା ଓ ଦୁର୍ଘଟଣା । ଓଡ଼ିଶାର ପଲ୍ଲୀ ଅଞ୍ଚଳର ବହୁ ଈର୍ଷା ଓ ଅସୂୟାର କାହାଣୀ ସହ ଚଳନ୍ତି ନଗର ସଭ୍ୟତାର ଅପମିଶ୍ରିତ ତେଲର ସଂକ୍ରାମକ ବ୍ୟାଧି । ବିଦ୍ୟାଳୟ ତଥା ମହାବିଦ୍ୟାଳୟ ସ୍ତରର ଶିକ୍ଷା ବ୍ୟବସ୍ଥାର ତୃଟିବିଚ୍ୟୁତି ଠାରୁ ଆରମ୍ଭ କରି ଚାକିରି କ୍ଷେତ୍ରରେ ପ୍ରବେଶ କରିବାପାଇଁ ପଦସ୍ଥ ଅଫିସରମାନଙ୍କ ଉପରେ ପଡୁଥିବା ଚାପ ପୁଣି ବିବିଧ ଭାରତୀୟ ଲୋକବିଶ୍ୱାସ ଠାରୁ ଋଷିଆର ଗ୍ଲାସନଷ୍ଟ୍, ପେରିସ୍ତ୍ରାଇକୋ ତଥା ମାର୍କିନ କଳା-ପ୍ରେମ ବିନିମୟରେ ଭାରତୀୟମାନଙ୍କର ଡଲାର ଅର୍ଜନର ପ୍ରସ୍ତାବ ।

କବି ରବୀନ୍ଦ୍ରନାଥ ଏକଦା ଛୋଟ ଗଳ୍ପର ସଂଜ୍ଞା ନିରୂପଣ କରି କହିଥିଲେ- ଜୀବନର ବ୍ୟାପକ ଅଥବା ବୃହତ୍ତର ସମସ୍ୟା ପରିବର୍ତ୍ତେ ଏହା ବିଶାଳ ସମୟ-ସମୁଦ୍ରରୁ ଛୋଟ ଛୋଟ ଶାମୁକା ସଂଗ୍ରହ କରିବା ଭଳି ଜୀବନର ବ୍ୟାପକ ବିସ୍ତାର ମଧ୍ୟରୁ ସଂକ୍ଷିପ୍ତ ଘଟଣାଟିଏ ହିଁ ସଂଗ୍ରହ କରିନିଏ । ସେଇ ସଂକ୍ଷିପ୍ତ ଘଟଣା ଭିତରେ ବିଦ୍ୟୁତ୍‌ର ସ୍ଫୁରଣ ଭଳି ପ୍ରକାଶ ପାଏ ସମାଜ, ସଂସ୍କୃତି ତଥା ରାଜନୀତିକ ଜୀବନର ବହୁ ଝଲକ । ପୃଥିବୀର ବିଶାଳତା ଭିତରେ କେତେ଼ ଛୋଟ, କେତେ଼ ନଗଣ୍ୟ ସତ୍ତାଟିଏକୁ ଗାଳ୍ପିକ ଉପାଦାନ ଭାବେ ଗ୍ରହଣ କରନ୍ତି । କଳା ଓ ସାହିତ୍ୟରେ ରୂପାୟିତ ହୋଇଗଲା ପରେ ହିଁ ଜଣାଯାଏ କେତେ଼ ମହତ୍ତ୍ୱପୂର୍ଣ୍ଣ ସମୟ- ସମୁଦ୍ରର ସେ ଅଜଣା ଶାମୁକାଟି । ତା' ଭିତରେ କାହିଁ ଲୁଚି ରହିଗଲା ମୁକ୍ତାର ଚମକ । ଆଖିଦେଖା ଦୁନିଆରେ କାହିଁ ଦିଶୁନଥିଲା ତ ତା'ର ରଙ୍ଗ । ବାରି ହଉନଥିଲା ତ ତାର ମହକ । ''ଚଳନ୍ତି ଠାକୁର'' ରେ ଶାନ୍ତନୁ ଆଚାର୍ଯ୍ୟ ଏହିଭଳି କେତେକ ମାନବିକ ଚରିତ୍ର ଓ ଘଟଣାବଳୀକୁ ଉତ୍‌ଥାପିତ କରିଛନ୍ତି । କେବେ ସେ ଘଟଣା ଓ ଚରିତ୍ର ଆବିଷ୍କୃତ ହୋଇଛି ପଲ୍ଲୀ ଅଞ୍ଚଳର ଗଭୀର ଗଣ୍ଡରେ ତ କେବେ ଜ୍ୟୋତ୍ସାଚର୍ଚ୍ଚିତ ରାତ୍ରିର ମାୟାଲୋକରେ । କେବେ କୁଆଖାଇର ରୂପାରଙ୍ଗର ବାଲିଶଯ୍ୟାରେ ତ କେବେ ସୁଦୂର ଆମେରିକାସ୍ଥ ମାର୍କଟ୍ୱେନଙ୍କ ମିୟୁଜିୟମ୍‌ରେ । କେବେ ଖଜୁରୀ ଗଛର ଆମ୍ବାରେ ତ କେବେ ଜନଗହଳିପୂର୍ଣ୍ଣ ବସ୍‌ଷ୍ଟାଣ୍ଡର ବସ୍‌ଯାତ୍ରୀଙ୍କ ଗହଳରେ । ଜୀବନର ବୈଚିତ୍ର୍ୟମଣ୍ଡିତ ସତ୍ତା ଭିତରେ ଆବିଷ୍କାରର ଆହ୍ଲାଦରେ କଥାକାର ସମୟ ସମୟରେ ସ୍ୱୟଂ ଚରିତ୍ରଟିଏ ହୋଇ ପାଠକ ହାତରେ ଧରା ପଡ଼ିଯାଇଛନ୍ତି । କଲେଜ ହତାରେ ଜହ୍ନରାତିର ମାୟାରେ ବୀର ବାହାଦୂରର ତନ୍ତ୍ର ସାଧନା ସମ୍ପର୍କରେ ଏକାକୀ ତଦନ୍ତ କରିବାକୁ ଯାଇ ନିଜେ ବାନ୍ଧିହୋଇ ପଡ଼ିଛନ୍ତି ଅଲୌକିକତାର ମାୟାରେ । ସୁନାରଙ୍ଗର କୋକିଶିଆଳି ଦୁଇଟିକୁ ଆଖି ଆଗରେ ଦେଖି ମଧ୍ୟ କୁହୁଳିଛନ୍ତି ସନ୍ଦେହର ଧୂଆଁରେ -

'' ଏମାନେ କୋକିଶିଆଳି ନା ମଣିଷ ? ଏ କଲେଜ ହତାରେ କେତେ କ'ଣ ସତରେ ଏଭଳି ଦୁଷ୍ପ୍ରାପ୍ୟ ଜନ୍ତୁ ଏବେ ମଧ୍ୟ ବଞ୍ଚି ରହିଛନ୍ତି ? ତିନିହଜାର ଛାତ୍ରଙ୍କ ଛ ହଜାର ଆଖିରୁ ବଞ୍ଚି ଏମାନେ ରହିଛନ୍ତି କେମିତି ?'' (କଲେଜ ହତାରେ ଜହ୍ନରାତି - ଚଳନ୍ତି ଠାକୁର)

ସ୍ରଷ୍ଟାଙ୍କର ବହୁ ଗଳ୍ପ, ଏଭଳିକି ଉପନ୍ୟାସରେ ମଧ୍ୟ ଏଭଳି ଅଲୌକିକ ପରିବେଶ ତଥା ଘଟଣା ଓ ଚରିତ୍ରର ଅବତାରଣା ଘଟିଛି । ଅତି- ବାସ୍ତବବାଦଠାରୁ ଆରମ୍ଭ କରି ଆଧିଭୌତିକ ରହସ୍ୟବାଦ ଆଚ୍ଛନ୍ନ

କରିଛି ତାଙ୍କର ସୃଷ୍ଟି ଲୋକକୁ । ଏଭଳି ପରିବେଶରେ ଗଳ୍ପିକ ମନୋଜ ଦାସ ମଣିଷର ଅସହାୟତା ପୁଣି ପରିସ୍ଥିତି ନିକଟରେ ତା'ର ବିବଶତାକୁ ଅନେକତ୍ର ପ୍ରକାଶ କରିଥିବା ବେଳେ ଶାନ୍ତନୁ ଆଚାର୍ଯ୍ୟ ରହସ୍ୟବାଦର ଧୂମାଳ ପରିବେଶରୁ କେତେକ କ୍ଷେତ୍ରରେ ସମାଜ ଜୀବନର ବାସ୍ତବତା ଆଡ଼କୁ ମୁହାଁଇଛନ୍ତି । ତାଙ୍କ ଗଳ୍ପ ପରମ୍ପରାରେ ମଧ୍ଯ ମଣିଷ ଅସହାୟ । ଅଧିକନ୍ତୁ ବସ୍ତୁ ପ୍ରତି ସମ୍ମୋହ ଓ ତାତ୍‌କାଳିକ ସଂଭୋଗ ପାଇଁ ସେ ନିଜର ମାନବିକତାବୋଧକୁ କେତେକ କ୍ଷେତ୍ରରେ ସ୍ୱେଚ୍ଛାରେ ବିସର୍ଜନ ଦେଇ ଅସହାୟତାକୁ ବରଣ କରିଛି । ମଣିଷ ହୋଇଛି ଭୋଗସର୍ବସ୍ୱ ସଭ୍ୟତାର କ୍ରୀତଦାସ । 'ଜନଗଣମନ ଓ ତା'ର ଅଧିନାୟକ' ଗଳ୍ପରେ ଏକଦା ମାନବିକତା, ଶୌର୍ଯ୍ୟ , ସ୍ୱାଭିମାନ ତଥା ଆତ୍ମବିଶ୍ୱାସରେ ଋଦ୍ଧିମନ୍ତ ଭାରତବର୍ଷର ନାଗରିକମାନଙ୍କୁ ସ୍ରଷ୍ଟା ଏକ ତିର୍ଯ୍ୟକ୍ ଚାହାଣୀ ପ୍ରଦାନ କରିଛନ୍ତି । ଆମର ଚଳନ୍ତି ଜୀବନ ଏକ କମର୍ସିଆଲ୍ ଫିଲ୍ମ । ଚାହିଦାମୁତାବକ ବଞ୍ଚିବାକୁ ପଡୁଥିବା ଯୋଗୁ ଆମେ ସ୍ୱଳ୍ପ ସମୟରେ ବ୍ୟାପକ ଲାଭର ଆଶାଟିଏ ପଞ୍ଚିଥାଉ । ବସ୍‌ଷ୍ଟାଣ୍ଡର ନଳା ପାଖରେ ହାତଗୋଡ ହଲାଇ ଖେଳୁଥିବା ଅବୋଧ ଶିଶୁଟିର ଚିନ୍ତା ପରିବର୍ତ୍ତେ ଆମକୁ ଆକୃଷ୍ଟ କରେ ବୁଲାବିକାଳିଙ୍କ ତଥାକଥିତ ଅଲୌକିକ ମୁଦ୍ରିକା ଅଥବା କଙ୍କଣ ଓ ହାର । ନିଜର ଆକର୍ଷଣୀୟ କଣ୍ଠସ୍ୱର ଓ ଚମତ୍କାର ଅଭିବ୍ୟକ୍ତ କୌଶଳ ମାଧ୍ୟମରେ ମୁହୂର୍ତ୍ତକେ ଜନଗଣଙ୍କୁ ଆକର୍ଷିତ କରି ନିଅନ୍ତି -ଏହି ଯାଯାବର ବିକ୍ରେତାଗଣ । ଏକ ପକ୍ଷରେ ସଂଭୋଗପ୍ରିୟ ଅନ୍ୟ ପକ୍ଷରେ ଧର୍ମପ୍ରବଣ ମନର ଦୁର୍ବଳତାକୁ ଶିକାର କରି ନେଇ ପାରନ୍ତି ଏମାନେ । ଅପରିଚିତ ଦେବଶିଶୁଟି ସେହିଭଳି ପଡ଼ିରହିଥାଏ ଜୀବାଣୁସଂକ୍ରମିତ ମୂତନଳାରେ । ତା'ର ଜନକତ୍ୱ ଦାବିରେ ଅଧିକରୁ ଅଧିକ ଅର୍ଥ ଆଦାୟ କରି ଅଦୃଶ୍ୟ ହୋଇ ଯାଇଥାଏ ଅଜ୍ଞାତ ବିକ୍ରେତାଟି ବସ୍‌ଷ୍ଟାଣ୍ଡର ଗହଳିରେ । ଆମର ଜୀବନଧାରାକୁ ଆକ୍ଷେପକରି ଗଳ୍ପର ପରିଣତିରେ ସ୍ରଷ୍ଟା ମନ୍ତବ୍ୟ ଦିଅନ୍ତି -

''ନରକ ହିଁ ଆଜିର ମଣିଷର ନିବାସ । ଏ ପୃଥିବୀଟା ତ ଗୋଟାଏ ବିଶାଳ ନରକ, ଯୋଉଠି ପଡ଼ିଯାଇଚୁ ଆମେ ସମସ୍ତେ ଘଚ୍ଘଚ ।''

(ଜନଗଣଙ୍କ ମନ ଓ ତା'ର ଅଧିନାୟକ)

ଗାଳ୍ପିକ ଜୀବନର ନିଚ୍ଛକ ବାସ୍ତବତାକୁ ସୂଚାଇବା ସହ ଫେରାଇ ଆଣିବାକୁ ଚାହିଁଛନ୍ତି ଆମର ଦୃଷ୍ଟିକୋଣକୁ ବାଣିଜ୍ୟ ବା କମର୍ସ ଆଡୁ ଜୀବନ ବା ଯଥାର୍ଥ କଳାର ଦିଗକୁ । ସମାଜର ପଣ୍ୟଧର୍ମୀ ସତ୍ତାଟିକୁ ସେ ସୂଚାଇଛନ୍ତି ବହୁ ଗଳ୍ପରେ । ''ମାଟିର ସ୍ୱପ୍ନ'' ଠାରୁ ''ଅଗଷ୍ଟ ପନ୍ଦର'' ବାଟ ଦେଇ ''ଅଜିତ୍ ରାୟଙ୍କ ସମାଧି ସ୍ତୂପ'' ପର୍ଯ୍ୟନ୍ତ —ଏଇ ପଣ୍ୟଧର୍ମୀ ସତ୍ତା ପାଖରେ ହାରି ଯାଇଛି ଜୀବନର ସ୍ୱପ୍ନ ଓ ମୂଲ୍ୟବୋଧ । ମାଟିର ଶସ୍ୟ ନୁହେଁ, ମାଟି ତଳେ ଗୋପନରେ କେହି ସାଇତି ଦେଇଥିବା ''ହେରୋଇନ୍' ଓ ''ସୁନା'' ପାଇଁ ପଙ୍ଗପାଳ ପରି ଝାମ୍ପି ପଡ଼ନ୍ତି ଏଠି ଶହ ଶହ ଦ୍ୱିପଦ । ରାଜନୀତିର ମୂଳମନ୍ତ୍ର ହୋଇଛି ଅର୍ଥ । ମଦନ ମହାପାତ୍ରଙ୍କ ପରି ଗ୍ରାମୀଣ ମଣିଷଟିଏ ସ୍ୱପ୍ନ ଦେଖିଛି – ଅର୍ଥ ବଳରେ ସେ ହେବ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଓ ପରେ ପରେ ଭାରତର ପ୍ରଧାନମନ୍ତ୍ରୀ–

''ଆସୁଛି ଆଗକୁ ଇଲେକ୍‌ସନ । ବୁଝିଲୁ ? ଏଥର କିଏ ମତେ ଟିକେଟ୍ ନଦେଇ ଦେଖିବା । ଏମ.ଏଲ. ଏ.ହେବି, ମନ୍ତ୍ରୀ ହେବି, ମୁଖ୍ୟମନ୍ତ୍ରୀ ହେବି । ଖାଲି ସେତିକି .... ପ୍ରଧାନମନ୍ତ୍ରୀ ଯଦି ନ ହୋଇଚି କୁତ୍ତା ପାଳିବୁ ମୋ ନାଁରେ । '' (ମାଟିର ସ୍ୱପ୍ନ - ଚଳନ୍ତି ଠାକୁର)

ଅର୍ଥପାଇଁ ମଣିଷକୁ ବଳି ପକାଇ ଦେବାପାଇଁ ପଛେଇ ଯାଏ ନାହିଁ ମଣିଷ । ଔଷଧପତ୍ର- ଠାରୁ ଖାଦ୍ୟ -ପଦାର୍ଥ ପର୍ଯ୍ୟନ୍ତ ସର୍ବତ୍ର ଅପମିଶ୍ରିତ ଭେଜାଲ ଜିନିଷ ବିକ୍ରିକରି ତଳିତଳାନ୍ତ କରେ ସମାଜକୁ । ସ୍ୱାଧୀନତା ପ୍ରାପ୍ତିର ପବିତ୍ର ସ୍ମୃତିରେ ଜାତୀୟତା ଉଦ୍ଦୀପ୍ତ ହେଉ ନହେଉ ଅପମିଶ୍ରିତ ତେଲରେ ପ୍ରସ୍ତୁତ ଚାର୍ଟ ଖାଇ ପକ୍ଷାଘାତଗ୍ରସ୍ତ ହୋଇ ପଡ଼ନ୍ତି ଶହ ଶହ କିଶୋର, କିଶୋରୀ, ଯୁବକ ଓ ଯୁବତୀ । ଭାରତର ସମୃଦ୍ଧ ଭବିଷ୍ୟତର ସ୍ୱପ୍ନ ସତେ ଅବା ପଙ୍ଗୁ, ଅଥର୍ବ ଓ ଅଚଳ ହୋଇପଡ଼େ । ଭଙ୍ଗା ପଡ଼ିଯାଏ ସ୍ୱପ୍ନ ଓ କଳ୍ପନାର ସାମୁଦ୍ରିକ ଜୁଆରରେ ।

ଶାନ୍ତନୁ ଅଚାର୍ଯ୍ୟଙ୍କ ଗଳ୍ପ ପରମ୍ପରାରେ ସମକାଳୀନ ସମୟ ଓ ଜୀବନଧାରା ପ୍ରତି ଦୃଷ୍ଟିକୋଣ ମୁଖ୍ୟତଃ ବ୍ୟଙ୍ଗାତ୍ମକ । ବସ୍ତୁର ସମ୍ମୋହରେ ସେଠି ମଣିଷ ହରାଇ ବସିଥାଏ ତା'ର ପ୍ରେମ ଓ ଦାଂପତ୍ୟ । ପ୍ରକୃତି ହୃଦୟରେ ଭାବାନ୍ତର ସୃଷ୍ଟି କରିବା ବେଳକୁ ଲିଭିଯାଇଥାଏ ଦୃଷ୍ଟିର ଦ୍ୟୁତି । ଓଠ ହରାଇ ବସିଥାଏ ଶବ୍ଦଙ୍କର ଗହଳ। ବସ୍ତୁକୈନ୍ଦ୍ରିକ ଜୀବନର ତଥାକଥିତ ସଫଳତା ଭିତରେ ମନ ହରାଇ ବସିଥାଏ ଜୀବନର ରସସିକ୍ତ ମାଦକତା ।

ମାଦକତାବିହୀନ ଜୀବନର ରସଶୂନ୍ୟତା ପୁଣି ହତାଶା ଓ ନୈରାଶ୍ୟ ତଥା ପ୍ରତାରଣା ଓ ପ୍ରବଞ୍ଚନା ହିଁ ତେବେ କ'ଣ ମଣିଷର ଭାଗ୍ୟ ? ଉତ୍ତରଣର କୌଣସି ସମ୍ଭାବନା ନାହିଁ ? ମୂଲ୍ୟବୋଧର ସୂଚନା କିଛି ନାହିଁ ଶାନ୍ତନୁ ଆଚର୍ଯ୍ୟଙ୍କ ଗଳ୍ପ ପରମ୍ପରାରେ ? ପାଶ୍ଚାତ୍ୟ ପରଂପରାର କେତେକ ଉଦ୍‌ଭଟ ତଥା ଅସ୍ତିତ୍ୱବାଦୀ ସୃଷ୍ଟିଶିଳ୍ପକୁ ବାଦ୍ ଦେଲେ ପ୍ରାୟ ସମସ୍ତ ଭାରତୀୟ ତଥା ବହିର୍ଭାରତୀୟ କଳା ଓ ସାହିତ୍ୟରେ ଜୀବନ ପ୍ରତି ଆସ୍ଥା ରହିଥିବା ଲକ୍ଷ୍ୟ କରାଯାଏ । ମୃତ୍ୟୁ ଓ ଅନ୍ଧାର ଭିତରେ ଆଲୋକଦୀପ୍ତ ଜୀବନର ସନ୍ଧାନ ପାଇଁ ଅବାରିତ ରହିଥାଏ ପ୍ରତ୍ୟାଶା । ସ୍ରଷ୍ଟା ହୁଏତ ସମୟ ସମୟରେ ଅନୁଭବ କରେ ଯେଉଁଠାରେ ମଣିଷର ଯାତ୍ରାର ଅୟମାରମ୍ଭ ଘଟିଥିଲା ବୃତ୍ତାୟିତ ଗତିରେ ସେ ଠିକ୍ ସେହିଠାରେ ପହଞ୍ଚିଯାଇଛି । ତଥାପି ସେ ଯାତ୍ରାର ପ୍ରକ୍ରିୟା ନିରବଛିନ୍ନ ରହିଥାଏ । ''ଚଳନ୍ତି ଠାକୁର''ର ଶୀର୍ଷକ ଗଳ୍ପ ''ଚଳନ୍ତି ଠାକୁର'' ରେ ସେଥିପାଇଁ ଏକ ଆଶାବାଦୀ ଦୃଷ୍ଟିଭଙ୍ଗୀ ପ୍ରକଟିତ । ପ୍ରାଚୀନ ମନ୍ଦିର ଗାତ୍ରର ମୂର୍ତ୍ତିଗୁଡ଼ିକ ଯେ ମୃତ ଓ ଡଲାର ବିନିମୟରେ ଆମେରିକାର ଶିଳ୍ପପତିମାନଙ୍କର ସୌଖୀନ୍ ରସତୃଷ୍ଣାର ନିବାରଣ ପାଇଁ ଉଦ୍ଦିଷ୍ଟ - ଶାନ୍ତନୁ ଆଚାର୍ଯ୍ୟ ଏ ଭ୍ରାନ୍ତ ଧାରଣା ବିରୋଧରେ ପ୍ରତିବାଦର ସ୍ୱର ଉତ୍ତୋଳନ କରିଛନ୍ତି ''ଚଳନ୍ତି ଠାକୁର'' ଗଳ୍ପରେ, 'ସର୍ପଯାନ' ସଂକଳନର 'ଅପଶବ୍ୟ' ଗଳ୍ପରେ ମୂର୍ତ୍ତିର ଚୋରା ଚାଲାଣକୁ କେନ୍ଦ୍ରକରି ଯେଉଁ ବୀଭତ୍ସ ତଥା ଗ୍ଲାନିକର ପରିସ୍ଥିତି ଚିତ୍ରିତ ହୋଇଥିଲା ''ଚଳନ୍ତି ଠାକୁର'' ଗଳ୍ପରେ ତା'ର ଏକ ବିବର୍ତ୍ତନ ତଥା ଉତ୍ତରଣ ସୁସ୍ପଷ୍ଟ । ଈଶ୍ୱର ମୃତ ନୁହନ୍ତି । ବରଂ ପଥର ପ୍ରତିମା ଭିତରେ କେଉଁ ଦୂରାତୀତ କାଳର ମୂଲ୍ୟବୋଧ ଏବେ ମଧ୍ୟ ଜୀବନ୍ତ ତଥା ଅପ୍ରତିହତ ରହିଛି । ଡଲାର ବିନିମୟରେ ସେ ପ୍ରତିମାର ବିକ୍ରୟ ଓ ଭାରତୀୟ ଦାରିଦ୍ର୍ୟର ନିରାକରଣ ପରିକଳ୍ପନା କେବଳ ଏକ ନିଛକ ବସ୍ତୁବାଦୀ ଚିନ୍ତାଧାରା ମାତ୍ର । ଆମେରିକାରେ ଜନ୍ମ ନେଇଥିବା ତଥା ମାର୍କିନ୍ ପରିବେଶରେ ଲାଳିତ ପାଳିତ ହୋଇଥିବା ମିସ୍କୁନ ନାମକ ଏକ ଶିଶୁର ପ୍ରତିକ୍ରିୟା ମାଧ୍ୟମରେ ଗାଳ୍ପିକ ସାଂପ୍ରତିକ ଭାରତୀୟ ଜନମାସନର ବସ୍ତୁବାଦୀ ଚିନ୍ତାଧାରା ପ୍ରତି ଏକ ତିର୍ଯ୍ୟକ୍ କଟାକ୍ଷପାତ କରିଛନ୍ତି ।

ଶାନ୍ତନୁ ଆଚାର୍ଯ୍ୟଙ୍କ ଗଳ୍ପର ମୁଖ୍ୟ- ସ୍ୱର ମାନବତାବାଦ । ନାରୀ ଓ ପୁରୁଷ ନିର୍ବିଶେଷରେ ସେ ସମଗ୍ର ସମାଜର ଉତ୍ତରଣ କାମନା କରିଛନ୍ତି ତାଙ୍କ ଗଳ୍ପ ପରମ୍ପରାରେ । ନାରୀ ଚରିତ୍ରକୁ ମୁଖ୍ୟ ଭୂମିକା

ଦେଇ ଖୁବ୍ ବେଶି ଗଳ୍ପ ଲେଖି ନଥିଲେ ମଧ୍ୟ 'ସର୍ପଯାନ' ଠାରୁ 'ବୃକ୍ଷସାକ୍ଷୀ' ପର୍ଯ୍ୟନ୍ତ ବହୁ ସୃଷ୍ଟିରେ ସେ ନାରୀମାନଙ୍କୁ ତଥାକଥିତ ନୈତିକତାର ଊର୍ଦ୍ଧ୍ୱରେ ଏକ ଅହେତୁକ ଶୃଂଖଳ ମୁକ୍ତ ଜୀବନଯାପନ ପାଇଁ ଆହ୍ୱାନ ଦେଇଛନ୍ତି । ସେ ଆହ୍ୱାନର ସ୍ୱରୂପ ଓ ପ୍ରକାର ବହୁ ସମୟରେ ଅସ୍ପଷ୍ଟ ଓ ରହସ୍ୟମୟ ହେଲେ ମଧ୍ୟ ନାରୀର ବନ୍ଧନମୁକ୍ତି ପାଇଁ ବାର୍ତ୍ତାଟିଏ ତହିଁରେ ଅକ୍ଷୂର୍ଣ୍ଣ ରହିଛି ।

ନିଜ ଗଳ୍ପବୃତ୍ତର ଜଟିଳତା ହେତୁ ଶାନ୍ତନୁ ଆଚାର୍ଯ୍ୟଙ୍କ ସୃଷ୍ଟିଶିଳ୍ପ ସାଧାରଣ ପାଠକର ରସତୃଷ୍ଣାକୁ ହୁଏତ ଚରିତାର୍ଥ କରିପାରେ ନାହିଁ । ଅଳସ ଅବସରର ବିନୋଦନପାଇଁ ତାହା ଉଦ୍ଦିଷ୍ଟ ମଧ୍ୟ ନୁହେଁ । ମାତ୍ର ଚଳନ୍ତି ଜୀବନର ଝଲକକୁ ପରିପକ୍ୱ ଭାଷା ତଥା ପ୍ରବୀଣ ମନ ଓ ମନନ ମାଧ୍ୟମରେ ସେ ନିଷ୍ଠାର ସହ ବିଶ୍ଳେଷଣ କରିଛନ୍ତି । ସମାଜ ଜୀବନର ଆପାତଃ ନିରର୍ଥକତା ତଥା ଅବସାଦ ଓ ଅବକ୍ଷୟରୁ ଉତ୍ତରଣ ପାଇଁ ତାଙ୍କ ଭିତରେ କ୍ରିୟାଶୀଳ ରହିଛି ଏକ ଆଶାବାଦୀ ମାନସିକତା । ଏ ଆଶାବାଦୀ ମାନସିକତା ଭାରତର ସୁଦୀର୍ଘ ସନାତନ ସଂସ୍କୃତି ପରଂପରା ଦ୍ୱାରା ଲାଳିତ ଓ ସାଂପ୍ରତିକ ଆଧୁନିକ ଜୀବନର ଯନ୍ତ୍ରଣାରୁ ମୁକ୍ତି ପ୍ରତ୍ୟାଶା ଲାଗି ଅଭିପ୍ରେତ । ଓଡ଼ିଶାର ଅପନ୍ତରା ପଲ୍ଲୀ ଅଞ୍ଚଳରୁ ପୃଥିବୀର ଜନାକୀର୍ଣ୍ଣ ମହାନଗରୀ ପର୍ଯ୍ୟନ୍ତ - ସମାଜ ଓ ବ୍ୟକ୍ତି ଜୀବନର ବିବିଧ ସମସ୍ୟା ଓ ସଂକଟକୁ କେନ୍ଦ୍ରକରି ଗଢ଼ି ଉଠିଥିବା ତାଙ୍କର ଗଳ୍ପଗୁଡ଼ିକୁ ଗୋଟିଏ ସୂତ୍ରରେ ବାନ୍ଧିରଖିଛି ସାମଗ୍ରିକ ମାନବିକତାବୋଧ । ମାନବିକ ଅବକ୍ଷୟ ପ୍ରତି ବ୍ୟଙ୍ଗ ଓ ବିଦ୍ରୂପ ମଧ୍ୟରେ ସ୍ନେହଶୀଳ ଜୀବନବୀକ୍ଷାଟିଏ ଜାରି ରହିଛି । ଅବ୍ୟାହତ ରହିଛି ତାଙ୍କର ସମ୍ଭାବନାର ପଦଯାତ୍ରା ।



# ଧରିତ୍ରୀର କାନ୍ଦ: ଏକ ଅନୁଶୀଳନ

ଡକ୍ଟର କିଶୋର ଚନ୍ଦ୍ର ଦାସ

ଶାନ୍ତନୁ କୁମାର ଆଚାର୍ଯ୍ୟ ଓଡ଼ିଆ ଗଳ୍ପ ଓ ଉପନ୍ୟାସ କ୍ଷେତ୍ରରେ ଏକ ସୁପରିଚିତ ପ୍ରତିଭା । ବିଜ୍ଞାନରେ ଅଧ୍ୟୟନ ଓ ଅଧ୍ୟାପନା ସତ୍ତ୍ୱେ, ସାହିତ୍ୟ ପ୍ରତି ତାଙ୍କର ଅନ୍ତରଙ୍ଗ ଭାବ ଖୁବ୍ ନିବିଡ଼ । ଆମ ସଂସ୍କୃତି, ଆଧ୍ୟାତ୍ମିକ ଜୀବନ, ସାମାଜିକ ଧାରା ଓ ଚଳଣୀ, ରୀତିନୀତି ସବୁକିଛି ସଫଳ ଭାବରେ ଚିତ୍ରଣ କରିବାରେ ସେ ଜଣେ ଜୀବନବାଦୀ କଥାକାର । ସାମାଜିକ ଜୀବନର ସମ୍ବେଦନଶୀଳ ଶିଳ୍ପୀ ଭାବରେ ସେ ସୁନାମ ଅର୍ଜନ କରିଛନ୍ତି । ଝଙ୍କାର ଓ ବିଷୁବ ପୁରସ୍କାର ସହ 'ନବରକିନ୍ନର' ଉପନ୍ୟାସ ପାଇଁ ୧୯୭୦ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, 'ଶକୁନ୍ତଳା' ପାଇଁ ୧୯୮୭ ମସିହାରେ ଶାରଳା ପୁରସ୍କାର ଏବଂ 'ଚଳନ୍ତିଠାକୁର' ଗଳ୍ପ ଗ୍ରନ୍ଥ ପାଇଁ ୧୯୯୩ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ସେ ଲାଭ କରିଅଛନ୍ତି । ତାଙ୍କର 'ଶତାବ୍ଦୀର ନଚିକେତା', 'ଦକ୍ଷିଣାବର୍ତ୍ତ', 'ତିନୋଟି ରାତ୍ରିର ସକାଳ', 'ଯାତ୍ରାର ପ୍ରଥମ ପାଦ', 'ଅନ୍ୟ ଏକ ସମୟ ଅନ୍ୟ ଏକ ଭାରତ', 'ଅନୁ ହଜିଯିବାପରେ', 'ମନ୍ତ୍ରୀଙ୍କ ସେୟାର', ଏକ ଏକ ଉଚ୍ଚକୋଟୀର ବହୁ ପଠିତ ଉପନ୍ୟାସ ହୋଇଥିବା ବେଳେ, 'ମନମର୍ମର', 'ଏଇ ଶେଷ ପଦଟି', 'ଅରଣ୍ୟର ଚୂଳ', 'ଦୁର୍ବାର', 'ଅଦିନ ବଉଳ', 'ଏକବିଂଶ ଶତାବ୍ଦୀ ପାଇଁ ଗଳ୍ପ', 'ଆଦ୍ୟ ସକାଳ', 'ଗଳ୍ପ ବର୍ଣ୍ଣାଳି', 'ହୃଦ କୋଳପ', 'ଧର୍ମହାଟ', 'ସର୍ପଯାନ', 'ନାତାଲିୟାର- ଓଁକାର' ପ୍ରଭୃତି ଗଳ୍ପ ସଂକଳନ ତାଙ୍କ ପ୍ରତିଭାର ଉପଯୁକ୍ତ ସ୍ୱାକ୍ଷର ପ୍ରଦାନ କରେ । ସାମୟିକ ସମୟରେ ସେ ଶିଶୁମାନଙ୍କ ପାଇଁ ଗଳ୍ପ ରଚନା କରନ୍ତି, ଯାହାକି ବାଗବଗିଚାର ସୌଦାଗର ଶିଶୁ ସଂକଳନରେ ସ୍ଥାନୀତ ହୋଇଛି । ତାଙ୍କର ଲେଖା ଶୈଳୀ ସମ୍ପର୍କରେ ମତାମତ ଦେବାକୁ ଯାଇ ଶ୍ରୀ ଖଗେଶ୍ୱର ମହାପାତ୍ର କହନ୍ତି- "ତାଙ୍କର ଗୋଟିଏ ସ୍ୱତନ୍ତ୍ରତା ସୂଚକ ଆଭିମୁଖ୍ୟ-ଅତିବାସ୍ତବବାଦୀ ଦୃଷ୍ଟିଭଙ୍ଗୀ । ଅତିବାସ୍ତବବାଦ ତାଙ୍କ ପକ୍ଷରେ ଏକ ଦାର୍ଶନିକତା ନୁହେଁ ବରଂ ଅନନ୍ୟ ସାଧାରଣ ପରିସ୍ଥିତିର ପ୍ରତ୍ୟୟ ନିମନ୍ତେ ଏକ ମାନସିକତା । ସାଂପ୍ରତିକ ଅବକ୍ଷୟ ବିରୁଦ୍ଧିରେ ଏହା ଏକ ପ୍ରତିବାଦୀ ଧାରା, ଯାହା ଆଧୁନିକତାର ମୂର୍ତ୍ତିମନ୍ତ ଖର୍ବତାର ଏକ ଶୋଭାଯାତ୍ରା ପ୍ରଦର୍ଶନ କରି ଆମର ଚେତନାକୁ ଚମକୃତ କରିପକାଏ । ଶାନ୍ତନୁ ତାଙ୍କର ପ୍ରତିଟି ଉପନ୍ୟାସରେ ବର୍ହିରଙ୍ଗ ଆସ୍ତରଣଟିମାନ ଅପସାରିତ କରି ସତ୍ୟର ସନ୍ଧାନ ପାଇଁ ଉଦ୍‌ଗ୍ରୀବ । ସମାଜର ଆବର୍ଜନାମୟ ପ୍ରତ୍ୟନ୍ତରେ ତାଙ୍କର ସଞ୍ଚାର । ମାତ୍ର ଆବର୍ଜନାଜୀବୀ ଭାବରେ ନୁହେଁ, ଜଣେ ସେହି ସ୍ଥିତିରେ ଶାପଗ୍ରସ୍ତ ଭୋକ୍ତା ଭାବରେ- ଯାହାର ଏକାନ୍ତ କାମ୍ୟ ସେହି ସ୍ଥିତିର ସଂସ୍କାର ଓ ପୁର୍ନର୍ବିନ୍ୟାସ, ପ୍ରକାରାନ୍ତରେ ଯାହା ଆଣିଦେବ ବ୍ୟକ୍ତି ସ୍ୱାଧୀନତା ପାଇଁ କିଞ୍ଚିତ ପ୍ରସାରିତ ଚାରଣଭୂମି ।"(୧)

'ଧରିତ୍ରୀର କାନ୍ଦ' ତାଙ୍କର ଆବେଗଧର୍ମୀ ଏକ ଶ୍ରେଷ୍ଠ ସାମାଜିକ ଉପନ୍ୟାସ । ଯେଉଁଥିରେ ସମସାମୟିକ ସମାଜ ଜୀବନର ଅନେକ ଚିତ୍ର ଜୀବନ୍ତ ଭାବରେ ଚିତ୍ରିତ ହୋଇଛି । ଏହାକୁ ବରଂ ତାଙ୍କ

ନିଜ ଅନୁଭୂତିର ଏକ ଖଣ୍ଡିତ ଅଂଶ ବୋଲି କୁହାଯାଇପାରେ । ତାଙ୍କର ବାଲ୍ୟଜୀବନ ଏବଂ ରେଭେନ୍‌ସା କଲେଜରେ ଉଚ୍ଚଶିକ୍ଷା ଲାଭ ସମୟରେ ଯାହା ଯାହା ଉପଲବ୍ଧି କରିଥିଲେ, ସେ ସବୁର ନିଛକ ଚିତ୍ର ଏଥିରେ ଅଙ୍କିତ ହୋଇଛି । ଏହା ତାଙ୍କର ଏକ ଅନ୍ୟତମ ଅମ୍ଳାନକୃତି ଯେଉଁଥିରେ ନିଜ ତିକ୍ତ ମଧୁର ଅନୁଭୂତିର ରସାଳ ସାକାର ଅଭିବ୍ୟକ୍ତି ଘଟିଅଛି । ଏହି ଉପନ୍ୟାସ ସମ୍ପର୍କରେ ସମାଲୋଚକ ମତ ଦିଅନ୍ତି- "ଧରିତ୍ରୀର କାନ୍ଦ ଉପନ୍ୟାସରେ ବିଷୟବସ୍ତୁର ନୂତନତା ନଥାଇପାରେ, କିନ୍ତୁ ବର୍ଣ୍ଣନାଶୈଳୀ, ଘଟଣା ଚକ୍ରରେ ଆସିଥିବା ରାଜନୀତିକ ପୁରୁଷ, ଉପନ୍ୟାସରେ ଉତ୍‌ଥାପିତ ହୋଇଥିବା ବିଭିନ୍ନ ସମସ୍ୟା ଓ ତାର ସମାଧାନ ଦିଗରେ ପ୍ରଦତ୍ତ ହୋଇଥିବା ସୂଚନା ଉପନ୍ୟାସଟିକୁ ଜୀବନ୍ତ ଓ ଭାବପ୍ରବଣ କରି ଗଢ଼ିଛି । କାଳ୍ପନିକ ଚରିତ୍ରମାନଙ୍କ ମାଧ୍ୟମରେ ବାସ୍ତବ ସାମାଜିକ ଏବଂ ରାଜନୈତିକ ଚିତ୍ର ଅଙ୍କିତ ହୋଇଥିବା ଏଇ ଉପନ୍ୟାସ ଲେଖକଙ୍କର ନିଶ୍ଚିତ ଭାବେ ଅଭିନବ ଏକ ଉଦ୍ୟମ । ସମକାଳିନ ରାଜନୈତିକ ଓ ସାମାଜିକ ଚରିତ୍ର ଓ ଘଟଣା ଚିତ୍ର ଆଳରେ ଔପନ୍ୟାସିକ ଅଧିକ ଭାବେ ବାସ୍ତବଦର୍ଶୀ ହୋଇଛନ୍ତି । ଘଟି ଯାଇଥିବା ସତ୍ୟ ଘଟଣାଗୁଡ଼ିକ ଚରିତ୍ରମାନଙ୍କ ମାଧ୍ୟମରେ କୁହାଇବା ବେଳେ ଉପନ୍ୟାସରେ କଳାତ୍ମକ ଦିଗପ୍ରତି ଅଧିକ ଦୃଷ୍ଟି ଦେବା ଅପେକ୍ଷା, ଉପନ୍ୟାସଟିକୁ ବହୁ ପରିମାଣରେ ଫିଚରଧର୍ମୀ କରି ପକାଇଛନ୍ତି ।"(୨)

ଏହି ଉପନ୍ୟାସରେ ଦୁଇଟି ପିଢ଼ି ଚରିତ୍ରର ଚିତ୍ର ଦିଆଯାଇଛି । କିନ୍ତୁ ଏହାର ବର୍ଣ୍ଣିତକାଳ ମାତ୍ର ପନ୍ଦର ଷୋହଳ ବର୍ଷ ମଧ୍ୟରେ ସୀମିତ । ପ୍ରଥମ ପିଢ଼ିର ଚରିତ୍ରମାନେ ବୃହସ୍ପତି ମିଶ୍ର, ତାଙ୍କର ମଝିଆଁ ଭାଇ ବିଶ୍ୱନାଥ, ଯିଏକି ବାବାଜୀ ହୋଇଯାଇଛନ୍ତି । ସାନଭାଇ ବୁଧନାଥ, ସ୍ତ୍ରୀ ପାର୍ବତୀ, ଭଉଣୀ ଦୁର୍ଗା, ସରସ୍ୱତୀ, ଲକ୍ଷ୍ମୀ, ସାନଭାଇଙ୍କ ସ୍ତ୍ରୀ ଦେବଯାନୀ ବା ଦେବୀ ଏବଂ ସମସାମୟିକ ଅନ୍ୟାନ୍ୟ ବହୁ ଚରିତ୍ରାବଳୀ । ଅନ୍ୟପକ୍ଷରେ ଦ୍ୱିତୀୟ ପିଢ଼ି ବୃହସ୍ପତି ମିଶ୍ରଙ୍କ ବଡ଼ପୁଅ ଶ୍ରୀକାନ୍ତ, ସାନପୁଅ ଦେବଦତ୍ତ, ଭଣଜା ଯଜ୍ଞଦତ୍ତ, ସାଙ୍ଗ କରିମ୍ ଖାଁ ଏବଂ ଅନ୍ୟମାନେ । ଉଭୟ ଦୁର୍ଗାପୁର ଗ୍ରାମ ଓ କଟକ ସହର ଏହାର ବର୍ଣ୍ଣନାର ପୃଷ୍ଠଭୂମି । ଅବଶ୍ୟ ଅନ୍ୟ ଗାଁ, ପୁରୀ ସହର ଅନ୍ୟାନ୍ୟ ସ୍ଥାନରେ ସାମୟିକ ବର୍ଣ୍ଣନା ଏଥିରେ ରହିଛି । ଗୋଟିଏ ପକ୍ଷରେ ବୃହସ୍ପତି ମିଶ୍ର ଏହାର ପ୍ରମୁଖ ଚରିତ୍ର ହୋଇଥିବାବେଳେ, ନାୟକ ଯଜ୍ଞଦତ୍ତ । ବହୁସଂଖ୍ୟକ ଗୌଣ ଚରିତ୍ରର ଅନେକ ଅନୁଭୂତିର ଚିତ୍ର ଏଥିରେ ପ୍ରତିଫଳିତ । ଅବଶ୍ୟ ଦେବଦତ୍ତ ଓ କରିମ ଚରିତ୍ର ମଧ୍ୟ ପ୍ରମୁଖ ଚରିତ୍ର ଭାବରେ ଗ୍ରହଣ କରାଯାଇପାରେ ।

ବୃହସ୍ପତି ମିଶ୍ର ଥିଲେ ଜଣେ ଇଞ୍ଜିନିୟର । ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ମେସୋପଟାମିଆଁ ତଥା ବହୁତ ସ୍ଥାନରୁ ଅନେକ ଅଭିଜ୍ଞତା ଲାଭ କରିଛନ୍ତି । ସେ ପରେ କଲିକତାରେ ଚାକିରି କରିଥିବାବେଳେ ଘରକୁ ଆସିଲେ ତାଙ୍କ ଘର ଆଗ ଚଉତରା ଉପରେ ଅସାର ଜମେ । ସେଥିରେ ଯୋଗଦିଅନ୍ତି ଗାଁର ଯଦୁପାଢ଼ୀ, ନରହରି ପଟ୍ଟନାୟକ, ମହାନ୍ତି ସାହିର କୃଷ୍ଣ ମହାନ୍ତି, ବଢ଼େଇ ସାହିର ମଧୁ ମହାରାଣା ଓ ଅର୍ଖିତ ମଲିକ । ସଭାରେ ବୃହସ୍ପତି ମିଶ୍ର ତାଙ୍କ ଅତୀତ ଜୀବନର ସ୍ମୃତିର ଚିତ୍ରଦେବା ସହ ବ୍ରହ୍ମଚର୍ଚ୍ଚା କରନ୍ତି । ସେ ସବୁ ଶୁଣିବାକୁ ଅନ୍ୟମାନେ କେବଳ ଆସନ୍ତି ନାହିଁ, ବରଂ ସେମାନଙ୍କ ପାଇଁ ଅନ୍ୟ ଗୋଟିଏ ବଡ଼ ଆକର୍ଷଣ ଥାଏ- ବୃହସ୍ପତି ମିଶ୍ର ମହମହ ବାସୁଥିବା କଲିକତି ଚାହା ଆଣିଥାନ୍ତି । ସେଇ କେତେଦିନ ପାର୍ବତୀଙ୍କୁ ତର ନଥାଏ । ସେଠାରେ ପରିବେଷଣ ପାଇଁ ସେ ମହମହ ବାସୁଥିବା ଚାହା କପ, ପାସିଙ୍ଗ ସୋ ସିଗାରେଟ୍, ବିସ୍କୁଟ, ଖିସ୍‌ମିସ୍, ପେସ୍ତା ବାଦାମ ଓ କିଛି ଭଙ୍ଗା ପାନ ଟ୍ରେରେ ନେଇ

ଯାଆନ୍ତି । ଏସବୁ ଜିନିଷ ସେତେବେଳେ ମଫସଲରେ ସମ୍ପୂର୍ଣ୍ଣ ନୂଆ । ଏହା ୧୯୪୩ ମସିହାର ଘଟଣା । ଦୁର୍ଗାପର ଗାଁରେ କେବଳ ବୃହସ୍ପତି ମିଶ୍ରଙ୍କର ଦୋ ମହଲା କୋଠାଘର । ପୁଣି ଘରେ ଦି'ଦିଇଟା ସାଇକେଲ, ହାରମୋନିୟମ, ଗ୍ରାମ୍‌ଫୋନ ଓ ବାଡ଼ିରେ ପାଣିକଳ । ସେଇ କଳକତି ଜିନିଷ ଖାଇବା ଓ ଧଳାପିଙ୍କା ଖଣ୍ଡେ ଟାଣିବା ପାଇଁ ସେମାନଙ୍କ ପାଟିରୁ ଲାଳ ଗଡୁଥାଏ । ବୃହସ୍ପତି ମିଶ୍ର ପହଞ୍ଚୁ ପହଞ୍ଚୁ ଡାକରା ପଡେ ସମସ୍ତଙ୍କୁ । ଏମାନେ ମଧ ଅତି ଆଗ୍ରହର ସହିତ ସେଠାରେ ଯୋଗ ଦିଅନ୍ତି । ବୃହସ୍ପତି ମିଶ୍ର ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ । ସେଇଥିପାଇଁ ସେ ଅରକ୍ଷିତ ମଳିକଙ୍କୁ ମଧ ସେଠାରେ ବସିବାର ସୁଯୋଗ ଦିଅନ୍ତି । ତାଙ୍କ ମତରେ - "ବ୍ରହ୍ମ ଶବ୍ଦର ଅର୍ଥ ବ୍ରାହ୍ମଣ ନୁହେଁ ହୋ କୃଷ । ବ୍ରହ୍ମ କହିଲେ ଏଇଆ ବୁଝାଏ- ବ୍ରାହ୍ମଣ, କରଣ, ଖଣ୍ଡାୟତ, ବଢ଼େଇ, କହ୍ମାର, ତେଲି, ଗୁଡ଼ିଆଙ୍କ ସମେତ ଆମର ଏଇ ଅରକ୍ଷିତ ମଳିକ, ଯାହାକୁ ଗାନ୍ଧି ଏଇଲେ କହୁଛନ୍ତି ହରିଜନ, ଏ ସମସ୍ତେ ଏକାଠି ବସି ଗହା ଖାଇବାକୁ କହନ୍ତି ବ୍ରହ୍ମ । ବ୍ରହ୍ମ ଶବ୍ଦର ଅର୍ଥ ବୁଝିବା ଏତେ ସହଜ ନୁହେଁ, ଜାଇଁଲ ।" (ପୃଷ୍ଠା-୧୫)

କିନ୍ତୁ ଯଦୁପାଢ଼ି, ଏକଥା ଗ୍ରହଣ କରିବାକୁ ନାରାଜ । ସିଏ କହନ୍ତି ''ଏଇ ମିଶ୍ରଘର ଛୋଟ ଲୋକ ଗୁଡାଙ୍କୁ ମୁହଁ ଦେଇ ଖରାପ କରି ଦେଇଛନ୍ତି । ମିଶ୍ର ଦୁଇ ଭାଇଙ୍କ ପାଇଁ ସିଏ ଭାବନ୍ତି- "ଉଣେଇଶ ଶହ ଚଉଦ ପନ୍ଦର ବେଳେ ଦରିଆ ପାରିକି ଯାଇ, ତେଣେ କୁଆଡ଼େ ମୁସଲମାନ ଦେଶରେ ବର୍ଷ ବର୍ଷ ରହିଥିଲେ, ଆଉ ସେଇବେଳେ ନିଶ୍ଚେ ଗୋରୁ ମାଉଁସ ଖାଇଥିବେ, ମଦ ପିଇଥିବେ, ଆଉ ମୁସଲମାନ ମାଇକିନା ବି ଭୋଗିଥିବେ ।" (ପୃଷ୍ଠ-୧୬)

ଅନ୍ୟପକ୍ଷରେ ବୃହସ୍ପତି ମିଶ୍ର କହନ୍ତି ଖାଲି 'ଓଁ ଆଂ' କରିଦେଲେ ଜଣେ ବ୍ରାହ୍ମଣ ହୋଇଯାଏ ନାହିଁ । ଶିଖେଇଦେଲେ ଅରକ୍ଷୀତ ମଳିକ ମଧ ଭଲ ସଂସ୍କୃତ ଶ୍ଳୋକ ଗାଇପାରିବ । ଏପରିକି ଥରେ ସେ ଅରକ୍ଷିତ ମଳିକର ଅଇଁଠା ଗହା ମଧ ପିଇବାକୁ ପଛେଇ ଯାଇନାହାନ୍ତି । ସେ ଥିଲେ ଗାନ୍ଧିଜୀଙ୍କର ପରମ ଭକ୍ତ । ଗାନ୍ଧିଜୀଙ୍କର ଉଦାର ହରିଜନ ନୀତିକୁ ସେ ଗ୍ରହଣ କରୁଥିଲେ ।

ଔପନ୍ୟାସିକ ଖୁବ୍ ସୁନ୍ଦର ଭାବରେ ବିଷୟ ବସ୍ତୁର ଉପସ୍ଥାପନା କରିଅଛନ୍ତି ଏବଂ ବୃହସ୍ପତି ମିଶ୍ରଙ୍କର ପଛକଥା ମନେ ପକାଇ ଆସରରେ ବର୍ଣ୍ଣନା କରିବା ମାଧମରେ କାହାଣୀ ଭାଗର ସୁନ୍ଦର ବିକାଶ ସାଧନ କରିଅଛନ୍ତି । ଏହି ଉପନ୍ୟାସ ଅନେକ ଘଟଣାର ପ୍ରବାହଧାରା । କଥା ପ୍ରସଙ୍ଗରେ ବୃହସ୍ପତି କହନ୍ତି- ''ତାଙ୍କ ପୂର୍ବ ପୁରୁଷ ଜଗନ୍ନାଥ ଭଟ୍ଟମିଶ୍ର ଗଜପତିଙ୍କ ରାଜଗୁରୁ ଥିଲେ । ସାମାନ୍ୟ ଅମାନ୍ୟ ହେତୁ ପୁରୀର ରାଜଦତ୍ତ ସମ୍ମାନ, ପାଟ, ସୁନାକୁଣ୍ଡଳ ଓହ୍ଲାଇ ପଳାଇ ଆସିଥିଲେ ଦୁର୍ଗାପୁର । ସାଙ୍ଗରେ ଆଣିଥିଲେ କେବଳ ଭୁବନେଶ୍ଵରୀଙ୍କ ମୂର୍ତ୍ତି ଯାହା ଏବେ ମଧ ତାଙ୍କ ଠାକୁରଘରେ ପୂଜିତ ହେଉଛି । ତାହା ସହିତ ଯୁଦ୍ଧବେଳେ ମୁସଲମାନ ରାଜ୍ୟରୁ ଆଣିଥିବା ପାଟକନାର ମୁଣିରେ କ'ଣ ଅଛି ଜଣାନାହିଁ, ଯାହା ପାର୍ବତୀଙ୍କ ଭାଷାରେ 'ପଠାଣ ଠାକୁର' ଓ ୧୯୧୨ ମସିହାରେ ଶଂଖା କୁମ୍ଭୀର ମରାଯିବା ହେତୁ, ତା ପେଟରୁ ବାହାରିଥିବା ଶିଳାଲିପିଯୁକ୍ତ ପଥର, ଯାହାକୁ ପାର୍ବତୀ 'କୁମ୍ଭୀର ସମ୍ପତ୍ତି' କହନ୍ତି । ସମସ୍ତେ ପୂଜା ପାଆନ୍ତି ସିଂହାସନରେ ।

ବୃହସ୍ପତି ପ୍ରଥମେ ସର୍ଭେୟର ଚାକିରି କରିଥାନ୍ତି । ପହିଲି କମେଇ ଭାବରେ କୁଇନ୍ ଭିକ୍ଟୋରିଆ ମୁକୁଟ ରୂପା ଟଙ୍କା ପଚଶଟି ପାଇଥାନ୍ତି । କୋଡିଏ /ପଚିଶ ହାତ୍ ଅନ୍ୟର ଜମି ଧନୀ ବ୍ୟବସାୟୀ ନାଁରେ

କରି ଦେଇଥିବା ହେତୁ ଏଭଳି ଇନାମ୍ । ସେତେବେଳେ ସେ ବିବାହ କରିଥିଲେ ମଧ୍ୟ ସ୍ତ୍ରୀ ଘରଯୋଗ୍ୟ ହୋଇ ନଥିବା ହେତୁ ବାପ ଘରେ ଥାଏ । ପରଦିନ ସେ ଟଙ୍କା ସେଇ ଦୁର୍ନୀତି ଲବ୍ଧ ନନାଙ୍କୁ ଦେବାକୁ ସ୍ଥିର କରି, ମନ୍ଦିରରେ ନନା ଧ୍ୟାନ କରୁଥିବା ସମୟରେ ସିଏ ପାଟକନାର ମୁଣିଟିକୁ ଝଣ କରି ଥୋଇଲେ । କିନ୍ତୁ ନନା ସେଗୁଡ଼ିକ ପାପଧନ ବୋଲି ଜାଣି, ସେବକ ଦ୍ୱାରା ମନ୍ଦିରର ପୁଳାଏ ଅଳିଆ ଭଳି ଓଳେଇ ଫୋପାଡ଼ି ଦେଲେ । ସେତିକିବେଳେ ନନା ତାଙ୍କର କୁଳ ବୁଡ଼ିଗଲା ବୋଲି ଭୋ କରି କାନ୍ଦିଥିଲେ । ସେଇ ପ୍ରଭାବରେ ବୃହସ୍ପତି ମିଶ୍ର ଜୀବନରେ ସଚ୍ଚେଟ ରହିଛନ୍ତି । ପରବର୍ତ୍ତୀ ସମୟରେ ଦେବ ଓ କରିମ ଆଣିଥିବା ରିଲିଫ୍ ସାମଗ୍ରୀ ଅଟାବସ୍ତା, ଚୁଡ଼ା, ତେଲଟିଣ ଇତ୍ୟାଦିଙ୍କୁ ନିର୍ବିଷ୍ଣରରେ ନଈରେ ଫିଙ୍ଗି ଦେଇଛନ୍ତି । ଏପରିକି ସେଇ ମୁସଲମାନ ରାଜଇରେ ମିଳିଥିବା ମୁଣିରେ ହୀରା, ନୀଳା, ମୋତି, ମାଣିକ ଇତ୍ୟାଦି ଦେଖି ମଧ୍ୟ ତାହାକୁ ବୁଧନାଥ ଦେବୀ ନଦୀ ଗଣ୍ଡରେ ଫିଙ୍ଗିଦେଇ ଆସିବାରେ ଆଶ୍ଚର୍ଯ୍ୟ ହୋଇ ନାହାଁନ୍ତି ବରଂ ଆଶ୍ୱସ୍ତ ହୋଇଛନ୍ତି । ସେହି ବଂଶ ପରମ୍ପରାରେ ଲାଳିତ ପାଳିତ ହୋଇଛନ୍ତି ଦେବଦତ୍ତ, ତାଙ୍କର ସାନପୁଅ ଓ ସମବୟସ୍କ ଭଣଜା ଯଜ୍ଞଦତ୍ତ । ଯଜ୍ଞ ପିଲାଦିନେ ମାମୁଘରେ ରହି ପାଠ ପଢୁଥିଲା । ଗାଁଆର ଲୋକମାନେ ସେ ଦୁଇଜଣଙ୍କୁ ଭାରି ଭଲ ପାଆନ୍ତି । ଔପନ୍ୟାସିକଙ୍କ ଲେଖନୀରୁ ତେଣୁ ନିସୃତ ହୋଇଛି- "ମିଶ୍ର ଘରର ଏ ପିଲା ଦୁଇଟାଙ୍କୁ ଭାରି ଆଦର । ଯେଉଁବାଟେ ଚାଲିଗଲେ ସେ ଘର ପିଣ୍ଡାରୁ କଅଁଳ ଡାକଟିଏ ଶୁଭେ, କୁଆଡ଼େ ବାହାରିଲ କିରେ 'ହରିହର' । ଏଣେ ଆସୁନ ଟିକେ ।''

ହରି ଆଉ ହର । ଦେବକୁ ଚିହ୍ନନ୍ତି ଗାଁରେ । 'ହରି' ଅର୍ଥାତ ଶାନ୍ତଶିଷ୍ଟ ପିଲାଟିଏ ବୋଲି । ଆଉ ଯଜ୍ଞ ହେଲା 'ହର' ଅର୍ଥାତ ହୁରୁମା ଚଙ୍ଗ ଚଙ୍ଗିଆ ଚଗଲା । ପୃ-୨୩' । ଡରିଗଲେ ଦେବ ଗାୟତ୍ରୀ ମନ୍ତ୍ର ମନେ ମନେ ପଢ଼େ । କିନ୍ତୁ ସେତେବେଳେ, ହାତରେ ଗୋଟାଏ ଢ଼େଲା ମିଳିଗଲେ, ଯଜ୍ଞର ସାହାସ ବଢ଼ିଯାଏ ।

ଔପନ୍ୟାସିକ ଅତି ସୁନ୍ଦର ଓ ନିଛକ ଭାବରେ ଦୁର୍ଗାପୁର ଗାଁ, ହାଜିପୁର ତାର ଆଖପାଖ, ଦେବୀନଦୀ, ଦେବଦହ, ଅନ୍ୟ ଗୋଟିଏ ପଟରେ ବିଲୁଆ ଖାଇ ନଈ ଦଳେଇ ଘାଇ ସେହି ସବୁ ଗାଁ ପରିବେଶର ବର୍ଷା ବୈଶାଖ ବସନ୍ତ ଦୃଶ୍ୟ ଜୀବନ୍ତ ଭାବରେ ବର୍ଣ୍ଣନା କରିଛନ୍ତି । ସେଇଠି ହସିଖେଳି ବଡ଼ ହୋଇଛନ୍ତି ସେ ଦୁହେଁ । ପ୍ରଥମ ପୃଥିବୀ ମହାସମର ବେଳର ଖୁବ୍ ନିମ୍ନରେ ଉଡୁଥିବା ଉଡ଼ାଜାହାଜର ଶବ୍ଦ ଓ ଗତି, ନଈ ପହଁରା, ସେ ଅଞ୍ଚଳର ସ୍ୱାଧୀନତା ସଂଗ୍ରାମୀ ହାତଖଣ୍ଡି ଗୌରାଙ୍ଗଙ୍କ ଦେଶପ୍ରେମ, ଦଳେଇ ଘାଇ ସୁରକ୍ଷା ସମୟରେ ସାହେବଙ୍କ କୀର୍ତ୍ତି, ଚମ୍ପା ଗଛ ମୂଳରେ ଜେଜେଙ୍କର କେତେ ଜୀବନ୍ତ ଅନୁଭୂତି ଶୁଣି ଶୁଣି, କେତେ କଥା ଦେଖି ଦେଖି ତାଙ୍କର ବାଲ୍ୟକାଳ କଟିଛି । ସେତିକିବେଳେ ମିଶ୍ର ଘର ଉପରେ ସମସ୍ତଙ୍କର ଲକ୍ଷ୍ୟ । ସବୁକିଛି ସେମାନଙ୍କ ଆଖିରେ ନୂଆ ନୂଆ ଜିନିଷ ଏବଂ ଆଶ୍ଚର୍ଯ୍ୟଧରଣର । ଗ୍ରାମ୍‌ଫୋନ ବିଷୟରେ ଗାଉଁଲି ଲୋକମାନେ କିପରି ବିଚିତ୍ର ମତ ଦିଅନ୍ତି ଦେଖନ୍ତୁ- "ମିଶ୍ରଘର କୋଠାଟା ସାରା ଗାଆଁ ଆଖିରେ ଗୋଟାଏ ମେଜିକ ବାକ୍ସ । ସେ ଘର ଭିତରୁ ଏମିତି ସବୁ ଜିନିଷ ବାହାରେ ଯାହା ଏ ଅଞ୍ଚଳରେ ଦୁର୍ଲ୍ଲଭ । ଦିନେ ଦିନେ ରାତିରେ ଏମିତି ଶବ୍ଦ ଆଗେ ବାହାରୁଥିଲା । ଏ ଘରୁ ଯାହାକୁ ଶୁଣିଲେ ଏବାଟେ ଗଲା ଅଇଲା ଲୋକ କୁହାକୋହି ହଉଥିଲେ- "କଳଗାଉଣା ! କଲିକତାରୁ ଅଣା ହେଇଚିନି ମାଇପେ । ପଶଚନି ବାକ୍ସ ଭିତରେ । ଭବିମୋଡ଼ି ହାବିସ୍ ମାଇଲେ ରଡ଼ି ପକଉଚିନି, ବୋବାଳି ଛାଡୁଚିନି, ବାହୁନୁଚିନି । ଗୀତ ବୋଲୁଚିନି, ନାଚୁଚିନି, ବାଜା ବଜଉଚିନି ।'' ଗ୍ରାମ୍‌ଫୋନ

ଛଡ଼ା ପେଟ୍ରୋମାକ୍ସ ଆଲୁଅଗୁଡ଼ାକ ବି ପ୍ରବଳ ବିସ୍ମୟ ସୃଷ୍ଟି କରୁଥିଲା । ଆଗ ଆଗ ସର୍ବସାଧାରଣଙ୍କ ମନରେ । (ପୃ-୧୪୮)

ବୃହସ୍ପତିଙ୍କ ଘରେ ତିନିଜଣ ବିଧବା ଭଉଣୀ ଦୁର୍ଗା, ସରସ୍ୱତୀ, ଲକ୍ଷ୍ମୀ । ସାନଭାଇ ବୁଧନାଥ ଘରଛାଡ଼ି କୁଆଡ଼େ ପଳାଇ ଯାଇଥିବାରୁ, ତାର ସ୍ତ୍ରୀ ଦେବୀ ଏକ ରକମ ପାଗଳୀ । ବୋହୂ ଅପର୍ଣ୍ଣା । ଅତୀତ କଥା ବଖାଣୁଥାନ୍ତି ବୃହସ୍ପତି । ସେଦିନ ସେ ଯାଇଥିଲେ ଯୁଦ୍ଧକୁ । ହଠାତ୍ ଗୋରା ସାହେବ ଆଗରେ ପହଞ୍ଚିଗଲେ ବୁଧନାଥ, କହିଲେ- "ସାହେବ୍! ମାଇଁ ବ୍ରଦର ରାମ୍, ଆଇ ଲଛମନ । ରାମ ଗୋଜ ଫରେଷ୍ଟ, ଲଛମନ ଗୋଜ ଫରେଷ୍ଟ । ରାମ ଗୋଜ ୱାର । ଲଛମନ୍ ଗୋଜ ୱାର । ଆମ୍ ବ୍ରାହ୍ମିନ ଚଣ୍ଡୀପାଠ ଠୁଁ ଜୁତା ସିଲାଇ ଏନି ୱାର୍କ ସାହାବ୍ ।" -(ପୃ-୧୪୯) । ଫଳରେ ସେ ମଧ୍ୟ ଯୁଦ୍ଧକୁ ଯାଇଥିଲା । ଥରକର କଥା । ଦୁଇଭାଇ ମୁସଲମାନ ଶତ୍ରୁଙ୍କ ହାତରେ ପଡ଼ିଲେ । ଏ ଦୁହିଁଙ୍କ କାନ୍ଧରେ ପଇତା ଦେଖି, ତାହା କଣ ବୋଲି ପଚାରିଲେ । ବୁଧନାଥ ହଠାତ୍ କହିଲେ ତାହା ଯୁଦ୍ଧବେଳେ ହଠାତ୍ ଯୋତା ସିଲାଇ କରିବା ପାଇଁ ସୂତା । ଶତ୍ରୁପକ୍ଷର ତୀକ୍ଷ୍ଣ ଛୁରୀଟାର ଆଘାତରେ ପଇତା ଗୋଡ଼ତଳେ ମଲାସାପ ପରି ପଡ଼ିଲା । ବୁଧନାଥ ସେଇ ସୁତାରେ ଜୋତା ସିଲାଇ କରି ଦେଖାଇ ଦେଇଥିଲେ । ଫଳରେ ସେଇ ଚତୁରତା ହେତୁ ସେଦିନ ପ୍ରାଣ ରହିଗଲା । ଶତ୍ରୁପକ୍ଷର ମହିଳାମାନଙ୍କ ଦୟାହେତୁ, ତାଙ୍କଦ୍ୱାରା ପ୍ରଦତ୍ତ ବୁର୍ଖା ପିନ୍ଧି ଦୁଇ ଭାଇ ସେଠାରୁ ଜୀବନ ନେଇ ପଳାଇ ଆସିଥିଲେ । ଏମିତି କେତେକେତେ ରୋମାଞ୍ଚକର ସତ୍ୟ ଘଟଣା ଶୁଣନ୍ତି ଆସରର ଜନତା । ସେମାନେ ଚମତ୍କୃତ ହୁଅନ୍ତି । ଅନେକ ଅଙ୍ଗେଲିଭା ଘଟଣା ବର୍ଣ୍ଣନା କରି ବୃହସ୍ପତି ମିଶ୍ର ଅଗେଇ ନିଅନ୍ତି ଉପନ୍ୟାସର କାହାଣୀ ଭାଗ ।

ପରେ ପରେ ଓଡ଼ିଶାରେ ଶିକ୍ଷା ସଂସ୍କୃତିର ପ୍ରାଣକେନ୍ଦ୍ର ଓ ରାଜନୀତି କ୍ଷେତ୍ରରେ ମୂଳଦୁଆ ସ୍ୱରୂପ ରେଭେନ୍‌ସା କଲେଜ କଥା ବର୍ଣ୍ଣିତ । ୧୯୪୯ ମସିହାରେ ଦେବ ଓ ଯଜ୍ଞ ରେଭେନ୍‌ସା କଲେଜରେ ନାମ ଲେଖାନ୍ତି । ପ୍ରକୃତରେ ଔପନ୍ୟାସିକଙ୍କର ଜନ୍ମ ୧୯୩୩ ମସିହାରେ ସିଦ୍ଧେଶ୍ୱରପୁରରେ । ସେ ୧୯୪୯ ମସିହାରେ ମାଟ୍ରିକ ପାଶ୍ କରି ରେଭେନ୍‌ସା କଲେଜରେ ଅଧ୍ୟୟନ କରିବା ସ୍ୱାଭାବିକ। ସିଦ୍ଧେଶ୍ୱରପୁର, ତାର ଆଖ ପାଖ ଦଳେଇ ଘାଇ, ଦେବୀନଦୀ କୂଳ, ଦୁର୍ଗାପୁର ଗାଁର ଭୌଗୋଳିକ ପରିବେଶ ସବୁ ତାଙ୍କର ନିଜ ଅନୁଭୂତିର କଥା । ନିଜ ପିଲାଦିନ ଓ କଲେଜ ଛାତ୍ର ଜୀବନର କାହାଣୀ । ଏଥିରେ କଳ୍ପନା ନାହିଁ ବରଂ ସବୁକିଛି ଏକାନ୍ତ ସତ୍ୟ ଘଟଣା । ପୂର୍ବୋକ୍ତ ଆଲୋଚନାରେ 'କାଳ୍ପନିକ ଚରିତ୍ର' ମାଧ୍ୟମରେ ବାସ୍ତବ ସାମାଜିକ, ରାଜନୀତିକ ଜୀବନର ଚିତ୍ର ଅଙ୍କିତ ହେବା କଥା ଯାହା କୁହାଯାଉଛି ତାହା ସତ୍ୟ ନୁହେଁ, ବରଂ ଏଇ ଉପନ୍ୟାସ ନିଶ୍ଚିତ ଭାବରେ ଔପନ୍ୟାସିକଙ୍କର ଜୀବନ ଚିତ୍ରର କିଛି ମହନୀୟ ଅଂଶ ଏହା କୁହାଯାଇପାରେ । ଯଜ୍ଞଦତ୍ତ ଚରିତ୍ର ଆଉ କେହି ନୁହଁନ୍ତି ବରଂ ସିଏ ହେଉଛନ୍ତି ସ୍ୱୟଂ ଶାନ୍ତନୁ କୁମାର । ଯିଏ ଅନେକ ଅଙ୍ଗେଲିଭା ଘଟଣା ଓ ଜୀବନ କ୍ଷେତ୍ରରେ ଭେଟିଥିବା ବାସ୍ତବ ଚରିତ୍ରଗୁଡ଼ିକୁ ଆଣି ଉପନ୍ୟାସର କଳେବର ମଣ୍ଡନ କରିଅଛନ୍ତି । ସେଇ ଦୁହିଁଙ୍କ ସହିତ ପରେ ଆସି କରିମ୍ ଯୋଗ ଦେଇଛି । ସେହି କରମ୍ ଦିନେ ରେଭେନ୍‌ସା କଲେଜିଏଟ ସ୍କୁଲରେ ଯଜ୍ଞ ସାଙ୍ଗରେ ଅଧ୍ୟୟନ କରୁଥିଲା । ସମୟ ଓ ସୁବିଧା ପାଇ ଔପନ୍ୟାସିକ ରେଭେନ୍‌ସା କଲେଜିଏଟ ସ୍କୁଲର ମହତ୍ତ୍ୱ, ତାର ଗୌରବମୟ ଅତୀତ, ସୁଭାସ ବୋଷ, ମଧୁ ବାରିଷ୍ଟରଙ୍କ ଭବିତବ୍ୟ ନିର୍ମାଣସ୍ଥଳୀ ଭାବରେ ଚିତ୍ରଣ କରିଅଛନ୍ତି । ଫଳରେ ଦେବ, ଯଜ୍ଞ, କରିମ୍ ହେଲେ ତ୍ରିଶାଖା ବେଲପତ୍ର ପରି ।

ପରେ ପରେ ରେଭେନ୍‌ସା କଲେଜର ଅତୀତର କେତୋଟି ପୃଷ୍ଠାକୁ ଖୋଲି ଧରିଛନ୍ତି ଔପନ୍ୟାସିକ । ତାହା କେବଳ ଶିକ୍ଷା ସଂସ୍କୃତିର ପ୍ରାଣକେନ୍ଦ୍ର ନ ଥିଲା । ସେଠାରେ ବିଧାନସଭା ମଧ ଅନୁଷ୍ଠିତ ହେଉଥିଲା । ସେଇ ସମୟର ରେଭେନ୍‌ସା କଲେଜର ଶୈକ୍ଷିକ ଓ ରାଜନୀତିକ ବାତାବରଣ ସଫଳ ଚିତ୍ର ଆଙ୍କିଛନ୍ତି ସେ । ଅଧକ୍ଷ ଥାଆନ୍ତି ପ୍ରଫେସର ଗୋଲୋକ ବିହାରୀ ବାନାର୍ଜୀ, ଯା'ଙ୍କର ଚେହେରା ବିବେକାନନ୍ଦଙ୍କ ସହ ଅନେକାଂଶରେ ମିଶିଯାଏ । ତାଙ୍କ ବ୍ୟତୀତ ଡଃ. ପ୍ରାଣକୃଷ୍ଣ ପରିଜା, ଡଃ. ବ୍ରହ୍ମାନନ୍ଦ ମିଶ୍ର, ଡଃ. ବଳଭଦ୍ର ପ୍ରସାଦ, ଡଃ. ସଦାଶିବ ମିଶ୍ର, ନାରାମଣ ମିଶ୍ର, ଭି.ଭି. ଜନ, ଗିରିଜା ଶଙ୍କର ରାୟ, ଘନଶ୍ୟାମ ଦାଶ, ରୋହିତଗୀ , ତାଭେ, ପି.ଏମ୍.ସୁନ୍ଦରମ୍, ଆର୍ତ୍ତବଲ୍ଲଭ ମହାନ୍ତି ଏମିତି କେତେକେତେ ଦକ୍ଷ ଅଧାପକ । ପୁଣି ମହେନ୍ଦ୍ର କୁମାର ରାଉତଙ୍କ ପାଟି ଖନା ଓ ସେ ଗବେଷଣା କରିବାରେ ଓ କରାଇବାରେ ଦକ୍ଷ । ଏମିତି କେତେ ଘଟଣା । ସେତିକିବେଳେ ଗର୍ଭବତୀ ନନ୍ଦିନୀ ଶତପଥୀ ଧାରଣା ଦେଇଥିଲେ । ଦମକଳରୁ ପାଣି ପିଚିକାରୀ ତାଙ୍କ ଆଡ଼କୁ ପୋଲିସ୍ ପକାଇବା ହେତୁ ଛାତ୍ର ଆନ୍ଦୋଳନ, ପୋଲିସର ଛାତ୍ରଙ୍କୁ ଦମନ । ସେହିଦିନ ନନ୍ଦିନୀଙ୍କର ପୁତ୍ରଟିଏ ହେବା ସବୁ ଇତିହାସର କଥା । ଏହି ଘଟଣା ଓ ଚରିତ୍ରରେ କିଛି ହେଲେ ମିଥ୍ୟା ନାହିଁ । ବରଂ ଲେଖକ ନିଜ ସମୟରେ ଘଟିଥିବା ରେଭେନ୍‌ସା କଲେଜର ଇତିହାସକୁ ଟିକିଏ ଉଖାରିବାକୁ ଚେଷ୍ଟା କରିଛନ୍ତି । ସେତେବେଳ 'ମିଶ୍ର, ପତି, ଦାଶ'ଙ୍କ ବକ୍ତୃତା ପ୍ରତିଯୋଗିତାରେ ଅପୂର୍ବ ଦକ୍ଷତାର ବର୍ଣ୍ଣନା ରହିଛି । ସେମାନେ ହେଲେ ଗଣେଶ୍ୱର ମିଶ୍ର, ପ୍ରଫୁଲ୍ଲ କୁମାର ପତି ଓ ଶ୍ରୀ ରାମ ଚନ୍ଦ୍ର ଦାଶ । ସେମାନେ ଭାଷଣ ଦେଲାବେଳେ ସମସ୍ତେ ତାକୁ ଉପଭୋଗ କରୁଥିଲେ । ସେମାନେ ଥିଲେ ରେଭେନ୍‌ସା କଲେଜର ଗୌରବ । ସେଇ ବକ୍ତୃତା ବେଳେ କରତାଳି ଆଉ ପ୍ରଚୁର ହସ, କିନ୍ତୁ ପିନ୍‌ଡ୍ରପ୍ ସାଇଲେନ୍‌ସ । ଏହିଥିଲା ରେଭେନ୍‌ସା କଲେଜର ପରମ୍ପରା । କିନ୍ତୁ ସେଇଠି ବିଧାନସଭା ଥିବା ହେତୁ ରାଜନୀତିକ ନେତାଙ୍କ ଦୌରାତ୍ମ୍ୟରେ ବେଳେବେଳେ କଲେଜ ବାତାବରଣ ଅଶାନ୍ତ ହୁଏ । ଖରାଛୁଟି ପରେ କଲେଜ ଖୋଲେନା । ଛୁଟି ଲମ୍ବି ଲମ୍ବି ଯାଏ, ନେତାମାନେ ଛାତ୍ରମାନଙ୍କୁ ହାତବାରସି କରିବାକୁ ଚେଷ୍ଟା କରନ୍ତି । ଶତମାର୍ଗ ନିର୍ମାଣ, ଅନ୍ୟାନ୍ୟ କାର୍ଯ୍ୟରେ ଛାତ୍ରଛାତ୍ରୀଙ୍କୁ ନିୟୋଜିତ କରନ୍ତି । ତାର ଚିତ୍ର ଏଥିରେ ପ୍ରଦତ୍ତ । ଏପରିକି ସେଇମାନଙ୍କ ପ୍ରରୋଚନାରେ ରାତିରେ ସଭା ହେଉଥିବା ବେଳେ ଲାଇଟ୍‌ର ମେନ୍ ସୁଇଚ ବନ୍ଦ କରି ଅଧକ୍ଷ ବାନାର୍ଜୀଙ୍କୁ ମାଡ଼ ମଧ ମରାଯାଇଛି । କଲେଜ କେବଳ କଲେଜ ହୋଇ ନାହିଁ, ହୋଇଥାଏ ରାଜନୀତିର ତାଲିମ୍ ଶିବିର । ସେଦିନ ବିରେନ୍ ମିତ୍ର ରେଭେନ୍‌ସା କଲେଜ ଅଧକ୍ଷଙ୍କ କଲାର ଧରି କହୁଥାନ୍ତି- "ଗେଟ୍ ଆଉଟ୍, ଆଇ ସେ ଗେଟ୍ ଆଉଟ, ୟୁ ଉଡ଼ନ ହର୍ଷ ! ଗେଟ୍ ଆଉଟ" ପୃ-୧୦୭ । ସେଦିନ ଥିଲା ୧୯୫୧ ଜୁଲାଇ ମାସ ୧୯ ତାରିଖ । ଦେଖିଲେ ଜଣାପଡ଼େ ପ୍ରଫେସର ବାନାର୍ଜୀ ଅଧକ୍ଷ ଥିଲେ ୨୯.୦୧.୪୯ ରୁ ୦୨.୧୨.୫୩ ପର୍ଯ୍ୟନ୍ତ ଓ ପରେ ପରେ ବାମା ଚରଣ ଦାସ ୦୩.୧୨.୫୩ରୁ ୧୮.୦୩.୫୭ ପର୍ଯ୍ୟନ୍ତ ଅଧକ୍ଷ ରହିଲେ । ସେହି ସମୟରେ ଅନେକ ଉତ୍ଥାନ୍ ପତନର ଚିତ୍ର ମଧରେ ରେଭେନ୍‌ସା କଲେଜର ସ୍ଥିତି ବିଜିତ । ଏହା ନିରୋଳା ଇତିହାସର କଥା । ଅତୀତରେ ରେଭେନ୍‌ସା ବର୍ଣ୍ଣିତ । ଏହା ନିରୋଳା ଇତିହାସର କଥା । ଅତୀତରେ ରେଭେନ୍‌ସା ଇତିହାସରେ ଘଟିଥିବା କେତୋଟି ସତ୍ୟ ଘଟଣାର ନିଖୁଣ ବିବରଣୀ ।

ଅନ୍ୟପକ୍ଷରେ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତି । ତାଙ୍କୁ ବିରୋଧ କରୁଥାନ୍ତି ହରେକୃଷ୍ଣ ମହତାବ । ତାଙ୍କର ଥିଲା ଦ୍ୱୈତ ବ୍ୟକ୍ତିତ୍ୱ । ଗୋଟିଏ ପଟେ ରାଜନୀତି, ଅନ୍ୟପଟେ ସାହିତ୍ୟ

ଓ ସଂସ୍କୃତି ପ୍ରେମ । ସେତେବେଳ ବିହାରୀବାଗ ଥିଲା ଏକ ତୀର୍ଥକ୍ଷେତ୍ର ପରି । ତାହା ଔପନ୍ୟାସିକଙ୍କ ଭାଷାରେ- "ସେଣ୍ଟର ଅଫ କଲଚର ଓଡ଼ିଶାର, ସେଣ୍ଟର ଅଫ୍ ପଲିଟିକସ କହି ଦେବ ହସିଦେଲା । ସେଣ୍ଟର ଅଫ୍ କିଂ ମେକିଂ । କରିମ୍ ଜୋର ଦେଇ କହିଲା ଦେବକୁ ବଳିଯାଇ, ଏଇଠଉ ବାହାରିବେ ଜେନେରେସନ୍ସ ଅଫ ଫ୍ୟୁଚର ପଲିଟିସିଆନ୍ସ ଯୋଉମାନେ ଜଣ ଜଣ କରି ରୁଲ କରିବେ ଓଡ଼ିଶାକୁ । (ପୃ-୨୫୫) ତେଣୁ ଏହା କେବଳ ରେଭେନ୍ସା କଲେଜର କେତେବର୍ଷର ଇତିହାସ ନୁହେଁ । ଓଡ଼ିଶାର ଇତିହାସର କେତୋଟି ଛିନ୍ନ ପୃଷ୍ଠା କୁହାଯାଇପାରେ । ସେତିକିବେଳେ ଘଟିଥିଲା କାଳିଆ ବୋଦା ହତ୍ୟାକାଣ୍ଡ, ରକ୍ତଲେଇ ହଇଜା । ଦଳେଇ ଘାଇ ଭାଙ୍ଗିଥିଲା । ନବ ଚୌଧୁରୀ ସରକାର ବିରୁଦ୍ଧରେ ସୀମା ଆନ୍ଦୋଳନ ପାଇଁ ଘଟିଥିଲା ବିଦ୍ରୋହ । ଏମିତି କେତେ କେତେ ଐତିହାସିକ ଘଟଣାର ସ୍ୱାକ୍ଷର ରହିଛି ଏଥିରେ ।

ଅନ୍ୟପକ୍ଷରେ ଯଜ୍ଞ । ଫିଜିକ୍ସ ଅନର୍ସ, ପରେ କେମିଷ୍ଟ୍ରି ଅନର୍ସ, ପୁଣି ମେଡ଼ିକାଲ ମଧ୍ୟ ଗୋଟିଏ ବର୍ଷ ପାଇଁ ପଢ଼ିଛି । କିନ୍ତୁ ମେଡ଼ିକାଲ ପାଠ ପଢ଼ାରେ ଡ଼ୋରି ବନ୍ଧା ହୋଇଛି ଏକ ବିଶେଷ କାରଣ ପାଇଁ । ଯଜ୍ଞ ତା ଭିତରେ ଭଲ ପାଇ ବସିଥିଲା । କରିମ୍‌ର ଭଉଣୀ ଇନ୍ଦୁକୁ । ଇନ୍ଦୁର ଲିଖିତ ଛଅ ଗୋଟି କବିତା ମହତାବଙ୍କ ପ୍ରକାଶିତ 'ଝଙ୍କାର' ପତ୍ରିକାରେ ବାହାର କରିଥିଲା । ସେଇ ବର୍ଣ୍ଣନା ପ୍ରସଙ୍ଗରେ ଅଚ୍ୟୁତାନନ୍ଦଙ୍କ ପୀଠ ନେମାଳ କଥା ବହୁବାର ଆଲୋଚନା କରାଯାଇଛି । କାରଣ କରିମ୍ ଘର ସେଇଠାରେ । କରିମ୍ ପିତୃପିତାମହ ଅଚ୍ୟୁତ ଖାଁଙ୍କ ଜମିରେ ହୋଇଚି ଅଚ୍ୟୁତାନନ୍ଦଙ୍କ ସମାଧିପୀଠ । ଅଚ୍ୟୁତାନନ୍ଦଙ୍କ ରଚନାରେ 'ହିନ୍ଦୁ ଭଜେ ଅଲେଖ, ତୁର୍କ ଭଜେ ଅଲେଫ'- ଶୂନ୍ୟ ସଂହିତା କଥା ଉଲ୍ଲେଖ କରି ପଞ୍ଚସଖାଙ୍କ ରଚନାରେ ହିନ୍ଦୁ ମୁସଲମାନ ସଂପ୍ରଦାୟର ସମନ୍ୱୟର ଚିତ୍ର କଥା ଅଙ୍କନ କରିଅଛନ୍ତି । କିନ୍ତୁ ଦେଖାଯାଇଛି ଯଜ୍ଞର ଭଲ ପାଇବା ହେତୁ କରିମ୍ ଭଉଣୀ ଇନ୍ଦୁ ଦିନେ ଆତ୍ମହତ୍ୟା କରିଛି । ତାରି କ୍ୟାଡ଼ାଭର ସେଦିନ ଥିଲା ଆନାଟମି ପରୀକ୍ଷାଗାରରେ ବ୍ୟବଚ୍ଛେଦ ପାଇଁ । ସେଠାରେ ଇନ୍ଦୁର ଉଲଗ୍ନ ଶରୀର ଦେଖି ହଠାତ୍ ଯଜ୍ଞ ସେଇ ଡ଼ିସେକସନ୍ ବକ୍ସର ଛୁରୀରେ ମାରିବା ପାଇଁ ଅନ୍ୟକୁ ଧମକ ଦେଇଛି । ସେ ରହିଁଛି କେହି ସେ ଶବ ଛୁଇଁ ପାରିବେ ନାହିଁ । ସେଇ ପ୍ରେମର ଇତି କେବଳ ଘଟିନାହିଁ ତା ପରଠାରୁ ମେଡ଼ିକାଲ ପଢ଼ା ମଧ୍ୟ ଆଉ ହୋଇନି ଯଜ୍ଞର । ବରଂ ସେ ପୁଣି ଆସି ରେଭେନ୍ସା କଲେଜରେ କେମିଷ୍ଟ୍ରି ପୋଷ୍ଟ ଗ୍ରାଜୁଏଟ୍ ଶ୍ରେଣୀରେ ଯୋଗ ଦେଇଛି ।

ଦିନେ ଯଜ୍ଞ କରିମ୍ ସହିତ ମସ୍‌ଜିଦ୍ ଯାଇ ଆଖିବୁଜି ଧ୍ୟାନ କରି କେବଳ ଶ୍ରୀକୃଷ୍ଣଙ୍କୁ ହିଁ ଦେଖିଥିଲା । ବାରମ୍ବାର ଆଖି ଖୋଲି ବୁଜିଛି । କିନ୍ତୁ ଠିକ୍ ସେଇ କଥା । ତେଣୁ ଯଜ୍ଞ ଭାବେ କରିମ୍ ହୁଏତ ଜଗନ୍ନାଥଙ୍କ ମନ୍ଦିରରେ ଆଲ୍ଲାଙ୍କୁ ଦେଖିପାରେ । ପରେ ସୀମା ଆନ୍ଦୋଳନରେ ଦାୟିତ୍ୱ ନେଇ କରିମ୍ ପୁରୀ ଯାଇଛି, ସାଙ୍ଗରେ ଭୁଲାଇ ଯଜ୍ଞକୁ ନେଇ ଯାଇଚି । ତାଙ୍କର ଅତୀତ କଥା, ଇନ୍ଦୁର ମୃତ୍ୟୁ, ତାପାଇଁ ଯଜ୍ଞ ଦାୟୀ, ଏମିତି ଅନେକ କଥା ଟ୍ରେନ୍ ଯାତ୍ରା ସମୟରେ ଆଲୋଚନା ହୋଇଛି । ଯଜ୍ଞକୁ ବି.ଏନ୍. ଆର ହୋଟେଲରେ ରଖିଦେଇ କରିମ୍ ଲାଗିଯାଏ ତା କାମରେ । ଏପରିକି କରିମ୍ ଥରେ ଜଗନ୍ନାଥ ମନ୍ଦିରରେ ପ୍ରବେଶ କରେ । ପଣ୍ଡାମାନଙ୍କ ଭିତରେ ହୋ ହାଲ୍ଲା ପଡ଼ିଯାଏ । କିନ୍ତୁ କରିମ୍ ମହାପ୍ରସାଦ ହାତରେ ଆଣି ବାହାରି ଆସେ ଓ ଗୋଟିଏ ପଟେ ରାସ୍ତାରେ ବିପ୍ଳବର ନେତୃତ୍ୱ ନେଇ ଆଗେଇଯାଏ । ପୁଣି ସେଇ କରିମ୍ ସମୁଦ୍ର ଭିତରେ ଜଗନ୍ନାଥଙ୍କୁ ଦେଖିବାକୁ ଚେଷ୍ଟା କରିଛି । ନମସ୍କାର କରିଛି, କିନ୍ତୁ ପରେ ପରେ ଭାସିଯାଇଛି । ଯଜ୍ଞ ଜାଣିଛି ତାର ପ୍ରିୟ ବନ୍ଧୁ କରିମ୍‌ର ମୃତ୍ୟୁ ହୋଇଛି ।

ବେଶ୍ କିଛି ବର୍ଷ ପରର କଥା । ବୋଧହୁଏ ୧୯୮୯ର କଥା । ହଠାତ୍ ରେଭେନ୍ସା କଲେଜରେ ନିଆଁ ଲାଗି ଅଧ୍ୟକ୍ଷଙ୍କ ପ୍ରକୋଷ୍ଠର ଆସବାବପତ୍ର, ଅଧ୍ୟକ୍ଷମାନଙ୍କର ପୁରୁଣା ଫଟୋ, ଅନେକ ଜିନିଷ ଜଳିପୋଡ଼ି ନଷ୍ଟ ହୋଇଛି । ସଚ୍ଚା ରେଭେନ୍ସା ଭିଆନ୍ ଭାବରେ ଯଜ୍ଞଦତ୍ତ ବହୁ ବର୍ଷ ପରେ ସେଇ କଥା ଦେଖିବାକୁ ଆସିଚନ୍ତି । ସେଠାରେ ସେ କରିମ୍‌କୁ ଦେଖି ଆଶ୍ଚର୍ଯ୍ୟ ହୋଇଛନ୍ତି । ସେଇ କରିମ୍ ଠାରୁ ଜାଣିଛନ୍ତି ଜଗନ୍ନାଥ ହିଁ ତାଙ୍କୁ ସେଦିନ ବଞ୍ଚାଇଲେ । ହଠାତ୍ ତା ପେଟ ତଳେ ଲାଗିଲା ଏକ ଦାରୁ । ବିରାଟ କାଠଖଣ୍ଡ । ତାରି ସହାୟତାରେ ସିଏ ସେଦିନ ଜୀବନରେ ରହିପାରିଲା । ସେ ଏବେ ରାଜନୀତି ଛାଡ଼ିଦେଇ ମୌଲବୀ କାର୍ଯ୍ୟ କରୁଛି । ତାର ସେ ପୂର୍ବର ବଳିଷ୍ଠ ଚେହେରା ନାହିଁ । ଧଳା ଦାଢ଼ି, ଧଳା ବାଳ । ଯଜ୍ଞଦତ୍ତ ମଧ୍ୟ ଗୋଟିଏ କଲେଜରେ ଅଧ୍ୟାପନା କରିବା କଥା କହିଛନ୍ତି । ଏପରି ଭାବରେ ଏକ ଅପୂର୍ବ ମିଳନ ହୋଇଚି ସେ ଦୁହିଁଙ୍କର ।

ଉପନ୍ୟାସର ଆରମ୍ଭରେ ଦେବ ଓ ଯଜ୍ଞ ଛୋଟ ହୋଇଥିଲେ । ଦେବୀ ନଈ ବନ୍ଧେ ବନ୍ଧେ ଯାଇଥିଲେ ଅନେକ ଦୂର । ସେତେବେଳର ଘଟଣା: "ଶୁଣୁଚୁ" ଦେବ କହିଲା ଡରିଲା ସ୍ୱରରେ । "ଧରିତ୍ରୀମାତା କାନ୍ଦୁଛନ୍ତି- ଶୁଣ" । କିଏ ? ଯଜ୍ଞ ପଚାରିଲା ବେପରୁଆ ସ୍ୱରରେ । କିଏ କାନ୍ଦୁଚି କୋଉଠି କାହିଁ ? 'ଧରିତ୍ରୀ ମାତା' । (ପୃ-୧) ସେତେବେଳେ ସେମାନଙ୍କୁ ନଅ ପୁରି ଦଶ ଚାଲୁଥାଏ । ସେମାନେ ଶୁଣିଥିଲେ ମା ବସୁମତୀର ବିଳାପ । ପୁନଶ୍ଚ ପୁସ୍ତକର ଅନ୍ତିମ ଅଂଶରେ ଯେତେବେଳେ ଯଜ୍ଞ କରିମ୍‌କୁ ଡାକି ନେଇଛି ପାଖ ମସ୍‌ଜିଦ୍‌କୁ ଶାନ୍ତିରେ ଟିକିଏ ବସିବା ପାଇଁ ସେତିକିବେଳେ ଯଜ୍ଞ କହିଛି- "ଧରିତ୍ରୀ ମାତା କାନ୍ଦୁଛି । ଶୁଣି ପାରୁଛୁ । ଏ ସମଗ୍ର ପୃଥିବୀରେ ନିରୋଳା ସ୍ଥାନ ଆଉ କେଉଁଠି ନାହିଁ । ସବୁଠେଇଁ ପୋଡ଼ାଜଳା, ହାଣକାଟ ରେ'ରେ'କାର । ଧର୍ମ ଧର୍ମ ଜାତି ଜାତି ଭାଷା ଭାଷା- ଘୋର ବିଦ୍ୱେଷରେ ଜଳୁଛି ଏ ମେଦିନୀ । ଚାଲ ଆମେ ଦିହେଁ ଏକାଠି ଆଖିବୁଜି ବସିବା ଟିକେ । ଆଉ ପ୍ରାର୍ଥନା କରିବା । ଏଇତ ଶୁଣାଗଲାଣି ଆଜାନ- ଚାଲ ଶୀଘ୍ର ଚାଲ । ଯଜ୍ଞଦତ୍ତ ଟାଣୁଥାଏ କରିମ୍‌କୁ ମସ୍‌ଜିଦ୍ ଆଡକୁ । (ପୃ-୩୧୯ )

ଏ ଦୃଷ୍ଟିରୁ ଏହାର ନାମ କରଣ ସାର୍ଥକ ହୋଇଛି । ଆଜି ଧରିତ୍ରୀ ମାତା ସତରେ କାନ୍ଦୁଛନ୍ତି । ଆମେ ତାର ସନ୍ତାନ ଭାବରେ ସେ କାନ୍ଦ ଶୁଣିବାକୁ ହେବ। ପୋଛି ଦେବାକୁ ପଡ଼ିବ ତାର ଲୁହ। ଔପନ୍ୟାସିକ 'ନରକିନ୍ନର'ଠାରୁ 'ଧରିତ୍ରୀର କାନ୍ଦ'ପର୍ଯ୍ୟନ୍ତ ଚଳିତ ଶତାବ୍ଦୀର ପ୍ରାୟ ପାଞ୍ଚ ଛଅ ଦଶନ୍ଧିର ସାମାଜିକ ଓ ରାଜନୀତିକ ଜୀବନର ସାର୍ଥକ ଚିତ୍ର ଅଙ୍କନ କରିଅଛନ୍ତି । ଆଜି ବର୍ଣ୍ଣବୈଷମ୍ୟ ତଥା ସାଂପ୍ରଦାୟିକ ଦଙ୍ଗା, ରାଜନୀତି କ୍ଷେତ୍ରରେ ମୂଲ୍ୟବୋଧର ଅବକ୍ଷୟ, ସେଠାରେ ହିଂସାତ୍ମକ ଆନ୍ଦୋଳନ, ସମାଜରେ ପ୍ରଚଳିତ ଦୁର୍ନୀତି ଓ ଭ୍ରଷ୍ଟାଚାର, ଧର୍ମ, ଜାତି, ଭାଷା ମଧ୍ୟରେ କଳହ ଯୋଗୁ ଧରିତ୍ରୀ ମାତା ବିଳାପ କରୁଛି। ସେଥିପାଇଁ ପ୍ରଫେସର ବାଉରୀ ବନ୍ଧୁ କର କହନ୍ତି-"Jagannath is God of all, all faiths and creeds are absorbed in him. Karim realized this symbolism and turns a new leaf in his life. He renounces politics and became a maulabi, a school teacher, The symbolism reiterates the faith in Bruhaspati that God is for all creatures. What matters in the final analysis is that man should realize this idea of the devine democracy of the world where all faith and all human beings are one, The temple and the mosque are one which is rein-

forced by Yagna opting for the mosque for prayer in the last scene of the novel." (3)

ଆଜି ଆମ ବିଶାସର ସମନ୍ୱୟ ଦରକାର। ଆମେ ବିଶ୍ୱଭ୍ରାତୃତ୍ୱ 'ବସୁଧୈବ କୁଟୁମ୍ବକମ୍'ବୋଲି ଡିଣ୍ଡିମ ପିଟୁଛୁ ଅଥଚ ଆମ ଭିତରେ ହଣାକଟା ଦଙ୍ଗା ଚାଲିଛି। ତେଣୁ କରିମ୍ ମାଧ୍ୟମରେ ଔପନ୍ୟାସିକ ସମାଜର ମଣିଷମାନଙ୍କୁ ପ୍ରଶ୍ନ କରନ୍ତି "ଦିନେ ଗାନ୍ଧିଜୀ ହରିଜନ ମାନଙ୍କୁ ମନ୍ଦିର ପ୍ରବେଶ କଥା ଉଠାଇଥିଲେ କିନ୍ତୁ ହିନ୍ଦୁ ମନ୍ଦିରକୁ ମୁସଲମାନ ବି ପଶନ୍ତୁ ବୋଲି କେଉଁଠି ଆନ୍ଦୋଳନ କଲାଣି କିଏ ଏ ଦେଶରେ ? ତୁ ତ ନିଜେ ଯାଇଚୁ କେତେଥର ଆମ ମସ୍‌ଜିଦ୍‌କୁ । ତତେ ତ ବାରଣ କରିନୁ ଆମେ । କିନ୍ତୁ ଯଦି ଜଣେ ମୁସଲମାନ ପଶିବାକୁ ଚାହେଁ ତମ ମନ୍ଦିରକୁ । ପୁରେଇବ ? ତମେ ନିଜକୁ ଖୁବ୍ ବଡ଼ ମନେକର। ତମେ ଭାବ ତମର ଏକା ଶୁଦ୍ଧତା ଅଛି, ପବିତ୍ରତା ଅଛି । ଆମର ନାହିଁ । ଠିକ୍ ଅଛି । ଆମେ ତ ସେଇଯୋଗୁଁ ଅଲଗା ହୋଇ ରହିବୁ ତମଠୁଁ । ସ୍ୱାଧୀନତା ପରେ ସେହି କରଣରୁ ହେଲା ପାକିସ୍ଥାନ (ପୃ-୨୮୧-୨୮୨)। ଆଜି ଆମକୁ ଭାବିବାକୁ ପଡ଼ିବ । ଗାନ୍ଧିଜୀଙ୍କ ରାମଧ୍ୱନ୍ -'ଈଶ୍ୱର ଆଲ୍ଲା ତେରେ ନାମ' କେବଳ ଗାନ କରି ନୁହେଁ ବାସ୍ତବ କ୍ଷେତ୍ରରେ ଦେଖାଇବାକୁ ପଡ଼ିବ। ସେଇଥିପାଇଁ ଧରିତ୍ରୀର କାନ୍ଦ ଶୁଣିଛନ୍ତି ଔପନ୍ୟାସିକ ଓ ଶୁଣାଇବାକୁ ଚେଷ୍ଟା କରିଛନ୍ତି ଅନ୍ୟମାନଙ୍କୁ।

ସାହିତ୍ୟ ହେଉଛି ସମାଜର ଦର୍ପଣ। ଉପନ୍ୟାସ ସେହି ସାହିତ୍ୟର ଏକ ବଳିଷ୍ଠତମ ବିଭାଗ। ଉପନ୍ୟାସ ହିଁ ଯଥାର୍ଥରେ ମାନବ ଜୀବନ ଚିତ୍ରର ସମାହାର। ସେ ଦୃଷ୍ଟିରୁ 'ଧରିତ୍ରୀର କାନ୍ଦ'ତତ୍କାଳୀନ ସାମାଜିକ ଜୀବନର ନିଛକ ଚିତ୍ର ଧରିରଖିଛି। ତାଙ୍କ ଉପନ୍ୟାସର ବୈଶିଷ୍ଟ୍ୟ ସଂପର୍କରେ ମତଦେଇ ଜଣେ ସମାଲୋଚିକା କହନ୍ତି- "ତାଙ୍କର ଜଟିଳ ଭାବ ଜଗତରେ ଗୁମ୍ଫିତ ହୋଇଛି ବହୁ ରହସ୍ୟବାଦୀ ଆଧିଭୌତିକ ଜୀବନ ଜିଜ୍ଞାସା, ସମାଜର ପତନ ଅଭ୍ୟୁଦୟର ବନ୍ଧୁର ଗତିବେଗ, ପୁଣି ରାଜନୀତିର ବିଶ୍ୱବ୍ୟାପୀ ବିବର୍ତ୍ତନ। ସଂସ୍କୃତିର କ୍ରମ ବିଲୟନ ମଧ୍ୟରେ ପ୍ରାୟ କ୍ରିୟାଶୀଳ ରହିଛି ତାଙ୍କର ଭାରତୀୟ ମାନସିକତା, ରାଜନୀତିର ନୂଆ ନୂଆ ହଟଚମଟ ଭିତରେ, ସମାଜର ପାଶ୍ଚାତ୍ୟ ଢାଞ୍ଚା ଭିତରେ, ସେ ସନ୍ଧାନ କରିଛନ୍ତି ଭାରତର ସାଂସ୍କୃତିକ ଆତ୍ମା। ଯୁଗ ଚେତନାର ଅଧୋପତନ ଭିତରେ ସମ୍ଭାବନାର ପଦଯାତ୍ରା ଅବ୍ୟାହତ ରହିଛି ତାଙ୍କ ସୃଷ୍ଟିରେ। ଜୀବନର ପ୍ରାତ୍ୟହିକ ଓ ଆଧାତ୍ମିକ ସମସ୍ୟାବଳୀକୁ ଉତ୍‌ଥାପିତ କରିବା ସଙ୍ଗେ ସଙ୍ଗେ ବ୍ୟାପକ ଜୀବନ ପରିଧି ସହ କଳାତ୍ମକ ରୀତିରେ ଏହାକୁ ସଂଯୁକ୍ତ କରିଛନ୍ତି କଥାକାର। ଏହି ଧାରାରେ ତାଙ୍କର ରହିଛି ଏକ ବିଶାଳ କଥା ସାହିତ୍ୟର ଜଗତ ।" (୪)

ବର୍ତ୍ତମାନ ତାଙ୍କର ଆଲୋଚ୍ୟ ଉପନ୍ୟାସରେ ଯେଉଁ କେତୋଟି ତତ୍କାଳୀନ ସାମାଜିକ ରୀତି, ନୀତି, ଚଳଣୀ ଉପରେ ଆଲୋକପାତ କରିଛନ୍ତି ସେ ସଂପର୍କରେ ଦୃଷ୍ଟି ଦିଆଯାଉ। ସେଗୁଡ଼ିକ ମଧ୍ୟରେ କାହା ଘରେ ବାଧିକା ପଡ଼ିଲେ ମା ମଙ୍ଗଳାଙ୍କ ପାଖରେ ରାମାୟଣ ହପ୍ତା ପାଳନ, ପୁଣି ଲଙ୍କା କାଣ୍ଡ ପଢାହେଲାବେଳେ ହନୁମାନ ନ ବାହାରିଲେ ବା ଗଛଡାଳରେ ମାଙ୍କଡ ନ ଡେଇଁଲେ, ତାହା ନିଷ୍ଫଳ ହେବା ଧାରଣା ଥିଲା। ଶବ କୋକେଇରେ ଯାଇ ଜଳିବା ଦୃଶ୍ୟ ଓ ପ୍ରଥା-୨ ମଙ୍ଗଳାଙ୍କ ପାଖରେ ବୋଦା ବଳି ପଡ଼ିବା ପ୍ରଥା-୬, ଗାଁରେ ଭୂତ, ପ୍ରେତ, ଡାହାଣୀ, ପିଶାଚୁଣୀ, ବ୍ରହ୍ମରାକ୍ଷସ ଥିବା ଧାରଣା-୮, ମିଶ୍ରଘର ଉଚ୍ଚ ବଂଶଜହେତୁ ପାଡିଘରେ ବନ୍ଧୁ ନ ବାନ୍ଧିବା-୧୬, ଦରିଆ ପାରି ଓ ମୁସଲମାନ ରାଜ୍ୟରେ ରହିବା ହେତୁ ଜାତିଯିବା-୧୬, କୃଷ୍ଣ ମହାନ୍ତିଙ୍କ ସ୍ତ୍ରୀ ଦଉଡି ଦେଇ ଆତ୍ମହତ୍ୟା କରିଥିଲା କିମ୍ବା କୃଷ୍ଣମହାନ୍ତି

ତାକୁ ମାରି ଟଙ୍ଗେଇ ଦେଇଥିବା ହେତୁ ବୋହୂ ଭୂଆସୁଣୀମାନଙ୍କୁ ଭୂତ ହୋଇ ଲାଗିବା-୧୮, ସାମାଜିକ ବାସନ୍ଦ ବରିବା ପ୍ରଥା-୨୧, ବାଲ୍ୟ ବିବାହ ପ୍ରଥା-ବୃହସ୍ପତିଙ୍କ ସ୍ତ୍ରୀ ଘରଯୋଗ୍ୟା ହୋଇନଥିବା ହେତୁ ବାପଘରେ ରହିବା ପ୍ରସଙ୍ଗ-୩୦, ମହାନୃସିଂହ ମନ୍ତ୍ର ବୋଲିଲେ ବାଘ ଭୟ କଟିଯିବା ଧାରଣା-୩୩, ସାଇକେଲ ହଠାତ୍ ଯଞ୍ଚର ଲିକ ହୋଇଯିବା ହେତୁ ଭବିଷ୍ୟତରେ କୌଣସି ଦୁର୍ଯୋଗ ଆସିପାରେ ବୋଲି ଭାବନା-୩୪, ଏକୋଇଶା ପୂଜା ଏବଂ ସତ୍ୟ ନାରାୟଣ ପୂଜା ପ୍ରସଙ୍ଗ-୫୩, ହଇଜାକୁ ଠାକୁରାଣୀ ବିଜେ କରିଛନ୍ତି ବୋଲି କହିବା-୬୪, ଦେବଦହର ସେଇ ବଡ଼ ବରଗଛଟିକୁ ଲୋକେ ଭାବନ୍ତି ଏହା ବରଗଛ ନୁହେଁ ପିତୃଲୋକ, ମୃତଲୋକଙ୍କ ଆତ୍ମା ସବୁ ବାବୁଡ଼ି ପାଲଟି ଯାଇଛନ୍ତି-୬୫, ବୋହୂ ଭୂଆସୁଣୀମାନେ ଘର ଭିତରେ ଲୁଚି ରହିବା-୮୦, କୌଣସି ଖରାପ କାମ ଯେଉଁ ହାତରେ କରାଯାଏ ସେଇ ହାତରେ କୁଷ୍ଠ ହୋଇଯିବା କିମ୍ବା ହାତ ଛିଡ଼ିପଡ଼ିବା ଧାରଣା-୧୦୮, ସମାଜରେ ନାରୀର ସ୍ଥିତି ବିଷୟରେ ଉଲ୍ଲେଖ ଅଛି ।" ସେ କାଳେ ଝିଅ ପିଲାମାନେ ପଢାପଢି କରିବା ଥିଲା ଘୋର ଦୋଷାବହ କାମ। ତେବେ ବ୍ରାହ୍ମଣ ଘର । ବାପ ଅଜାଙ୍କ ମୁହଁରୁ ଭାଗବତ, ଗୀତା, ରାମାୟଣ, ମହାଭାରତ ଶୁଣି ଶୁଣି ଅନେକ ପଦ ମନେରହିଯାଉଥିଲା ବିନା ଆୟାସରେ । ବାହା ହୋଇ ଆସିଲେ ପାର୍ବତୀ ଏ ଘରକୁ ମୋଟେ ନ'ବର୍ଷ ବୟସରେ-ପୃ-୧୯୫, ଏହିପରି ଅନେକ ସାମାଜିକ ଦୃଷ୍ଟିକୋଣ, ପ୍ରଥା, ଧାରଣା ଇତ୍ୟାଦିକୁ ଔପନ୍ୟାସିକ ଖୁବ୍ ସୁନ୍ଦର ଭାବରେ ଏଥିରେ ପରିବେଷଣ କରିଅଛନ୍ତି।

ବର୍ତ୍ତମାନ ଏହି ଉପନ୍ୟାସର ଅଙ୍ଗ ସଜ୍ଜା ସମ୍ପର୍କରେ ଆଲୋଚନା କରାଯାଉ । ଆତ୍ମିକ ସୌଷ୍ଠବ ପରି ଆଙ୍ଗିକ ବିଭବ ଯେକୌଣସି ସାରସ୍ୱତ ସୃଷ୍ଟିର ଏକ ମୁଖ୍ୟ ଅଂଶ । "କ'ଣ କୁହାଯିବ ।" ତା ଯେତିକି ବଡ଼ କଥା ନୁହେଁ ବରଂ ତାକୁ କିପରି କୁହାଯିବ ତାହାହିଁ ବିଶେଷ ଗୁରୁତ୍ୱପୂର୍ଣ୍ଣ ବିଷୟ । ସେଇ ଦୃଷ୍ଟିରୁ "ଧରିତ୍ରୀର କାନ୍ଦ" ଏକ ଉଚ୍ଚକୋଟୀର ଉପନ୍ୟାସ । ଔପନ୍ୟାସିକ ଦୃଷ୍ଟିକୋଣ ଏକାନ୍ତ ଭାବରେ ଏକକ ଧର୍ମୀ ଓ ବେଶ୍ ଶାନ୍ତନୁ କୁମାରୀୟ । ଭାଷାର ଚାତୁରୀ ଠାରୁ ବିଷୟବସ୍ତୁ ଉପସ୍ଥାପନା କୌଶଳ ସବୁ କିଛିରେ ସ୍ୱାତନ୍ତ୍ୟ ପରିଲକ୍ଷିତ ହୁଏ । ସେହିପରି ଏକ ଶ୍ରେଷ୍ଠ ରଚନାରେ ଗ୍ରାମ୍ୟ ପ୍ରଚଳିତ ରୁଢ଼ି ରହିଛି । ତତ୍ସମ୍, ତଦ୍ଭବ, ଦେଶଜ, ବୈଦେଶିକ ଶବ୍ଦର ସମନ୍ୱୟ ସାଧିତ ହୋଇଛି । ପୁନଶ୍ଚ ଆଳଙ୍କାରିକ ଶବ୍ଦ ବିନ୍ୟାସ ସହ ଚିତ୍ର କଳ୍ପ ପ୍ରୟୋଗରେ ଅଭିନବତ୍ୱ, ପ୍ରକୃତିର ଅପରୂପ ଚିତ୍ରଣ, ପୌରାଣିକ ତଥ୍ୟର ଅବତାରଣା ଇତ୍ୟାଦି ତାଙ୍କ କୃତିତ୍ୱକୁ ମହନୀୟ ଓ ମଞ୍ଜୁଳ କରି ଗଢ଼ି ତୋଳିଛି । ବର୍ତ୍ତମାନ ସେ ସମ୍ପର୍କରେ ବିଶଦ ଆଲୋଚନା କରାଯାଉ ।

ରୁଢ଼ିର ସଫଳ ପ୍ରୟୋଗ ଭାଷାକୁ ସରସ ସୁନ୍ଦର କରେ । ରୁଢ଼ିଯୁକ୍ତ ଶବ୍ଦର ବିଶେଷ ଅର୍ଥ ଥିବାରୁ ତାହା ସାରସ୍ୱତ ସୃଷ୍ଟିକୁ ତାହା ବେଶ୍ ମନୋଲୋଭା ଓ ବୈଚିତ୍ର୍ୟ ମୟ କରେ । ସେ ଦୃଷ୍ଟିରୁ ଗ୍ରାମ୍ୟ ପ୍ରଚଳିତ ରୁଢ଼ିର ସଂଯୋଜନା ଔପନ୍ୟାସିକଙ୍କର କୃତିର ପରିଚୟ ଦିଏ । ଉଭୟ କ୍ରିୟାଯୁକ୍ତ ଓ କ୍ରିୟାହୀନ ରୁଢ଼ି ତାଙ୍କ ରଚନାକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ପ୍ରଦାନ୍ କରେ । ସେ ରୁଢ଼ିଗୁଡିକ ହେଲା- ଅକଲ ଗୁଡୁମ୍ ହେବା, ଛାତି ଉଠିବା ପଡିବା । କାବା ହୋଇ ଚାହିଁ ରହିବା, ଚୋର ପୁଲିସ୍ ଖେଳ, ଘରବୁଡ଼ି ପାଣି ଆଣ୍ଠୁଏ, ମିଠା କଥା, କୋକୁଆ ଭୟ, ପାଟିରୁ ନାଳ ଗଡ଼ିପଡ଼ିବା । ଗରଗର ହେବା, ରାତିପାହି କୁଆ କା ନ କରିବା, ପାଲା ଲାଗିବା, ବନ୍ଧା ପଡିବା, ଗୋଟିଏ ଚାଉଳରେ ଗଢ଼ା, କାଠିକର ପାଠ, ମୁହଁଦେବା, ଓରିମାନା ମେଣ୍ଟେଇବା, ମୁହଁ ବଢ଼େଇବା, ପ୍ରଘଟ ନ କରିବା, ଅଙ୍ଗେ ନିଭା ଘଟଣା, ଏକାନରେ ପୂରାଇ ସେ

କାନରେ ବାହାର କରଦେବା, କିଳାପୋଡେଇ, ମୁହଁ ଆମ୍ବିଳା କରିବା, ହଳିଲା ପାଣିକୁ ଗୋଡ ନ ବେଢ଼େଇବା, ପାଟିରେ ବାଡ଼ବଡା ନ ରହିବା, ପେଟରେ ଏତେ ଗୁହ, ଭେଟଣା ହୋଇଯିବା, କଳିମଞ୍ଜି, ନାଲି ଆଖି ଦେଖେଇବା, ଗୁମର ଖୋଲିଦେବା, କାଣ୍ଡ ଘଟିବା, ରସାତଳରେ ବୁଡାଇ ଦେବା, ଭାଲୁ ହାବୁଡରୁ ମୁକୁଳିଯିବା, ଯୋଡ଼ାକୁ ଘୋଡ଼ା ସରି ନୁହେଁ, ନଈ ନ ଦେଖି ନଙ୍ଗଳା, ପାଲରେ ପଡିବା, ପେଖନା କାଢ଼ିବା, ପାଳଭୂତ ପରି ବସିବା, ତିଳକୁ ତାଳ କରିବା, ମଲା ଘୋଡ଼ାର ଟାଙ୍ଗ ମାପିବା, କୋଟିନିଧି ପାଇଯିବା, ମୁହଁ ହାଣ୍ଡିପରି ଦିଶିବା, ଡେଙ୍ଗା ମୁଣ୍ଡରେ ଠେଙ୍ଗା, ନାଟର ଗୋବର୍ଦ୍ଧନ, ହାତଛଡା କରିବା, ମାଡ ଭରଣ ପାହୁଲାଏ, ଝୋଲା ମାରିବା, ହଂସା ବୁଡିଯିବା, ପୁଅ ମୁଣ୍ଡରେ ହାତଦେଇ କହିବା, ହାତଗଣି ହୋଇଯିବା, ଦିହରେ ପଳେ ମାଉଁସ ନଥିବା, ଚିତ୍‌ପଟାଙ୍ଗ୍ ହୋଇ ପଡିବା, ମୁହଁରେ ବାଟୁଳି ନ ବାଜିବା, ମୁହଁ କଳାକନାରେ ଘୋଡାଇ ରଖିବା, ବାଳବଙ୍କା ନହେବା, ଚାରିଖୁଣ ମାଫ, ନାକ କାନ ମୋଡି ହେବା, ଆଳୁଦୋଷ, ଛାତି ପଡେଇଦେବା, ଆଖିରେ ଧୂଳି ପକେଇବା, ଆପେ ବଞ୍ଚିଲେ ବାପର ନାଁ ଇତ୍ୟାଦି ।

କବି ପରମ୍ପରାରେ "ଦିବ୍ୟ ଅଦିବ୍ୟ" ଭାଷାରେ ପଦସିଦ୍ଧି ହେବା କଥା କୁହାଯାଏ । "ଧରିତ୍ରୀର କାନ୍ଦ" ଉପନ୍ୟାସରେ ତତ୍ସମ, ତଦ୍ଭବ, ଶବ୍ଦର ବହୁଳ ବ୍ୟବହାର ଦେଖାଯାଏ । ସେ ସବୁ ସହ ଅନେକ ଗାଉଁଲି ଶବ୍ଦର ପ୍ରୟୋଗ ଫଳରେ ତାହା ବେଶ୍ ତିଳ ତଣ୍ଡୁଳିତ । ଏପରିକି ଗାଁ ଗହଳର ପୁରୁଖା ଲୋକମାନଙ୍କର କୁହାଶବ୍ଦରେ ଉପନ୍ୟାସଟି ବେଶ୍ ମନଛୁଆଁ ହୋଇ ପାରିଛି । ଯଥା-ମିଣିପି, ମରଦ, ପେଇଁ, ଅନିସା, ଗାଲୁଆ, ଏଁ, ଆଯେଁ, ତର୍କେଇ, ସୁଡୁସାଡ୍, ଜାଇଁଲ, ଯେଝା, ଖୁମାଣିଆ, ଠାଆକେ, ବନିଗଲା, ନବଜିଆ, ସବ୍ରାତଧର, ଥବଥବ, ନେଫେଡା, ଆଗତୁରା, ହଟାଦସ୍ତ, ଭୁସୁକିନା, ଧଳାପିଙ୍କା, ଟିକେନାକୁ, ସୋତକାଏ ଚା, ଲଣ୍ଡାଏ ଛେପ, ଚଟ୍‌କିନା, ଆଇବ, ଅଇଛା, ଦବକ, ନାଚୁଣିପାଦ, ପେଇଁକା, ସେଯାକେ, ଲଥିକିନା, ଠୋ ଠୋ ହସ, ହଡବଡେଇ ଗଲେ, କିରି କିରି ହସ, ଫୁଟାଣି, ବହପ, ବଇଁଶିଆଳ, ଧନାଧନ୍, ଗୋଗଛ ବାଡିଆ, ବୋରାବୋରି, ମୁହଁ ଘୁଙ୍ଗୁରେଇବା, କୋରଡ୍, ଦରଣ୍ଡା, ଗଉଁ, ବିରାଦର, ଥୋପ, ବେହେଡା, ଭୁଟୁରୁ ଭୁଟୁର ହେବା, ଖୁଓଉ ପିଓଉ, ଅଚଞ୍ଚା, ଦାଲୁଭୁସ୍, ଜାଙ୍ଗୁଲୁ ଜାଙ୍ଗୁଲୁ ରାଡି, ଥତମତ୍, ବେଧଡକ, ଘିନି ଆସିବ, ଧପାଲୁଥିଲୁ , ଖାଉନ୍ଦାଣୀ ପ୍ରଭୃତି ।

ସେହିପରି କେତେକ ଶବ୍ଦର 'ଫ' କାରାନ୍ତ ପ୍ରୟୋଗ ବେଶ୍ ହୃଦ୍ୟ ଓ ମନୋହର । ବରଂ ସେ ସବୁର ପ୍ରୟୋଗ ଚରିତ୍ରାୟନକୁ ଓ ଭାବ୍ୟଶୈଳୀକୁ ସ୍ୱଭାବିକ ଓ ସାବଲୀଳ କରିବାରେ ସହାୟକ ହୋଇଛି ଯଥା- ଚର୍ଚ୍ଚାଫର୍ଚ୍ଚା, ଚାହା ଫା, ରଜାଫଜା, ବାଘଫାଗ, ସାଇନ୍‌ସ ଫାଇନ୍‌ସ, ବିଜ୍ଞାନ ଫିଜ୍ଞାନ, ନୋବୋଲ ପ୍ରାଇଜ୍ ନା ଫୋବଲ ପ୍ରାଇଜ, ପୁଲିସ୍ ଫୁଲିସ, ଶୋଷଫୋଷ, ଜାତିଫାତି ଇତ୍ୟାଦି । ଏହା ବ୍ୟତୀତ ପଢ଼ାଇଭଡ଼ାଇ, ଥମ୍‌ଥାମ୍, ହାଉହାଉ କାଉକାଉ, ନନ୍ଦଛନ୍ଦ, ଫୋପଡା ଫୁଫୁଡି, ପିଲା କବିଲା, ଭୁସୁଭାସ, ଗୋଳାଗୁଳି ଇତ୍ୟାଦି ପ୍ରୟୋଗ ମଧ୍ୟ ବେଶ୍ ଆକର୍ଷଣୀୟ ହୋଇପାରିଛି ।

ଏହା ସହିତ କେତେକ ଗାଉଁଲି ଗାଳିର ସ୍ୱରୂପ ଆମେ ଏହି ଉପନ୍ୟାସରେ ବ୍ୟବହୃତ ହୋଇଥିବା ଦେଖିବାକୁ ପାଉ । ଅନେକ ସମୟରେ ଗାଁ ଗହଳିର ଲୋକମାନେ ଅନୁରୂପ ଅନେକ ଲୋକ ପ୍ରଚଳିତ ଗାଳି ବ୍ୟବହାର କରିଥାନ୍ତି, ଯଥା- ଅଳପେଇଷା, ହେତାଖିଆ, ଶାଳା, ହାରାମଯାଦା, କାହାଁକାର, ଗାଲୁଆ, ମିଛୁଆ, ଫିସାଦିଆ, ପାଜି, ଯୋଗଣୀଖିଆ, ବାଡିଖିଆ, ଶଳାବାହାଞ୍ଚ, ଓଲୁକାହାଁକା, ଗେନ୍ଧାଶୁଙ୍ଘା,

ମାଦୁର ଚୋ... ଶାଳା, ଏପରିକ ଷ୍ଟୁପିଡ୍, ଡ୍ୟାମଫୁଲ, ଇଡିଅଟ । ବେଇମାନ୍, ନୀଚ୍, କମିନେ, କୁତ୍ତେ ଇତ୍ୟାଦି ।

ଫକୀର ମୋହନ ତାଙ୍କର ଗଳ୍ପ ଉପନ୍ୟାସରେ ଅନେକ ଆରବିକ, ପାରିସିକ ଶବ୍ଦର ପ୍ରୟୋଗ କରିଥିବା ପରି, ଶାନ୍ତନୁ କୁମାର ସେପରି ଅନେକ ଶବ୍ଦର ସଫଳ ପ୍ରୟୋଗ ତାଙ୍କ ସୃଷ୍ଟି ମଧ୍ୟରେ କରିଅଛନ୍ତି । ତନ୍ମଧ୍ୟରୁ 'ଧରିତ୍ରୀର କାନ୍ଦ'ରେ ବ୍ୟବହୃତ ସେପରି ଶବ୍ଦ ଗୁଡ଼ିକ ହେଲା- ତଦାରଖ୍, ବେକୁବ୍, ମତଲବ୍, ପେସ୍ତାବାଦାମ୍, ଖିମ୍‌ସିମ୍, ଆଖରୋଟ୍, ବାତ୍, ଫତେ, ଫର୍ମାସ, ଇସାରା, ଜାହିର୍, ଜବାବ୍, ତୋବା, ସୁରାକ୍, ମଜଗୁଲ୍, ଖତମ୍, ଇଜ୍ଜତ୍, ଅବାକ୍, ତଲବ୍ କୈଫିୟତ, ନିକଲ୍, ହଜୁର, ଅକ୍ତିଆର, ଅଲବତ୍ ଇତ୍ୟାଦି । ଏ ଗୁଡ଼ିକର ପ୍ରୟୋଗ ଫଳରେ ସୃଷ୍ଟିର ମହତ୍ତ୍ୱ ଅଧିକ ବୃଦ୍ଧି ପାଇଛି । ଭାଷା ଏକ ଚଳନ୍ତି ନଈପରି । ଏଥିରେ କେତେ ସ୍ରୋତଧାର ମିଳିତ ହେବା ପରି, ଅନେକ ଶବ୍ଦ ମିଶି ପରେ ତାହା ଆମ୍ଭମାନଙ୍କର ଏକାନ୍ତ ଆପଣାର ହୋଇପାରିଛି ।

ଚିତ୍ରଶିଳ୍ପ କେବଳ କାବ୍ୟ କବିତାର ଏକଚାଟିଆ ଭାବବସ୍ତୁ ନୁହେଁ, ବରଂ ଔପେନ୍ୟାସିକ ଶାନ୍ତନୁ କୁମାର ତାଙ୍କ ଗଦ୍ୟ ସାହିତ୍ୟରେ ସଫଳ ଭାବରେ ଅନେକ ଚିତ୍ରକଳ୍ପ ଖଞ୍ଜିଦେଇ ଏହାକୁ ଆବେଗଧର୍ମୀ ଓ ପଦ୍ୟାତ୍ମକ କରିଅଛନ୍ତି । ଯଥାର୍ଥରେ ଚିତ୍ରକଳ୍ପର ସୃଷ୍ଟି ପରିବେଷଣ ଆଲୋଚ୍ୟ ଉପନ୍ୟାସଟିକୁ ସୁଖପାଠ୍ୟ କରିବା ସହ ଏହାର ସୌନ୍ଦର୍ଯ୍ୟ ବୃଦ୍ଧି କରିବାରେ ସହାୟକ ହୋଇପାରିଛି । ସେ ଗୁଡ଼ିକ ମଧ୍ୟରୁ କେତୋଟି ହେଲା- 'କଳା ବସନ୍ତଖିଆ ମୁହଁ ଭିତରୁ ତା (ଅର୍ଣ୍ଣିତ) ଆଖି ଯୋଡ଼ାକ ଦିଶୁଥାଏ ଅନ୍ଧାର ରାତିର, ମେଘୁଆ ଆକାଶରେ ତଥାପି ଯୋଡ଼ାଏ ତାରା ଏଠିସେଠି ଦେଖାଗଲା ଭଳି- (ପୃ-୧୪), 'ବୃହସ୍ପତିଙ୍କ କପାଳ ମଝା ମଝିରେ ଗୁଡ଼ାଏ ସିଆର ସିଆର୍‌ଗାର ଏକାଠି ଜାକିଜୁକି ହେଇ, ଗୋଛାଏ ବରଗଛ ଶିଅ ଶୂନ୍ୟରୁ ଭୂଇଁ ଆଡ଼କୁ ଲମ୍ବି ଆସିଲା ଭଳି-(୨୭), 'ରୂପା ଟଙ୍କା ଗୁଡ଼ାକ ପାଟକନା ମୁଣିଭିତରୁ, ଶୁଭୁଥିବ ନିଶ୍ଚେ ନନାଙ୍କ କାନକୁ ଦେବଦାସୀଙ୍କ ନାଚୁଣୀ ପାଦର ଘୁଙ୍ଗୁର ଭଳି- (୩୧), 'ଅନ୍ଧାରୁଆ ବଣ ରାସ୍ତା ସାଙ୍ଗେ ମିଶିମିଶି ଚାଲୁଥାନ୍ତି ଧାଡ଼ିଟିଏ ବାନ୍ଧି (ଶବର ଜାତୀୟ ଲୋକ) ତେଲୁଣି ପୋକର ଗୋଡ ଭଳି ଗୋଡଗୁଡ଼ାକ ଦିଶୁଥାଏ ଡଗ୍‌ଡଗ୍ ହୋଇ ଚାଲିବା ଯୋଗୁ, (୩୪), 'ସେ ପାଖେ ଷ୍ଟେସନକୁ ଯେଉଁ ରାସ୍ତାଟା ଯାଇଥାଏ ସେଇ ରାସ୍ତା କଡ଼େ କଡ଼େ ଗୋଟାଏ ମସ୍ତବଡ ପଡ଼ିଆ ବିଛେଇ ହେଇ ପଡ଼ିଥାଏ ଲୁଡୁପାଲି ଭଳି- (୪୪) 'ନଈ ମଝିରେ ପହଁରୁଥିବା ଏଣ୍ଡୁଲା ମାଛ ଦଳଟିଏ ଏକାବେଳକେ ହୁରୁଡ଼ିଗଲା ଭଳି ଉଭେଇଗଲା ଦଶକୋଡ଼ିଏ ଆଖି ପାଣି ତଳେ ସତେ ଯେମିତିକି-(୫୧) 'କାଳେ ଧୂଳି ଉଡ଼ିବ ବୋଲି ଆସ୍ତେ ଆସ୍ତେ ଗେଣ୍ଡାଚାଲିଲା ଭଳି ଧୀରେ ଧୀରେ ଯାଉଥିବ ସେ ବେବି ଅଷ୍ଟିନ ଖଣ୍ଡନ ଓ୍ୱେଷ୍ଟ ହଷ୍ଟେଲ ପାରିହବା ପର୍ଯ୍ୟନ୍ତ'-(୫୭), 'ବୁଧନାଥଙ୍କ ହାଡ଼ୁରା ମୁହଁ ଉପରେ ସେ ହସ ଦିଶିଲା ଯଜ୍ଞ ଆଖିକୁ ଗୋଟାଏ ବଡ଼ ଭଙ୍ଗା କୋଠାଘର ଭିତରେ ଚଳପ୍ରଚଳ ହଉଥିବା ଛାଇଟାଏ ଭଳି, ଯେଉଁ ଛାଇ ହୁଏତ ଭୂତନୁହେଁ ଅନିନ୍ଦ୍ୟ ସୁନ୍ଦରୀ ତରୁଣୀଟିଏ କି ଆଉ'-(୮୫), 'ତକିଆ ଭିତରକୁ ମୁହଁଟାକୁ ଗୁଞ୍ଜିଦେଲା ସେ, ମରୁଭୂମି ବାଲି ଭିତରକୁ ଓଟ ପକ୍ଷୀଟାଏ ମୁହଁ ଭର୍ତ୍ତି କରିଦେଇ ଶତ୍ରୁ କବଳରୁ ଆତ୍ମରକ୍ଷା କରିବାକୁ ବୃଥା ଚେଷ୍ଟା କଲାଭଳି' (୧୧୩), 'କୃଷ୍ଣ ମହାନ୍ତି ଗାଈ ଗୋଠ ଅଡ଼େଇଲା ଭଳି ଅଡେଇ ନେଇ ଚାଲିଗଲେ ଅନେକ ଛାତ୍ରଙ୍କୁ ରେଭେନ୍ସା କଲେଜ କ୍ୟାମ୍ପସରୁ'-(୧୬୨) 'ସେଇ ପ୍ରଶ୍ନରୁ ବାହାରି ପଡ଼ିଲା ଗୋଟାଏ ପରେ ଗୋଟାଏ ଉତ୍ତର କଣା ଓଳିଆରୁ ମୁଗ ଗଳିଲା ଭଳି'-(୧୭୭), 'ମାଧବଙ୍କ ମୁଣ୍ଡରେ ବୃହସ୍ପତିଙ୍କ

ଯୁଦ୍ଧ ବର୍ଣ୍ଣନା ଦିଶି ଗଲାଣି ସେତେବେଳକୁ ବୁଢ଼ୀମା କାହାଣୀର ଅସୁର ଅସୁରୁଣୀ ଗପ ବେଳର ଛବିଟାଏ ଭଳି-(୧୮୪-୮୫), 'ପଇତାଟା ମଲାସାପ ପରି ପଡ଼ିଚି ତା ଗୋଡ଼ତଳେ'-(୧୮୭), ବୁର୍ଖା ଭିତରୁ ଆମେ ଲୁଲୁଲୁଲୁ କରି ଅନେଇ ଅନେଇ ଗୋଡେଇ ଥାଉ ସେମାନଙ୍କ ପଛେ ପଛେ, ଗାଈ ପଛରେ ବାଛୁରୀ ଗୋଡାଇଲା ପ୍ରାୟେ'- (୧୮୯), 'ସୁମଦ୍ରରେ ବୁଲି ଡଙ୍ଗାଟିଏ ଯାହା ମରୁଭୂମିରେ ପଦାତିକର ଅବସ୍ଥା ତାଠୁଁ ଖରାପ'-(୧୮୯), 'ଯଦି ଗୋଟାଏ ଫୋନ୍ କଲରୁ ବାହାରି ଆସେ ହଜାର ହଜାର କଳାଟଙ୍କା, ସାପୁଆକେଳା ପେଁ କାଳି ବଜେଇ ଗାତରୁ ନାଗସାପ ମାନଙ୍କୁ କାଢ଼ି ଆଣି ପାରେ ଯେମିତି ସେମିତି'-( ୨୦୭), 'ଛାତ୍ର ଛାତ୍ରୀମାନେ ଗୋଟାଏ କତରେ ଠିଆ ହୋଇଥାନ୍ତି- ଗୋଛାଏ କାଠବେଣ୍ଡିଲ ହୋଇ ବନ୍ଧା ବନ୍ଧି ହେଲା ଭଳି ପରସ୍ପର ସାଥିରେ'-(୨୦୯), 'ଯେଉଁଠି ବସିଥାନ୍ତି ଧାଡିଟିଏ ଚଢ଼େଇ ଗୋଟିଏ ଡାଳରେ ବସିଲା ଭଳି ଦୁର୍ଗା, ସରସ୍ୱତୀ, ଲକ୍ଷ୍ମୀ ଆଉ ଦେବୀ-ପିଣ୍ଡାତଳ ପାହାଚ ବାଡ଼ରେ'-(୨୪୭), ଇତ୍ୟାଦି ।

ଆହୁରି କେତେକ ସ୍ଥଳରେ ବାକ୍ୟ ମଧ୍ୟରେ ଶବ୍ଦ ଗୁଡିକର "ବୈଚିତ୍ର୍ୟପୂର୍ଣ୍ଣ ପ୍ରୟୋଗ" ପାଠକ ମନକୁ ଆକର୍ଷିତ କରେ । ଏହି ବ୍ୟବହାର ଯେତିକି ଅଭିନବ ପୁଣି ସେତିକି ମନଛୁଆଁ । ସେଇ ପ୍ରୟୋଗ ମଧ୍ୟରେ କେତେକ ସ୍ଥାନରେ ଚିତ୍ରକଳ୍ପ ମଧ୍ୟ ପରିଲକ୍ଷିତ ହୁଏ- ଯଥା- "ବୃହସ୍ପତିଙ୍କ ଦୃଷ୍ଟି ସେତେବେଳେ କୃଷ୍ଣ ମହାନ୍ତିଙ୍କ ଆଡକୁ ଛିଟିକି ନଯାଇ ଛିଟିକି ଆସିଲା ସିଧା ଯଜ୍ଞ ଉପରକୁ' -(ପୃ-୨୮), 'କୃଷ୍ଣମହାନ୍ତିଙ୍କ ଆଖି ଅଭ୍ୟାସ ବଶତଃ ପାର୍ବତୀଙ୍କ ପାଦ ପାଖରୁ ଏଡିକି ବେଳେ ସର୍‌ସର୍ ହୋଇ ଚଢ଼ିଯାଏ ଉପରକୁ'-(୨୮), ସିଗ୍ରେଟ୍ ଡବାଟାକୁ ଚାଟୁଥାଏ ତା ଆଖି ସେତେବେଳେ ଅଇଁଠା ଥାଳିଆକୁ କୁକୁର ଚାଟିଲା ପରି'-(୧୯) 'ଯଜ୍ଞ ଏଥର ଦରାଣ୍ଡିଲା ଦେବର ଆଖି'- (୩୯), "ଗୋଲ ଗୋଲ ଚଷମା କାଚ ଭିତରୁ ଡଃ ପ୍ରସାଦଙ୍କ ସ୍ନେହଶୀଳ ଦୃଷ୍ଟି ଗାଈ ତା ଛୁଆକୁ ଦୁଧ ପିଆଇଲା ବେଳେ ବହେ ଚାଟି ପକେଇଲା ଭଳି ଚାଟି ଚାଲିଲା । ଅନେକ ବେଳ ଚୁପ୍‌ଚାପ୍ -(୧୩୯), ସେଇ ପଇତା ସର୍ବନାଶ କଲାପରି ଢଳ ଢଳ ହୋଇ ଅନେଇଥାଏ ଆମ କାନ୍ଧରୁ-(୧୮୬), 'ଚୋକାଟାର ଆଖିକୁ ସିଧା ଅନେଇଲେ ଡଃ. ମହାନ୍ତି, ତା ଆଖିରୁ ଭୟର ଦାଗ ଗୁଡାକ ପୋଛି ସଫା କରି ଦେବା ପାଇଁ ନିଜର ସସ୍ନେହ ଚାହାଣୀରେ-(୨୧୧), ଏ ସବୁ ପ୍ରୟୋଗରେ 'ଆଖିର କାର୍ଯ୍ୟ' ଉପରେ ଯେଉଁସବୁ ସୁନ୍ଦର ବୈଚିତ୍ର୍ୟପୂର୍ଣ୍ଣ ପ୍ରୟୋଗ କରାଯାଇଛି ତାହା କାହାର ହୃଦୟକୁ ବା ନ ଛୁଇଁବ, ସେହିପରି ଆହୁରି ଅନେକ ପ୍ରୟୋଗ ରହିଅଛି । ଯଥା- "ବୃହସ୍ପତିଙ୍କ ସ୍ୱର ଶୁଭୁଥାଏ କଫୁଆ କଫୁଆ-(୩୦), 'ମନ ମୋର ଖୁସିରେ ଡେଉଁଥାଏ ସାନ ପିଲାଟି ଭଳି'-(୩୦) 'ଯଜ୍ଞ ମୁଠା ମୁଠା କରି ପବନକୁ ଚୁପୁଡେ- ୩୭, 'ସାରା ପଡିଆଟା ଖୁନ୍ଦି ହୋଇ ଯାଇଥାଏ ଗୁଡାଏ ଝୋପଡିରେ'-(୪୭), 'ବଡବଡ଼ ପୋଷ୍ଟର ଗୁଡିକ ଲେସି ହୋଇଗଲା ରେଭେନ୍ସା କଲେଜର ନାଲିକୋଠାର କାନ୍ଥ ବାଡରେ-(୧୨୨), 'ଗୋରା ତକ୍ ତକ୍ ମୁହଁଟା କରିମ୍‌ର ଦିଶୁଥାଏ ପଦ୍ମଫୁଲପରି -(୧୨୭), 'କାନ୍ଦର ସୁଅ ଛୁଟେ ବି ଯଜ୍ଞ ପାଇଁ'-(୧୨୯), 'କିନ୍ତୁ ଖରା ଟାଣ ହବା ମାତ୍ରେ ପାଲଟିଯାଏ ସେ ବାଲି ଖଇଭରା ହାଣ୍ଡି ଭିତରେ ଟକ୍‌ଟକ୍ ଗରମ ବାଲି ଭଳି-(୧୩୩)', 'ମୁଣ୍ଡ ଉପରେ ଧୁ ଧୁ ଜଳୁଥାଏ ସୂର୍ଯ୍ୟ-୧୩୩, 'ପୋଟାସିୟମ୍ ସାୟାନାଇଡ୍ ହସୁଥାଏ ଟେଷ୍ଟ ଟିଉବ୍ ଭିତରୁ ଧଳା ମିଠା ହସ-(୧୪୩), ଫାଟି ପଡୁଥାଏ ସଭାଗୃହ ପୁଣି ଦଫାଏ ହାସ୍ୟରେଳରେ-(୧୫୨), 'ହେଁ ହେଁ ହେଁ ଉଛୁଳି ଉଠିଲା ପୁଣି ଥରେ ସଭାଗୃହ ସେଇ ସଂକ୍ରାମକ ହସଟାର ପ୍ରଭାବରେ-(୧୫୨),

'ଉଠୁଥାଏ ପୁଣି ଗୋଟାଏ କୁରୁଳା ହସର ଫୁଆରା'-(୧୫୨), 'ତାତି ବଢ଼ି ବଢ଼ି ଖଇ ଫୁଟିଲା ମରୁଭୂମିର ବାଲିରେ'-(୧୮୯), ମୁଣ୍ଡ ଉପରେ ନାଗଫେଣିଆ ଗଛ ଫଣାମେଲିଛି-(୧୯୦), ତେଣୁ ମୁହଁଟି ତାଙ୍କର (ମହତାବଙ୍କର) ଖୁବ୍ ପରିଚ୍ଛନ ଓ ତେଜବନ୍ତ ଦିଶେ, ନିଶଦାଢ଼ି ଭଳି ଅବାନ୍ତର ଫସଲ ଗୁଡାକୁ ପରିଚ୍ଛନ୍ନ ଭାବେ ନିତ୍ୟ ନୈମିତ୍ତିକ ଅମଳ କରାଯାଉଥିବା ଯୋଗୁ-(୧୯୨), 'ଝଙ୍କାର ପତ୍ରିକାଟି ମୁହଁ ମାଡି ପଡିଥାଏ ମେଲା ହୋଇ ସେଇ ପୃଷ୍ଠାରେ ଯେଉଁଠି ଛପା ହୋଇଥାଏ ଇନ୍ଦୁର କବିତା'-(୨୦୧), ଏ ସବୁ ବର୍ଣ୍ଣନାରେ ମନ, ପୋଷ୍ଟର, ପଡିଆ, ହସ, ପତ୍ରିକା ଇତ୍ୟାଦିର ସଚେତନପରି ଜୀବନ୍ୟାସ ଘଟିଛି । ଏହି ବୈଚିତ୍ର୍ୟପୂର୍ଣ୍ଣ ବ୍ୟବହାର ହିଁ କୃତିଟିର ସୌଷ୍ଠବ ବୃଦ୍ଧି କରିଛି । ଏଥିରେ ସନ୍ଦେହର ଅବକାଶ ନାହିଁ ।

କେତେକ ସାଧାରଣ ଲୋକ ପ୍ରଚଳିତ ସତ୍ୟ ଘଟଣାର ଉଲ୍ଲେଖ କରାଯାଇଅଛି । ଏହା ଉପନ୍ୟାସଟିକୁ ବାସ୍ତବମୁଖୀ ଓ ରସୋଜ୍ୱଳ କରିପାରିଛି । ସେପରି କେତେକ ଉକ୍ତି ହେଲା- 'ସହାନୁଭୂତି ଗାଁ ଗହଳର ଲୋକଙ୍କର ଏକ ସହଜାତ ପ୍ରବୃତ୍ତି-(ପୃ-୧୭୭), 'ମୃତ୍ୟୁ ଭୟ ମଣିଷ ମାନଙ୍କୁ ଗ୍ରୁପ୍‌ରେ ଅର୍ଥାତ୍ ଦଳରେ ପରିଣତ କରିଦିଏ-(୨୧୧), 'ଲଜ୍ଜା, ଘୃଣା ଓ ଭୟ ଏ ତିନିଟାକୁ ନଛାଡିବା ପର୍ଯ୍ୟନ୍ତ ତମେ ମାନେ ଜ୍ଞାନୀ ବା ବିଜ୍ଞାନୀ ହୋଇ ପାରିବ ନାହିଁ ଆଦୌ'-(୨୧୧), 'ଆନାଟୋମି ହଲରେ ନାରୀ ପୁରୁଷ ମେଲ ଫିମେଲ୍‌ର ମନୋଭାବକୁ ପ୍ରଥମେ ହଟାଇବାକୁ ପଡିବ ମନରୁ'-(୨୧୨) । ପୁନଶ୍ଚ କେତେକ ବିଷୟ ସଂପର୍କରେ ଔପନ୍ୟାସିକଙ୍କର ମତାମତ ହେଲା- ବିଜ୍ଞାନ ? ବିଜ୍ଞାନ ଗୋଟାଏ ଅନ୍ଧାରୀ ଘର । ଏ ଘରର ବହୁ କବାଟ, ବହୁ ଝର୍କା । ନିଉଟନ୍ ଗୋଟିଏ ଝର୍କା ଖୋଲି ଦେଇଥିଲେ- ତିନି ଶହବର୍ଷ ତଳେ'-(୧୭୦), ଆଜିର ରାଜନୀତି "ଆଜି ଏ ବିକ୍ଷୋଭ ରାଜନୀତି କରୁଛନ୍ତି ଏମାନେ, ସେ କଣ କୋଉ ନୀତିର କାମ ! ସବୁ ଦୁର୍ନୀତି ସବୁ ପାପ କାମ'( ୨୩୮), ପଲିଟିକ୍ସ : ପଏଜନ୍‌ରେ ମଣିଷ ମରିଯାଏ କିନ୍ତୁ ପଲିଟିକ୍ସରେ ଚରିତ୍ର ମରିଯାଏ । ପଲିଟିକ୍ସର ଅନ୍ୟ ନାଁ ଚରିତ୍ର ସଂହାରକ ପଏଜନ୍-(୧୨୭), 'ପଲିଟିକ୍ସ କଲେ ଲୋକେ ଖାଲି ପାଓ୍ୱାରଫୁଲ ହୁଅନ୍ତି ନାହିଁ, ଧନୀ ହୁଅନ୍ତି, ପ୍ରଗଲ୍ଭ ହୁଅନ୍ତି । ତାଙ୍କ ପାଇଁ ସବୁ ଅପହଞ୍ଚ ପହଞ୍ଚିଯାଏ ଇଚ୍ଛା କଲାମାତ୍ରେ । ସବୁ ଜଟିଳ ସରଳ ହୋଇଯାଏ । ଅସମ୍ଭବ ହେଇ କିଛି ରହେନା ଆଉ'-(୨୮୭) ମନ୍ତ୍ର- 'ମନ୍ତ୍ର ହିଁ ଶକ୍ତି । ମହାଶକ୍ତି... କିନ୍ତୁ ମନ୍ତ୍ର ପାଇଁ ଦରକାର ସାଧନା'-(୧୩୦), ଲଭ୍ : ଲଭ୍ ଗୋଟାଏ ବିଚିତ୍ର ମେଣ୍ଟାଲ ଷ୍ଟେଟ୍ ମଣିଷର'-(୧୩୩), ଏସବୁ ନିଛକ ସତ୍ୟ ଓ କେତେକ ସାମାଜିକ ଦୃଷ୍ଟିକୋଣ ସମ୍ପର୍କରେ ଲେଖକଙ୍କର ବିଚାର ଏକାନ୍ତ ଭାବରେ ସତ୍ୟ ଓ ଗ୍ରହଣୀୟ ମଧ୍ୟ ।

କେତେକ ସ୍ଥାନରେ ପୌରାଣିକ ନାମୋଲ୍ଲେଖ ଓ ଝଲକ ମାଧ୍ୟମରେ ଔପନ୍ୟାସିକ କେତେକ ପରିସ୍ଥିତିରେ ଚିତ୍ରଣ କରିଅଛନ୍ତି । ଏହାର ସଂଯୋଜନା ଔପନ୍ୟାସିକଙ୍କର ବହୁ ଶାସ୍ତ୍ର ଦର୍ଶିତା ଓ ପାଣ୍ଡିତ୍ୟ ସମ୍ପର୍କରେ ସୂଚନା ଦିଏ ଯଥା- 'ସକାଳେ ବାଳୀ ସୁଗ୍ରୀବ, ସନ୍ଧ୍ୟାରେ ରାମ ଲକ୍ଷ୍ମଣ'- ମୋ ମାଲୋ ! କି ବିଧା କି ଚାପଡା । ମୁଁ ତ ମନେ କଲି ଜୀବନରୁ ମାରିଦେବ ଭାଇଟାକୁ । ବାଳୀ ଭଳା କିଆଁ ମାରନ୍ତା ଏମିତିକିଆ ମାଡ ସୁଗ୍ରୀବକୁ ।(ପୃ-୮୦), ବୃହସ୍ପତି ବାହୁନି ଉଠିଲେ ରାମାୟଣର ଲଙ୍କାକାଣ୍ଡରେ ଲକ୍ଷ୍ମଣ ଶକ୍ତିଭେଦ ଦୃଶ୍ୟରେ ଅଚେତ ଲକ୍ଷ୍ମଣଙ୍କ ଶରୀରକୁ କୁଣ୍ଢେଇ ଧରି ରାମ ବିଳାପ କଲା ଭଳି -(୮୯), 'ସେଇଦିନଠୁଁ ବୁଲୁଚି ଦ୍ରୋଣାଚାର୍ଯ୍ୟଙ୍କ ଅଭିଶପ୍ତ ପୁତ୍ର ଅଶ୍ୱତ୍ଥାମା ପରି ଭାରତ ଗୋଟାକ ଯାକ ଭାଇନା

ମୁଁ ଅଶ୍ୱତ୍‌ଥାମା- ପାପୀ ଅଶ୍ୱତ୍‌ଥାମା ମୁଁ । ତମେ ତ ଜାଣ ଅଶ୍ୱତ୍‌ଥମା ଅଭିଶାପ ପାଇଚି ସେ ସବୁବେଳେ ଜଳୁଥିବ ପଶ୍ଚାତାପରେ'-(୯୩) । ଖାଇବ ମହାଦେବଙ୍କର ଗାଇବ ସହଦେବଙ୍କର-(୧୨୨) । କୁଣେଇ ପକେଇଲା ମୋତେ ଭୀମସେନ । ବୁଧକୁ ଭୀମସେନ ଡାକୁଥିଲେ ଲୋକମାନେ । କିନ୍ତୁ ଭୀମସେନ ନୁହେଁ । ଲକ୍ଷ୍ମଣ ସେ ।'-(୧୫୦), 'ସତେକି ଧରିତ୍ରୀ ମାତା ସମୁଦ୍ରତଳୁ ଉଠିବେ ଓ ମହାଭାରତରେ ଗଙ୍ଗାଦେବୀ ନଦୀ ଗର୍ଭରୁ ବାହାରି କୂଳରେ ଗୁହାରି କରୁଥିବା କାନ୍ଦୁରା ବୁଢ଼ା ପୁଅ ଭୀଷ୍ମଙ୍କୁ ପୁଣି କିଛି ବୁଝେଇ କହିବେ ।' -(୨୯୩), 'ବିରାଟ, ପରିବ୍ୟାପ୍ତ ଆଉ ନୀଳବର୍ଣ୍ଣ । ପୁଣି ସେ ନୀଳବର୍ଣ୍ଣକୁ କ୍ୱାଲିଫାଏ କରାଯାଇଛି-ମେଘ ବର୍ଣ୍ଣ କହି । ପୁଣି ସେ ମେଘ ଅଶୁଭ ମେଘ ନୁହେଁ- ଯେମିତି ଝଡତୋଫାନ୍ ବେଳର । ସେ ମେଘ ସୁନ୍ଦର, ଘନଶ୍ୟାମ ପୁଣି ଆନନ୍ଦ ଦାୟକ । ତେଣୁ ବିଷ୍ଣୁଙ୍କ ଶରୀର ମେଘ ବର୍ଣ୍ଣ ହେଲେବି ଶୁଭଙ୍ଗ...।' -(୨୯୫) ଏହା ବ୍ୟତୀତ କଳିଯୁଗ ଶେଷ ହେବା ପାଇଁ ମାଳିକା ବର୍ଣ୍ଣନା ଯଥା- 'ପୃଥିବୀ ପ୍ରଳୟ ବେଳକୁ, କଳିଯୁଗ ଶେଷକୁ ଭାଙ୍ଗିବ ସେ ଦିନ ଦଳେଇଘାଇ । ଯୋଉଦିନ ଭାଙ୍ଗିବ ଏ ଦଳେଇ ଘାଇ ସେଦିନ ଦେବଦହ ଗଣ୍ଡରୁ ବାହାରିବ ବଉଳା କିମ୍ଭୀର, ମୁହଁରେ ବାରହାତ ଖଣ୍ଡାଧରି । ବଉଳା ଯିବ ତାପରେ ସେ ଖଣ୍ଡା ମୁହଁରେ ଧରି ସିଧା ଶାରଳା ଠାକୁରାଣୀଙ୍କ ପାଖକୁ । ସେଇ ଖଣ୍ଡାରେ ଠାକୁରାଣୀ କରିବେ ମ୍ଳେଚ୍ଛ ସଂହାର । କଳିଯୁଗ ଶେଷ ହେବ । ଆରମ୍ଭ ହବ ସତ୍ୟଯୁଗ ।'( ୨୨୫-୨୨୬), ଆହୁରି ମଧ ଭ୍ରମର ମାରି ବୃକ୍ଷ ପ୍ରସଙ୍ଗ ଅର୍ଥାତ୍ ଚମ୍ପା ଗଛ ନିକଟକୁ ଭ୍ରମର ଆସନ୍ତି ନାହିଁ, କିନ୍ତୁ ଯେତେବେଳେ ସେ ଗଛ ଭ୍ରମର ମାରି ହୁଏ ସେତେବେଳେ ଅନେକ ଭ୍ରମର ସେଠାକୁ ଆସନ୍ତି ଓ ମରନ୍ତି ଏବଂ ସେଇ ଗଛ କାଠର ମୂଲ୍ୟ ଲକ୍ଷ ଲକ୍ଷ ଟଙ୍କା ହେବା ପ୍ରସଙ୍ଗ- (୧୪୫-୧୪୬) ଟେଷ୍ଟଟିଉବ୍ ଖୋଲି ପୁଣି ତା ଭିତରେ ଥିବା ପଟାସିୟମ୍ ସାୟାନାଇଡକୁ ବନ୍ଦ କରିଦେବା ହେତୁ 'ବୋତଲ ଅସୁରକୁ ବୋତଲ ଭିତରେ ବନ୍ଦ କରିଦେବା ପ୍ରସଙ୍ଗ-(୧୬୨), ଓଡ଼ିଆ ପ୍ରେମୀ ନବକୃଷ୍ଣ ଚୌଧୁରୀ, ଯଦିଓ ଏକ ବଙ୍ଗାଳୁଣୀ ବାହା ହୋଇଥିଲେ, ସୀମା ଆନ୍ଦୋଳନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ହୁଏତ ବରଖାସ୍ତ ହୋଇ ପାରନ୍ତି ବୋଲି କହି "ନାଗଚୁଚୁନ୍ଦ୍ରା ନ୍ୟାୟ" କଥା ଅର୍ଥାତ୍ ବିଷଧର ନାଗଟିଏ ଚୁଚୁନ୍ଦ୍ରାକୁ ଅଧା ଗିଳି ନାଁ ଗିଳି ପାରିବ ନାଁ ଛାଡି ପାରିବ, ଏପରି ପ୍ରସଙ୍ଗ ଇତ୍ୟାଦି ବିଷୟ ଉପସ୍ଥାପନ କରିବା ନିଶ୍ଚିତ ଭାବରେ ପାଣ୍ଡିତ୍ୟ ଓ ବହୁଶାସ୍ତ୍ର ଦର୍ଶିତାର ପରିଚୟ ପ୍ରଦାନ କରେ ।

ଏହା ସହିତ ସ୍ଥଳ ବିଶେଷରେ ଗାୟତ୍ରୀ ମନ୍ତ୍ର "ଓଁ, ଭୁର୍ଭୁବ ! ସ୍ୱଃ ତତ୍ ସବିତୃ ବରେଣ୍ୟଂ..." "ମହା ନୃସିଂହ ମନ୍ତ୍ର ଯଥା- ଓଁ ଉଗ୍ରବୀରଂ ମହା ବିଷ୍ଣୁଂ ଜ୍ୱଳନ୍ତଂ ସର୍ବତୋ ମୁଖଂ, ନୃସିଂହଂ ଭୀଷଣଂ ଭଦ୍ରଂ ମୃତ୍ୟୋମୃତ୍ୟୁ ନମାମ୍ୟହଂ- ୩୩ ଭାଗବତର ପ୍ରଥମ ଶ୍ଳୋକ- "ନାରାୟଣଂ ନମସ୍କୃତ୍ୟଂ ନରୋତ୍ତମଂ ନରଂଚୈବ-୧୬" ବେଦମନ୍ତ୍ର- "ମଧୁବା ତା ଋତୟତେ ମଧୁ କ୍ଷରନ୍ତି ସିନ୍ଧବଃ ମାଧ୍ୱଂର୍ନ ସନ୍ତ୍ୱୋଷ ଧୀଃ... ୨୧୭ ବିଷ୍ଣୁଙ୍କ ମନ୍ତ୍ର- ଓଁ ଶାନ୍ତାକାର ଭୁଜଗ ଶୟନଂ, ପଦ୍ମନାଭଂ ସୁରେଶ । ବିଶ୍ୱାଧାରଂ ଗଗନ ସଦୃଶଂ, ମେଘବର୍ଣ୍ଣଂ ଶୁଭାଗଂ-୨୯୪, ଧରିତ୍ରୀମାତାଙ୍କ ବନ୍ଦନା-

"ସମୁଦ୍ର ବସନେ ଦେବୀ ପର୍ବତ ସ୍ତନ ମଣ୍ଡଳେ

ବିଷ୍ଣୁ ପତ୍ନୀ ନମ ସ୍ତୁଭ୍ୟଂ ପାଦସ୍ପର୍ଶୋ କ୍ଷମସ୍ୱମେ ।''-୩୧୧

ଏସବୁ ସଂସ୍କୃତ ଶ୍ଲୋକାଂଶ ଔପନ୍ୟାସିକଙ୍କ ଭକ୍ତିମତ୍ତା, ପାଣ୍ଡିତ୍ୟ ପ୍ରକାଶ କରିବା ସହ ସୃଷ୍ଟିକୁ ଅଧିକ ଆଦରଣୀୟ କରି ଗଢ଼ି ତୋଳିଛି ।

ବର୍ଣ୍ଣନା ଚାତୁରୀ ହେତୁ ସାରସ୍ୱତ ସୃଷ୍ଟି ହୁଏ ସରସ, ସୁନ୍ଦର, ବାଙ୍ମୟ । ସେ ଦୃଷ୍ଟିରୁ ବିଭିନ୍ନ ବର୍ଣ୍ଣନା ଆଲୋଚ୍ୟ ଉପନ୍ୟାସରେ ରହିଅଛି । ଯଥା- ସମସ୍ତେ ସୁନ୍ଦରୀ ଆଉ ବୟସ ବି ପଳେଇ ନାହିଁ କାହାର । ଦେଖିବାକୁ ସମସ୍ତେ ଠାକୁରାଣୀ ଭଳି-ଗୋରା ତକ୍‌ତକ୍, ଲମ୍ବା ମୁହଁ, ଲମ୍ବା ନାକ, ଏଡ଼େ ଏଡ଼େ ଲମ୍ବା ଚଉଡା ଆଖିଟାମାନ ପ୍ରତ୍ୟେକଙ୍କର । ପ୍ରତ୍ୟେକ, ଯେଝା ନାଁକୁ ଚାହିଁ ଯେଝାର ରୂପ-୧୭ ଇନ୍ଦୁର ରୂପ ବର୍ଣ୍ଣନା- "ଲମ୍ବା ମୁହଁ , ଲମ୍ବା ନାକ । ଲମ୍ବା ଚଉଡାର ଯୋଡାଏ ବଡ଼ ବଡ଼ ଆଖି ମଝିରେ ନେଳି ନେଳି ଯୋଡାଏ ଚକ୍‌ଚକ୍ ଡୋଳା, କାନ ବି ଲମ୍ବା, ଆଉ କାନର ଫଳି ସମେତ ଦି ପଟିରେ ଟିକିଟିକି, ତାରା ଭଳି ଗୁଡାଏ ଆଲୁଅ । ପୁଣି ଧଳା, ନେଳି, ନାଲି, ସବୁଜ ରଙ୍ଗର ଆଲୁଅ-(୧୦୫) "ନନ୍ଦିନୀ- ପତଳି ଝିଅଟିଏ । ଦିହରେ ପଳେ ମାଉଁସ ନଥିଲା ଭଳି ଦିଶୁଥାଏ ହାତ ଗୋଡ ମୁହଁ । ଶାଢ଼ୀ ତଳୁ ଉଚ୍ଚ ହୋଇ ଦିଶୁଥାଏ ପେଟଟି ତାର । ମଥାରେ ସିନ୍ଦୁର ଟିପ- ଝାଳରେ ବୋହି ଆସିଥାଏ ନାକ ଉପରକୁ । ଦିଶୁଥାଏ ଦେବୀ ମୂର୍ତ୍ତି ଭଳି"-(୧୧୭), "ସାନ ସାଆନ୍ତାଣୀ । ସାକ୍ଷାତ୍ ଦେବୀ ମୂର୍ତ୍ତି ଆଜ୍ଞା । ମୁଣ୍ଡବାଳ ଲୋଟି ପଡିଚି କାନ୍ଧ ଉପରେ । ସୁନାଭଳି ଜଳୁଛି ଦିହ । ଆଉ ଝକ୍‌ଝକ୍ କରୁଚି ବି ଆଖିରୁ ମୁଣ୍ଡ ମଝିରୁ ଆଉ ଗୋଟାଏ ଆଖି । ଏଡେ ବଡ଼ ସିନ୍ଦୂର ଥୋପା । (୨୨୪) ଗେଡି ପତଳି ମାଇପିଟା ଆଲୁଅ ଝଟକୁଚି ଦି ଆଖିରୁ । ପିନ୍ଧିଥାଏ ଖଣ୍ଡେ ଆଣ୍ଠୁ ନ ଲୁଚା ସ୍କଟ୍ । ବବ୍‌କଟ୍ ବାଳ ଝୁଲୁଥାଏ । ମୁଣ୍ଡ ପଛରେ ବବୁରି ବାଳ ଭଳି । ଉଡୁଥାଏ ପବନରେ ଫୁରୁଫରୁ ।" (୨୪୦)-ଏସବୁ ନାରୀ ରୂପ ବର୍ଣ୍ଣନାରେ ସାଧାରଣ ଶବ୍ଦ ପ୍ରୟୋଗ ଓ ନିଛକ ସୌନ୍ଦର୍ଯ୍ୟ ବର୍ଣ୍ଣନା ବେଶ୍ ସ୍ୱାଭିବିକ ଓ ଜୀବନ୍ତ ହୋଇପାରିଛି ।

ପ୍ରକୃତିର ଅପରୂପ ସୁନ୍ଦର ମୂର୍ତ୍ତି ଖୁବ୍ ସଂକ୍ଷିପ୍ତ ଓ ଶାଣିତ ଭାବରେ ପ୍ରକାଶ କରିଛନ୍ତି ଔଷପନ୍ୟାସିକ । ଅଗଷ୍ଟ ମାସର ଖରା । ଆକାଶରେ ବଡ଼ ବଡ଼ ଅରାଅରା ମେଘ ଏଇ ଅଳ୍ପ ସମୟ ଭିତରେ ଭାସି ଆସି ଠୁଳ ହେଲେଣି ଏକା ଜାଗାକେ କୁଆଡୁ କେଜାଣି କେତେବେଳୁ । ବଡ଼ ବଡ଼ ଅରାଅରା ଛାଇଠାଏ ଠାଏ ଘୋଡେଇ ପକଉଚି ଏପଟ ଧାନବିଲ ଗୁଡାକୁ । ଆଷାଢ଼ ସରିଗଲାଣି କୋଉଦିନୁ । ଶ୍ରାବଣ ମାସ ଚାଲିଲାଣି ।(୫), ଦୁର୍ଗାପୁର ଗାଁର ବର୍ଣ୍ଣନା ଦେଇ ସେ ଲେଖନ୍ତି- "ଖରା ଛୁଟିରେ ଦୁର୍ଗାପୁର ଗାଁଠୁ ବଳି ଭୂସ୍ୱର୍ଗ ଆଉ ନଥାଏ । ଘର ଆଗରେ ଦେବୀ ନଈର ଗଣ୍ଡ । ବିରାଟ ହ୍ରଦ ଭଳି ନୀଳ ଜଳରାଶି । ଦକ୍ଷିଣା ପବନ ପିଟୁଥିବ ସୁ ସୁ । ଆମ୍ବ ତୋଟାରେ ପାଚିଲା ଆମ୍ବ ଝୁଲୁଥିବ ଆକାଶରେ ତାରାପରି"-(୯୪) । ଗୋଟିଏ ଗୋଟିଏ ବାକ୍ୟରେ ପ୍ରକୃତିର ରୂପ ଅନନ୍ୟ ଓ ଜୀବନ୍ତ । ଯଥା- ବାହାର ଶୀତ ଦିନର ସକାଳର ସୁନେଲି ରଙ୍ଗର ଉଷୁମ ଖରା-(୧୬୧), ଅନ୍ଧାର ଓହ୍ଲେଇ ଆସିଲାଣି ରେଭେନ୍ସା କଲେଜ କ୍ୟାମ୍ପସ୍‌କୁ-(୧୬୨) । ଚନ୍ଦ୍ରବିଧୌତ ମରୁଭୂମିର ଦୃଶ୍ୟ ପାଇଁ ଲେଖିଛନ୍ତି - ଜହ୍ନ ରାତି । ମରୁଭୂମି ବାଲି ଥଣ୍ଡା ଯେ ଅଣ୍ଡା ବରଫ ଭଳି । କିନ୍ତୁ ଦିଶୁଥାଏ ସବୁ ଆଡ଼ ଧଳା ଦୁଧ ଇଡିଗଲା ଭଳି ଚାରିଆଡେ- (୧୮୯) । ରୂପବତୀ ସମୁଦ୍ର ମଧ୍ୟ ସତେ ଯେପରି ଜୀବନ୍ୟାସ ପାଇଛି ଯଥା- "ସମୁଦ୍ର ଦିଶୁଥାଏ ହସିଲା ଭଳି । ଢ଼େଉ ଗୁଡାକରୁ ବାହାରୁ ଥାଏ ଫସ୍‌ଫୋରିସେଣ୍ଟ ଆଲୋକ- ଠିକ୍ ହସିଲା ମୁହଁର ଦାନ୍ତଭଳି । କାହିଁକି ହୁସଥାଏ କେଜାଣି ! -(୨୯୬)। ଏବର୍ଣ୍ଣନା, ଏ ହସ ସତରେ କେଡେ ଚମତ୍କାରୀ ନୁହେଁ କି ସତେ ?

ଏହିପରି ଭାବରେ 'ଧରିତ୍ରୀର କାନ୍ଦ' ଉପନ୍ୟାସଟି ଏକ **ଉଚ୍ଚକୋଟିର** କୃତି । ଏହା ଯେ କୌଣସି ପାଠକକୁ ଆନନ୍ଦଦାନ ସହ କିଛିଟା ଶିକ୍ଷା ଦାନ ମଧ କରିବ । ଲେଖନୀକୁ ଅସ୍ତ୍ର କରି ଲେଖକ ଲଢ଼େ । ସେହିପରି ଏଠାରେ ଲେଖନୀର ଚମତ୍କାରିତା ମାଧ୍ୟମରେ ସମାଜର ମଣିଷମାନଙ୍କୁ ସଚେତନ କରିବା ପାଇଁ ପ୍ରଚେଷ୍ଟା କରିଛନ୍ତି ଔପନ୍ୟାସିକ । ଏହି ଉପନ୍ୟାସଟି ଯେ ସବୁ ସମୟରେ ପାଠକୀୟ ଶ୍ରଦ୍ଧା ଲାଭ କରିବ ଏଥିରେ ସନ୍ଦେହ ନାହିଁ ।

**ସହାୟକ ଗ୍ରନ୍ଥସୂଚୀ :**

(୧) ମହାପାତ୍ର ଡକ୍ଟର ଖଗେଶ୍ୱର, "ଓଡ଼ିଆ ଉପନ୍ୟାସ ଓ ନବନୈତିକତା ବାଦ୍"- ପ୍ରସଙ୍ଗ ଶାନ୍ତନୁ ଆଚାର୍ଯ୍ୟ "ସମାଲୋଚନାର ଦିଗଦିଗନ୍ତ । ଫ୍ରେଣ୍ଡସ୍ ପବ୍ଲିସଶର୍ସ ୧୯୯୭, ପୃଷ୍ଠା-୨୨୫-୨୨୬ ।

(୨) ମହାନ୍ତି ଶ୍ରୀକୃଷ୍ଣ ଚନ୍ଦ୍ର, ଔପନ୍ୟାସିକ ଶାନ୍ତନୁ କୁମାର ଆଚାର୍ଯ୍ୟ, ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ, ସଂପାଦନା-ପଠାଣି ପଟ୍ଟନାୟକ । ଓଡ଼ିଶା ବୁକ୍‌ଷ୍ଟୋର, କଟକ, ୧୯୯୭, ପୃଷ୍ଠା-୩୧୯ ।

(୩) Kar. prof. Dr. Bauribandhu- the Novel Dharitrira Kanda, Puja special 2004 Sahayagi, Page-178

(୪) ମିଶ୍ର ଡକ୍ଟର ଇନ୍ଦୁ, ସମ୍ଭାବନାର ପଦଯାତ୍ରା ଶାନ୍ତନୁ ଆଚାର୍ଯ୍ୟଙ୍କ ଗଳ୍ପ ଦିଗନ୍ତ, କୋଣାର୍କ, ଗଳ୍ପ ବିଶେଷାଙ୍କ, ଓଡ଼ିଶା ସାହିତ୍ୟ ଏକାଡେମୀ, ୯୪ତମ ସଂଖ୍ୟା-୧୯୯୪, ପୃଷ୍ଠା-୧୬୪ ।

(୫) ଆଚାର୍ଯ୍ୟ ଶାନ୍ତନୁ କୁମାର, 'ଧରିତ୍ରୀର କାନ୍ଦ' ଚତୁରଙ୍ଗ ପ୍ରକାଶନୀ, ଭୁବନେଶ୍ୱର, ପ୍ରଥମ ପ୍ରକାଶ, ଜୁନ୍-୧୯୯୪ ।



# ନର କିନ୍ନର

**ଚନ୍ଦ୍ରଶେଖର ରଥ**

ଅବଚେତନାର ଅନ୍ଧ ରାଜ୍ୟରେ ଗୁଡ଼ାଏ ଦୁଃସ୍ୱପ୍ନ ଦେଖିଲେ ଯେମିତି କ୍ଳାନ୍ତ ଲାଗେ, ଏ ବହିଟା ପଢ଼ିଲା ପରେ ପ୍ରାୟ ସେମିତି ଲାଗିଲା । ଚରିତ୍ରଗୁଡ଼ାକ ସବୁ ଖଣ୍ଡିଆ ଦଣ୍ଡିଆ ଚରଣ ସିଂଙ୍କର ଅଙ୍ଗାର ଚିତ୍ର କିମ୍ବା ଶିମୁଳୀ ଗଛର ପଛଆଡୁ ଉଙ୍କି ଆସୁଥିବା ଫଟା ସୂର୍ଯ୍ୟଟା ପରି । ପଢ଼ିଲାବେଳେ ବରାବର ମନେ ହେଉଥାଏ ଆଉ ନ ପଢ଼ିଲେ ହୁଅନ୍ତା । କୋଇଲା ଧୂଆଁ, ସିଝା ମାଉଁସର ଫୁରୁକୁଟିଆ ଗନ୍ଧ ଯେମିତି ଶ୍ୱାସରୋଧ କରନ୍ତି – ଓଃ, ସତେ କେମିତି ଗୋଟାଏ ଆଫା ଆଫା ଲାଗେ, କିନ୍ତୁ ନଟେଇ ଯାଏ, ଦେହର ଚାରିଆଡ଼େ ଦୁଃସ୍ୱପ୍ନର ଶିଆଳୀ ଲଟା, ଗୋଟାଏ ଦୁର୍ଜ୍ଜୟ ହାବୁକାରେ ପାଠକ ଗଡ଼ି ଚାଲେ । ତାଖ ପାହାଡ଼ର ଦାଢ଼ ଉପରେ ପଛରୁ ବାଘ ହାଁ କରି ଗୋଡ଼ାଉ ଥାଏ, ଝାଳନାଳ ହୋଇ ପ୍ରାଣମୂର୍ଚ୍ଛା ଧାଇଁବା କଥା, ଗାଉଁ କିନା ବେକ ମୁଣ୍ଡାରେ ମାଡ଼ି ନ ବସିବା ପର୍ଯ୍ୟନ୍ତ ସେ ନିଦ ବି ଭାଙ୍ଗେ ନାହିଁ । ଓଃ, ''ନରକିନ୍ନର''ର ଗଳିକନ୍ଦି, ମନ ଭିତରର ଅପନ୍ତରା, ନାଳ ନର୍ଦ୍ଦମା ବାସ୍ତବିକ କି ଭୟଙ୍କର ଭାବରେ ଆସ୍ୱସ୍ତିକର ! କିନ୍ତୁ ମଝିରେ ମଝିରେ ପାଠକ ତା'ର ଅଜ୍ଞାତସାରରେ ହସି ବି ପକାଏ । ଗୋଟାଏ କ'ଣ 'ଠୋ' କିନା ଫାଟିଲାଣି ତ ଜଣେ କିଏ ପଚାରିଲାଣି –'ହୋ ! ତୁମେ କିଏ ?' ଚରିତ୍ରଗୁଡ଼ାକ ବିଭସ୍ସ ହେଲାବେଳେ ହାସ୍ୟୋଦ୍ଦୀପକ ହୋଇଛନ୍ତି ବେଳେ ବେଳେ । ଆଉ ଲେଖକଙ୍କ ଭାଷା ମଝିରେ ମଝିରେ ଏମିତି ମଜାରେ କଥାଟାକୁ ଅପ୍ରତ୍ୟାଶିତ ଭାବରେ ପ୍ରକାଶ କରିଦିଏ ଯେ, ନ ହସି ରହି ହୁଏ ନାହିଁ । କିନ୍ତୁ ଏ ହସ ସ୍ୱପ୍ନରେ ବିଲିବିଲେଇ ହସିଲା ପରି ମୁହୂର୍ତ୍ତକରେ ପୁଣି ମିଳେଇ ଯାଏ ଚାରିଆଡୁ ନିବୁଜ ହୋଇ ଘେରି ଆସେ ସେଇ ଫୁରୁକୁଟିଆ ଗନ୍ଧ, ସେଇ ନାଳ ନର୍ଦ୍ଦମାର କୋଇଲା ଧୂଆଁ ।

ଦୁଃସ୍ୱପ୍ନରେ ଛଟେଇ ପଟେଇ ହେଲାବେଳେ ଖୁବ୍ ଗହୀରରେ ମନହୁଏ, ଏ ନିଦ ଭାଙ୍ଗି ଯାଆନ୍ତା କି ପ୍ରଭୁ । ଗଳାରୁ ଅଜଗରଟା ହୁଗୁଳି ଯାଆନ୍ତା, ଦିନ ହୋଇଯାନ୍ତା । କିନ୍ତୁ ଦିନ ହୁଏ ନାହିଁ । ସାରା ଉପନ୍ୟାସଟା ଅନ୍ଧାରର ଉପନ୍ୟାସ । ସେ ମେଚକ ରାଜ୍ୟର ହିଂସ୍ର ଜନ୍ତୁଗୁଡ଼ାକ କେବଳ ଅନ୍ଧାରରେ ବିଚରଣ କରନ୍ତି । ଦିନର ଅବିମିଶ୍ର ଆଲୁଅରେ ସତେ ବା ସେମାନେ ବଞ୍ଚି ପାରିବେ ନାହିଁ । କାଠ କେବିନର ଅନ୍ଧାର, ପଛିମା ମାଇକିନା ଘରର ଅନ୍ଧାର, କବିରାଜ ପିଣ୍ଡାର ଅନ୍ଧାର ଭିତରେ, ନଜିର ମିଆଁ ଘୁଙ୍ଗୁଡ଼ି ମାରେ, ଗୋଦରୀ ବୁଢ଼ୀ ଗୋଟାଏ ଉଷୁମ ଛାଇ ପରି ବିଚରଣ କରେ, ଚରଣ ସିଂ ଆଖି ତରାଟି ହାତ ଗୋଡ଼ ମୁଠା ମୁଠା କରି ଜାବ ପକାଇ ବିଡ଼ିବିଡ଼ି ହୁଏ । ଧୋବଧାଉଳିଆ ଲୋକଟାଏ ଧୋବଣୀ ଘରକୁ ପଶିଯାଏ, କୁତିଟାଏ ନସଡ଼ ନସଡ଼ ହୋଇ ଘୁସୁରି ପଳାଏ । ଆଲୁଅ ଯାହା ବି ଆସେ ତା' ବି କିମ୍ଭୁତ କିମାକାର । ଲମ୍ବା ଲମ୍ବା ବୃଷାଳିଆ ଛାଇରେ ଗୁନ୍ଧି ହୋଇ ଛୋଟ ଡିବି ଆଲୁଅଟାଏ କିମ୍ବା ଉଞ୍ଚ ରାସ୍ତା ଉପରେ ମାଡ଼ି ଯାଉଥିବା ମଟର ଗାଡ଼ିର ଘାଉଁ ଘାଉଁ ହୋଇ ଦପ୍ କିନା ଲିଭି ଯାଉଥିବା ଆଲୁଅ,

ଚିରୁଗୁଣି ନିଆଁ ପରି କୋଇଲା ଚୂଲୀର ହଳଦିଆ ରୋଗଣା ଆଲୁଅ – ସୂର୍ଯ୍ୟଟା ସୁଦ୍ଧା ସ୍ୱଚ୍ଛ ହୋଇ ଅଖଣ୍ଡ ଅବସ୍ଥାରେ ଜନ୍ମ ହୋଇପାରେନା ଏ ରାଜ୍ୟରେ । ପଛକୁ ଯେତେବେଳେ ଜର୍ଜ ଏକଗୋଡ଼ିଆ ଗରୁଡ଼ ସାଙ୍ଗରେ ଲଢ଼େଇ କରେ ବା ତା'ପରେ ଧକ୍ ଧକ୍ ଜଳୁଥିବା ନଈ ବାଲିରେ ହୀରା ଖୋଜେ, ସେଇଟା ମଧ୍ୟ ଠିକ୍ ଦିନ ଆଲୁଅ ନୁହେଁ । ତା' ଭିତରର ନାନା ଜାତିର କ୍ଷୁଧା ଯେମିତି ବାହାରକୁ ଫାଟି ପଡୁଛି, ଜଳି ଯାଉଛି । ତା'ର ବନ୍ଦୀଶାଳର ବିଜୁଳି ଆଲୁଅ ଗୋଟାଏ ହାଉ ହାଉ କୋଳାହଳ । ଏ ସମସ୍ତ ଅନ୍ଧାର କିନ୍ତୁ ଅତି ସ୍ୱାଭାବିକ ଭାବରେ ଉପଜୀବ୍ୟ ହୁଏ ସେ ଚରିତ୍ର ଏବଂ ଘଟଣାଗୁଡ଼ିକର । ସେମାନେ ଯାକୁ ଖାଇ ବଞ୍ଚନ୍ତି, ଯେମିତି ଦଳେ ରିକ୍ସାବାଲା ଗୋଟାଏ ବୁଢ଼ାମିଆଁ ଆଉ ଗୋଟିଏ ବାୟା, ଗୋଦରୀ ବୁଢ଼ୀଟାକୁ ଖାଇ ବଞ୍ଚିଛନ୍ତି । 'ଜାରଜାତକା' ଟାକୁ ମେଡ଼ିକାଲ ନାଳରେ ଫୋପାଡ଼ିଲା ବେଳେ, ମଲା ମାଇକିନାର ଚମ ମଚ୍ଚି ତାକୁ ଭିଆଁଇଲା ବେଳେ ବା ଧୋବଣୀ ଘରକୁ ଧୋବଧାଉଳିଆ ପଶିଲା ବେଳେ, ଆକାଶରେ ଆଲୁଅ ଟିପି ଦେଲେ ଖେଳ ଭଣ୍ଡୁର ହେଇଯିବ । ଆଖିଟାମାନ କୁମ୍ଭାଟୁଆ ପରି କରି, ସେଇ ପେଚା ଆଖିଆ ପରି – ପାଠକ ଯାହା ସେ ଅନ୍ଧାରରେ ନିରେଖି ନିରେଖି ଏ ମଣିଷ ଭୂତଗୁଡ଼ାକୁ ଲକ୍ଷ୍ୟ କରୁଥିଲା, ସବୁ ଧାଁ ଧାଁ ଧରିଯିବ । ମାକ୍‌ବେଥ୍‌ରେ ଯେମିତି ଆମୂଳଚୂଳ ଖାଲି ଅନ୍ଧାର – ଅନ୍ଧାର ନ ହେଲେ, ମଣିଷ ମନର ପିଶାଚ ପିଶାଚୁଣୀ ଯେମିତି ଆଉ ଖୋଲାଖୋଲି କେଳି କରିପାରିବେ ନାହିଁ, 'ଲା ମିଜରବ୍‌ଲା'ରେ ଯେମିତି ଅନ୍ଧାରରେ ହିଁ ଛପି ଛପି ମଣିଷ ସନ୍ତୁଳୀ ହୁଏ ସନ୍ତାପରେ, ସ୍ନେହରେ, ଏପରି କି ପ୍ରେମରେ – ନର କିନ୍ନରରେ ସେମିତି ଆଲୁଅଟା ଗୋଟାଏ ଅବାନ୍ତର ପ୍ରଶ୍ନ । ତା'ର ପ୍ରୟୋଜନ ନାହିଁ, ଏଣୁ ସମୀଚୀନତା ମଧ୍ୟ ନାହିଁ !

ଆଉ ନାରୀ ? ସେଗୁଡ଼ିକର ତ ତୁଳନା ନାହିଁ ! ଗୋଟାଏ ହୁଡ଼ା ହୁଡ଼ା ଦର୍ପଣରେ ନାରୀର ବିମ୍ବ ଦୋହଲୁଛି ଯେମିତି । କେତେବେଳେ ଗୋଡ଼ଟାଏ ଗୋଦର ତ କେତେବେଳେ ଜଙ୍ଘଗୁଡ଼ାକ ତାଳ ଗଛ ପରି, ପୁଣି ମୁଣ୍ଡଟା ଚଢ଼େଇ ମୁଣ୍ଡ ପରି ଗୁଆ ଗୋଟାଳିଟିଏ ! କୋଢ଼ୀ, ଖାଙ୍କର କେଶୀ, ବିରୂପା ଅନ୍ଧୁଣୀ ନାରୀ ଗୁଡ଼ିଏ । ଇବ୍‌ସେନ୍ ବା ବାର୍ନାଡ଼୍‌ଶ ନାରୀକୁ ଗିଳନ୍ତା ଅଜଗର ରୂପରେ ହୁଏ ତ ଦେଖିଛନ୍ତି, କିନ୍ତୁ ବାହ୍ୟ ରୂପରେ ତା'ର ଏମିତି ବିକୃତି ବୋଧହୁଏ ସହିପାରି ନାହାନ୍ତି । ଆଚାର୍ଯେ ମଣିଷର ପଙ୍କ ମଚ୍ଚି ଯେଉଁ ଆଇଁସିଆ, କାଦୁଆ, ସିଣ୍ଡିସିଣିଆ ମାଇକିନିଆଙ୍କୁ ପାଇଛନ୍ତି, ଦେଇଛନ୍ତି ସେମାନଙ୍କୁ ପାହାରେ ଲେଖା ତାଙ୍କ କଲମର ମୁଦ୍‌ଗରିଆ ଅଂଶଟାରେ ଫଳତଃ ସେଗୁଡ଼ିକ ସମସ୍ତେ ବିକଳାଙ୍ଗୀ । ଗୋଦରୀ ବୁଢ଼ୀଠଉଁ, ମିସ୍ ଆଡ଼ାମ୍‌ସ୍ ପର୍ଯ୍ୟନ୍ତ - ଆହା ! ଗୋଟିଏ ଚିତ୍ର ତାରାକାର ଗ୍ୟାଲେରୀ କି ଆଉ ! ଠାଏ ଦି'ଠା' କ'ଣ ଟିକିଏ ସ୍ପୃହଣୀୟ ହେଇ ଯାଇଛି କିନ୍ତୁ ସ୍ଥୁଳତା ଅବ୍ୟାହତ ରଖି ଧୋବଣୀ ବୋହୂ କାଠପଟାରେ ଲୁଗା ପିଟିଲା ବେଳେ ତା'ର ହୁଡ଼ା ହୁଡ଼ା ମାଉଁସର ସ୍ୱିଙ୍ଗ୍ । ମାତ୍ର ତା'ର 'ସବୁର୍ କର' ଚାହାଁଣୀରେ ଯାଏ ସବୁ ଭାସି । କଲେଜ ଝିଅଟିଏ 'ଜର୍ଜ'ର ରିକ୍‌ସାରେ ଚଢ଼ିଛି ଅଚାନକ ଭାବରେ । ଓଃ ! ପାଠକ ଭାବେ କିଛି ଗୋଟାଏ ଏଇଠି ଅବାଗିଆ ବେଖାପିଆ ହେଇଯିବ ନା କ'ଣ ! କିନ୍ତୁ କାହିଁ ? – ସେ ଟୋକା ପିଠି କରି ଦେଇଛି ନାରୀର ଏ ସ୍ୱାଭାବିକ ରୂପକୁ ! ଗୋଦରୀ – ପାଳିତ, ଧୋବଣୀ– ବିମୋହିତ ଟୋକା କ'ଣ ସହଜେ ସ୍ୱାଭାବିକ ଆକାର – ଆୟତନ ଗ୍ରହଣ କରି ପାରିବ । ଚିରା ଗେଞ୍ଜି ଫାଙ୍କରେ ଝାଳ ସରସର ପିଠିର ଲୋମ କୂପରେ ସେ ପିଉଥାଏ ଗୋଟାଏ ଶିହରଣ ! ପରିଶେଷରେ କଚ୍ କିନା ଗୋଟାଏ ପିନ୍ ଫୋଡ଼ି ହୋଇଗଲା କଞ୍ଚା ମାଉଁସରେ । ତା'ର ମନସ୍ତାତ୍ତ୍ୱିକ ତାତ୍ପର୍ଯ୍ୟ

ଯାହାହେଉ, ଏଠି ଦ୍ୱିତୀୟ ନାରୀଟିର ଇତି । ଏ ନାରୀଗୁଡ଼ିକ କିନ୍ତୁ ମଣିଷର ତଳୁଆ ମନର ନାରୀ । ବୋଧହୁଏ ସେଇ 'ପୋକ ମଣିଷ', 'ଘୁସୁରୀ ମଣିଷ'ର ନାରୀ ଏମାନେ, ଅବଚେତନାର ଜାନ୍ତବ ନାରୀଭାବ କେବଳ ! ଧୂଆଁର ରୂପ ପରି କେତେବେଳେ କେଉଁ ରୂପ ଦେଖା ଦେଉଛି । ହୁଡ଼ା, ହୁଡ଼ା ଦର୍ପଣର ଏ କାନ୍ଥରୁ ସେ କାନ୍ଥକୁ ଦୋହଲି ଯାଉଛି ନାରୀ ରୂପ । ଗୋଟାଏ ଛେଉଣ୍ଡ ଜାରଜ ପିଲାପାଇଁ ନାରୀକୁ ମା' ଭଉଣୀ ରୂପରେ ଦେଖିବାର ସୁଯୋଗ ଯୁଟି ନାହିଁ ! ବୁଢ଼ା ମରିବା ପରେ ନାରୀ ସହିତ ତା'ର ଯେଉଁ ପ୍ରଥମ ମଧୁର ମିଳନ ହେଇଛି ତାହାହିଁ ଯଥେଷ୍ଟ ସୂଚନା ଦିଏ କିପରି ନାରୀରତ୍ନ ସବୁ ଆହୁରି ଗଚ୍ଛିତ ଅଛନ୍ତି ଉପନ୍ୟାସର ଅମାରରେ । ଏଣେ ପୁଣି ଅପୋଗଣ୍ଡ ଛାଡ଼ି କୈଶୋର, ତାରୁଣ୍ୟ ତା' ପରେ ଯୌବନ ତା'ର ଅପ୍ରତିହତ ଗତିରେ ତା' ଛାତି ଭିତରେ କେମିତି ଗୋଟାଏ ରାସାୟନିକ ପ୍ରକ୍ରିୟା ସୃଷ୍ଟି କରି ଚାଲୁଛନ୍ତି । ସେ ମଧ ବାଧ ହୋଇପଡ଼ି ଚାଲିଛି ଗୋଟାଏ ନା ଗୋଟାଏ ରାକ୍ଷାସୁଣୀ, ସର୍ବଗ୍ରାସୀନୀ, ମାଇକିନିଆ ଖାପଚରେ । ହରି ମିସ୍ତ୍ରୀର କଳା ରବରରେ ପବନ ଦିଆ ମାଇକିନିଆ, ଚରଣ ରାଓ୍ୱର ଅଙ୍ଗାର ଗାର ଭିତରେ କୁହାଟୁଥିବା ଲଙ୍ଗଳା ମାଇକିନିଆ, ଏଣେ ପାଉଁରୁଟିବାଲି ମେଦ ଚାପରେ ମେଦିନୀ କମ୍ପାଉଥିବା ପଞ୍ଜାବିଣୀ ଏ ଗୁଡ଼ା ସବୁ ଏକ ଶ୍ରେଣୀର । କ୍ରମବର୍ଦ୍ଧିଷ୍ଣୁ ଜର୍ଜର ପୌରୁଷ ଉପରେ ଏ ସମସ୍ତଙ୍କର ଏକ ପ୍ରକାର ପ୍ରଭାବ । ପରିଶେଷରେ ଯେତେବେଳେ 'ମା' କାଳୀ' ଆବିର୍ଭୁତା ହୁଅନ୍ତି ଏବଂ ଜର୍ଜର ନାକ ଖଣ୍ଡକ ଚୋବେଇ ଖାଇବାକୁ ସିର୍‌ସିରେଇ ଉଠନ୍ତି, ଗୋଟିଏ ଶୋଷଣରେ ଜର୍ଜ ସମେତ ତାଙ୍କ ଉଦରରେ ଜୀର୍ଣ୍ଣ ହୋଇଯାଏ । କଂସେଇ କୁବେରର କନ୍ୟା ଅଭିଜାତ ପୁରୁଷ ଉପରେ ତା'ର ପ୍ରତିଶୋଧ ନେଇ ଶୋଇଯାଏ । ମୋଟ ଉପରେ ସ୍ୱାଭାବିକ ଚିରାଚରିତ ରୋମାଣ୍ଟିକ୍ ପରମ୍ପରା ଉପରୁ ଏ ନାରୀଗୁଡ଼ିକୁ ଚାହିଁଲେ ଅଇ ଉଠିବ । ମନେହେବ ଏ ପିଶାଚୁଣୀ ପଞ୍ଝା କେବଳ ମଣିଷର ମାଉଁସ ରକ୍ତ ପାରଣା ପାଇଁ ପାଟି ମେଲେଇ ହାଇଁ ପାଇଁ ହୋଇ ଧାଇଁଛନ୍ତି । ଯେଉଁ ପୁରୁଷ ନିଜ ବାନ୍ତି ଉପରେ ଲଟେଇ ହୋଇ ଗଡ଼ିବାକୁ ସୁଖପାଏ, ନିଜ ଝାଳ ଶୁଙ୍ଘିଲେ ବିଭୋର ହୁଏ; ଦେହରୁ ବାମ୍ଫ ବାହାରିଲା ବେଳେ ସୁକୁଟା ମାଉଁସକୁ ଆଖିବୁଜି ରେକେଟେ, ସେଇ କେବଳ ଖାଇଯାଏ ଏ ମାଇପିଗୁଡ଼ାକୁ । ବୀର ସାମଲ ସିନା ଗୋଦରୀ ବୁଢ଼ୀଟାକୁ ଖାଇଲା ବୋଲି ବୁଢ଼ୀ ଆକ୍ଷେପ କରେ, କିନ୍ତୁ ନଜିର ମିଆଁ ଠିକ୍ କହନ୍ତା କିଏ କାହାକୁ ଖାଇଗଲା ! ସେ ଯାହାହେଉ ଏ ଝାଳଶୁଙ୍ଘା ମଣିଷ ଆଉ କେହି ନୁହେଁ । ଗୋଟାଏ ଗୋଟାଏ ମୁହୂର୍ତ୍ତରେ ଆମେ ସମସ୍ତେ ଝାଳଶୁଙ୍ଘା ! ଏଇ ବାଷ୍ପବିଷାକ୍ତ ମୁହୂର୍ତ୍ତଟାହିଁ ନର କିନ୍ନରରେ ପ୍ରସାରିତ ହୋଇ କାଳର ରୂପ ନେଇଛି । ଏହି ମୁହୂର୍ତ୍ତର ପ୍ରଭାବରୁ ହିଁ ଉପନ୍ୟାସର ନାରୀ ସବୁ ବିକଳାଙ୍ଗୀ ! ସେଇ ବିକଳାଙ୍ଗ ମୁହୂର୍ତ୍ତର ରୂପାୟନ ଓ ଅବଲମ୍ବ !

ଚାରିତ୍ରିକ ରହସ୍ୟ ରହିଛି ପ୍ରକୃତରେ ପୁରୁଷଗୁଡ଼ାକ ଭିତରେ । ନଜିର ମିଆଁଟା ବାସ୍ତବିକ୍ ସର୍ଦାର ଲାଖି ଲୋକଟାଏ । ବେଶ୍ ଗମ୍ଭୀର, ତା' ହିସାବରେ ବେଶ୍ ଜ୍ଞାନୀ ବେଶ୍ ମୁରବୀପଣିଆରେ ପାକଳ ଲୋକଟାଏ । ନିଶକୁ ପକେଇ ଅଳ୍ପ କହେ, କିନ୍ତୁ କହେ ଖୁବ୍ । ଅସହାୟ ରୁଗ୍ଣ ଅବସ୍ଥାରେ ଗୋଦରୀ ବୁଢ଼ୀର ଆଶ୍ରୟରେ ନଜିର ମିଆଁ ବଞ୍ଚିଛି, ଏବଂ କୃତଜ୍ଞତା ଦେଖାଇ ବୁଢ଼ୀକୁ ଆପଣେଇ ନେଇଛି । ତାର ହକ୍ ସେ କେବେ ସାବ୍ୟସ୍ତ କରିବାକୁ ଚେଷ୍ଟା କରି ନାହିଁ । ତା ' ଯେମିତି ଆଉ ଅନେକ ସତ୍ୟ ପରି ଗୋଟାଏ ସ୍ୱତଃସିଦ୍ଧ ଜିନିଷ । ସେ ବେପରୁଆ ତା' ହକ୍‌ଟାକୁ ଢ଼ିଲା କୋଟ୍ ପିନ୍ଧିଲା ପରି କାନ୍ଧରେ ଗଳେଇ ବସିଥାଏ । ଅନ୍ୟମାନଙ୍କଠୁ ସେ ଅଲଗା । ସତେ କି ଏଥିରେ ଟିକିଏ ଆଭିଜାତ୍ୟର ଇଙ୍ଗିତ ମିଳିଥାଏ,

ଯେଉଁଟା ବୀର ସାମଲ ସହିପାରେ ନାହିଁ କି ଜର୍ଜ ସହିପାରେ ନାହିଁ । 'ବୀରା'କୁ ପୁଅ ପରି ପାଳି ଆଣି ବୁଢ଼ୀ କିନ୍ତୁ ପୁଅ ପାଇନାହିଁ, ପାଇଛି ଆଉ ଗୋଟିଏ ପୁରୁଷ - ଗୋଟାଏ ଷଣ୍ଢଆ, ହୁଙ୍କାପିଟା ପୁରୁଷ ! ନିରୁତା କ୍ଷୀର ପରି ବୁଢ଼ୀର ବାତ୍ସଲ୍ୟ ଯାହା ଜର୍ଜ ଉପରେ ଅଜାଡ଼ି ହେବାର ଆମେ ଦେଖୁ, ହଠାତ୍ କେତେବେଳେ ଦହି ଛିଣ୍ଡି ଡ଼ାଉଁ ଆମ୍ବିଳିଆ ଧରି ଗଲାଣି । ସତେକି ନାରୀ ପୁରୁଷର କେବଳ ଗୋଟିଏ ମାତ୍ର ସମ୍ପର୍କ। ବାକି ସବୁ କାଠିମରା, ଧରି ଧରି ସୃଷ୍ଟି କରିଥିବା ସାମାଜିକ ପ୍ରବର୍ତ୍ତାଣ ! ... ''ଆବେ ମା' କ'ଣ ? ମାଇକିନିଆ ତ ମାଇକିନିଆ, ମା' ଫେର୍ କ'ଣ ବେ, ଓ କାହିଁକି ?'' ମନେ ମନେ ଆଚାର୍ଯେ ଏମିତି ଚିହିଁକି ଉଠିଥିବେ ପରା ! – ବୁଢ଼ୀର ସିଝା ମାଉଁସକୁ ଘେରି ରହିଥିବା ସବୁଗୁଡ଼ିକ ଆଇଁଷଖିଆ ଅଣ୍ଡିରା । ପୁରୁଷର ଏହି ବିଶିଷ୍ଟ ରୂପ ଅତି ନିର୍ଭୁଲ ଭାବରେ ଦେଖା ଦେଇଛି ଏ ସମସ୍ତ ଚରିତ୍ରରେ ଉଣା ଅଧିକ ରୂପ ନେଇ । ଜର୍ଜ ମାଧମରେ ଏଇ ଦୃଷ୍ଟି ଭଙ୍ଗୀଟିର କ୍ରମବିକାଶ ହିଁ ପ୍ରକାଶ ପାଇଛି ।

ମାତ୍ର ନାରୀଟାକୁ ମା' ବୋଲି ଅନ୍ତତଃ ସ୍ୱୀକାର ନ କଲେ ପୁରୁଷ ସମ୍ଭବି ପାରିବ ନାହିଁ । ନାରୀ ମଧ ଗୋଟାଏ ଶୂନ୍ୟ ଭିତରେ ଝୁଲି ରହିଯିବ ଗୋଟାଏ ଅସଂପୂର୍ଣ୍ଣ କବନ୍ଧ ପରି । ଗୋଦରୀଟାକୁ କେହି କେବେ ମା' ବୋଲି ଡାକି ଦେଇନାହିଁ, କି ଜାରଜାତକା ଜର୍ଜ ତା ' ଜୀବନର ଅନ୍ଧାରକୁ ମନ୍ଥି ତାକୁ ସମଝିଲା ବେଳେ କେଉଁଠି ହେଲେ ଖୋଜି ପାଇନି ମା'ର ଟିକିଏ ହେଲେ କୋଡ଼ ଉଷୁମ । ମେଣ୍ଢା ଛୁଆଟାକୁ ବୁଢ଼ୀ ତା' ତରଫରୁ କାନିରେ ଗୁଡ଼େଇ ବୁକୁ ପାଖରେ ଦୋଳେଇଚି । ତା'ର କଅଁଳିଆ କାନ ଯୋଡ଼ାକୁ ଦାନ୍ତେଇଚି, ନାକ ଅଗରୁ ଥୋପି ପଡୁଥିବା ଲୁହକୁ ତାଳୁ ଉପରେ ଘସି ତାକୁ ଛଳ ଛଳ ଆଖିରେ ଶୁଙ୍ଘିଚି । କିନ୍ତୁ କେହି ତାକୁ ମା' ବୋଲି ଡାକି ଦେଇନାହିଁ । ଡାକିଥିଲେ ସେ ହୁଏ ତ ଉଦ୍ଧରି ଯାଇଥାନ୍ତା । ଜର୍ଜଠେଇ ତା'ର ବହୁ ଆଶା । ତଥାପି ଜର୍ଜ କିଛି ବୁଝିବା ଆଗରୁ ତା'ର ନିଶ ଗଜେଇ ଆସିଛି, ତେଣିକି ସିଂହ ବାଘ ପରି ହାଉଁ ହାଉଁ ଗୁଡ଼ାଏ ମାଉଁସ ଖାଇବା ବେଳ । ମା'କୁ ବୁଝିବା ବୟସ ଆଉ ନାହିଁ । ଏଇ ପୀଡ଼ି ବଦଳି ବେଳେ ଜର୍ଜକୁ ଜରର ପ୍ରଳାପ ଭିତରେ ଦିଶିଛି ଗୋଟାଏ ଦୁଧ ପିଠଉ ପରି ହାତ ! ଆକାଶର ସବୁଠୁ ଗହୀରିଆ ନେଳି ଭିତରୁ ସେଇଟା ନଇଁ ଆସିଛି । ଆଉ ତା' ମସ୍ତିସ୍କ ଉପରେ ଆଞ୍ଜୁଡ଼ି ଯାଇଛି ପାଞ୍ଚଟା କ୍ଷୀରର ଗାର ! ମୁହଁ ଉପରେ ସାଉଁଳି ଦେଇଛି ପାଣି ପଟିର ଶୀତଳ ହାତ । ଗୁଡ଼ାଏ ବତୀ ଖୁଣ୍ଟ, ଯାହାକୁ ସେ ଗଣିପାରୁ ନ ଥିଲା ହଠାତ୍ ଗୋଟିଏ ମୁହୂର୍ତ୍ତରେ ସବ୍କିନା ଏକ ହୋଇଯାଇଛନ୍ତି ସେଇ ଗୋଟାଏ ପଛରେ ଲୁଚି ଯାଇଛନ୍ତି ଅଗଣତି ବତୀ ଖୁଣ୍ଟ ! ସେ ସେଇ ମୁହୂର୍ତ୍ତରେ ବିସ୍ମୟରେ ଡାକି ଦେଇଛି ମା ' ! ଜର୍ଜର ଏଇଟା ଗୋଟାଏ ଆବିଷ୍କାର ଯେଉଁଟା ଅନିବାର୍ଯ୍ୟ, କିନ୍ତୁ ଯେଉଁଟାକୁ ପୁଣି ଆଉ ଅଧିକ କରି କହିବାକୁ ବେଳ ବି ନାହିଁ । କିନ୍ତୁ ବୁଢ଼ୀ ପାଇଁ ଏଇଟା ତା' ଜୀବନର ଶେଷ କଥା । ବୁଢ଼ୀର ଡୋଳା ଚକା ଧରି ଯାଇଛି, ସେ ମରି ଯାଇଛି ବସନ୍ତରେ । ଜର୍ଜର ମୁହଁରେ ମଧ ବସନ୍ତର ଖୋଇ । କିନ୍ତୁ ଝଡ଼ରେ କାବତାଟିଏ ପରି ତା ' ମନରେ ସାରା ଜୀବନ ପାଇଁ ଏ ଆବିଷ୍କାର ଡେଣା ମେଲିଛି । ଅବଶ୍ୟ ତାକୁ ଦେଖିବାକୁହେଲେ ଖୁବ୍ ନିରେଖିବାକୁ ହୁଏ । ନାରୀ ପୁରୁଷର ସମ୍ପର୍କରେ ଆଚାର୍ଯେ ଖୁବ୍ ଦେଖେଇଛନ୍ତି ନାରୀ କେମିତି ଗିଳେ ବା ଗିଳାଏ ତା' ପୁରୁଷଟାକୁ । କିନ୍ତୁ ଏଇଠି ମୋଡ଼ ଭାଙ୍ଗିଲା ବେଳେ ତା'ର ମା' ରୂପଟାକୁ ସେ ଅସ୍ୱୀକାର କରିପାରି ନାହାନ୍ତି । ଯା' ପରେ କିନ୍ତୁ ଟୋକା ବୟସର ଅବୋଧ ପୀଡ଼ ଉପରେ ଅନ୍ଧାରରେ ଛପି ଛପି ବଢ଼ି ଉଠିଛି ଛାଇ ପରି ଗୋଟାଏ ପୁରୁଷର ଭୂତ ନାନା ଅଭିଜ୍ଞତା ଓ ପରିସ୍ଥିତି ଭିତର ଦେଇ ।

ଏହି ପରିସ୍ଥିତି ଓ ସାଇଁ ସାଇଁ ଛାୟାବାଜି ପରି, ସ୍ୱପ୍ନର କୁହୁଡ଼ି ପରି ଧାଇଁ ଚାଲିଥିବା ଅବସ୍ଥା ଚକ୍ରହିଁ ଉପନ୍ୟାସର ଅଦ୍ଭୁତ ରୂପ କଳ୍ପକୁ ଜନ୍ମ ଦେଇଛି, ଆଉ ସୃଷ୍ଟି କରିଛି ସଣ୍ଢୁଆସି ପରି ପାଠକକୁ ଜାବୁଡ଼ି ଧରିବା ଶକ୍ତିଟାକୁ । ଧରାଯାଉ ବୁଢ଼ାର ହିକ୍କା ଉଠିବା ସମୟର ଚିତ୍ର । ଅନ୍ଧାରରେ ସିଂହିକା ଅସୁରୁଣୀ ପରି ଭୁଜ ମେଲେଇ ଆଖି ତରାଟି ଠିଆ ହେଇଚି ଗୋଟାଏ ନାରୀ, ଆଉ ଭୟରେ ଜଡ଼ ସଡ଼ ଗୋଟାଏ ଅବୋଧ ଟୋକା । ପୁଣି ସେଇ ଅନ୍ଧାରରେ ରେଳ ଲାଇନ୍ ଉପରେ ପିଶାଚୁଣୀ ବୁଢ଼ୀ, ନଜିର ମିଆଁ ରେଳ କୋଇଲା । କାଠ କେବିନ୍‌ରେ ଗୋଦରୀ ବୁଢ଼ୀର ବିଶାଳ ଛାଇ । ଗୋଟିଏ ଗୋଟିଏ ବ୍ୟକ୍ତିକୁ କେନ୍ଦ୍ରରେ ରଖି ଏହିପରି ଅନେକ ଚିତ୍ର ରହିଛି । କିନ୍ତୁ ତାଙ୍କର ପ୍ରିୟ ଜନତାକୁ ଚିତ୍ର କଲାବେଳେ ଆଚାର୍ଯ୍ୟଙ୍କ କଲମରେ ଆଉ ବାଟୁଳି ବାଜେ ନାହିଁ । 'ମେଓ୍ୱା'ଟା ବେଶ୍ ଚମତ୍କାର ଶବ୍ଦଟାଏ ! କହିଲେ ପାଟିର ଦୈର୍ଘ୍ୟ ପ୍ରସ୍ଥ ସବୁ ପୂରି ଉଛୁଳି ଯାଏ । ଗୋଟାଏ ଯାଦୁ ଶବ୍ଦ ପରି ତାକୁ ଥରେ ଉଚ୍ଚାରଣ କରିବା ଫଳରେ ପଦ୍ମତୋଳା ଶୁଣି ନାଗଫେଣୀ ଟୋକିଲା ପରି ଉଠିଲା କ୍ଷୁଧାର୍ତ୍ତ ଜନତା କୁହାଟ ମାରେ । କୁଷ୍ଠ ରୋଗିଆ, ମିମିଆଁ ଧୋକଡ଼ା ଲୋକଗୁଡ଼ାକ । କଳଙ୍କି ଲଗା ଲୁହା ପାତିଆ ଓ ବେଦରକାରୀ ଲୁହା ଜଙ୍କର କୁଢ଼ ପରି ଏ ପୋକ **ମଣିଷର** ମନ୍ଦା ! କିନ୍ତୁ ସେଥିରେ ମାରାତ୍ମକ କ୍ଷୁଧାର ଦାଢ଼ବି ଲୁଚି ରହିଛି । ଯଦି ଘେରିଯିବ ତେବେ **ଅଳ୍ପ**ଲୁହାଣ କରିଦେବ ମେଓ୍ୱାବାଲା ଓ ତା'ର ପ୍ଲାଷ୍ଟିକ୍ ମେଓ୍ୱା ପେଣ୍ଟାକୁ !

ଗୋଷ୍ଠି ଜୀବନର ଏ ହେଲା ପ୍ରଥମ ରୂପ ! ଗାଉଁଲି ଅସହାୟ ମାଇପି ମରଦ ପିଲାଙ୍କର ଯେଉଁଠି ପଟୁଆର ଆସି ବୀର ହନୁମାନଙ୍କ ଗଛମୂଳେ ଟଙ୍କା କୁଢ଼ାନ୍ତି ସେ ଆଉ ଗୋଟିଏ ଅଦ୍ଭୁତ ରୂପ । ଏ ଉଭୟ ଆଉଠାଏ, ଆହୁରି ଅଧିକ ଗୁରୁତ୍ୱ ଓ ତାତ୍ପର୍ଯ୍ୟ ନେଇ ଆସିଛନ୍ତି ! ଦେଢ଼ ହଜାର ପାହାଚକୁ ଗୋଟାଏ ଗୋଡ଼ରେ ଆୟତ୍ତ କରୁଥିବା 'ଗରୁଡ଼ ଭଗବାନ'କୁ ଘେରି ଉନ୍ମତ୍ତ ଭକ୍ତଙ୍କର ଜୟ ଜୟକାର ଏବଂ ପର ମୁହୂର୍ତ୍ତରେ ଯେତେବେଳେ ଜର୍ଜ ତା'ର ପ୍ରାଣମୂର୍ଚ୍ଛା ପ୍ରୟାସରେ ଗରୁଡ଼କୁ ବୁଲେଇ ପିଟିଛି ଓ ସେ ତଳେ ପଡ଼ିଯାଇଛି, ସେଇ ଉନ୍ମତ୍ତ ଜନତା ଆହୁରି ଉନ୍ମତ୍ତ ହୋଇ 'ପର୍ଶୁରାମ ଅବତାର'ଙ୍କର ଗଗନ କମ୍ପା ସଂକୀର୍ତ୍ତନ ଆରମ୍ଭ କରି ଦେଇଛି । ପରିଶେଷରେ ସେଇ ଅନ୍ଧୁଣୀ କୋଡ଼ି ଥିବା ପଟୁଆରରେ ଜର୍ଜ ପଶିଗଲା ବେଳେ ପୁଣି ଆସିଛି ସେଇ ମେଓ୍ୱାଶବ୍ଦ ! ଏ ଚାରୋଟି ଯାକ ଚିତ୍ରରେ ଜନତା କେବଳ **ଯେ** ବାୟା, ଏକ ମୁଖିଆ, ଅବ୍ୟବସ୍ଥିତ ଚିତ୍ତ ବୋଲି ପ୍ରମାଣିତ ହୋଇଛି ତା' ନୁହେଁ, ବହୁ ଦିନର ଜନତା ଜନାର୍ଦ୍ଦନ ଦି' କଡ଼ାର ହୋଇ ଦାଣ୍ଡରେ ହାଟରେ ଗଡ଼ି ଯାଇଛି ।

ଏ ଦିଗଟାକୁ ଆଡ଼େଇ ଗଲେ ବହୁ ପାହାଚ ଥିବା ମନ୍ଦିର ଓ ଗରୁଡ଼ର ରୂପକ ବେଶ୍ ଅର୍ଥପୂର୍ଣ୍ଣ ଗୋଟାଏ ଚିତ୍ର । ଧୂ', ଧୂ' ଦି' ପହରିଆ ବାଲିରେ ହୀରା ଖୋଜିବା ମଧ୍ୟ ସେହିପରି ଇଙ୍ଗିତ ଧର୍ମୀ । କିନ୍ତୁ ଉଭୟ ଯେପରି ମନେହୁଏ କ୍ଷୁଧାର୍ତ୍ତ ଜର୍ଜର ଉତ୍ତ୍ୟକ୍ତ ମସ୍ତିସ୍କର ବିକୃତି, କେବଳ ଭୟଙ୍କର ସ୍ୱପ୍ନ ଗୁଡ଼ାଏ ! ଏହା ବ୍ୟତୀତ ଆଉ ଗୋଟାଏ ପ୍ରକାର ଚିତ୍ର ମଝିରେ ମଝିରେ ଆସିଛି । ବରଗଛ ମୂଳେ ରିକ୍ସା ରଖି ଅପେକ୍ଷା କରିଥିଲା ବେଳେ ଶିମୁଳୀ ଗଛ ପଛଆଡୁ ସୂର୍ଯ୍ୟୋଦୟଟାଏ ହୋଇଛି ଓ ଶିମୁଳୀ ଗଛଟା ପରମୁହୂର୍ତ୍ତରେ ଜଳି ଉଠିଛି । ବାଃ ! ଫଟା ସୂର୍ଯ୍ୟଟାକୁ ମିଶେଇଲେ ମଧ୍ୟ ଏଇଟା ଯେ ଚେନାଏ କବିତା ଏଥିରେ ସନ୍ଦେହ ନାହିଁ । ଆଉଥରେ ଆକାଶ ଆସିଛି ଦୃଷ୍ଟି ଭିତରକୁ ଯେତେବେଳେ ଜର୍ଜ ତା' ଝରକା ବାଟେ ବୁଢ଼ୀକୁ ଆଉ ନଜିର ମିଆଁକୁ ଝିକିମିକି ତରା ହୋଇ ଚାହୁଁ ଥିବାର ଦେଖି ପାରୁଛି ।

କିନ୍ତୁ ପରିସ୍ଥିତିଗୁଡ଼ାକ କେତେ ଅପ୍ରତ୍ୟାଶିତ ଭାବରେ ଏବଂ କେତେ ଶୀଘ୍ର ବଦଳି ଚାଲିଛନ୍ତି ! ସତେ ଅବା ମେଜିକ୍ ଲଣ୍ଠନର ସକ୍‌ସାକ୍ ବଦଳି ଯାଉଥିବା ଚିତ୍ରଗୁଡ଼ିଏ । ଲେଖକଙ୍କୁ କାଠ କେବିନ୍‌ଟିରେ ଟିକିଏ ଫୁରୁସତ୍ ଥିଲା ପରି ଜଣାଯାଏ । ଅମର ଫଳ ଖୋଜୁଥିବା ଗୋଟାଏ ଅନ୍ତକୋଷୀ କବିରାଜକୁ ବା ମଣିଷମାରୁ ଅପରାଧରେ ଜେଲ୍ ଭୋଗି ଫେରିଥିବା ଗୋଟାଏ ପାଗଳା ଚରଣ ରାଓକୁ କେନ୍ଦ୍ର କରି ଜୀବନର ଗୋଟାଏ ଦୁଇଟି ମୌଳିକ ତଥ୍ୟର ଆଲୋଡ଼ନ କରିବାକୁ ଅବକାଶ ମିଳିଲା ପରି ଜଣାଯାଏ । ତା' ଭିତରେ କିନ୍ତୁ ଜର୍ଜର ଜୀବନଚକ୍ର ଗଡ଼ିଚାଲେ ଅବାରିତ ଭାବରେ । ବୋଇଲା ବୁହା, ରିକ୍‌ସା ଟଣା, ପାଉଁରୁଟି ଦୋକାନରେ ଛିଟିପିଲା କାମ, ହରି ମିସ୍ତ୍ରୀ ଦୋକାନରେ ସାଇକଲ ସଜା, ଗୋଟାକ ପରେ ଗୋଟାଏ ଅକସ୍ମାତ୍ ଆସି ପୁଣି ସେହିପରି ଅଚାନକ ଚାଲିଯାନ୍ତି । କିନ୍ତୁ ଏ ସବୁ ଘଟେ ଗୋଟାଏ ନିର୍ଦ୍ଦିଷ୍ଟ କକ୍ଷ ଭିତରେ । ଗୋଦରୀ ବୁଢ଼ୀ ଓ କାଠ କେବିନ୍ ତା'ର କେନ୍ଦ୍ର। ଜର୍ଜ ନାନା ଚିନ୍ତା କରି କେବଳ ନାରୀ ପୁରୁଷର ଅଦ୍ଭୁତ ସମ୍ପର୍କ ବୁଝିବାକୁ ଚେଷ୍ଟା କରି ଚାଲିଛି, ଏ ସମସ୍ତ ପରିସ୍ଥିତି ଭିତରେ । ଶେଷରେ ଗୋଦରୀ ଠୋ' କିନା ମରି ଯାଇଛି ପାଣି ଟୋପାଏ ପିଇବାକୁ ନପାଇ ଏବଂ ଟୋକାଟା ଛିଟିକି ପଡ଼ିଛି ତା କକ୍ଷ ଭିତରୁ । ତେଣିକି ସବୁ ବାର ଚାଉଳିଆ ଧରି ଯାଇଛି, ଧରିଯିବା କଥା ମଧ୍ୟ । ବଢ଼ି ଆସୁଥିବା ପୁରୁଷ ପିଲାଟା ହଠାତ୍ ଘୋଡ଼େଇ ହେଇଯାଇଛି, କିନ୍ତୁ ଉପରକୁ ଉଭାରି ଆସିଛି ଅମୃତ–ଫଳ ବାଉଳା, ବା ହୀରା – ଖୋଜାଳୀ ଗୋଟାଏ କଳାଆଖିଆ ଚାଲାକ୍ ଟୋକା ! ଜୀବନଟା ଯାକ ସେ ବିଚାରା ପାଇଁ କେବଳ ବିସ୍ମୟ ମୂଳରୁ ଶେଷଯାଏଁ । ତା'ର ଅପରିପକ୍ୱ ମନର ଦହି ଉପରେ ହାଉଁ ହାଉଁ ହୋଇ ହାତୁଡ଼ି ବାଡ଼ିଆ ଚାଲିଛି - ଧର୍ମ, ରାଜନୀତି, ବିଜ୍ଞାନ - ସବୁ ପୁଣି ଗୋଟାଏ ଉତ୍କଟ ଯୌନ କ୍ଷୁଧାକ୍ରାନ୍ତ ତାପ ଗୃହ ଭିତରେ । ଘାଟନିକ ସମ୍ପର୍କ ଏଠି ବଡ଼ ଶିଥୀଳ । ପଥରର ଲକ୍ଷ୍ମୀକୁ ସେବା କରୁଥିବା ତା' ବିକୋଳୀ ବାବାଜୀକୁ ଖୋଜି ଜର୍ଜ ପଲଟଣ୍ ପଛରେ ଏକାକୀ ଚାଲିଥିବା ଗରୁଡ଼ ସହିତ ଯୁଦ୍ଧ କରେ । ତା' ପରମୁହୂର୍ତ୍ତରେ ପାଗଳ ଜନତାର ଭଉଁରୀ ଭିତରୁ ଖସି ପଳେଇ ଆସି ବାଲିରେ ଗୁଡ଼ାଏ ହୀରା ଖୋଜେ ଓ ସେଇ ପେଚା ଆଖିଆର ଗାଡ଼ିରେ କିଛି ବୁଝିବା ପୂର୍ବରୁ ପହଞ୍ଚିଯାଏ ମଣିଷ ମସ୍ତିଷ୍କର କାରଖାନାରେ । ରାଜନୀତି, ପୃଥିବୀର ମାଲିକପଣିଆ ପାଇଁ କୂଟ ଚକ୍ରାନ୍ତ, ବିଜ୍ଞାନ ମାଙ୍କଡ଼ ଓ ସେ ମାଙ୍କୁଡ଼ିଆ ଗଛର ମେଓ୍ୱା– ଏ ଗୁଡ଼ାକ ସବୁ ଜର୍ଜର କୋଠରୀ ଭିତତର ତେଜା ବିଜୁଳୀ ଆଲୁଅ ପରି ଅସହ୍ୟ ହାଉ ! ଗୋଟାଏ ବାଲ୍‌ଟି ନ ହେଲେ ବାସ୍ତବିକ୍ ଆଉ ଆତ୍ମରକ୍ଷାର ଉପାୟ ନାହିଁ ।

ଅନ୍ଧାରୁଆ ଉତ୍ତପ୍ତ ଅବଚେତନର ରାଜ୍ୟରେ ପାଠକ ଘୋସାଡ଼ି ହୋଇ ବାମ୍ଫୁଆ କାଳିଆ ଘୋଡ଼ା ପରି ସ୍ୱପ୍ନ ପିଠିରେ ଚଢ଼େ । ବହୁବାର ଚମକେ । ଟିକିଏ ମନ ମଜି ଘୁମେଇ ଆସିଲା ବେଳକୁ କାନ ପାଖରେ ଗୋଟାଏ କିଏ ଏଡ଼େ ପାଟିରେ କହୁଛି, 'ହୋ, ତମେ କିଏ ? - ନ ହେଲେ ସେହି ଅବସ୍ଥାରେ ମଝି ଶିରା ହାଡ଼ ଉପରେ କାକର ଧଣ୍ଡଟାକୁ ଓହଳେଇ ଦେଉଛି । ଭୂମିକମ୍ପ ପରି ମେଦିନୀ ହୁଡ଼ା ହୁଡ଼ା ହୋଇ ଭାଙ୍ଗି ପଡୁଛି ଅସ୍ଥିର ଘଟଣା ପରମ୍ପରା ଭିତରେ । ଆଚାର୍ଯେ ଯେପରି କହୁଛନ୍ତି, 'ଆହୋ, ଜୀବନରେ କେବେ ଗୋଟାଏ ଆଦ୍ୟ, ମଧ୍ୟ, ପ୍ରାନ୍ତ ଥାଇ ଗପ ଭଳି ସରଳ ଘଟଣାର ସୁଅ ଦେଖିଛ ? - ଦେଖିନା ତ, ଫେର୍ ଏଠି କାହିଁକି ଏମିତି ଡିଆଁ ମାରିବାକୁ ଅସୁଖ ଲାଗୁଛି ! ଗୁଡ଼ାଏ ଡିଆଁ, ଗୁଡ଼ାଏ ଝାଳ ବୋହୁ ! ତା ପରେ ମର !! ମୁଁ ସେଥିପାଇଁ ତୁମକୁ ଖେଞ୍ଚିବି, ତମକୁ କୁତୁକୁତୁ କରିବି । ତମ କାନ ପାଖରେ ଜୋର୍‌ରେ କୁର୍‌ର୍ କରିବି । ଏଠି ଶାଳା ଘୁମେଇବା ମନା, ଘୁମେଇଲେ ମଲ !'

ମୋଟ ଉପରେ ଉପନ୍ୟାସଟି ଉଠାଏ ନାହିଁ କି ପକାଏ ନାହିଁ । ଗୋଟାଏ ଘଣି ଚକ୍‌ରରେ ଖାଲି ଘୁରାଏ, କ୍ଳାନ୍ତ କରେ । ସବୁ ଚରିତ୍ର କୋଇଲା ରଡ଼ ପରି ଚେଙ୍କି ଦିଅନ୍ତି କିନ୍ତୁ କାହାର ପ୍ରତି ସହାନୁଭୂତି ବା ସମ୍ମାନ ଟିକିଏ ଆସେ ନାହିଁ । ଏପରି କି ବୁଢ଼ା, ବୁଢ଼ୀ, ଜର୍ଜ, ନଜିର ମିଆଁ ପାଇଁ ମଧ୍ୟ ନୁହେଁ । ଆଦର୍ଶବାଦ ପାଇଁ ଉପନ୍ୟାସର ସଦର ଦର୍ଜା ବନ୍ଦ ! ଶେଷକୁ ଜର୍ଜ ଯେତେବେଳେ ତା'ର ଅପତ୍ୟ ଭିତରେ ସାରା ସଂସାରଟାକୁ ପାଇଛି, କାଳେ ଆଦର୍ଶ ବାଦିଆ ହେଇଯିବ ବୋଲି ବୋଧହୁଏ ଗୋଟାଏ ଅବୋଧ ପାଗଳ ପରି ସେ ପୁଣି ଡାକିଛି ମେଓ୍ୱା ଦିଅ ! ଏମାନଙ୍କୁ ମେଓ୍ୱା ଦିଅ !! ଫୁଲି ଆସୁଥିବା ପୁରୁଣା ଭାବଧାରାର ବେଲୁନକୁ କଣ୍ଟାରେ ଭୁସ୍ କରି ଫୋଡ଼ି ଦିଅନ୍ତି ଲେଖକ ! କହନ୍ତି, 'ହୋ ! ତମେ ବହୁତ ଫାନୁସ୍ ଉଡ଼େଇଲଣି, ତମେ ତମ ବାଡ଼ିଆଡ଼ ନର୍ଦ୍ଦମା ଦେଖିଛ- ଯାହାକୁ ତାଟି ପକେଇ ନିଜର ବୋଲି ତମେ ସ୍ୱୀକାର କର ନାହିଁ ? ସେଠି ଆସ, ତମ ନାକ ଘସି ମୁଁ ତୁମକୁ ତାଜ୍ଜୁବ୍ କରୁଚି !'

ନର କିନ୍ନରରେ ନରର ମାତ୍ରା ବଡ଼ କମ୍ । କିନ୍ନର ମାଳ ମାଳ ଅଙ୍ଗାର ଚିତ୍ର ପରି ବହିଟାର ଖୋଳ ପର୍ଯ୍ୟନ୍ତ ଜରି ଯାଇଛି ! ସାହସର ସହିତ ତାକୁ ଜାହିର କରିବା ବହୁ ଦିନରୁ ଆବଶ୍ୟକ ଥିଲା ଓଡ଼ିଆ ସାହିତ୍ୟରେ । ସେଇଟା ହେଲା ଆଚାର୍ଯଙ୍କ ହାତରେ ! ବେଶ୍ ବଳୁଆ ଉପନ୍ୟାସଟାଏ ହେଇଚି ନର କିନ୍ନର, ଆଉ ବେଶ୍ ଚମକେଇଲା ପରି ହେଇଚି ତା'ର ଦୃଷ୍ଟି ଭଙ୍ଗୀ । ସେ ନିଜେ ଆଉଠାଏ କହିଲା ଭଳି ଥୁଣ୍ଟା ଗଛ ଶିଖରେ ଏକ ଗୋଡ଼ିଆ ଠିଆ ହୋଇ ସେ ଆକାଶକୁ ହାତ ବଢ଼େଇ ଡାକିଛନ୍ତି, ''ମତେ ଧ ' ।'' ଆକାଶ ନଇଁ ଆସୁ ତାଙ୍କୁ କାଖ କରିବାକୁ ଓ ତା' ସାଙ୍ଗେ ସାଙ୍ଗେ ଏ ଭାଷା ଓ ସାହିତ୍ୟଟାକୁ ।



# ଶତାବ୍ଦୀର ନଚିକେତା

ଦାଶରଥି ଦାସ

ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟ 'ଶତାବ୍ଦୀର ନଚିକେତା' ର ମୁଖବନ୍ଧ ସ୍ୱରୂପ 'ଶ୍ରୁତି ଓ ସ୍ମୃତି' ରଚନା କରିଛନ୍ତି । ସେ କହିଛନ୍ତି ''କିନ୍ତୁ ନଚିକେତା ଯେ ବାସ୍ତବରେ ଏକ ନିର୍ଦ୍ଦୋଷ ନିଷ୍ପାପ ଶିଶୁ - ଏହା ତାର ମୃତ୍ୟୁଞ୍ଜୟିତା ହିଁ ପ୍ରମାଣ କରେ ଉପନିଷଦରେ । ଏହି ଦୃଷ୍ଟିରୁ ଉଭୟ ବିଭୁପ୍ରସାଦ ଓ ନଟବର ଗୋଟିଏ ଶତାବ୍ଦୀ ବା ଯୁଗର, ସମୟ ସଙ୍ଗୀତର ଅଷ୍ଟମ ସ୍ୱରପରି । କ୍ରିୟା ଓ ପ୍ରତିକ୍ରିୟାଶୀଳ ଦୁଇଟି ସ୍ୱତନ୍ତ୍ର ସୃଜନଶୀଳ ଶିଶୁ । ତେଣୁ ଏକ ଅର୍ଥରେ ଦୁହେଁ ଦୁଇଟି ନଚିକେତା ।'' ଯେତେଦୂର ସମ୍ଭବ ସେ କହି ରଖିଛନ୍ତି, ବିଭୁପ୍ରସାଦ ଓ ନଟବର ଦୁହେଁ ଏ ଶତାବ୍ଦୀର ନଚିକେତା । ଉପନ୍ୟାସଟିର ନାମକରଣ ସମ୍ପର୍କରେ ଏପରି ଉକ୍ତି ପ୍ରଣିଧାନଯୋଗ୍ୟ । ଚରିତ୍ର ଦୁଇଟି ତାଙ୍କର କଠୋପୋନିଷଦ ବା କାଠକୋପନିଷଦ (ଲେଖକଙ୍କ କଥା- ଉପନିଷଦ ନୁହେଁ) ନଚିକେତା ପରି । ଏ କ୍ଷେତ୍ରରେ ସେ ରାଧାକ୍ରିଷ୍ଣନ୍‌ଙ୍କୁ ସ୍ମରଣ ରଖିଛନ୍ତି । "The Principal Upanishadas" ଗ୍ରନ୍ଥରେ ଉପନିଷଦର ଶିକ୍ଷଣସମ୍ପ୍ର ସମ୍ପର୍କରେ ଆଲୋଚନା ଅଛି । "The ethical individual is required to become like a child. The perfect man is a Divine child accepting the divine play without fear of reserve care of grief in utter purity... etc"(Page - III) ମଣିଷ ସମ୍ପର୍କରେ ପବିତ୍ର ଏହି ଉପନିଷଦୀୟ ପରିକଳ୍ପନାକୁ ଲେଖକ ଶେଷପର୍ଯ୍ୟନ୍ତ ଉପନ୍ୟାସରେ ଚରିତାର୍ଥ କରିଛନ୍ତି ବୋଲି ଆଦୌ ମନେହୁଏ ନାହିଁ । ଉଦ୍ଧୃତ ଉକ୍ତିର ଶିଶୁ ନଚିକେତା ସହିତ କୌଣସି ପ୍ରତ୍ୟକ୍ଷ ସଂସ୍ରବ ନାହିଁ । Ethical individual କଥା ସେଠାରେ କୁହାଯାଇଛି । ତେଣୁ ଏହି ଉଦ୍ଧୃତି ଦୃଷ୍ଟିରୁ ବିଭୁପ୍ରସାଦ ଓ ନଟବରଙ୍କୁ ଗୌରବାନ୍ୱିତ କରିହୁଏ ନାହିଁ । ଦ୍ୱିତୀୟତଃ ଉପନ୍ୟାସ ପାଠ ପରେ ଚରିତ୍ର ଦୁହିଁଙ୍କୁ ଠିକ୍ ନଚିକେତା କହିବା ସମ୍ଭବପର ନୁହେଁ । ଆମର ଶିକ୍ଷା, ସମାଜନୀତି, ରୁଚି ଓ ଧର୍ମ ଧାରଣା ଯେଉଁଠି ନିଷ୍ଠୁର ବ୍ୟଙ୍ଗ ଓ ପ୍ରଚ୍ଛନ୍ନ ବିଦ୍ରୂପରେ ଅସ୍ଥିର ସେଠାରେ ବିଭୁପ୍ରସାଦ ଓ ନଟବର ବୈଦିକ ଶିଶୁ ନଚିକେତାର ସ୍ଥୈର୍ଯ୍ୟ ସଂଯମ ଓ ଆତ୍ମଜିଜ୍ଞାସା ଅତୁଟ ରଖିଛନ୍ତି କେଉଁଠି ? ବାଜଶ୍ରବସ ଯଜ୍ଞଫଳ କାମନା କରି ସର୍ବସ୍ୱ ଦାନ କରିଛନ୍ତି । ଏବେ ଦାନ କରୁଛନ୍ତି ଧେନୁ । ଯେଉଁଗୁଡ଼ିକ ଏତେ ବୃଦ୍ଧ ଓ ଜରାଜୀର୍ଣ୍ଣ ଯେ ଆଉ କେବେ ଜଳପାନ ଓ ତୃଣ ଭକ୍ଷଣ କରିବେ କି ନାହିଁ ସନ୍ଦେହ ! ବତ୍ସ ପ୍ରସବ କି ଦୁଗ୍ଧ ଦାନ କରିବା ତ ଦୂରର କଥା । ଧର୍ମାନ୍ଧ ପିତାଙ୍କ ହିତକାମନାରେ ନଚିକେତା ତିନିବାର କହି ଉଠିଲା – 'ମୋତେ କାହାକୁ ଦେଉଛ ?' ପିତା କହିଲେ, 'ତୁମକୁ ଯମକୁ ଦେଲି' । ଯମାଳୟ ଗଲେ ନଚିକେତା । ସେଠି ଦେବାଶିଷରୁ ଝରୁଥିବା ପାର୍ଥିବ ସକଳ ସୁଖ ସମ୍ଭୋଗ ଉପେକ୍ଷା କରି ସେ ଆତ୍ମତତ୍ତ୍ୱ ଜିଜ୍ଞାସାରେ ଅଟଳ ରହିଲେ । ଏବେ ମଧ ତାଙ୍କର ଉଦାରବାଣୀ କାନରେ ବାଜେ, 'ନ ବିତ୍ତେନ ତର୍ପଣୀୟଃ ମନୁଷ୍ୟଃ ।' ଏ ଉପନ୍ୟାସରେ ବିଭୁପ୍ରସାଦର

ପିତା ବାଜଶ୍ରବସ ନୁହଁନ୍ତି ବରଂ ସେ ଶିକ୍ଷକ ଜୀବନରେ ଆଦର୍ଶ ପାଳନରେ ସମୁଜ୍ଜ୍ୱଳ ପୁରୁଷ । ଅଥଚ ପୁତ୍ର ବିଭୁପ୍ରସାଦ ଆବୁମିଆଁ ପ୍ରଦତ୍ତ ଚାରିଟି ଅଣ୍ଡାରୁ କୁକୁଡା ଫାର୍ମରେ ସ୍ୱପ୍ନ ଦେଖେ, ଓଲା ରାଉତର ପୁଅ ନଟବର ପୁରୁଣା ଟର୍ଚ୍ଚ ବ୍ୟାଟେରୀ ସଂଗ୍ରହ କରେ । ଦୈନ୍ୟବୋଧ ଓ ସମୃଦ୍ଧିର ସ୍ୱପ୍ନ – ଏଇ ସୀମାତଟରେ ଜୀବନ ଆବର୍ତ୍ତିତ । ଉପନ୍ୟାସ ପାଠରୁ ମନେହୁଏ, ବିଭୁପ୍ରସାଦ ଓ ନଟବର ଉପନିଷଦର ନଚିକେତା ନୁହନ୍ତି-ସେମାନେ ଏହି ଶତାବ୍ଦୀର ନଚିକେତା, ଠିକ୍ ଯେପରି ଟକ୍ଷେଚ୍ଛକ୍ଷ୍ୱରଶ୍ବ ଉପନ୍ୟାସର ଲିଓପୋଲଡ଼ ବ୍ଲୁମ୍ (Leopold Bloom) । ଏ ଯୁଗର Ulysses, ଗ୍ରୀକ୍ କାହାଣୀର ଅଲିସେସ୍ ବୀର ପୁରୁଷ । ସେ ସମସ୍ତ ବାଧା ଅତିକ୍ରମ କରି ଟ୍ରୟ ଯୁଦ୍ଧ ଶେଷରେ ଅନାଗତ ପୁତ୍ର ସାଧ୍ୱୀ ପତ୍ନୀ ପେନିଲୋପକୁ ଭେଟିଛି - କେବଳ ମିଳନର ରକ୍ତରାଗରେ ନୁହେଁ, ଆନ୍ତରିକତାର ପବିତ୍ର ଉତ୍ସାହରେ ସେ ପୁର୍ନମିଳନ ଚମତ୍କାର । କିନ୍ତୁ ଏ ଯୁଗର Ulysses ୧୯୦୪ ଖ୍ରୀଷ୍ଟାବ୍ଦ ଜୁନ୍ ୧୬ ତାରିଖରେ ଘରୁ ବାହାରିଛି । ମାଂସ ଦୋକାନ, ସମ୍ବାଦପତ୍ର ଅଫିସରୁ ଅଫିସ ତା'ର ଭ୍ରମଣକ୍ଷେତ୍ର । ଏ ଯୁଗର ଟେଲିମେକାଶ, ହେଉଛି ତା'ର ପୁତ୍ର ଷ୍ଟିଫେନ ଡେଡ଼ାଲସ୍ । ଆଉ ଗଣିକାଳୟ ହେଉଛି ଏ ଯୁଗର Place of Dead । ପୁତ୍ରକୁ ବ୍ଲୁମ ଏହି ଗଣିକାଳୟରୁ ଉଦ୍ଧାର କରିଛି । ଏଣେ ଏ ଯୁଗରେ ପେନିଲୋପ ବ୍ଲୁମ୍ ପତ୍ନୀ ମାରୀଆନ୍ ପ୍ରେମିକର ପ୍ରେମପତ୍ର ପାଇ ପତି ଅନୁପସ୍ଥିତିର ସୁଯୋଗ ଘେନିଛି, ସେହି ପ୍ରେମିକ ସହିତ ବ୍ୟଭିଚାରରେ ଲିପ୍ତ ହୋଇ । ଆହୁରି ବିଚିତ୍ର ଦୁଃଖର କଥା ଯେ, ଏ ଯୁଗର Ulysses ଏସବୁ ଅବଗତ ହୋଇ ମଧ ସେହି ଅସତୀ ପତ୍ନୀ ସହିତ ଏକ ଶଯ୍ୟାରେ ରାତ୍ରିଯାପନ କରିବାକୁ କୁଣ୍ଠିତ ହୋଇନାହିଁ । ପୌରୁଷର କି ଘୋର ଦୁର୍ଗତି । ସେଠାରେ ଆଧୁନିକ ଜୀବନର ହୃତ୍‌ପିଣ୍ଡରେ ପ୍ରଚ୍ଛନ୍ନ ବ୍ୟଙ୍ଗର ଏକ ଶାଣିତ ଛୁରୀକା ହାଣି ରଖିଛି ଏହି ବାଣୀର କଳାକୃତି । ହୁଏତ ସେହିପରି 'ଶତାବ୍ଦୀର ନଚିକେତା' ପ୍ରଚ୍ଛନ୍ନ ବ୍ୟଙ୍ଗ ବା ପ୍ରଚ୍ଛନ୍ନଶ୍ଳେଷର ଉପନ୍ୟାସ । 'ଶତାବ୍ଦୀର ନଚିକେତା'ର ଶତାବ୍ଦୀଟିରୁ ବରଂ ଏହି ଅର୍ଥ ବି ସୁସ୍ପଷ୍ଟ । ବିଭୁପ୍ରସାଦ ଓ ନଟବର କଠୋରୋପନିଷଦର ନଚିକେତା ନୁହଁନ୍ତି ସେମାନେ ଏଇ ଶତାବ୍ଦୀର (୧୮୬୬- ୧୯୬୬) ନଚିକେତା । ଶ୍ରେୟ ନୁହେଁ, ବରଂ କିଛିଟା ପ୍ରେୟ ପ୍ରତି ତାଙ୍କର ଆନ୍ତରିକତା ଅଧିକ । ଆତ୍ମତତ୍ତ୍ୱ ଜିଜ୍ଞାସା ନୁହେଁ, କ୍ଷୁଧା କବଳରୁ ମୁକ୍ତି କାମନା ତାଙ୍କର ପ୍ରବଳ । ସମଗ୍ର ଉପନ୍ୟାସଟି ଶ୍ରଦ୍ଧା ସଂପୃତ ଉପନିଷଦ ଶିଶୁର କୋମଳ କୌତୂହଳରେ ପରିପୂର୍ଣ୍ଣ ନୁହେଁ, ବରଂ ତଥାକଥିତ ଶିକ୍ଷିତ ମନର ତିକ୍ତ ନୈରାଶ୍ୟରେ ସମାଚ୍ଛନ୍ନ ।

ଔପନ୍ୟାସିକ କହି ରଖିଛନ୍ତି, ''ଏ ଉପନ୍ୟାସର ବର୍ଣ୍ଣିତ ଘଟଣାଗୁଡ଼ିକ କୌଣସି ଜୀବିତ ବା ମୃତ ବ୍ୟକ୍ତି ଅଥବା ଅନୁଷ୍ଠାନ ପ୍ରତି ପ୍ରଯୋଜ୍ୟ ନୁହେଁ । ଏଗୁଡ଼ିକ ସମ୍ପୂର୍ଣ୍ଣ ବ୍ୟକ୍ତିଗତ ଓ କଳ୍ପନା-ପ୍ରସୂତ ।'' ଅର୍ଥାତ୍ ଯଦି କେଉଁଠି କିଛି ମେଳଥାଏ, ସେସବୁ ଆକସ୍ମିକ ଓ ଅନିଚ୍ଛାକୃତ । କିନ୍ତୁ ଜୀବନର ଯେଉଁ ସ୍ପଷ୍ଟ ଛବି ଆଧୁନିକ ଔପନ୍ୟାସିକ ଗଣ ଆଙ୍କିବାକୁ ବଦ୍ଧପରିକର ସେଠି ଯେବେ ସଙ୍କେତ ବା ପ୍ରତୀକର ଠିକ୍ ପ୍ରୟୋଗ ନହୁଏ, ତେବେ ତାହା ସମସାମୟିକ ଜୀବନର ଅବିକଳ ପ୍ରତିବିମ୍ବ ହୋଇଉଠେ । ଫଳରେ ଜୀବିତ ଚରିତ୍ର, ଅନୁଷ୍ଠାନ ଓ ସମସାମୟିକ ଜୀବନଦଶା ସହିତ ତା'ର ପ୍ରତ୍ୟକ୍ଷ ମେଳ ରହିଯାଏ । ତେଣୁ ପ୍ରାୟ ସବୁ ଲେଖକ କହନ୍ତି, ଏସବୁ କଳ୍ପନା ପ୍ରସୂତ, କାହାରି ସହିତ ସଂଯୋଗ ସୂତ୍ର ଖୋଜନାହିଁ । ଆଜିର ଜୀବନ ଓ ଜଗତ ସମ୍ପର୍କରେ ଔପନ୍ୟାସିକଙ୍କର ଯେଉଁ ଘୋର ଅସନ୍ତୋଷ ଓ ନୈରାଶ୍ୟବୋଧ ରଚନା କାଳରେ ଜାଗ୍ରତ ଥିଲା, ସେ ସବୁର ସ୍ପଷ୍ଟ ସ୍ପନ୍ଦନ ଉପନ୍ୟାସରୁ ପାଠକ ସ୍ପଷ୍ଟ ଉପଲବ୍ଧି କରେ ।

ତାହା ହିଁ ଆଧୁନିକ ଔପନ୍ୟାସିକଙ୍କର ଲକ୍ଷ୍ୟ ଓ ଉଦ୍ଦେଶ୍ୟ । "Music at Night" ଗ୍ରନ୍ଥରେ Huxely କହନ୍ତି, ଆଧୁନିକ ଉପନ୍ୟାସର ଲକ୍ଷ୍ୟ ହେଉଛି,"... to render, in literary terms. the quality of immediate experiance – in other words, to express the finally inexpressible." । ଆଜି Immediate experience ଉପନ୍ୟାସରେ ଶ୍ରେୟ ବୋଲି ଧେୟ। 'ଶତାବ୍ଦୀର ନଚିକେତା'ରେ ସେହି Immediate experience ର କଥା । ଗୋଟିଏ ଶତାବ୍ଦୀର (1866 - 1966) ସ୍ପଷ୍ଟ ଅସ୍ପଷ୍ଟ ଜ୍ଞାତଅଜ୍ଞାତ, ଜୀବିତମୃତ ବହୁ ମଣିଷ ଓ ଜୀବନ୍ତ ଏକାଧିକ ଅନୁଷ୍ଠାନର ସ୍ମୃତି ଏ ଉପନ୍ୟାସ ପାଠ କାଳରେ ପାଠକ ଚକ୍ଷୁରେ ଭାସି ଉଠନ୍ତି । ସେ ମଣିଷ – ସେ ଅନୁଷ୍ଠାନ – ଜୀବନ୍ତ ଅର୍ଥମୟ ଅଥଚ ଅବୋଧ । ଗୋଟିଏ ଗୋଟିଏ ପ୍ରତୀକ ସେଗୁଡ଼ିକ – ଡଃ ଜେନା, ଡଃ ଶର୍ମା, ମିଃ ସେଠି, ମନମୋହନ, ବିଭୁପ୍ରସାଦ, ନଟବର... ସେମାନେ ପ୍ରଚଳିତ ଅର୍ଥରେ ଉପନ୍ୟାସର ଚରିତ୍ର ନୁହଁନ୍ତି, ସେମାନେ ଜୀବନ୍ତ- ମଣିଷ, ଏଇ ଶତାବ୍ଦୀର –ମଣିଷ । ହୁଏତ ଜୀବନ୍ତ ବ୍ୟକ୍ତିତ୍ୱ ଓ ଅନୁଷ୍ଠାନ ମଧ୍ୟରୁ ଲେଖକ ଏ ପ୍ରତୀକ ଗୁଡ଼ିକୁ ସଂଗ୍ରହ କରିଛନ୍ତି । ବ୍ୟକ୍ତି ଓ ଅବ୍ୟକ୍ତ ସେମାନଙ୍କ ପରିଚୟ ମଧ୍ୟରେ ସ୍ଥିର ଅଥଚ ଏକ ଶାଣିତ ବ୍ୟଙ୍ଗ ଯେପରି ଉଲଗ୍ନ ହୋଇ ରହିଛି । ସଂଭ୍ରାନ୍ତ ସହରବାସର ଜୀବନ ଚାରି ପାଖରେ ସେମାନେ ଅଛନ୍ତି । ଶିକ୍ଷାନୁଷ୍ଠାନ ଠାରୁ ପୋଷ୍ଟ ଅଫିସ ପର୍ଯ୍ୟନ୍ତ, ଭୋଜନାଳୟଠାରୁ ଚିକିତ୍ସାଳୟ ପର୍ଯ୍ୟନ୍ତ, ଥାନାଠାରୁ ବିଧାନସଭା ପର୍ଯ୍ୟନ୍ତ – ସର୍ବତ୍ର ଜୀବନ ପ୍ରତି ଯେଉଁ ନିଦାରୁଣ ଶଠତା, ପ୍ରବଞ୍ଚନା ଓ ତାସଲ୍ୟର ଜ୍ୱାଳା ଲେଖକ ଉପଲବ୍ଧି କରିଛନ୍ତି, ସେହି ଉପଲବଧିର ଏକ ନିର୍ଭୁଲ ଜାତକ ଏହି 'ଶତାବ୍ଦୀର ନଚିକେତା' ଏକ ବିରାଟ ଜିଜ୍ଞାସାରେ ବିମୁଢ଼ ଏ ଉପନ୍ୟାସର ଅନ୍ତରାତ୍ମା । – What men live by ? ଆଜିର ଏ ଜୀବନର ନିରୁତ୍ତର ନିର୍ବାକ ଅହଙ୍କାର ସେ ଜଟିଳତାକୁ ଆହୁରି ନିଷ୍ଠୁରତର କରେ । Leo Tolstoy ପଚାରିଥିଲେ ଠିକ୍ ଏହି କଠିନ ପ୍ରଶ୍ନ– What men live by ? ସେ ଏହି ପ୍ରଶ୍ନ ସମାଧାନରେ କହିଛନ୍ତି, "...in truth it is love alone by which they live." ଏ ଶତାବ୍ଦୀର ଅନିର୍ବାଣ ଚିତା ଜ୍ୱାଳାରେ ସେ ଉତ୍ତର ଯେପରି ବିମୂଢ଼ ସେପରି ବି ନିରୁତ୍ତାପ । ଏଠି ଆନ୍ତରିକ ହୃଦୟବତ୍ତାରୁ ପ୍ରେମ ଓ ପ୍ରୀତିର ପବିତ୍ର ସଦ୍ଭାବ ସମ୍ଭବ ନୁହେଁ । ବରଂ ଟଙ୍କା ଦେଇ କିଣିବାକୁ ହୁଏ, 'କିଛି ସ୍ନେହ, କିଛି ସହାନୁଭୂତି ଆଉ କିଛି ବିଶେଷ କର୍ତ୍ତବ୍ୟବୋଧ' । ଯେତେବେଳେ ଟଙ୍କା ଦେଇ ସେତକ କିଣିବାକୁ ଅଣ୍ଟାରେ ବଳ ନଥିବ ସେତେବେଳେ ରକ୍ତ ଦେଇ କିଣିବାକୁ ହୁଏତ ଜଣେ ବାଧ ହେବ । ଉପନ୍ୟାସ ରାଜ୍ୟର ପ୍ରଚଳିତ ଯୌବନର ପ୍ରେମୋଚ୍ଛ୍ୱାସ ଏ ଯୁଗରେ କେବଳ ନିରର୍ଥକ ନୁହେଁ, ପ୍ରବଞ୍ଚନା ମଧ୍ୟ । ମନମୋହନ ଏଠାରେ ପ୍ରେମ କରେ ମୁରାଶାକୁ । ଏକାନ୍ତ ଜାନ୍ତବ ତା'ର ପ୍ରକୃତି ଓ ନିଷ୍ଠୁର ତା'ର ପରିଣାମ । ଦାରିଦ୍ର୍ୟର ଏକ ସ୍ଥିର ଅଚପଳ କୁତ୍ସିତ ଲାଞ୍ଛନା ଭିତରୁ ଏ ଯୁଗର ନଚିକେତା ତେଣୁ ରକ୍ତାକ୍ତ ବିପ୍ଳବର ଧ୍ୱନି ତୋଳେ, ସ୍ନେହ ପ୍ରୀତି ଓ କର୍ତ୍ତବ୍ୟବୋଧ ସେ ରକ୍ତଦେଇ କିଣିବ । ଅଥଚ କେତେ ନିସ୍ଫଳ ଓ କେଡ଼େ ମିଥ୍ୟା ନୁହେଁ ଏ ଆସ୍ଫାଳନ ! ସମାଜରେ କ୍ଷୀଣ ଚାଞ୍ଚଲ୍ୟ ବି ଜାଗେନି ଏ ଆହ୍ୱାନରେ । ସର୍ବତ୍ର ଦୁର୍ନୀତି ଓ ଅନୈତିକତାର ପ୍ରାଦୁର୍ଭାବ । କଣ୍ଟ୍ରାକ୍ଟର, ଓକିଲ, ପୋଷ୍ଟମାଷ୍ଟର, ଡାକ୍ତର ତଥା ସ୍କୁଲ କଲେଜର ଶିକ୍ଷକ – ସମସ୍ତେ ଯେପରି ଠକ, ଖଣ୍ଟ ଓ ପିଣ୍ଡାରୀ । ଏମାନଙ୍କ ଅଜଗରୀ ଲାଳସାର ଗ୍ରାସ ଜ୍ୱାଳାରେ ସମାଜ ଓ ଜୀବନର ପ୍ରାଣ ଶୀତଳ ହୋଇ ଆସୁଛି ।

ସାଧୁତା, ନିର୍ମଳନିଷ୍ଠା, କର୍ତ୍ତବ୍ୟବୋଧ, ନିସ୍ୱାର୍ଥପରତା, ସତ୍ୟ ନ୍ୟାୟ ଓ ନୀତିନିୟମର ସୁସ୍ଥ ପରମ୍ପରା ଆମର ସମୂଳେ ବିନଷ୍ଟ । ଏଠି ପ୍ରତିଭାର ମୂଲ୍ୟନାହିଁ । ପ୍ରଣୟର ମୂଲ୍ୟ ନାହିଁ । ମାନବିକତାର

ଅର୍ଚ୍ଚନା ନାହିଁ- କେବଳ ପ୍ରବଞ୍ଚନା, ଶଠତା ଓ ସ୍ୱାର୍ଥପରତାର ଜୟଗାନ । ଏଇ ଶତାବ୍ଦୀ, ହିଁ ଆମର ଶତାବ୍ଦୀ; ବିଭୁ ପ୍ରସାଦର ଶତାବ୍ଦୀ, ନଟବରର ଶତାବ୍ଦୀ ମନମୋହନର ଶତାବ୍ଦୀ- । ଏଠି ଜୀବନ୍ତ ଜୀବନ କାହିଁ ? ଜୀବିକାର ବିଷଜ୍ୱାଳାରେ ତାହା ନିଷ୍ପ୍ରାଣ ନୁହେଁ କି ? ଲେଖକ ଜୀବନ ଓ ଜାତିର ଛାତିରେ ସ୍ତନଟିର କ୍ୟାନ୍‌ସର ଉପରେ ଛୁରି ଚଳେଇଛନ୍ତି । ପ୍ରକୃତରେ ଘୋର ଦରିଦ୍ର ଓ ନିଷ୍ଠୁର ଭାବରେ ଅସୁସ୍ଥ ଆମର ଏହି ଶତାବ୍ଦୀର ଏ ଜୀବନ । ଦୂରାରୋଗ୍ୟ ବ୍ୟାଧି । ହୁଏତ ନୈରାଶ୍ୟର ସଙ୍କେତ ଏଠି କ୍ୟାନସର ।

ଉପନ୍ୟାସର ସବୁ ମଣିଷ ଆମର ପରିଚିତ । ଏମାନେ 'ନରକିନ୍ନର' ମଣିଷ ପରି ଅନ୍ଧାରରେ ବିଚରଣ ନକରି ଆଲୋକରେ ଘୂରନ୍ତି । ଅଥଚ ଅଧିକାଂଶଙ୍କ ଅନ୍ତରରେ ଅନ୍ଧକାର ପୋଷିତ । ସବୁଗୁଡ଼ିକ କଳ୍ପନାର କିନ୍ତୁ ରୁଢ଼ ବାସ୍ତବର ପରିହାସରେ ଧୂସର । ତେଣୁ କିଏ କେଉଁଠି ତାଙ୍କୁ ଭେଟିଲେ ଲେଖକଙ୍କର କୌଣସି ଦାୟ ନାହିଁ ।

ସବୁ ଆଧୁନିକ ଉପନ୍ୟାସରେ ଲେଖକଙ୍କର ଆତ୍ମାର ସୁରଭି ସ୍ପର୍ଶ-ସମଧିକ । କୌଣସି ଏକ ବିଶେଷ ପରିବେଶରେ କି ପରିସ୍ଥିତିରେ ଉପନ୍ୟାସର ଏକ ବିଶେଷ ଚରିତ୍ର ଯେଉଁ ପ୍ରତିକିୟା ଦେଖାଏ, ସେ ସବୁ ଯେପରି ଲେଖକଙ୍କର; ଅବିକଳ ସେହି ପରିସ୍ଥିତିରେ ସେ ଠିକ୍ ସେହିପରି ବ୍ୟବହାର କରିଥାନ୍ତେ । ତେଣୁ ଉପନ୍ୟାସଟି ଲେଖକଙ୍କ Spiritual autobiography ରେ ପରିଣତ ହୁଏ । 'ଶତାବ୍ଦୀର ନଚିକେତା' ଲେଖକଙ୍କର Spiritual authbiography ଅଟେ କି ? ବହୁ ପାଠକ ବିଭୁପ୍ରସାଦ ମଧ୍ୟରେ ଶ୍ରୀ ଆଚାର୍ଯ୍ୟଙ୍କୁ ଆବିଷ୍କାର କରିଛନ୍ତି । ଏ ଭଳି କ୍ଷେତ୍ରରେ ଚରିତ୍ରର ଅନ୍ତର୍ଚ୍ଚେତନା ଆଲୋକରେ ସମୁଦ୍ଭାସିତ ହୁଏ ସତ, କିନ୍ତୁ ଚରିତ୍ର ସୃଷ୍ଟିର ନୈର୍ବ୍ୟକ୍ତିକ ରୂପରାଗ ନିସ୍ତେଜ ହୋଇପଡ଼େ । ତଥାପି ଆଧୁନିକ ଉପନ୍ୟାସର ଏ କଳାକୌଶଳ ଏହି ଯୁଗରେ ପ୍ରତିଷ୍ଠିତ ।

ଆଧୁନିକ ଉପନ୍ୟାସର ଅନ୍ତର୍ନିହିତ ଶକ୍ତିର ବାସ୍ତବ ପରିଚୟ ହେଉଛି ଏହାର ପୁନଃ ପୁନଃ ପ୍ରତିକ୍ରିୟାଶୀଳ ପରିବ୍ୟାପ୍ତି (Chain reaction) ଏହାହିଁ ଉପନ୍ୟାସର ରଚନା ଶୈଳୀର ମାନଦଣ୍ଡ । ଏହି ଚେନ୍ ରିଆକସନ ଥରେ ଆରମ୍ଭ ହୋଇଗଲେ ତାହା ତେଣିକି ଆପଣା ଛାଏଁଛାଏଁ ବ୍ୟାପିଯାଏ - ଭାବିବାକୁ ହୁଏ ନାହିଁ- କୌଣସି ବର୍ହି ସାହାଯ୍ୟର ପ୍ରୟୋଜନ ନଥାଏ କିଏ ? ଏହି ପ୍ରଶ୍ନରୁ ସମଗ୍ର ଉପନ୍ୟାସର ଜନ୍ମ ଓ ବିକାଶ । ପ୍ରଥମଖଣ୍ଡ ଏଠି ସମାପ୍ତ ମାତ୍ର, ଚେନ୍ ରିଆକ୍‌ସନ ଅସମାପ୍ତ ।

ଏ ରଚନା ଶୈଳୀର ଗୌରବ ଅକୃତ୍ରିମତା, କେବଳ ଭାବର ନୁହେଁ, ଭାଷାର ବି । ସର୍ବତ୍ର ବଳିଷ୍ଠ ଏକ ବ୍ୟକ୍ତିତ୍ୱ ଓ ସାହସୀ ଏକ ପୁରୋଦୃଷ୍ଟି ସକ୍ରିୟ ଓ ଚଞ୍ଚଳ । ବିଶ୍ୱସ୍ତ ଭାବ ଓ ବାସ୍ତବ ଅନୁଭୂତି ଏ ଉପନ୍ୟାସର ମର୍ମକଥା ଜୀବନ ଅନ୍ତରାଳର ଜୀବନ୍ତ ସତ୍ୟଗୁଡ଼ିକୁ ଲେଖକ ଖୋଜି ବାହାର କରିଛନ୍ତି, କେଉଁଠି ସଙ୍କୋଚ ନାହିଁ, ସଂଭ୍ରମ– ବୋଧର ସ୍ପର୍ଶ କାତରତା ପର୍ଯ୍ୟନ୍ତ ନାହିଁ । ସଙ୍କେତ ଧର୍ମୀ ଏଠି ବର୍ଣ୍ଣନା ଓ ଶାଣିତ ଏଠି ସମ୍ପୂର୍ଣ୍ଣ ନିରାଭରଣ ସଂଳାପ । ବହୁ ସ୍ଥଳରେ ବର୍ଣ୍ଣନାର Sense, tone ଓ attitude ପାଠକକୁ ଅଭିଭୂତ କରେ ।

'ଶତାବ୍ଦୀର ନଚିକେତା' ଏହି ସବୁ ଦୃଷ୍ଟିରୁ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଏକ ବିଶିଷ୍ଟ ସ୍ଥାନ ଲାଭ କରେ । ବିଷୟବସ୍ତୁ, ଦୃଷ୍ଟିଭଙ୍ଗୀ ଓ ରଚନାଶୈଳୀ ତା'ର ସ୍ୱତନ୍ତ୍ର । କେବଳ ସ୍ୱତନ୍ତ୍ର ନୁହେଁ, ବଳିଷ୍ଠ ବି । ଏହି ବଳିଷ୍ଠତା ଯୋଗୁ ହିଁ ଏ ଉପନ୍ୟାସ ଭଲ ଲାଗେ ।



# ଏଇ ଶେଷ ପଦଟି

**ଦାଶରଥି ଦାସ**

ଓଡ଼ିଆ କ୍ଷୁଦ୍ରଗଳ୍ପର ସମଗ୍ର ଐତିହ୍ୟରୁ ବିଚ୍ଛିନ୍ନ ରହି ଏକ ବଳିଷ୍ଠ ଭଙ୍ଗିରେ ନୂତନତ୍ୱ ଘେନି ଉପସ୍ଥିତ ହୋଇଛନ୍ତି ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟ । ଗଭୀର ଜୀବନାସକ୍ତି ସଦ୍ୟ ସତେଜ ସ୍ୱଚ୍ଛ ମୁକ୍ତ ଦୃଷ୍ଟି, ପ୍ରଖର ସାମାଜିକ ଓ ଅର୍ଥନୈତିକ ଚେତନା ତଥା ଶିଳ୍ପକ୍ଷେତ୍ରରେ ନିଜର ଆପାତସାଫଲ୍ୟକୁ ଛାଡ଼ି ନୂତନ ପଥରେ ଆଗେଇବାର ଦୁଃସାହସିକତା ତାଙ୍କ କ୍ଷୁଦ୍ରଗଳ୍ପକୁ ଏପରି ଏକ ବିଶିଷ୍ଟତା ଦେଇଛି ଯେ ତାହା ପାଠକର ସଶ୍ରଦ୍ଧ ମନୋଯୋଗ ଆକର୍ଷଣ ନକରି ରହିପାରେ ନାହିଁ । ଶ୍ରୀ ଆଚାର୍ଯ୍ୟ ଜଣେ ଆବେଗବାନ ଶିଳ୍ପୀ ନିଶ୍ଚୟ। ତେବେ ସେ କେବେ ଲକ୍ଷ୍ୟ ଅଚେତନ ନୁହନ୍ତି, ଆବେଗ ଧର୍ମର ପ୍ରାବଲ୍ୟ ତାଙ୍କ ଯୁକ୍ତିନିର୍ଭର ମନର ତୀକ୍ଷ୍ଣତାକୁ ସହଜରେ କାହିଁ ଶିଥିଳ କରିପାରେନାହିଁ । ସେ ଅଭ୍ୟସ୍ତ ରୀତିରେ ଗଳ୍ପ ଲେଖିବାକୁ ଆଗ୍ରହୀ ନୁହନ୍ତି କି ଚମକପ୍ରଦ ଏକ ପରିଣତି ବିଶିଷ୍ଟ କାହାଣୀ ବୟନରେ ଉତ୍ସାହିତ ନୁହନ୍ତି। ସେ ଗୁଣିଆ ନୁହନ୍ତି ଯେ ପ୍ଲଟର ଯାଦୁରେ ଔତ୍ସୁକ୍ୟ ପ୍ରକଟନ କରିବେ । ଯୁଗ ଓ ଜୀବନର ବାସ୍ତବତା ତାଙ୍କର ଧ୍ୟେୟ । ସେହି ବାସ୍ତବତା ଯେତେ ରଙ୍ଗହୀନ ହେଲେ ହେଁ କିଛି ଯାଏ ଆସେ ନାହିଁ । ଶିଳ୍ପ ପ୍ରସାଧନ ଅପେକ୍ଷା ତାଙ୍କ କ୍ଷୁଦ୍ରଗଳ୍ପରେ ସତ୍ୟ ସମୁଦ୍‌ଘାଟନ ବଡ଼କଥା । ଦୃଷ୍ଟିଭଙ୍ଗି ଅନେକତ୍ର ବ୍ୟଙ୍ଗାତ୍ମକ । ଭାଷା ସାଧାରଣ ଜନଜୀବନର ଅନ୍ତରଙ୍ଗ । ତାହା ତଥାକଥିତ ସାହିତ୍ୟିକ କୌଳିନ୍ୟକୁ ଏକପ୍ରକାର ଅସ୍ୱୀକାର କରେ । ତେଣୁ କେବେ କୃତ୍ରିମ ନୁହେଁ କି ନିସ୍ତେଜ ନୁହେଁ । ତାହା କିଛିଟା ବନ୍ୟ ନିଶ୍ଚୟ । ଅଥଚ ରମ୍ୟ ଓ ଧାବତ୍ ଶକ୍ତିସମ୍ପନ୍ନ । ନୂଆ ଉପମା ଓ ଚିତ୍ରକଳ୍ପ ଠାବେ ଠାବେ ମୁଣ୍ଡଟେକି ପାଠକକୁ ନୂଆ ନୂଆ ଉପଲବ୍‌ଧିର ଜଗତରେ ପହଞ୍ଚାଇ ଦେଇଥାନ୍ତି । କ୍ଷୁଦ୍ରଗଳ୍ପର ଆଙ୍ଗିକ କିଛିଟା ବିଶୃଙ୍ଖଳ । କେନ୍ଦ୍ରଚ୍ୟୁତି ନାହିଁ କହିଲେ ଭୁଲ ହେବ । ଅନେକତ୍ର ସାଧାରଣ ପାଠକକୁ ଅଭିଭୂତ କଲାଭଳି କିଛି ସହଜରେ ଦିଶେ ନାହିଁ । ତଥାପି ତାଙ୍କ ଗଳ୍ପକୁ ଉପେକ୍ଷା କରିବା ଅସମ୍ଭବ । ତୀକ୍ଷ୍ଣ ମନନ ଓ ସଦ୍ୟ ଶାଣିତ ପର୍ଯ୍ୟବେକ୍ଷଣ ଘେନି ସେଗୁଡ଼ିକ ଯେପରି ଯୁଗ ଓ ଜୀବନ ପ୍ରତି ଏକାଗ୍ର ହୋଇ ରହିଛନ୍ତି ତାହା ଆଦୌ ସାଧାରଣ କଥା ନୁହେଁ । ଅନ୍ତର୍ଲୋକର ଚିନ୍ତା ସହିତ ବହିର୍ଲୋକରେ ସଂଘଟିତ କ୍ରିୟାର ଯେଉଁ ଜଟିଳ ବ୍ୟଞ୍ଜନାଧର୍ମୀ ଯୋଗସୂତ୍ର ରହିଛି ତାକୁ ଆବିଷ୍କାର କରିବାରେ ଶ୍ରୀ ଆଚାର୍ଯ୍ୟ ସୁନିପୁଣ ବୈଦଗ୍‌ଧ୍ୟର ପରିଚୟ ଦେଇଛନ୍ତି । ଅପ୍ରତ୍ୟାଶିତ ଏକ ସମ୍ବାଦ ସେ ହଠାତ୍ ବାଢ଼ିବସନ୍ତି । କାର୍ଯ୍ୟକାରଣ ସୂତ୍ରଟିକୁ ଯଥାସମ୍ଭବ ପ୍ରଚ୍ଛନ୍ନ ରଖି ଘଟଣାରେ ବିଦ୍ୟୁତ ବିଳାସର ଚମକ ଓ ଚାଞ୍ଚଲ୍ୟ ଖେଳାଇ ପାରନ୍ତି । ବ୍ୟାଖ୍ୟା କରନ୍ତି କମ୍ । ଯାହା କହନ୍ତି ତାହା ପ୍ରାୟ ବ୍ୟଞ୍ଜନା ଓ ଚିତ୍ରକଳ୍ପର ନେପଥ୍ୟ ନିହିତ । ଆରମ୍ଭ ଶୀଘ୍ର ଶେଷରେ ପହଞ୍ଚିଯାଏ । ପାଠକ କାର୍ଯ୍ୟକାରଣ ଶୃଙ୍ଖଳଟିକୁ ଭଲଭାବେ ବୁଝୁ ବୁଝୁ ଗଳ୍ପ ସରିଯାଏ । ଗଳ୍ପ ସରିଲେ ଆବେଦନର ଆରମ୍ଭ । ତେଣୁ ତାଙ୍କ ଗଳ୍ପକୁ ଆମେ delayed-action- bomb କହିପାରିବା । (ଚେକଭଙ୍କ ଗଳ୍ପ

ପାଇଁ ଏହି ବିଶେଷଣଟି ପ୍ରଯୁକ୍ତ) ଅର୍ଥାତ୍ ଗଳ୍ପ ବାହାରେ ଅଛି ଗଳ୍ପର ଆବେଦନ । ପାଠକ ଗଳ୍ପରୁ ଯେଉଁ ଆନନ୍ଦ ଅନୁଭବ କରିବେ ତାହା ତାଙ୍କୁ ଜୀବନ୍ତ କଳ୍ପନା ବଳରେ ଅର୍ଜିବାକୁ ହେବ । ଗଳ୍ପଗୁଡ଼ିକ ଏଣେ ପୁଣି ସମସାମୟିକ ସମାଜ ଓ ଜନତା ସହିତ ସଂଘର୍ଷନିରତ । 'ବାପ ଓ ପୁଅ', 'ଚତୁର୍ଥୀ ରାତି', 'ନକ୍ସଲାଇଟ', 'ଧର୍ମହାଟ', ଓ 'ଦେଖିବୁ ଏଇକ୍ଷିଣା' ଆଦି ଗଳ୍ପ ଚିରନ୍ତନ ମାନବିକ ଭାବାବେଗକୁ ସୁଗଭୀର କୌଣସି ଉପଲବ୍ଧିରେ ପହଞ୍ଚାଇ ନପାରିଲେ ହେଁ ବଡ଼ ପ୍ରଭାବଶାଳୀ ହୋଇପାରିଛନ୍ତି । ସଂଯତ ଏକାଗ୍ର ଓ ବଳିଷ୍ଠ ସେଗୁଡ଼ିକର ଅଙ୍ଗୁଳି ନିର୍ଦ୍ଦେଶ । ଲକ୍ଷ୍ୟକୁ ସ୍ପଷ୍ଟ ଛୁଉଁଛି । କେବଳ କ୍ଷୁଦ୍ରଗଳ୍ପର ଧର୍ମ ରକ୍ଷା କରୁନାହିଁ, ସାମୟିକ ଓ ସ୍ନାୟୁବିକ ଉତ୍ତେଜନା କିପରି ସ୍ୱାଦ୍ୟ ଓ ସଂବେଦ୍ୟ ହୋଇପାରେ ତାର ପ୍ରମାଣ ମଧ ଦେଉଛି । 'ଦେଖିବୁ ଏଇକ୍ଷିଣା' ଗଳ୍ପଟି ଦେଖିବା । ଜନତା ଓ ଯୁବସଂପ୍ରଦାୟ ଶ୍ରୀ ଆଚାର୍ଯ୍ୟଙ୍କ ଗଳ୍ପର ଏକ ଏକ ଚରିତ୍ର । 'ଦେଖିବୁ ଏଇକ୍ଷିଣା'ର ସେହି ଯୁବ ଚରିତ୍ର । ସେ ବ୍ୟକ୍ତି ବିଶେଷ ନୁହେଁ ଏକ ଚେତନା, ନାମ-ଧାମରେ ପ୍ରକଟିତ ନୁହେଁ ଏକ ଯନ୍ତ୍ରଣା । ଭିତରେ ବଡ଼ ଦୁର୍ବଳ । ଅଥଚ ବାହାରେ ତାର ଅସମ୍ଭବ ଆସ୍ଫାଳନ । ଜାଗ୍ରତ କ୍ରୋଧ ଓ ନିଷ୍ଫଳ ଆକ୍ରୋଶରେ ସେ ଯେପରି ଆପାତ ଶୃଙ୍ଖଳିତ ଆମ ପ୍ରଚଳିତ ସମାଜର ସ୍ୱାସ୍ଥ୍ୟ ଓ ଶୁଦ୍ଧି ଦେଖି ଅସହିଷ୍ଣୁ ହୋଇ ପଡ଼ିଛି । ତେଣୁ ଯାହାକୁ ଦେଖେ, ସୁସ୍ଥ ସୁନ୍ଦର କି ଉଚ୍ଚତର, ତାକୁ ସେ ଚାଲେଞ୍ଜଦିଏ । ବିଚରାର ଏକୁଟିଆ ବାହାରିବାକୁ ସାହସ ନଥାଏ, ତେଣୁ ସେ ଦଳ ଖୋଜେ । ଦଳର କାହା ସହିତ କିନ୍ତୁ ସେ କୌଣସି ପ୍ରକାର ବନ୍ଧୁତା ବାନ୍ଧିପାରେନାହିଁ । ପ୍ରଚଳିତ ମୂଲ୍ୟବୋଧର ପରାଭବରେ ତା'ର ଆନନ୍ଦ । ଝିଅ ଗୁଡ଼ାକ ତା' ଦୃଷ୍ଟିରେ ବିଚ୍ କି ଉଇଚ । ପଞ୍ଚାଏ କୁକୁର ପରି ସେମାନେ ଝିଅମାନଙ୍କ ପଛରେ ଗୋଡ଼େଇବେ ସିନା ଏକୁଟିଆ କୌଣସି ଝିଅକୁ ଭଲପାଇପାରିବେ ନାହିଁ । ମା'ର ସ୍ନେହକୁ ବି ସେ ଚାଲେଞ୍ଜ ଦିଏ । ଗାଳ୍ପିକ ଭଗ୍ନାଂଶଟିଏ ଦେଖାଇ ବିଶ୍ୱବ୍ୟାପୀ ଅସ୍ଥିର ନଷ୍ଟମୂଲ୍ୟବୋଧ ଯୁବଚେତନାର ସ୍ୱରୂପ ଉଦ୍‌ଘାଟନ କରିଛନ୍ତି । 'ହୃଦକୋଲପ' ଓ 'ପରିବାର ବୃକ୍ଷ' ଗଳ୍ପ ଦୁଇଟି ସଙ୍କଳନର ବିଶେଷ ଆକର୍ଷଣ । ସମସାମୟିକ ସବୁ ସଂଶୟ ଓ ଜଟିଳତାକୁ ଅତିକ୍ରମ କରି ସେହି ଗଳ୍ପଦ୍ୱୟ ଧ୍ରୁବ ଅଖଣ୍ଡ ମାନବସତ୍ୟ ଦିଗରେ ଉନ୍ମୁଖ ହୋଇ ରହିଛନ୍ତି । ହୃଦକୋଲପଟି ଅପୂର୍ବ । ଆଜି ଆଧୁନିକତା ଶିକ୍ଷିତ ମଧ୍ୟବିତ୍ତ ମଣିଷର ସଂଶୟ ଓ ବିଚ୍ଛିନ୍ନତାବୋଧ ଭାରତର ଜାତୀୟ ସଂହତିକୁ ଚାଲେଞ୍ଜ୍ ଦେଉଛି । ସତେ ଯେପରି ସେମାନଙ୍କ ହୃଦୟରେ ଗୋଟେ ଗୋଟେ ବଡ଼ କୋଲପ ଝୁଲୁଛି । କୁଞ୍ଚିଲେନ୍ଥା କଳଙ୍କିଧରା । ଚିର ନିରୁଦ୍ଧ ପୁଣି ବିଶ୍ୱାସ ପରିଶୂନ୍ୟ ହୃଦୟ । ଗଳ୍ପଟି ଶିକ୍ଷିତ ମଧ୍ୟବିତ୍ତ ଭାରତୀୟ ମଣିଷଟିର ସଂଶୟ ଓ ସନ୍ଦେହରୁ ଆରମ୍ଭ । ତାହାର କାହାକୁ ବିଶ୍ୱାସ ନାହିଁ- ' ଏ ଦେଶର ମାଟି, ପାଣି, ପବନ, ମଣିଷ - ନା' କାହାରିକୁ ନୁହେଁ ।'' ଏବେ ଗୋଦାବରୀ ନଈ ପୋଲ ଉପରେ ଟ୍ରେନ ଅଟକିଲା । ତଳେ ନଈ ପାଣିରେ ବ୍ୟାପୀ ରହିଥାଏ ତଥାପି ସେହି ଅଦ୍ଭୁତ ସବୁଜରଙ୍ଗ ବଡ଼ ଆକର୍ଷଣୀୟ ଭାବରେ । ତାକୁ ଚାହିଁଦେବା ମାତ୍ରେ ତା'ର ଭିତରର ଭାରତାତ୍ମା ଚେଇଁ ଉଠିଲା। କୋଲପ ଫିଟିଲା। ମୁହୂର୍ତ୍ତକେ ସବୁଜ ହେଲା, ଶ୍ୟାମଳ, ଶ୍ୟାମଳ ହେଲା ନବଦୁର୍ବାଦଳ ଶ୍ୟାମଳ- ସାକ୍ଷାତ ରାମଚନ୍ଦ୍ର। ଗୋଦାବରୀ, ଶଙ୍କରାଚାର୍ଯ୍ୟ, ରାମାୟଣ, ରାମାୟଣ ପଢ଼ିଲାବେଳେ ବୋଉର 'ଓଃ' ଦୀର୍ଘଶ୍ୱାସ, ଭାରତବର୍ଷ ଓ ନବଦୁର୍ବାଦଳ ଶ୍ୟାମ ରାମଚନ୍ଦ୍ର ଆଦି ଚିତ୍ରକଳ୍ପାବଳି ଯୁଗପତ ସକ୍ରିୟ ରହି ଆତ୍ମାର ଅବିଚଳିତ ପ୍ରତ୍ୟୟଟିକୁ ପ୍ରତିଷ୍ଠା ଦେଇଦେଲେ। ପୂର୍ବସଂସ୍କାର ଫେରି ଆସିଲା । ଉତ୍ତର ଓ ଦକ୍ଷିଣ ଏକ ଅଭିନ୍ନ ହୋଇଗଲା। ଜୀବନର ଭ୍ରାନ୍ତି ସଂଶୟ ଓ ବିକ୍ଷୋଭ ଅଚିରେ

ପ୍ରଶମିତ ହେଲା। ଅଟକି ଥିବା ଗାଡ଼ିଟିକୁ ଗତିଶୀଳ କରି ଦେଇ ଗାଳ୍ପିକ ସେହି ପବିତ୍ର ମୁହୂର୍ତ୍ତଟିକୁ ବ୍ୟକ୍ତିଗତ ଉପଲବ୍‌ଧିରେ ଚିରନ୍ତନ ହେବାକୁ ଅବଶ୍ୟ ଦେଲେ ନାହିଁ । ସାଧାରଣ ଜୀବନର କୋଳାହଳ ମଧ୍ୟରେ କିନ୍ତୁ ସେହି ମୁହୂର୍ତ୍ତଟିର ଚିରନ୍ତନତା ଆମକୁ ବିଶ୍ୱାସ ଦିଏ, ରିକ୍ତ ହୃଦୟର ସବୁ ତିକ୍ତତା ଘୁଞ୍ଚାଇ ଦିଏ। ପ୍ରତୀକ ଓ ଚିତ୍ରକଳ୍ପର ସୁନିପୁଣ ପ୍ରୟୋଗରେ ଗଳ୍ପଟି ଯେପରି ଇଙ୍ଗିତ ଧର୍ମୀ ଠିକ୍ ସେପରି ଆତ୍ମାର ଅବିଚଳ ପ୍ରତ୍ୟୟରେ ବଡ଼ ଆଧାତ୍ମିକ । 'ପରିବାର ବୃକ୍ଷ' ଗଳ୍ପଟି ଅଖଣ୍ଡ ମାନବିକତାକୁ ଉଦ୍‌ବୋଧନ କରେ। ମଣିଷ ବ୍ୟକ୍ତିଗତ ଜୀବନର ସଂକୀର୍ଣ୍ଣ ପରିଧିରେ ନିଜ ପରିବାରଟିର ସୁଖ, ଶାନ୍ତି, ସ୍ୱାସ୍ଥ୍ୟ ଓ ନିରାପତ୍ତା ଲୋଡ଼େ । କିନ୍ତୁ ଭିତରର ଶିଳ୍ପୀ ମଣିଷଟି ସମଗ୍ର ମଣିଷ ଜାତିକୁ ତା'ର ପରିବାର ଆନ୍ତର୍ଭୁକ୍ତ ଦେଖେ । ନେସ୍‌ନାଲ୍ ହାଇୱେ ଛକ ଉପରେ ତାହାର ପଥ ନିର୍ଦ୍ଦେଶକ ସ୍ତମ୍ଭଟିର ଫଳକରେ କେବଳ ଟୁ-କାଲକାଟା କି ଟୁ-ମାଡ୍ରାସ ଲେଖା ନଥାଏ, ଥାଏ ଟୁ-ଟୋକିଓ, ଟୁ-ନ୍ୟୁୟର୍କ, ଟୁ-ଲଣ୍ଡନ...ଟୁ-ଭିଏଟ୍‌ନାମ । ବଡ଼ ସୁନ୍ଦର ପରିକଳ୍ପନା। 'ସେଇ ଶେଷ ପଦଟି' ପ୍ରଭାବ ମଧ୍ୟ କିଛି କମ୍ ନୁହେଁ । ସୋହାଗ ବଂଚିତା ନାରୀଟିଏ କରୁଣ କୋମଳ ଚିତ୍ର ସର୍ବବ୍ୟାପୀ ସହାନୁଭୂତିରେ ଛଳ ଛଳ ରହିଛି । 'ପିଠି' ଗଳ୍ପର ସମୁଦ୍ୟତ ନୈର୍ବ୍ୟକ୍ତିକ ବ୍ୟଙ୍ଗ ଆମର ସାମାଜିକ ଓ ରାଜନୈତିକ ଜୀବନର ସବୁ ଅସଙ୍ଗତି ଓ ଅବିଚାରକୁ ଉପହାସ କରୁଛି। ଗଳ୍ପଟି ଏକ ବଳିଷ୍ଠ ରୂପକ ବା ଆଲିଗରି । ଜାତୀୟ ବସ୍ ସର୍ଭିସର 'ଜନତା ଗାଡ଼ି'ର ପ୍ରତୀକଟିରେ ବର୍ତ୍ତମାନର ଭାରତବର୍ଷ ଅଭିବ୍ୟଞ୍ଜିତ । ଭାରତୀୟ ଜନତା ଅନ୍ଧ ବଧିର ଯାତ୍ରୀ। ଯେଉଁ ଲକ୍ଷ୍ୟ ସ୍ଥଳ ଆଡ଼କୁ ସେମାନେ ମୁହଁ କରି ବସିଛନ୍ତି ତାର ବିପରୀତ ଦିଗରେ ଟିକଟ କଟା ଯାଇଛି । ଏଥିରେ ଆମ ବସ୍ ସର୍ଭିସର ପ୍ରତ୍ୟକ୍ଷ ଦୁର୍ନୀତି ମାତ୍ର ଶରବ୍ୟ ବୋଲି ଭାବିଲେ ଭୁଲ ହେବ । ଶରବ୍ୟ ଏଠି ନେତୃତ୍ୱର ସର୍ବାଙ୍ଗୀନ ଶଠତା ଓ ପ୍ରବଞ୍ଚନା । ଭଦ୍ର ଶିକ୍ଷିତ-ବ୍ୟକ୍ତିମାତ୍ରେ ଓଟପକ୍ଷୀ ଓ ଝଡ଼ ଗଛ ନ୍ୟାୟରେ ବଂଚିଛନ୍ତି । ପ୍ରତିବାଦ କରିବ କିଏ ? କାହାର ଆଖି ଅଛି ? ପ୍ରତିରୋଧ ତ ଦୂରର କଥା, ପ୍ରତିବାଦ କଲାକ୍ଷଣି ମାଡ଼ ଓ ଅଭିଶାପ । ତଥାପି ପ୍ରତିବାଦ କରା ନଯାଉଛି ନୁହେଁ । ଦିନେ ପ୍ରତିବାଦ କରିଥିଲେ ଗାନ୍ଧିଜୀ । ସେଦିନ ପ୍ରତିବାଦ କଲା ସୁରଦାସ । ଅନ୍ତର୍ଦୃଷ୍ଟିର ପ୍ରତୀକ ରୂପେ ନାମଟି ସୁନିର୍ବାଚିତ। ସେମାନଙ୍କର ଅପରାଧ ହେଲା ଯେ, ସେମାନେ ଅନ୍ୟ ସମସ୍ତଙ୍କ ପରି ଅନ୍ଧ ନୁହନ୍ତି। ତେଣୁ ଅନ୍ଧ ବୋଲି ସାବ୍ୟସ୍ତ ହେଲେ, ମାଡ଼ ଖାଇଲେ । ବସ୍‌ରୁ ଓହ୍ଲାଇଗଲେ ପିଠିରେ ବହି ଅସମ୍ମାନ ଭାର । ସତ୍ୟପ୍ରତି ଆଗ୍ରହ ପ୍ରକାଶ କଲେ ଅନ୍ଧ ସମାଜରେ ଚକ୍ଷୁଷ୍ମାନ ମାଡ଼ଖାଏ । ଭଦ୍ର ଲୋକର ନିରାପତ୍ତା କାହିଁ ? ସ୍ୱାଧୀନତା କାହିଁ ? ଅଦୂର ଭବିଷ୍ୟତର ଅବଶ୍ୟମ୍ଭାବୀ ଆକ୍‌ସିଡ଼େଣ୍ଟ ପ୍ରତି ଯେପରି ଆମକୁ ସାବଧାନ କରି ଦିଆଯାଇଛି । ଗଳ୍ପଟିର ଭାଷା, ଚିତ୍ରକଳ୍ପ ବେଶ୍ ତାଜା ଓ ଟଟକା । ଦୃଷ୍ଟିଭଙ୍ଗି ବ୍ୟଙ୍ଗାତ୍ମକ । ଆବେଗ ବିଷାଦମୟୀ ।

ନିଜେ ଖୋଜି ଶ୍ରୀ ଆଚାର୍ଯ୍ୟ ତାଙ୍କ ଗଳ୍ପର ଆଙ୍ଗିକ, ଭାଷା ଓ ବକ୍ତବ୍ୟ ଆଜି ପାଇ ସାରିଲେଣି । ସାଧୁ, ସାହିତ୍ୟିକ ଓ ଶ୍ରମିକ ସେ । ଯୁଗପତ କର୍ମଜ୍ଞାନ ଭକ୍ତିରେ ବିଶ୍ୱାସୀ । ସବୁ ଗଳ୍ପରେ ମାନବିକତାଉଦ୍‌ବୋଧନର ପୁଣ୍ୟ ପ୍ରେରଣା ସହିତ ସେ ସତ୍ୟ ପ୍ରତି ଆନ୍ତରିକତା ପୋଷିଥାନ୍ତି ତାଙ୍କର ନିର୍ଭୀକ ଚିନ୍ତା, ଏକାଗ୍ର ଆଙ୍ଗିକ ଓ ସତେଜ ଭାଷା ଆମକୁ ମୁଗ୍‌ଧ ଓ ଚକିତ କରିଥାଏ ।



# ଶାନ୍ତନୁ ଆଚାର୍ଯ୍ୟଙ୍କ ଗଳ୍ପରେ ଜୀବନ ଜିଜ୍ଞାସା

**ଦୀନବନ୍ଧୁ ମିଶ୍ର**

ସାଂପ୍ରତିକ ଯୁଗର କଥାକାର ସମ୍ମୁଖରେ ବିଶ୍ୱରୂପଧାରୀ ମଣିଷର ଜୀବନ ଯଥେଷ୍ଟ ସଂପ୍ରସାରିତ ଏବଂ ନୂଆ ନୂଆ ଚେହେରାମାନ ଧରି ବିଦ୍ୟମାନ। ତାହା ଯେତିକି ବିଶାଳ ସେତିକି ଅସ୍ପଷ୍ଟ, ଯେତିକି ଗଭୀର ସେତିକି ଦୁର୍ବୋଧ ଏବଂ ଯେତିକି ପ୍ରସାରିତ ସେତିକି ଜଟିଳ। ଆଜିର କଥାକାର ଏହି ଚରିତ୍ର ବିଶିଷ୍ଟ ଜୀବନକୁ କେନ୍ଦ୍ର କରି ଗଳ୍ପ ଲେଖେ। ମାତ୍ର ଜୀବନର କେଉଁ ରୂପର ଚିତ୍ର ସେ ତା'ଗଳ୍ପ ଭିତରେ ଅଙ୍କନ କରିବ ? ମନର କେଉଁ ସଂଗୁପ୍ତ ସ୍ତରକୁ ସେ ପ୍ରକାଶ କରିବ ? ଚେତନାର କେଉଁ ପର୍ଯ୍ୟାୟରେ ସେ ମନୁଷ୍ୟର ପରିଚୟ ଖୋଜିବ ? ଜୀବନ ସମ୍ପର୍କରେ କିପରି ବ୍ୟାଖ୍ୟାଟିଏ ଉପସ୍ଥାପିତ କଲେ ସେ ଜୀବନର ଉପଯୁକ୍ତ ତଥ୍ୟଟିଏ ଦେଇ ପାରିବ ? ଏହାହିଁ ସାଂପ୍ରତିକ ଗଳ୍ପ ଲେଖକର ସମସ୍ୟା। ତେଣୁ ଆଜିର ଗଳ୍ପ ଲେଖକ ପକ୍ଷରେ ଜୀବନ ଜିଜ୍ଞାସା ହିଁ ପ୍ରାଥମିକ କାର୍ଯ୍ୟ। ଜୀବନକୁ ଜାଣିସାରିବା ପରେ, ଜୀବନ ସମ୍ପର୍କରେ କିଛି ଅଭିଜ୍ଞତା ଲାଭ କରିସାରିବା ପରେ, ତାକୁ ଇ ଭିତ୍ତିକରି ଗଳ୍ପଟିଏ ହୁଏତ ଲେଖାଯାଇପାରେ।

ଏହି ଜୀବନ ଜିଜ୍ଞାସା ପ୍ରସଙ୍ଗଟି ସାଂପ୍ରତିକ ଗଳ୍ପ ରଚନା ପାଇଁ ଅଧିକ ଗୁରୁତ୍ୱପୂର୍ଣ୍ଣ ଏବଂ ଅବିଚ୍ଛେଦ୍ୟ ଉପାଦାନ। ତେଣୁ "ଏ ଯୁଗର କଥା ସାହିତ୍ୟରେ ଏକ ବିଶେଷ ସମସାମୟିକ ଧାରା ହେଲା ଜୀବନ ଜିଜ୍ଞାସା। ପ୍ରଥମେ ଲେଖକ ଦ୍ୱାରା ସମସ୍ୟାର ଉପସ୍ଥାପନ ମାଧ୍ୟମରେ। ତା'ପରେ ଚରିତ୍ରର ଆତ୍ମଚିନ୍ତା ଭିତରେ ଦାର୍ଶନିକତାର ସ୍ୱଚ୍ଛଳ ଅବତାରଣା।''(୧)

କଥାଶିଳ୍ପୀ ଶାନ୍ତନୁ କୁମାର ଆଚାର୍ଯ୍ୟ ସାଂପ୍ରତିକ କାଳର ଜଣେ ବିଶିଷ୍ଟ ଜୀବନ ଅନୁସନ୍ଧାନୀ ଏବଂ ଜୀବନ ବ୍ୟାଖ୍ୟାକର। ଜୀବନ ଜିଜ୍ଞାସା ହିଁ ତାଙ୍କ ସୃଷ୍ଟି ଶିଳ୍ପର ମୂଳ ପ୍ରେରଣା। ଗଳ୍ପ ଓ ଉପନ୍ୟାସ ନିର୍ମାଣ ପାଇଁ ସାଧାରଣ ମଣିଷହିଁ ତାଙ୍କର ମୁଖ୍ୟ ଉପାଦାନ। ରୋମାଣ୍ଟିକ୍ ବା ପଦ୍ମଭୁକ୍ ମଣିଷ ନୁହେଁ, କିମ୍ବା ତ୍ରିତଳ ନିବାସୀ ମଣିଷ ନୁହେଁ ଜୀବନର ସାଧାରଣ ଘଟଣାବଳୀ ଭିତରୁ ଯେଉଁ ମଣିଷଟି ତିଆରି, ତାହାରି ଭିତରେ ସେ ମଣିଷର ପ୍ରକୃତ ପରିଚୟ ଖୋଜନ୍ତି, ଜୀବନ ସତ୍ୟର ଆଲୁଅ ଟିକିଏ ତା'ରି ଭିତରେ କିପରି ଲୁଚିକରି ରହିଯାଇଛି,ନିଜର ଗଭୀର ଅର୍ନ୍ତଦୃଷ୍ଟି ବଳରେ ସେ ତାହାକୁ ଆବିଷ୍କାର କରି ଗଳ୍ପ କଳେବରରେ ତାହାର ବିନ୍ୟାସ କରନ୍ତି। ଏହି ପ୍ରସଙ୍ଗରେ ଏକ ସାକ୍ଷାତ୍‌କାରରେ ସେ କହନ୍ତି,- "ମୋ ଜୀବନ ଦର୍ଶନର କେନ୍ଦ୍ରସ୍ଥଳ ସାଧାରଣ ମଣିଷ(Ordinary man)। ମୁଁ ଏମାନଙ୍କୁ ବେଶ୍ ବୁଝିଛି ଓ ଏମାନଙ୍କ ପାଖରେ ମୁଁ ନିଜକୁ ଅତି ନିରାପଦ ମନେ କରେ। ଏଇ ଦୃଷ୍ଟିରୁ ମଣିଷର ଜୀବନ ଦର୍ଶନ ମୁଁ ଏଇ କ୍ଷେତ୍ର(field) ରୁ ଗ୍ରହଣ କରେ ଓ ମଣିଷର ବ୍ୟାଖ୍ୟା ପାଇଁ ଏହି ଦର୍ଶନକୁ ମାନଦଣ୍ଡ ରୂପେ ପ୍ରୟୋଗ କରେ।''(୨)

ଜୀବନ ଅଧ୍ୟୟନ କରି ସେ ଯେଉଁ ସତ୍ୟରେ ଉପନୀତ ହୁଅନ୍ତି, ସେଥିରୁ ଜୀବନ ଭିତରେ ଥିବା ଯୋଡ଼ିଏ ରୂପର ପରିଚୟ ସେ ପାଆନ୍ତି। ଗୋଟିଏ ମଣିଷର କ୍ଷଣସ୍ଥାୟୀ ଚଳନ୍ତି ରୂପ। ଅନ୍ୟଟି ତା'ର ସ୍ଥାୟୀ ରୂପ। ପ୍ରଥମଟି ସ୍ଥୁଳରୂପ। ଏଥିରେ ସାମାଜିକ ରାଜନୀତିକ ଏବଂ ଆର୍ଥନୀତିକ ମଣିଷ ଅନ୍ତର୍ଗତ। ଅନ୍ୟଟି ତା'ର ସୂକ୍ଷ୍ମ ରୂପ। ଏହା ତା'ର ଚେତନାର ରୂପ। ଗୋଟିଏ ତା'ର ବର୍ତ୍ତମାନର ରୂପ, ଅନ୍ୟଟି ଭବିଷ୍ୟତର ରୂପ। ସେ କହନ୍ତି- ''ଯେଉଁ ଗଳ୍ପରେ ମୁଁ ମଣିଷର ସ୍ୱରୂପ ଓ ଭବିଷ୍ୟତ ଦେଖି ନ ପାରେ, ସେପରି ଗଳ୍ପ ମୁଁ ପଢ଼ିପାରେ ନାହିଁ।"(୩)

ତାଙ୍କ ରଚିତ ଗଳ୍ପ ଓ ଉପନ୍ୟାସର ଘଟଣା ଓ ଚରିତ୍ର ବିନ୍ୟାସ ଅନ୍ତରାଳରେ ସେଇ ମଣିଷ ହିଁ ବିଦ୍ୟମାନ। ମଣିଷକୁ ବାଖ୍ୟା କରି ତା' ମଧ୍ୟରୁ ଏକ ତାତ୍ପର୍ଯ୍ୟାର୍ଥ ବାହାର କରିବା ପାଇଁ ସେ ସର୍ବଦା ଯତ୍ନଶୀଳ। ସେ କହନ୍ତି, ''ଗଳ୍ପ ଓ ଉପନ୍ୟାସ ଉଭୟରେ ମୁଁ ଖୋଜେ ଘଟଣାର କାରଣ, ଚରିତ୍ରର ଅର୍ଥ ଓ ସବୁ ଉପରେ ଏକ ସ୍ୱାଭାବିକ ଗତିରେ ବିକାଶ ପାଇଥିବା ଏକ ଅର୍ଥ ବା ମିନିଂ,ଯେଉଁଥିରୁ ମୋତେ ଦେଖାଯାଏ ମଣିଷର ସମସାମୟିକ ଓ ଚିରନ୍ତନ ରୂପ।''(୪)

ମଣିଷର ସମସାମୟିକ ରୂପର ବ୍ୟାଖ୍ୟାରୁ ହିଁ ତାଙ୍କର ଜୀବନ ବିଶ୍ଳେଷଣ ଆରମ୍ଭ ଏବଂ ଏହା ବିକାଶପ୍ରାପ୍ତ ହୋଇ ଏକ ପରିଣତ ପର୍ଯ୍ୟାୟରେ ଉପସ୍ଥାପିତ ହେବା ବେଳକୁ ମଣିଷର ଏକ ଚିରନ୍ତନ ରୂପ ତାଙ୍କ ଦୃଷ୍ଟିଗୋଚରକୁ ଆସିଯାଏ। ତାହାହିଁ ତାଙ୍କ ଜୀବନ ବିଶ୍ଳେଷଣର ଧାରା। ଏହି ଭିତରେ ରଚିତ ଗଳ୍ପ ମଧ୍ୟ ତାଙ୍କର ଅତି ପ୍ରିୟ। ସେ କହନ୍ତି,''-ଗଳ୍ପର ଉଦ୍ଦେଶ୍ୟ ଜଳେଇବା, ଚମକେଇବା ବା ଧମ୍‌କେଇବା ପ୍ରଭୃତି କାର୍ଯ୍ୟ ନୁହେଁ। ଜୀବନର ଜ୍ୟୋତିଃ ପ୍ରକାଶ ହିଁ ଏହାର ମୁଖ୍ୟ ଉଦ୍ଦେଶ୍ୟ। ମୁଁ ଏହି ପ୍ରକାରର ଗଳ୍ପ ଲେଖିବାକୁ ଓ ପଢ଼ିବାକୁ ଭଲପାଏ।''(୫)

ମଣିଷ ଏଠି ଜନ୍ମନିଏ ଅନ୍ଧାର ଭିତରେ ଏକ ଅବକାଶିତ ଚେତନା ନେଇ। ଶାନ୍ତନୁ ବାବୁ ମଧ୍ୟ ଅନ୍ଧାର ଭିତରେ ଦରାଣ୍ଡି ହେଉଥିବା ମଣିଷକୁ ଭେଟନ୍ତି ଏକ ନୈରାଶ୍ୟମୟ ପରିବେଶରେ।- " କିଟି କିଟି ଅନ୍ଧାର। ଦୀପରେ ତେଲ ନଥାଏ। ବାପ ଯାଇଥାଏ କେଉଁ ବିଦେଶକୁ। ଦିଆସିଲି ମୁଠାଏ କେଉଁଠି ରଖିଥିଲି କେଜାଣି ? ଅନ୍ଧାର ଅନ୍ଧାର ଚାରିଆଡ଼େ। କିଟି କିଟି ଅନ୍ଧାର ଲୋ ମା ! ତୁ ଜନମ ହେଲୁ ସେଇ ଅନ୍ଧାରରେ।"(ଦକ୍ଷିଣାବର୍ତ୍ତ)

ଏହି ଭିତରୁ ମଣିଷକୁ ଉଦ୍ଧାର କରିଆଣି ତା'ଭିତରେଥିବା ଅସୀମ ସମ୍ଭାବନାର ସନ୍ଧାନ କରିବା ଏବଂ ତାକୁ ଆଣି ଏକ ଆଲୋକମୟ ରାଜ୍ୟରେ ପହଞ୍ଚାଇ ଦେବାରେ ଶାନ୍ତନୁ ଆଚାର୍ଯ୍ୟ ବିଶ୍ୱାସୀ ଏବଂ ନିଜ ଗଳ୍ପ ମାଧ୍ୟମରେ ଏହି କାର୍ଯ୍ୟ ସଂପାଦନ କରିବା ପାଇଁ ସେ ନିଷ୍କାପଟ ଭାବରେ ତତ୍ପର। ସେ ବିଶ୍ୱାସ କରନ୍ତି,- ମଣିଷକୁ ସ୍ଥାନ କାଳ ବହିର୍ଭୂତ ଅନ୍ୟ ଏକ ଚେତନାର ପରିପ୍ରକାଶ ରୂପେ ପ୍ରତିଷ୍ଠିତ କରିବାକୁ ଆଜିର ସାହିତ୍ୟିକର ପ୍ରଚେଷ୍ଟା।(୬)

ମନୁଷ୍ୟର ଶରୀର ଭିତରେ ଯେଉଁ ଚେତନା ଶକ୍ତି ବିଦ୍ୟମାନ ରହିଛି,ସ୍ଥୁଳରୁ ସୂକ୍ଷ୍ମ ଆଡ଼କୁ ଏବଂ ଭୂମିରୁ ଭୂମାକୁ ତାହା କ୍ରମଶଃ ବିକାଶଶୀଳ। ''ମନୁଷ୍ୟର ଏହି ଶରୀର ସେହି ଅଶରୀର ସାଧନ ଅଟେ ଯାହା କୌଣସି ଲକ୍ଷ୍ୟ ଆଡ଼କୁ ଅଗ୍ରସର ହେଉ ଥିବା ଅବସ୍ଥାରେ ଶରୀର ଭିତରେ ବାସ କରେ।" (୭)

ଚେତନାର ଏହି କ୍ରମବିକାଶ ପର୍ଯ୍ୟାୟକୁ ଗଳ୍ପ ଭିତରେ ଉପସ୍ଥାପିତ କଲେ ତାହା ଅବାସ୍ତବ ପରି ଜଣାଯାଏ। ମାତ୍ର କଳା ମାଧ୍ୟମରେ ବାସ୍ତବତାର ଭୂମିରେ ଉପସ୍ଥାପିତ ହେବାକୁ ହେଲେ ଅବାସ୍ତବ ଘଟଣାର ରୂପାୟନ ଆବଶ୍ୟକ । ''ଅବାସ୍ତବ ଏହି ବାସ୍ତବତା ସାମାଜିକ ବାସ୍ତବତା ହୋଇପାରେ କିମ୍ବା ଜୀବନର ପ୍ରାତ୍ୟହିକ ବାସ୍ତବତା ହୋଇପାରେ, ମାତ୍ର ଏହିସବୁ ବାସ୍ତବତା ଅପେକ୍ଷା ଅନ୍ୟ ଏକ ବାସ୍ତବତା ଅଛି, ଯାହା ମନୁଷ୍ୟର ପ୍ରକୃତ ରୂପ। ତାହା ଚେତନାର ରୂପ। ମନୁଷ୍ୟର ଏହି ଚେତନାକୁ ତା'ର ନିଜସ୍ୱ ବିକାଶପ୍ରାପ୍ତ ବାସ୍ତବତାର ରାଜ୍ୟରେ ନେଇ ପହଞ୍ଚେଇ ଦେବା କଳାର କାର୍ଯ୍ୟ। କଥା ସାହିତ୍ୟର କର୍ତ୍ତବ୍ୟ।

ଏଗୁଡ଼ିକ ସବୁ କେବଳ ଦର୍ଶନ ଶାସ୍ତ୍ରର ଗଭୀର ତାତ୍ତ୍ୱିକ ମତବାଦ ନୁହେଁ। ପ୍ରାୟ ଘଟଣା ବିନ୍ୟାସ ବୋଲି ଯାହାକୁ କୁହାଯାଇଛି ତାହା ବାସ୍ତବରେ କଳାର ଆବଶ୍ୟକୀୟ ସାମଗ୍ରୀ। ଏହି ସାମଗ୍ରୀ ସାହାଯ୍ୟରେ ବାସ୍ତବତାରେ ପହଞ୍ଚିହୁଏ। ବାସ୍ତବତା ସାଧାରଣ ବର୍ଣ୍ଣନାତ୍ମକ ଭାଷା ଦ୍ୱାରା ଓ ସରଳ ଘଟଣା ବିନ୍ୟାସ ଦ୍ୱାରା ସଂପୂର୍ଣ୍ଣ ଅପହଞ୍ଚ। ବାସ୍ତବତାର ପ୍ରକୃତ ଉଚ୍ଚତାକୁ ଯିବା ପାଇଁ ଓ ତାକୁ ସ୍ପର୍ଶ କରିବାକୁ ହେଲେ କେତେକ ପାହାଚ ଦରକାର ।"(୮)

ଏହି ବିଚାର ଜୀବନ ସଂପର୍କିତ ଏବଂ ଜୀବନର ପ୍ରାତ୍ୟହିକ ଅଭିଜ୍ଞତାରୁ ସଂଜାତ। କଳାକାର କୌଣସି ଦାର୍ଶନିକ ମତବାଦର ପ୍ରଚାରକର୍ତ୍ତା ନୁହେଁ। ବଂର ତା' ଗଳ୍ପ ଜଗତ ଭିତରେ ଜୀବନ ପ୍ରତି ଯେଉଁ ଦୃଷ୍ଟିକୋଣ ପ୍ରକାଶିତ ହୁଏ, ସେଥିରୁ ଦାର୍ଶନିକ ମତବାଦର ଉତ୍ପତ୍ତି ଘଟିପାରେ।

ଶାନ୍ତନୁ ବାବୁ କହନ୍ତି- ଜୀବନ ଅଭିଜ୍ଞତାର ଲେଖକ ତା'ର ଦର୍ଶନ ପ୍ରତ୍ୟକ୍ଷ ସ୍ଥିରୀକୃତ କରେ ଓ ପ୍ରତିଷ୍ଠିତ ଦର୍ଶନ ସହିତ ଏହାର ସାଯୁଜ୍ୟତା ପରୀକ୍ଷା କରେ। ଯଦି ପ୍ରତିଷ୍ଠିତ ଦର୍ଶନ ତତ୍କାଳୀନ ବାସ୍ତବ ଅଭିଜ୍ଞତା ଠାରୁ ଭିନ୍ନ ହୁଏ, ତେବେ ଲେଖକ ପାରମ୍ପରିକ ଦର୍ଶନକୁ ଉପେକ୍ଷା କରେ। ଏହିପରି ନୂତନ ଦର୍ଶନର ଜନ୍ମ ଦାତା ରୂପେ ପ୍ରତି ଯୁଗର ଲେଖକମାନେ ସ୍ୱୀକୃତି ପାଇଥାନ୍ତି।(୯)

ମୋଟ ଉପରେ, କଥାଶିଳ୍ପୀ ଶାନ୍ତନୁ ଆଚାର୍ଯ୍ୟ ଜୀବନ ଅଧ୍ୟୟନ କରିବା ଅବକାଶରେ ଯେତେବେଳେ ଯେଉଁ ରୂପଟିକୁ ଦେଖିଛନ୍ତି, ତାହାରି ଅନୁପ୍ରେରଣା ନେଇ ଗଳ୍ପଟିଏ ଲେଖିଛନ୍ତି। ଏହିପରି ଭାବରେ ଜୀବନର ବିବିଧ ରୂପର ଚିତ୍ର ତାଙ୍କ ଗଳ୍ପରେ ପ୍ରକାଶିତ ହୋଇଅଛି। ତେଣୁ ଗଳ୍ପ ଗୁଡ଼ିକରେ ବିଭିନ୍ନ ଦୃଷ୍ଟିଭଙ୍ଗୀ ଓ ବିଭିନ୍ନ ବିଚାର ଅଭିବ୍ୟକ୍ତି ଲାଭ କରିଅଛି।

'ଏ ଚଢେଇର ନାଁ କଅଣ' (୧୦) ଗଳ୍ପରେ ଜୀବନର ଏକ ଦିବ୍ୟ ଚେତନାମୟ ରୂପର ଅଭିବ୍ୟକ୍ତି ଘଟିଅଛି । ଚେତନାର ବାର୍ତ୍ତା ସମସ୍ତଙ୍କ ପାଖରେ ପହଞ୍ଚିପାରେ ନାହିଁ। ଚେତନାର ବଂଶୀସ୍ୱନ ସମସ୍ତଙ୍କ ମନରେ ଆବେଗ ସଞ୍ଚାର କରିପାରେ ନାହିଁ। ସଂସାରର ଅନ୍ଧାରକୁ ଯେଉଁମାନେ ଆଲୋକ ବୋଲି, ମିଥ୍ୟାକୁ ସତ୍ୟ ବୋଲି ଏବଂ କ୍ଷଣସ୍ଥାୟୀକୁ ଚିରନ୍ତନ ବୋଲି ମନେ କରନ୍ତି, ଚେତନାର ଚିରନ୍ତନ ରୂପକୁ ସେମାନେ ଉପଲବ୍ଧି କରିପାରନ୍ତି ନାହିଁ। ଗଳ୍ପଟି ପ୍ରତୀକଧର୍ମୀ। ଏକ ଅପୂର୍ବ ଚଢ଼େଇର ସ୍ୱର ଲେଖକଙ୍କ ମନ ପ୍ରାଣ ଚୈତନ୍ୟକୁ ଅଭିଭୂତ କରିଦେଇଛି। ହୁଏତ ଚଢ଼େଇଟି ଉପନିଷଦ ବର୍ଣ୍ଣିତ ଦୁଇଟି ଚଢ଼େଇ ମଧ୍ୟରୁ ଗୋଟିଏ। ଏହି ଚଢ଼େଇଟି ଜୀବନ ବୃକ୍ଷର ସ୍ୱାଦୁଫଳ ଭକ୍ଷଣ ନକରି ଅନାସକ୍ତ ଭାବରେ କେବଳ ସାକ୍ଷୀରୂପେ ଅବସ୍ଥାନ କରି ହୁଏତ ସବୁକଥା ଦେଖୁଥାଏ ତାରି ସ୍ୱର ଲେଖକଙ୍କୁ ଉତଳା କରି ତୋଳିଛି। ସେ ପକ୍ଷୀର ସ୍ୱର ପୁଣି ଅସାଧାରଣ ବର୍ଣ୍ଣନାତୀତ। ସେ ସ୍ୱର ଶୁଣିବାକୁ ପାଆନ୍ତି କୋଟିକେ

ଗୋଟିଏ। ଲେଖକ ସେ ସ୍ୱର ଶୁଣିବାକୁ ପାଇଛନ୍ତି। ହେଲେ ଚଢ଼େଇଟିକୁ ତ ସେ ଦେଖିବାକୁ ପାଇ ନାହାନ୍ତି ! ସେ ଚଢ଼େଇର ନାଁ କଣ ? କିମିତି ତା'ର ରୂପ ? କଣ ତା'ର ପରିଚୟ ? ଚଢ଼େଇଟି ସମ୍ପର୍କରେ ଲେଖକଙ୍କ ମନରେ ଏହିପରି ଅସୀମ ଜିଜ୍ଞାସା...।

ସାଂସାରିକ ଜୀବନର ବିଭିନ୍ନ ବ୍ୟସ୍ତତା ଭିତରେ ସେ ଅଲୌକିକ ଚଢ଼େଇର ଅନୁସନ୍ଧାନ ସମ୍ଭବ ହୋଇପାରେ ନାହିଁ। ସେ ଅଞ୍ଚଳର ବହୁ ଲୋକଙ୍କୁ ଲେଖକ ଦିବ୍ୟସ୍ୱର ତୋଳୁଥିବା ସେଇ ଚଢ଼େଇଟିର ପରିଚୟ ବିଷୟରେ ଅବଶ୍ୟ ପଚାରୁଛନ୍ତି। କିନ୍ତୁ ବିଭିନ୍ନ ବ୍ୟକ୍ତି ଭିନ୍ନ ଭିନ୍ନ କଥା କହିଛନ୍ତି। କିଏ ତାକୁ ପେଚା ବୋଲି କହିଛି, ଅନ୍ୟ କେହି ତାକୁ ଟେଣ୍ଟେଇ ବୋଲି ନାମିତ କରିଛି। ଲେଖକ ବୁଝିଲେ, ଏ ଅଞ୍ଚଳରେ କେହି ହେଲେ ସେ ଚଢ଼େଇଟିକୁ ଠିକଣା କରି ଚିହ୍ନି ନାହାନ୍ତି। ତେବେ କାହାକୁ ଏ ବିଷୟରେ କଣ ପଚରାଯିବ ?

ଅଫିସ୍‌ର ବଡ଼ବାବୁ ଏବଂ ଅନ୍ୟମାନେ ଜୀବନର ଜଞ୍ଜାଳ ନେଇ ଏତେ ବ୍ୟସ୍ତ ଯେ ପକ୍ଷୀର ସ୍ୱର ଶୁଣିବାର ଅବକାଶହିଁ ସେମାନଙ୍କର ନଥାଏ। ଯୁବନେତା ନରେନ୍ଦ୍ର ମହାପାତ୍ର ଏବଂ ଅନ୍ୟମାନେ ଅନଶନ, ଶୋଭାଯାତ୍ରା ଓ ହରତାଳ ଇତ୍ୟାଦି ନେଇ ବ୍ୟସ୍ତ। ଚେତନା ରାଜ୍ୟର ଦିବ୍ୟ ଅନୁଭୂତି କଥା ପଚାରିଲେ,ଅର୍ଥାତ୍ ଚଢେଇଟିର ସ୍ୱର ଓ ତାର ପରିଚୟ କଥା ପଚାରିଲେ ଏମାନେ ଚିଡ଼ି ଉଠନ୍ତି ବା ଅର୍ଥହୀନ ହସ ଟିକିଏ ହସନ୍ତି କେବଳ।

ବର୍ତ୍ତମାନ ଯୁଗ ପରି ଅତ୍ୟନ୍ତ ବିଜ୍ଞାନ ସମୃଦ୍ଧ ଯୁଗରେ ମଧ ଏପରି କିଛି ଘଟଣା ଘଟେ, ଯାହାକୁ ନିୟନ୍ତ୍ରଣ କରିବା ବା ଯାହାର ଅର୍ଥକୁ ଠିକ୍ ଭାବରେ ବୁଝିପାରିବା ବିଜ୍ଞାନର ସୀମାବାହାରେ। 'ଭୁଲିଗଲ କିରେ' ୧୧-ଗଳ୍ପରେ ଏହିପରି ଏକ ବିଜ୍ଞାନ ନିୟନ୍ତ୍ରଣ ବହିର୍ଭୂତ ବିଷୟରେ ଅବତାରଣା କରାଯାଇଛି। ଗୋଟିଏ ନଈକୂଳ ଗାଁ ଅଞ୍ଚଳକୁ ବିଜୁଳି ଯୋଗାଣ ପାଇଁ ପୋତା ଯାଉଥିବା ଟ୍ରାନ୍ସମିସନ୍ ଟାୱାର ନଈର ଅତଡ଼ାରେ ବାରମ୍ବାର ଖସି ପଡୁଛି। ଏହାର ପ୍ରତିକାର ବୈଜ୍ଞାନିକ ରୀତିରେ କରାଯିବା ସମ୍ଭବପର ହୋଇପାରୁ ନାହିଁ। କଣ୍ଟ୍ରାକ୍ଟର ସିଂ ସେଥିପାଇଁ ଇଞ୍ଜିନିୟର୍ ମଣ୍ଡଳଙ୍କୁ ପରାମର୍ଶ ଦେଇ କହିଛି,-"ଆମକୁ ସରେଣ୍ଡର୍ କରିବାକୁ ପଡିବ ସାର୍ ! ନଦୀ ଦେବତାର ଦାବି ପୂରଣ କରିବାକୁ ପଡିବ। ନଦୀ, ସିଏ ପୁଣି ଏକ ଦେବତା, ତା'ର ପୁଣି ଦାବି ! କି ପ୍ରକାର ଦାବି ? ଉତ୍ତର ହେଲା-ଯଦି ବଳିଟିଏ ଦବ, ଅନ୍ୟ କାହାରି ନୁହେଁ, ନିଜ ପୁଅକୁ ...।"

ଯାହା ହେଉ, ଶେଷକୁ ସ୍ଥିର ହେଲା ଗୋଟାଏ ବଳି ଦରକାର। ଠାକୁରାଣୀଙ୍କ ପାଇଁ ଗୋଟାଏ ମଣିଷପିଲା ବଳି ପଡ଼ିବା ଜରୁରୀ। ଏହା ଗ୍ରାମ-ଦେବୀଙ୍କ ହୁକୁମ। ନଚେତ୍, ଏଗାଁର କୌଣସି ଉନ୍ନତି ହେବନାହିଁ।

କଥାଟା ନିହାତି ଅନ୍ଧବିଶ୍ୱାସ କିମ୍ବା ଅଜ୍ଞ ମଣିଷର ମନଗଢ଼ା କଥା ନୁହେଁ। କୌଣସି ଏକ ଅସାଧକାର୍ଯ୍ୟ ହାସଲ କରିବା ପାଇଁ ଦେବତାଙ୍କୁ ବଳି ଦେବାର ପରମ୍ପରା ବହୁ ପ୍ରାଚୀନ। ବିଜ୍ଞାନ ଯୁଗରେ ଏ ପରମ୍ପରା ଏବେ ମଧ ବଞ୍ଚି ରହିଛି ମାତ୍ର ଏହାର ଅନ୍ତରାଳରେ ଥିବା ଉଚ୍ଚ ଆଧାତ୍ମିକ ଏବଂ ତ୍ୟାଗ ଭାବନା ଲୋପ ପାଇଯାଇଛି। ତେଣୁ ଏହା ଏବେ ଏକ ଅନ୍ଧବିଶ୍ୱାସରେ ପରିଣତ ହୋଇ ଯାଇଛି। ଲୋକମାନଙ୍କ ମନ ଗହୀରରେ କିନ୍ତୁ ଏ 'ଅନ୍ଧବିଶ୍ୱାସ'- ଏତେ ଗଭୀର ସ୍ତରରେ ବସା ବାନ୍ଧି ଯାଇଛି ଯେ, ଲୋକେ ଭାବନ୍ତି,

ବଳିଟିଏ ଦେଇ ଦେବୀର କ୍ଷୁଧା ଶାନ୍ତ ନକଲେ କାର୍ଯ୍ୟଟିଏ ସିଦ୍ଧି ହେବ ନାହିଁ। ମାତ୍ର ସେମାନେ ନିଜ ନିଜ ପୁଅ କିମ୍ବା ଆପଣାର ଲୋକଙ୍କୁ ଏଥିପାଇଁ ଉତ୍ସର୍ଗ କରିବାକୁ ଆଦୌ ଇଚ୍ଛା କରନ୍ତି ନାହିଁ। ମାତ୍ର ସ୍ୱାର୍ଥର ଲୋଭ ଦେଖିଲେ ସେମାନେ ଏଥିପାଇଁ ଆଗେଇ ଆସନ୍ତି। ଏଇଥିପାଇଁ ସେଦିନ ନିଜ ନିଜ ପୁଅମାନଙ୍କୁ ବଳି ଦେବା ପାଇଁ ନଈ କୂଳେ ଆସି ଉପସ୍ଥିତ ହୋଇଥିଲେ ବାରଜଣ ବାପା ନିଜ ନିଜ ପୁଅଙ୍କୁ ଧରି। ତ୍ୟାଗ ପାଇଁ ବା ଦେବୀ ସନ୍ତୋଷ ପାଇଁ ସେମାନେ ନିଜ ପୁଅଙ୍କୁ ବଳି ଦେବାକୁ ଇଚ୍ଛା କରୁ ନଥିଲେ, ମାତ୍ର ପାଞ୍ଚହଜାର ଟଙ୍କା ପାଇବା ଲୋଭରେ ହିଁ ସେମାନେ ଆସି ପହଞ୍ଚିଲେ। କାରଣ, ପୂର୍ବରୁ ଘୋଷଣା କରାଯାଇଥିଲା ଯେ, ଯିଏ ତା'ପୁଅକୁ ବଳି ପାଇଁ ଉତ୍ସର୍ଗ କରିବ, ସିଏ ପାଞ୍ଚହଜାର ଟଙ୍କା ପାଇବ। ବାରଜଣ ବାପା ସେଥିପାଇଁ ପରସ୍ପର ମଧ୍ୟରେ ଝଗଡ଼ା ଆରମ୍ଭ କରିଦେଲେ।

ଝଗଡାର ବିଷୟ ଥିଲା-କାହା ପୁଅକୁ ବଳି ଦିଆଯିବ? କିଏ ପାଇବ ପାଞ୍ଚ ହଜାର ଟଙ୍କା? ପରିଶେଷରେ ଏ ଝଗଡ଼ାର ସମାଧାନ କରିଦେଇଛନ୍ତି ସେ ଅଞ୍ଚଳର ପୁରୋହିତେ ବା ପୁରୋହିତ ରୂପରେ ହୁଏତ ସ୍ୱୟଂ ଗୋପବନ୍ଧୁ । ବଳିର ତାତ୍ପର୍ଯ୍ୟ ଭୁଲିଥିବା ଏହି ଜାତିକୁ ସେ ଆଉ ଥରେ ମନେ ପକାଇଦେବାକୁ ଆଗେଇ ଆସିଲେ ଏବଂ କଣ୍ଟ୍ରାକ୍ଟର ସିଂ କୁ ହିଁ ବଳିପାଇଁ ଉତ୍ସର୍ଗ କରିଦେଲେ। ଏ ଜାତି ପୁଣି ଥରେ ତ୍ୟାଗ ଓ ଉତ୍ସର୍ଗ ମନ୍ତ୍ରରେ ଅନୁପ୍ରାଣିତ ହେଉ ଏବଂ ଯେଉଁମାନେ ସରକାରୀ ଧନର ବିଶେଷ ଅଂଶୀଦାର, ସେଇମାନଙ୍କ ଠାରୁ ହିଁ ତ୍ୟାଗ ଭାବନା ଆଗେ ଆରମ୍ଭ ହେଉ ଏପରି ଏକ ଅନ୍ତର୍ନିହିତ ସୂଚନା ଗଳ୍ପଟିର ଅନ୍ତଃ ସ୍ୱର।

ଆଧୁନିକ ଜୀବନ ଧାରାରେ ଈଶ୍ୱର ବିଶ୍ୱାସର ଭୂମିକା କଣ ସେ ବିଷୟରେ ଏକ ଅନୁଧ୍ୟାନର ସୂଚନା ମିଳେ 'ମୂଲ୍ୟବାନ୍ ଦିନ'-୧୨ ଗଳ୍ପରେ। ଈଶ୍ୱର ବିଶ୍ୱାସ ପ୍ରତି ଆଜିର ମଣିଷ ସେତିକିବେଳେ ଆନୁଗତ୍ୟ ପ୍ରକାଶ କରେ, ଯେତେବେଳେ ତାହା କୌଣସି ସ୍ୱାର୍ଥ ସହିତ ସଂଶ୍ଳିଷ୍ଟ ହୋଇ ରହିଥାଏ । ସ୍ୱାର୍ଥ ନଥିଲେ ଈଶ୍ୱରଭକ୍ତି ଏକ ଅପ୍ରାସଙ୍ଗିକ ବିଷୟ ବୋଲି ମନେ କରାଯାଏ। ଶାନ୍ତି ଦେବୀଙ୍କର ସ୍ୱାମୀ ଏହିପରି ଚରିତ୍ର ବିଶିଷ୍ଟ ଜଣେ ଆଧୁନିକ ବୁଦ୍ଧିବାଦୀ ମଣିଷ। ସେ ତାଙ୍କ ସ୍ତ୍ରୀଙ୍କୁ କହନ୍ତି-'ତମ ଠାକୁରଙ୍କୁ ଧିକ୍'। ତାଙ୍କ ବିଚାରରେ-'ଦି ଗଡସ୍ ଅଫ୍ ଦି ବ୍ୟୁରୋକ୍ରାଟସ୍'। ମାତ୍ର ସ୍ୱାର୍ଥର କଥା ପଡ଼ିଗଲେ, ଈଶ୍ୱର ଫିଶ୍ୱର ଯାହା ହେଉ ପଛେ, ସମସ୍ତଙ୍କୁ ସିଏ କୁଣ୍ଢେଇ ପକେଇବାକୁ ଆଗେଇ ଆସନ୍ତି। ସେ ଈଶ୍ୱର ବିରୋଧୀ ହେଲେ ମଧ୍ୟ ଏବଂ ଦେବତାମାନଙ୍କୁ 'ଟୋକେଇରେ ପୂରେଇ ନଳାରେ ଫୋପାଡି ଦେଇ ଆସିବାକୁ' ଇଚ୍ଛା କରୁଥିଲେ ମଧ୍ୟ ଠାକୁର ଘର ଦୁଆରବନ୍ଧ ନିକଟରେ ଅଟକି ଯାଆନ୍ତି। ଠାକୁରଙ୍କୁ ଫିଙ୍ଗିଦେବାକୁ କିପରି ଟିକିଏ ଡରି ଯାଆନ୍ତି। ଠାକୁରମାନଙ୍କୁ ଫିଙ୍ଗିଦେଲେ କାଳେ ତାଙ୍କ ସ୍ତ୍ରୀ ଶାନ୍ତିଦେବୀଙ୍କ ସହିତ ତାଙ୍କ ସମ୍ପର୍କ ତିକ୍ତ ହୋଇଯିବ! ଶାନ୍ତିଙ୍କ ଅନାବିଳ ପ୍ରେମ ପ୍ରାପ୍ତି ଆଉ ସମ୍ଭବ ହୋଇ ପାରିବ ନାହିଁ! ନାଇଁ ନାଇଁ ଈଶ୍ୱର ଫିଶର ଯିଏ ରହିଛନ୍ତି ରହନ୍ତୁ ପଛେ, କିନ୍ତୁ ତାଙ୍କ ସ୍ତ୍ରୀ ଶାନ୍ତି ନିରାପଦରେ ରହନ୍ତୁ ଏବଂ ସ୍ୱାମୀ ଏବଂ ସ୍ତ୍ରୀଙ୍କ ପ୍ରେମମୟ ସମ୍ପର୍କରେ କୌଣସି ପ୍ରତିବନ୍ଧକ ସୃଷ୍ଟି ନ ହେଉ।

ଆଧୁନିକ ମଣିଷ ନିଜକୁ ନ ଚିହ୍ନି ଅନ୍ୟର ଗଭୀର ପରିଚୟ ଜାଣିବା ପାଇଁ ଆଗେଇ ଆସେ। ଆତ୍ମାକୁ ନ ଚିହ୍ନି ବିଶ୍ୱକୁ ଚିହ୍ନିବା ପାଇଁ ଇଚ୍ଛା ପ୍ରକାଶ କରେ। ଯେଉଁ ଦେଶଆତ୍ମବିଦ୍ୟା ବା ବ୍ରହ୍ମବିଦ୍ୟାକୁ ନେଇ ସମଗ୍ର ପୃଥିବୀରେ ପ୍ରାଚୀନତମ ଅଥଚ ଉନ୍ନତ ସଂସ୍କୃତିର ସ୍ରଷ୍ଟା ଭାବରେ ଯୁଗ ଯୁଗ ଧରି ଗୌରବ

ମଣ୍ଡିତ ହୋଇ ଅଛି, ସେହି ଦେଶର ଲୋକେ ଏବେ 'ଆତ୍ମା'-କହିଲେ ଭୂତ ବୋଲି ବୁଝନ୍ତି ଏବଂ ଆତ୍ମା ଶବ୍ଦଟି ଶୁଣିଲେ ଭୂତ ଲାଗିବା ପରି ହୁଅନ୍ତି ଏବଂ ଭୂତ ପରି ଦେହରେ ଲାଗି ଥିବା ଏହି ଆତ୍ମାକୁ ଛଡାଇବା ପାଇଁ ଗୁଣିଆର ବ୍ୟବସ୍ଥା କରନ୍ତି।' ନଦିଆ ଓ ଗିରିଆ' ଗଳ୍ପରେ ଆତ୍ମା ସଂପର୍କୀୟ ଆଧୁନିକ ଧାରଣାକୁ ବିଦ୍ରୂପ କରାଯାଇଛି।

ରଘୁନାଥ ପୁରର ଗ୍ରାମବାସୀମାନେ ନଦିଆ ନାମକ ସେଇ ଟୋକାଟା ଉପରେ ସତର୍କ ଦୃଷ୍ଟି ରଖିବା ଆରମ୍ଭ କରିଦେଇଥିଲେ। କାରଣ, ତା'ର ଅପରାଧ ଥିଲା ଯେ ସିଏ ହିମାଳୟ ଭାରତର ଆତ୍ମା ବୋଲି ଏବଂ ହିମାଳୟ ଶବ୍ଦକୁ ଉଚ୍ଚାରଣ କଲେ 'ଆତ୍ମା'-ଜାଗ୍ରତ ହୋଇ ଉଠେ ବୋଲି ଗିରିଆ ନାମକ ଜଣେ ହରିଜନ ପିଲା ଆଗରେ କହିଥିଲା। ନଦିଆଠାରୁ ଏକଥା ଶୁଣିବା ପରେ ସତକୁ ସତ ଗିରିଆଠାରେ 'ଆତ୍ମା'-ଜାଗ୍ରତ ହୋଇ ଉଠିଥିଲା ଏବଂ ଗିରିଆଠାରେ ଜାଗ୍ରତ ହୋଇଥିବା ଆତ୍ମାକୁ ଘଉଡ଼ାଇ ଦେବା ପାଇଁ ଗୁଣିଆର ଆଶ୍ରୟ ନିଆଯାଇଥିଲା। ଗ୍ରାମବାସୀମାନଙ୍କର ଆତ୍ମା ମଧ ଜାଗ୍ରତ ହୋଇ ଉଠିଥିଲା ନଦିଆକୁ ଜୀବନରେ ମାରି ଦେବାକୁ ଏବଂ ସତକୁ ସତ ତା'ପରଦିନ ସକାଳୁ ନଦିଆର ଲାସ୍ ମିଳିଥିଲା ସେଇ ଗାଁ ର ଗୋଟାଏ ଗଡ଼ିଆରୁ।

ଏବେ ମଣିଷର ଜ୍ଞାନ-ବିଜ୍ଞାନ, ପ୍ରଭାବ ପ୍ରତିପତ୍ତି, ସ୍ୱାର୍ଥ, ଅହମିକା ଏବଂ ଔଦ୍ଧତ୍ୟ ସେତିକି ସେତିକି ବଳବତ୍ତର ହେବାରେ ଲାଗିଛି। ଏଇଥିପାଇଁ ତା' ଠାରୁ ସ୍ନେହ ଶ୍ରଦ୍ଧା, ଆଦର ପ୍ରଭୃତି କେଉଁ ଆଡ଼େ ମିଳେଇ ଯାଇଛି। 'କୋକି'-(୧୪)-ଗଳ୍ପରେ ଚରିତ୍ର ସୁରେନ୍ଦ୍ର ଦାସ ଆଇ.ଏ.ଏସ୍. ଏଇ ଉପାଦାନରେ ଗଢା ଏକ ସ୍ୱାର୍ଥ ଓ ଅର୍ଥ ସର୍ବସ୍ୱ ଜଣେ ଆଧୁନିକ ମଣିଷ। ତାଙ୍କର ଏକମାତ୍ର କନ୍ୟା ଚିଚି ପିଲାଳିଆ କୌତୁକବଶତଃ କୋକି କୋକି ବୋଲି ଦୁଇ ଚାରିଥର କହିଦେଇଛି। ସେଥିପାଇଁ ସୁରେନ୍ଦ୍ର ବାବୁ ଚିଚି ପ୍ରତି ସ୍ନେହ ମମତା ଯୋଗୁଁ ଯେତେ ନୁହେଁ, ନିଜର ବଡ଼ପଣ ଓ ଅହମିକାକୁ ଅଧିକ ଭାବରେ ଦେଖାଇଦେବାପାଇଁ ଡାକ୍ତର ଓ ସାଇକିଆଟ୍ରିଷ୍ଟମାନଙ୍କୁ ଡ଼କାଇ ରୀତିମତ ତା'ର ମାନସିକ ଚିକିତ୍ସା ଆରମ୍ଭ କରି ଦେଇଛନ୍ତି। ସାଇକିଆଟ୍ରିଷ୍ଟ ଡଃ ମିଶ୍ର ଚିଚି କୁ ଏକ ସପ୍ତାହ ଧରି ଦେଖାଶୁଣା, ପରୀକ୍ଷା ନିରୀକ୍ଷା କରିସାରିବା ପରେ ଶେଷକୁ ସାବ୍ୟସ୍ତ କରିଛନ୍ତି ଯେ କୋକି, ଅର୍ଥାତ୍ କରୁଣାକର ବୋଲି କାହାକୁ ଜଣକୁ ଦେଖିବା ପାଇଁ ଏବଂ ତାଙ୍କ ପାଖକୁ ଯିବାପାଇଁ ଚିଚି ଇଚ୍ଛା କରୁଛି। ଚିଚିକୁ ତାଙ୍କ ପାଖକୁ ନିଆଗଲେ ଭଲ ହୁଅନ୍ତା। କିନ୍ତୁ ଯେତେବେଳେ ଜଣାପଡିଲା ଯେ କରୁଣାକର ହେଉଛନ୍ତି ଚିଚିର ଅଜା ସେତେବେଳେ ସୁରେନ୍ଦ୍ର ବାବୁ ଗର୍ଜିଉଠି କହିଛନ୍ତି– ଅସମ୍ଭବ, ଆମ ଚିଚି ତା' ଅଜା ପାଖକୁ ଯାଇପାରିବ ନାହିଁ। କାରଣ, ଅଜା ଏପର୍ଯ୍ୟନ୍ତ ଯୌତୁକ ବାବଦକୁ ତାଙ୍କର ପ୍ରାପ୍ୟ ଏକଲକ୍ଷ ଟଙ୍କା ତାଙ୍କୁ ଦେଇ ନାହାନ୍ତି। ସୁରେନ୍ଦ୍ର ବାବୁ ତାଙ୍କ ଝିଅର ଅଜାଙ୍କ ପ୍ରତି ଥିବା ସ୍ନେହ ମମତାର କିଛି ମୂଲ୍ୟ ବୁଝିପାରିଲେ ନାହିଁ। ଡ଼ଃ ମିଶ୍ରଙ୍କ ପ୍ରସ୍ତାବକୁ ସେ ସଂପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରି ଦେଲେ।

'ହରିଜନ'- (୧୫) ଗଳ୍ପରେ ସାମାଜିକ ଜୀବନର ଏକ ଅପସାଂସ୍କୃତିକ ଚିତ୍ର ପରିବେଷଣ କରାଯାଇଛି। ଆଧୁନିକ ହରିଜନମାନେ ନିଜର କୌଳିକ ବୃତ୍ତି ଛାଡ଼ି ଚାକିରି ଅଭିମୁଖୀ ହେବାରେ ଲାଗିଚନ୍ତି ଏବଂ ବ୍ରାହ୍ମଣ ପ୍ରଭୃତି ସବର୍ଣ୍ଣମାନେ ଅବକ୍ଷୟର କରାଳ ଗ୍ରାସରେ ପଡ଼ି ନୀଚଲୋକଙ୍କ ପରି ଆଚରଣ କରିବା ପାଇଁ ପଶ୍ଚାତ୍‌ପଦ ହେଉ ନାହାନ୍ତି। ଗଳ୍ପର ଚରିତ୍ର ଚଇତନ ପାଣ ଲୋକମାନଙ୍କ ଠାରୁ

ବହିନା ନେଇ ସେମାନଙ୍କର ଶତ୍ରୁମାନଙ୍କୁ ଗାଳି ଭର୍ତ୍ସନା କରିବାରେ ନିଜକୁ ନିଯୁକ୍ତ କରୁଥିଲା । କେତେ କେତେ ବ୍ରାହ୍ମଣ ଓ ସଂଭ୍ରାନ୍ତଙ୍କୁ ଅପମାନିତ କରି ସେମାନଙ୍କ ଠାରୁ 'କଳା'ହରଣ କରୁଥିଲା । ମାତ୍ର ତା'ପୁଅ ବିଶିଆ ଏ କାର୍ଯ୍ୟକୁ ପାରିନି । ପିଅନ ଚାକିରି କରି କଷ୍ଟେ ମଷ୍ଟେ ଚଳିବାକୁ ସିଏ ଇଚ୍ଛା କରିଛି ପଛେ, ବାପାର ବୃତ୍ତି ଅବଲମ୍ବନ କରିବାକୁ ରାଜି ହୋଇ ନାହିଁ ।

ମାତ୍ର ଜଣେ ଶୁଭ୍ର ଧୋତି ପଞ୍ଜାବୀ ପିନ୍ଧା ବ୍ରାହ୍ମଣପିଲା ଚଇତନ ପାଣ ଠାରୁ ମଧ ଆହୁରି ଭୟଙ୍କର ହୋଇ ପଡ଼ିଛି ଏବଂ ତା'ର ଅଭଦ୍ରୋଚିତ ମନ୍ଦ ବ୍ୟବହାର ଫଳରେ ସଂଭ୍ରାନ୍ତ ଲୋକମାନେ ଅପମାନିତ ହୋଇଛନ୍ତି । ଅବଶେଷରେ ଚଇତନ ପାଣ ସେଇ ବ୍ରାହ୍ମଣ ଯୁବକକୁ ଅଭିଶାପ ଦେଲାପରି କହିଛି- ''ନରକକୁ ଯା' ରେ ବ୍ରାହ୍ମଣ ! ମୋର କୁଳବିଦ୍ୟା ତୁଇ ହରଣ କଲୁ ।'' ଶେଷରେ ହରିଜନମାନେ ନିଜର କୌଳିକ ବିଦ୍ୟା ଛାଡ଼ି ଚାକିରିପଛରେ ଗୋଡ଼ାଉଥିବାବେଳେ, ବ୍ରାହ୍ମଣ ପ୍ରଭୃତି ସବର୍ଣ୍ଣ ଯୁବକମାନେ ଔଦ୍ଧତ୍ୟ, ଅଭଦ୍ରତା ଏବଂ ବ୍ୟଭିଚାର ଦ୍ୱାରା ଗ୍ରସ୍ତହୋଇ ହରିଜନମାନଙ୍କଠାରୁ ମଧ ନିଜକୁ ଆହୁରି ନିକୃଷ୍ଟ ପରିଚିତ କରାଇବାକୁ କୁଣ୍ଠିତ ହେଉ ନାହାନ୍ତି- ଏହାହିଁ ଗଳ୍ପର ପ୍ରତିପାଦ୍ୟ ବିଷୟ ।

ସ୍ୱାଧୀନତା ପରବର୍ତ୍ତୀ ଭାରତର ରାଜନୀତିକ କ୍ଷେତ୍ର ଦୁର୍ନୀତି ଓ ଦୁଷ୍ଚରିତ୍ରାର ଗନ୍ତାଘରରେ ପରିଣତ ହୋଇଯାଇଛି । ରାଜନୀତିକ ବିଭିନ୍ନ ସ୍ତରରେ କାର୍ଯ୍ୟ କରୁଥିବା ନେତାମାନେ ସ୍ୱାର୍ଥ, ପ୍ରତାରଣା ଓ ମିଥ୍ୟା ପ୍ରବଞ୍ଚନାକୁ ହିଁ ଦେଶ ସେବାର ମୂଳ ମନ୍ତ୍ର ବୋଲି ମନେ କରନ୍ତି । 'ଚରିତ୍ର ଅନୁସନ୍ଧାନ'- (୧୬) ଗଳ୍ପରେ ଏହିପରି ଜଣେ ନେତାଙ୍କର ଚରିତ୍ର ବିଶ୍ଳେଷଣ କରାଯିବାର ଉଦ୍ୟମ କରାଯାଇଅଛି । ଏହି ଗଳ୍ପ ଉପରେ ଟିପ୍‌ପଣୀ ଦେଇ 'ଝଙ୍କାର'- ପତ୍ରିକାର ସମ୍ପାଦକ କହନ୍ତି, ଚରିତ୍ର ନ ଥିବା ଲୋକର ଚରିତ୍ର ଅନ୍ୱେଷଣ କରିବା କିଭଳି ହାସ୍ୟସ୍ପଦ, ତାହା ଏହି ଗଳ୍ପରେ ରୂପାୟିତ ହୋଇଚି ।(୧୭)

ଗୋପବନ୍ଧୁ ନାଏକ ତାଙ୍କ ଅଞ୍ଚଳରେ ଜଣେ ଭଲ ମଣିଷ ଥିଲେ । କିନ୍ତୁ ଲୋକ ପ୍ରତିନିଧି ହେଲାପରେ ସେ ଠେର ପାଲିଟିଗଲେ । ତାଙ୍କର ଏହି ଠେରୀ ପ୍ରକୃତି ନଈବଢ଼ି ବେଳେ ଚୂଡ଼ା ଗୁଡ଼ଳ ବାଣ୍ଟିବା ବେଳରୁ ଆରମ୍ଭ ହୋଇ ପଞ୍ଚତାରକା ହୋଟେଲ ପର୍ଯ୍ୟନ୍ତ ଗତିଶୀଳ ହୋଇ ପାରିଛି । ଏ ଯୁଗର ତଥାକଥିତ ଲୋକପ୍ରତିନିଧିମାନେ ଠେରୀକୁ ଅବଲମ୍ବନ କରି କିପରି ବଦାନ୍ୟ, ମହିମାବନ୍ତ ଓ ପରୋପକାରୀ ହୋଇପାରନ୍ତି, ତାହାର ଏକ ବିଦ୍ରୂପାତ୍ମକ ଚିତ୍ର ଏଥିରେ ଉପସ୍ଥାପିତ ହୋଇଅଛି ।

ତାଙ୍କ ଗାଁର 'ଲକ୍ଷ୍ମୀ ନାରାୟଣ ହାଇସ୍କୁଲ' ପରିବର୍ତ୍ତେ ଦିନେ ସକାଳୁ ଲୋକେ ଦେଖିଛନ୍ତି ସେଠାରେ ଲେଖାଯାଇଛି 'ଗୋପବନ୍ଧୁ ହାଇସ୍କୁଲ' ଏବଂ ତା'ର କିଛିଦିନ ପରେ ତାହାର ନାମ ବଦଳିଯାଇ ସେଠାରେ ଲେଖାଯାଇଛି 'ଗୋପିଆ ନାଏକ ହାଇସ୍କୁଲ' ।

ବର୍ତ୍ତମାନ ଯୁଗରେ ସ୍କୁଲ କଲେଜଗୁଡ଼ିକ ସେହି ଅଞ୍ଚଳମାନଙ୍କରେ ଟାଉଟରୀ ଗୁଣ୍ଡାମୀ, ଅର୍ଥ ତୋଷରପାତ, ଏବଂ ଅନ୍ୟାନ୍ୟ ପ୍ରକାର ଭାଣ୍ଡାମିର ଗୋଟିଏ ଗୋଟିଏ କେନ୍ଦ୍ରସ୍ଥଳରେ ପରିଣତ ହୋଇଯାଆନ୍ତି । ବିଶେଷତଃ, କଲେଜଗୁଡ଼ିକ ରାଜନୀତିବାଲାମାନଙ୍କର ଗୋଟିଏ ଲୋଖାଏଁ ପ୍ରଶିକ୍ଷଣ କେନ୍ଦ୍ର । 'ଅଦିନ ବଉଳ'- (୧୮) ଗଳ୍ପରେ ଏକ ସୁନ୍ଦର ପ୍ରତୀକ ସାହାଯ୍ୟରେ ମଫସଲରେ ଗଢ଼ିଉଠିଥିବା ଗୋଟିଏ କଲେଜର ଚିତ୍ରଟିଏ ପରିବେଷିତ ହୋଇଛି । ଗୋଟିଏ ଅଞ୍ଚଳରେ କଲେଜଟିଏ ପ୍ରତିଷ୍ଠିତ ହେବା ପୂର୍ବରୁ ସେ ଅଞ୍ଚଳଟି ବେଶ୍ ଶାନ୍ତିରେ ଥାଏ । ମାତ୍ର କଲେଜଟିଏ ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ

ଏମିତିଗୁଡ଼ିଏ ବିଷବାଷ୍ପ ସେ ଅଞ୍ଚଳ ଭିତରକୁ ଅନୁପ୍ରବେଶ କରିଆସେ ଯେ, ଅଞ୍ଚଳଟିର ଲୋକେ କଲେଜ ସଂକ୍ରାନ୍ତିୟ ବିଭିନ୍ନ ଉପଦ୍ରବରେ ତ୍ରାହି ତ୍ରାହି ଡ଼ାକ ଛାଡ଼ନ୍ତି । ଏ ଦେଶରେ ଉଚ୍ଚତର ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା ଅନ୍ତରାଳରେ ଏହିପରି ଅନେକ କାହାଣୀ ରହିଅଛି । ଆଲୋଚ୍ୟ ଗଳ୍ପଟି ସେଥିମଧ୍ୟରୁ ଗୋଟିଏ ।

ଗଳ୍ପରେ ବର୍ଣ୍ଣିତ 'ଅଥଙ୍ଗା' ଗ୍ରାମଟି ନି.ପ୍ରା ଓ ଉ.ପ୍ରା. ବିଦ୍ୟାଳୟକୁ ନେଇ ବେଶ୍ ଅଗ୍ରଗତି କରୁଥିଲା । ଅଦିନରେ ଆମ୍ବବଉଳ ଧରି ଋରିଆଡ଼େ ମହକେଇ ଦେଲା ପରି ବିଦ୍ୟାଳୟ ଦୁଇଟିର ଶିକ୍ଷା ମହକ ଗ୍ରାମଟିକୁ ଆମୋଦିତ କରି ରଖିଥିଲା । ମାତ୍ର ଯେଉଁଦିନ ଗ୍ରାମବାସୀମାନେ ମିଳିତ ହୋଇ ସେଠାରେ କଲେଜଟିଏ ପ୍ରତିଷ୍ଠା କରିବା ପାଇଁ ନିଷ୍ପତ୍ତି ନେଲେ, ସେତେବେଳେ ବସନ୍ତ ଋତୁ ଆସିବାର ବେଳ ହୋଇଥିଲେ ମଧ୍ୟ କଲେଜର ପ୍ରସ୍ତାବିତ ସ୍ଥାନରେ ଥିବା ଏକ ଆମ୍ବଗଛରେ ବଉଳ ଆସିଲାନି । ଅବଶ୍ୟେ 'ଅଥଙ୍ଗା କଲେଜ' ପ୍ରତିଷ୍ଠିତ ହେଲା । ମାତ୍ର ସେ କଲେଜରେ ଗଧିଆ (ଗୁଣ୍ଡା ଓ ବଦମାସ)ମାନଙ୍କର ଉପଦ୍ରବ ବଢ଼ିଲା । ଗଧିଆମାନେ ଛେଳି (ନିରୀହ ଛାତ୍ର ଛାତ୍ରୀ)ଙ୍କ ଉପରେ ବଳତ୍କାର କଲେ ଏବଂ ଏହିପରି କେତେକ ଘଟଣାକୁ କେନ୍ଦ୍ର କରି ସେଠାରେ ଗଣ୍ଡଗୋଳ ଓ ରକ୍ତପାତ ହେଲା ।

ଲୋକମାନଙ୍କ ମଧ୍ୟରୁ ଯେଉଁମାନେ ଋନ୍ଦା ଭେଦା ଦେଇ, ଏପରିକି ଖାଇବା ବାସନ ମଧ୍ୟ ବିକ୍ରିକରି ସେଇ ପଇସାରେ କଲେଜଟିକୁ ଠିଆ କରାଇଥିଲେ, ସେମାନେ କଲେଜର ଏ ପରିଣତି ଦେଖି ଆଶ୍ଚର୍ଯ୍ୟ ହେଲେ ଏବଂ କଲେଜର ପ୍ରଧାନ ଉଦ୍ୟୋକ୍ତା ବୁଧି ପ୍ରଧାନଙ୍କୁ ଭର୍ତ୍ସନା କରିବାକୁ ଲାଗିଲେ । ବହୁ ଆକାଂକ୍ଷିତ କଲେଜ ଏବେ 'ପାପ ପୀଠ' ଏବଂ 'ଗଧିଆଘର'ରେ ପରିଣତ ହେଲାଣି ବୋଲି ଅଭିଯୋଗ ହେଲା । ଯେଉଁମାନେ ଅତି ଆଗ୍ରହରେ ଋନ୍ଦା ଭେଦା ଦେଇ କଲେଜଟିକୁ ଗଢ଼ିଥିଲେ, ସେଇମାନେ ହିଁ ଅଶାନ୍ତି ଓ ଉପଦ୍ରବରୁ ରକ୍ଷାପାଇବା ପାଇଁ କଲେଜର ସତ୍ତାକୁ ଚିରଦିନ ପାଇଁ ସେ ଅଞ୍ଚଳରୁ ଲୋପ କରିଦେଲେ ।

'ସାମନ୍ତବାଦୀ'- (୧୯) ଗଳ୍ପରେ ଏକ ପୁରୁଣା ମୂଲ୍ୟବୋଧକୁ ଉପସ୍ଥାପିତ କରାଯାଇ ତା' ଅନ୍ତରାଳରେ ନିହିତ ଉଚ୍ଚ ମାନବିକ ଗୁଣାବଳୀର ମହତ୍ତ୍ୱ ପ୍ରତିପାଦନ କରାଯାଇ ଅଛି ।

ରଞ୍ଜନ ସେନାପତି ସାମନ୍ତବାଦୀ ଜୀବନଧାରାର ଜଣେ ବ୍ୟକ୍ତି । ସାମନ୍ତବାଦର ନୈତିକ ଦିଗ ଗଢିଉଠିଥିଲା ଧର୍ମଚେତନା, ଆଧ୍ୟାତ୍ମିକତା ଏବଂ ପୁନର୍ଜନ୍ମବାଦ ପ୍ରଭୃତି ଉପରେ। ଏଇ ପରମ୍ପରାର ପ୍ରତିନିଧି ଗଳ୍ପନାୟକ ରଞ୍ଜନ ସେନାପତି ଜଣେ ଅପରିଚିତ ଲୋକକୁ ଦେଖିଲେ ମଧ୍ୟ କେବେ, କେଉଁଠି, ଏପରିକି ପୂର୍ବଜନ୍ମରେ ହେଉ ପଛେ, ନିଶ୍ଚୟ ପୂର୍ବରୁ ଥରେ ଦେଖିଥିବା ପରି ମନେ କରନ୍ତି । ଚିତ୍ର ତାରକା କସ୍ତୁରୀ ରାୟ ପାଞ୍ଚବର୍ଷ ପୂର୍ବେ 'ବମ୍ବ୍ ଏକ୍ସପ୍ଲୋଜନ୍'ରେ ମରିଯାଇଥିଲେ । ମଧ୍ୟ ବିକଳାଙ୍ଗ ରୂପ ଧରି ଏବେ ବୁଲି ବାହାରନ୍ତି ଏବଂ ତାଙ୍କ ବିଷୟରେ ସବୁକଥା ଜାଣି ମଧ୍ୟ କସ୍ତୁରୀ ରାୟଙ୍କ ପ୍ରେତ ସହିତ ସେ କଥାବାର୍ତ୍ତା କରୁଛନ୍ତି ଏକଥା ଜାଣି ମଧ୍ୟ, ତାଙ୍କୁ ନିଜ ସ୍କୁଟରରେ ବସାଇ ସହର ବୁଲାଇ ନେବା ପାଇଁ ଆଗ୍ରହ ପ୍ରକାଶ କରନ୍ତି । ରଞ୍ଜନ ସେନାପତି ସ୍ୱାଭାବତଃ ଆତ୍ମବାଦୀ । ଆତ୍ମାର ଚିରନ୍ତନତାରେ ବିଶ୍ୱାସୀ । ମଣିଷ ଭିତରେ ବିଦ୍ୟମାନ ଥିବା ଏହି ଆତ୍ମାକୁ ସିଏ ଚିହ୍ନପାରନ୍ତି । ଏ କ୍ଷେତ୍ରରେ ସୁନ୍ଦର ଅସୁନ୍ଦର ଏବଂ ଜୀବିତ ମୃତର ପ୍ରଶ୍ନ ଅବାନ୍ତର । ଏ ପ୍ରସଙ୍ଗରେ ତାଙ୍କର ଯୁକ୍ତି ଥିଲା- ଦିବ୍ୟସୁନ୍ଦରୀ ଚିତ୍ର ତାରକା ମରିଯାଇପାରନ୍ତି । ମାତ୍ର ତାଙ୍କ ଆତ୍ମା ? ସେ ତ ଅମର । ସେ ତ ଆରାଧ୍ୟ ଏବଂ ସମ୍ମାନ ଓ ସହାନୁଭୂତିର ପାତ୍ର !

ମନୁଷ୍ୟର ଯେତେ ପ୍ରକାର ସମ୍ପର୍କ ଅଛି, ତା' ଭିତରୁ ପ୍ରେମ ସମ୍ପର୍କଟି ଅତ୍ୟନ୍ତ ରହସ୍ୟମୟ । ଏହା ଆବେଗମୂଳକ, ଆକର୍ଷଣୀୟ ଏବଂ ଥଳକୂଳ ବିହୀନ । ପ୍ରେମ ସମ୍ପର୍କର ସ୍ୱରୂପଟି ବନ ବିଚିତ୍ର, ଜଟିଳ ଏବଂ ଦୁର୍ବୋଧ । ଏହି ପ୍ରକାର ପ୍ରେମ ସମ୍ପର୍କର ବଡ଼ ଗଭୀର ତାତ୍ପର୍ଯ୍ୟପୂର୍ଣ୍ଣ ଚିତ୍ରଟିଏ ପରିବେଷିତ ହୋଇଛି 'ସମ ସପ୍ତକ' (୨୦) ଗଳ୍ପ ଭିତରେ ।

ପ୍ରେମ ଏକ ଜାତି-ବର୍ଣ୍ଣ-ଧର୍ମ ନିରପେକ୍ଷ ବିଷୟ । ସ୍ଥାନ କାଳ ପାତ୍ରର ବିଚାର ସେ କ୍ଷେତ୍ରରେ ଅଚଳ । ମଣିଷର ଜୀବନଟି କେଡ଼େ ଛୋଟିଆ ଜିନିଷଟିଏ । କେତେ ବର୍ଷର ଘଟଣାଟାଏ ଅବା ! ଖୁବ୍ ବେଶୀ ହେଲେ ଷାଠିଏ ବା ସତୁରୀ ବର୍ଷ । ନ ହେଲେ ଅଶି । ଏପରି ଗୋଟିଏ ଛୋଟ କାଟର ପ୍ରାଣୀର ମନଭିତରେ ପୁଣି ଲୁଚି ରହିଥାଏ ଏତେ କଥା ! ତା' ଠାରେ ବସା ବାନ୍ଧିଥାଏ ଏତେ ଆବେଗ, ଏତେ ଅନୁଭୂତି ଆଉ ଅଭିଜ୍ଞତାର ଭଣ୍ଡାର ! କେତେ ଆଶ୍ଚର୍ଯ୍ୟ ସତେ !

ଏଗ୍ରିକଲଚର୍ ବିଭାଗର ଜଣେ ପିଅନ ଏହି ଗପର କଥାବସ୍ତୁ ଓ ମୁଖ୍ୟ ଭାବନାର କେନ୍ଦ୍ରବିନ୍ଦୁ । ପିଅନର ମନଭିତରେ ପ୍ରବାହିତ ଭାବନାର ଧାରାଗୁଡ଼ିକ ଏକାଠି କରି ଏହି ଗଳ୍ପଟିକୁ ଏକ ମନସ୍ତାତ୍ତ୍ୱିକ ରୂପଦେବା ପାଇଁ ଚେଷ୍ଟା କରିଛନ୍ତି ଲେଖକ ।

ପିଅନ ଏବେ ତା' ସ୍ତ୍ରୀକୁ, ଗାଁ ବାଲାଙ୍କୁ, ଅଫିସର ଅନ୍ୟାନ୍ୟ କିରାନି ଓ କର୍ମଚାରୀମାନଙ୍କୁ ବୁଝାଇବାରେ ବ୍ୟସ୍ତ ଯେ ଏଗ୍ରିକଲ୍‌ଚର୍ ଅଫିସର ଖୋସଲା ସାହେବଙ୍କର ସ୍ତ୍ରୀ ସହିତ ତା'ର ଆଦୌ କୌଣସି ଆପତ୍ତିଜନକ ସମ୍ପର୍କ ନାହିଁ । ମାତ୍ର ତା' କଥାକୁ କେହି କ'ଣ ବିଶ୍ୱାସ କରୁଛନ୍ତି । ପିଅନ ବିଚରା କ'ଣ କରିବ ? ସାହେବାଣୀ ପାଇଁ ସମସ୍ତଙ୍କ ଠାରୁ ଆଉ କେତେ ବଦନାମ ଶୁଣିବ ? ସାହେବାଣୀ ସାହେବ ସହିତ ମିଳାମିଶା କରିବାର ସୁବିଧା ପାଏ ନାହିଁ । କାରଣ, ସାହେବ ତ ଦିନ ରାତି ସବୁବେଳେ ତା' ଗବେଷଣା ନେଇ ବ୍ୟସ୍ତ । ଏଣେ ସାହେବାଣୀଟା ଯୁବତୀ ଗୋରୀ ଏବଂ ଖୁବ୍ ସୁନ୍ଦରୀ ମଧ୍ୟ । ସିଏ ପିଅନକୁ ବିଭିନ୍ନ କାମର ଆଳରେ ସବୁବେଳେ ଡକାଡ଼କି କରେ ଓ ନିଜ ପାଖରେ ରଖିବାକୁ ଚାହେଁ । ସିଆଡ଼େ ପୁଣି ପିଅନର ଛ'ବର୍ଷର ବିବାହିତା ସ୍ତ୍ରୀ ଘରେ । ସିଏ ତା' ସ୍ୱାମୀଙ୍କୁ ସନ୍ଦେହ କରେ ବେଶୀ । ସାହେବାଣୀ ବିଷୟ ଶୁଣି ସେ ମୁହଁ ଶୁଖାଏ । କହେ- ରବିବାର ଦିନଟା ତ ସମସ୍ତଙ୍କ ପାଇଁ ଛୁଟି । ତା' ସ୍ୱାମୀ କାହିଁକି ରବିବାର ଦିନ ମଧ୍ୟ ସାହେବ ଘରେ କାମ କରିବ ? ପିଅନ ବିଚରା କ'ଣ କରିବ ? ସିଆଡ଼େ ସାହେବାଣୀ ଆଡ଼କୁ ଢ଼ଳିବ ନା ଆଡ଼େ ସ୍ତ୍ରୀର ଅଭିମାନ ଭାଙ୍ଗିବ ?

ଅତି ପରୋକ୍ଷରେ, ମନର ଅତି ସୂକ୍ଷ୍ମ କୋଣରେ ପିଅନ ଓ ସାହେବାଣୀ ମଧ୍ୟରେ ପରସ୍ପର ପ୍ରତି ଆସକ୍ତିର ସ୍ୱରୂପଟିଏ ଉପସ୍ଥାପିତ ହୋଇଛି ଏହି ଗଳ୍ପରେ । ଏହି ଆସକ୍ତିର ନାମ ପ୍ରେମ ହୋଇପାରେ କିମ୍ବା ଅତୃପ୍ତ ଯୌନ କାମନାର ସ୍ୱାଭାବିକ ରୂପଟିଏ ହୋଇପାରେ ।

ଉପରେ ଆଲୋଚିତ ଗଳ୍ପଗୁଡ଼ିକରେ ଜୀବନର କିଛି ଅନ୍ଧାରିତ ଦିଗନ୍ତର ଉନ୍‌ମୋଚନ ଘଟିଥିଲେ ମଧ୍ୟ ତାହା ଜୀବନର ସତ୍ୟ ଉପରେ ଆଧାରିତ ଏବଂ ଲେଖକଙ୍କର ଜୀବନ ଜିଜ୍ଞାସାର ଫଳ । କଥାକାର ଶାନ୍ତନୁ ଆଚାର୍ଯ୍ୟ ଜୀବନ ବିଶ୍ଳେଷଣ କରି ଯେଉଁ ସତ୍ୟର ଉପଲବ୍ଧି କରିଛନ୍ତି, ସେହି ସତ୍ୟକୁ ସେ ଗଳ୍ପ ମଧ୍ୟରେ ଉପସ୍ଥାପିତ କରିଛନ୍ତି । ଆଧୁନିକ ଜୀବନ ସ୍ୱାର୍ଥ, ହିଂସା, ଦ୍ୱେଷ, ଲୋଭ, ସନ୍ଦେହ ଓ ଅବିଶ୍ୱାସ ଇତ୍ୟାଦିର ବଶବର୍ତ୍ତୀ । ଏଗୁଡ଼ିକର ପ୍ରଭାବକୁ ଅତିକ୍ରମ କରି ଊର୍ଦ୍ଧ୍ୱକୁ ଉଠିବା ଆଜିର ମନୁଷ୍ୟ ପକ୍ଷରେ ସମ୍ଭବ ହୋଇ ପାରୁନାହିଁ । ତା' ଭିତରର ଚେତନା ନିଷ୍କ୍ରିୟ ହୋଇ ପଡୁଛି । ତା'ର ଆତ୍ମିକ ସତ୍ତା

ବିକାଶପ୍ରାପ୍ତ ନ ହୋଇ ସ୍ଥିତିଶୀଳ ଓ ମନ୍ଥର ହୋଇପଡୁଛି । ତଥାପି, ସମସ୍ତ ପ୍ରତିବନ୍ଧକ ଭିତରେ ମଧ୍ୟ କୌଣସି ଏକ ଅଜଣା ଏବଂ ଅସୀମ ଆଡ଼କୁ ତାର ଅନ୍ତର୍ନିହିତ ଆଗ୍ରହ ଉନ୍ମୁଖ ରହିଛି । ତେଣୁ ନୈରାଶ୍ୟ ଓ ବିଷର୍ଣ୍ଣତାରେ ମନୁଷ୍ୟ କେବଳ ଗ୍ରସ୍ତ ହୋଇ ପଡ଼ିବା ଠିକ୍ ନୁହେଁ । ବିଳମ୍ବ ହେଲେ ମଧ୍ୟ ମନୁଷ୍ୟ ଭିତରେ ଥିବା ସେହି ଆତ୍ମିକ ସତ୍ତା ଜାଗ୍ରତ ହେବ ଏବଂ ବିକାଶ କ୍ରମର ବିଭିନ୍ନ ପର୍ଯ୍ୟାୟ ଅତିକ୍ରମ କରି ଅତି ମାନସ ଚେତନାର ଅଧିକାରୀ ହେବ ଏବଂ ଅତି ମାନବରେ ରୂପାନ୍ତରିତ ହେବ । ଶାନ୍ତନୁ ଆଚାର୍ଯ୍ୟ ଜୀବନ ଅଧ୍ୟୟନରୁ ଏହି ସତ୍ୟ ପ୍ରାପ୍ତ ହୋଇ ଅଛନ୍ତି । ଅବଶ୍ୟ ତାଙ୍କ ଗଳ୍ପ ପ୍ରତିଭାର ଏବଂ ଜୀବନ ଜିଜ୍ଞାସାର ସାମଗ୍ରିକ ରୂପଟିଏ ଆଙ୍କି ଥୋଇଦେବା ଏତେ ସମ୍ଭବ ନୁହେଁ । ଓଡ଼ିଆ ସାହିତ୍ୟର ତାଙ୍କଠାରୁ ଏବେ ମଧ୍ୟ ବହୁତ କିଛି ଆଶା କରେ । ତଥାପି ତାଙ୍କ ଗଳ୍ପର ଏ ପର୍ଯ୍ୟନ୍ତ ପ୍ରକାଶିତ ସଂସାରର କେତେକାଂଶ ବିଶ୍ଳେଷଣରୁ ଏହା ହିଁ ଜଣାଯାଏ ଯେ, ସେ ମନୁଷ୍ୟର ଭବିଷ୍ୟତ ବିଷୟରେ ଆଶାବାଦୀ ଏବଂ ବିଭିନ୍ନ ବାଧା ପ୍ରତିବନ୍ଧକରେ ମନ୍ଥର ହୋଇ ପଡୁଥିଲେ ମଧ୍ୟ ମନୁଷ୍ୟ ବର୍ତ୍ତମାନ ସ୍ଥିତିରୁ ଏକ ଉଚ୍ଚତର ସ୍ଥିତି ଆଡ଼କୁ ଅଗ୍ରସର ହେଉଅଛି- ଏଥିରେ ସେ ନିଃସନ୍ଦେହ ।

୧. ଶ୍ରୀ ମନୋଜ ଦାସ । ସାଂପ୍ରତିକ କଥା ସାହିତ୍ୟ ସ୍ଥାଣୁ ନା ଗତିଶୀଳ ? ଝଙ୍କାର ଜୁଲାଇ ୧୯୭୪

୨-ଇସ୍ତାହାର । ମେ'-୧୯୮୯

୩ ଓ ୪-ସାକ୍ଷାତ୍କାର: ଶୀର୍ଷକ-ସାହିତ୍ୟିକ ମନସ୍ତତ୍ତ୍ୱ । ମଧୁଲିକା । ୫ବର୍ଷ ପ୍ରଥମ ସଂଖ୍ୟା । ୧୯୭୯ ।

୫ ଓ ୬-ଧରିତ୍ରୀ । ତା ୨୯/୧୦/୧୯୭୮ ।

୭-ସତ୍ୟବ୍ରତ ସିଦ୍ଧାନ୍ତଲଙ୍କାର । ବୈଦିକ ବିଚାରଧାରାକା ବୈଜ୍ଞାନିକ ଆଧାର । ଭୂମିକା ।

୮ ଓ ୯- ଶାନ୍ତନୁ ଆଚାର୍ଯ୍ୟଙ୍କ ସହ ସାକ୍ଷାତ୍କାର । ଇସ୍ତାହାର । ମେ-୧୯୮୯

୧୦- 'କଥା' । ଅପ୍ରେଲ-୧୯୮୭ ।

୧୧-ଝଙ୍କାର । ପୂଜା ସଂଖ୍ୟା । ୧୯୭୭

୧୨-ସୁଚରିତା । ଲେଖକ ବିଶେଷାଙ୍କ । ଜାନୁୟାରୀ-୧୯୮୦ ।

୧୩-ଝଙ୍କାର । ପୂଜାସଂଖ୍ୟା । ଅକ୍ଟୋବର-୧୯୮୬ ।

୧୪-ଝଙ୍କାର । ଶାରଦୀୟ ବିଶେଷାଙ୍କ । ଅକ୍ଟୋବର-୧୯୮୭ ।

୧୫- ଝଙ୍କାର ବିଷୁବ ସଂଖ୍ୟା ଏପ୍ରିଲ ୧୯୭୫

୧୬ ଓ ୧୭- ଝଙ୍କାର ପୂଜା ସଂଖ୍ୟା ଏପ୍ରିଲ- ୧୯୮୫

୧୮- ନବରବି ପୂଜା ସଂଖ୍ୟା - ଅକ୍ଟୋବର-୧୯୭୫

୧୯- ଝଙ୍କାର ବିଷୁବ ସଂଖ୍ୟା ଏପ୍ରିଲ-୧୯୮୮

୨୦- ଗଳ୍ପ ସୁମନ ସମ୍ପାଦନା- ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି- ୧୯୮୫



# ଆଦ୍ୟ ସକାଳ

## ନିତ୍ୟାନନ୍ଦ ଶତପଥୀ

ସମସ୍ତଙ୍କ ପରି ଗପ ଲେଖିବା ଉଦ୍ଦେଶ୍ୟରେ ଶାନ୍ତନୁ କୁମାର ଆଚାର୍ଯ୍ୟ ଗପ ଲେଖନ୍ତି ନାହିଁ । ଏକ ଅର୍ଥପୂର୍ଣ୍ଣ ଉଦ୍ଦେଶ୍ୟକୁ ଆରୋପ କରିବାକୁ ସେ ଗପ ଲେଖନ୍ତି । ତାହା ସମସାମୟିକ ରାଜନୈତିକ ଅସଂଗତିର ବିଦ୍ରୂପ ହୋଇପାରେ, ସାମାଜିକ ବିଧି ବ୍ୟବସ୍ଥାର ବ୍ୟଙ୍ଗ ହୋଇପାରେ, ଘଟିଯାଇଥିବା କୌଣସି ତାଜା ଘଟଣାର ପ୍ରତିଫଳନ ହୋଇପାରେ ଯାହା ସମାଜର ଚିନ୍ତାଶୀଳ ମଣିଷମାନଙ୍କୁ ଆକ୍ରାନ୍ତ କରିଥାଏ- ଲୋକମାନଙ୍କ ଭିତରେ ଆଲୋଡ଼ନ ସୃଷ୍ଟି କରିଥାଏ- କିମ୍ବା ହୋଇପାରେ କୌଣସି ଅନ୍ଧ ବିଶ୍ୱାସର କାହାଣୀ; କିନ୍ତୁ ସଂଖ୍ୟାଧିକ ଲୋକଙ୍କ ମନରେ ତାର ପ୍ରଭାବ ଥାଏ ଅତୁଟ । ତାକୁ ଦୂର କରିବାକୁ ଆଗେଇ ଆସୁଥିବା ପ୍ରଗତିଶୀଳ ଯୁବକ (ନାରେଣା) ମଧ୍ୟ ଦ୍ୱନ୍ଦ୍ୱରେ ପଡ଼ିଯାଏ । ସେ ମଧ୍ୟଯୁଗର ପାରମ୍ପରିକ ବିଶ୍ୱାସରୁ ମୁକ୍ତ ନୁହେଁ । ତାଙ୍କ ଗଳ୍ପର ପରିଧି  ଏକ ଭିନ୍ନ ଇଲାକା- ଯେଉଁଠି ବଳିଷ୍ଠ ପ୍ଲଟ ନ ଥାଇପାରେ, କିନ୍ତୁ ବଳିଷ୍ଠ Themeଟିଏ ଥିବ । ଗଭୀର ଅର୍ଥପୂର୍ଣ୍ଣ ଅନ୍ତର୍ନିହିତ ଭାବନାଟିଏ ଥିବ । ମତବାଦଟିଏ ଥିବ । ବେଳେବେଳେ ତାଙ୍କ ଗଳ୍ପ ଏକ ଆଧାତ୍ମିକ ଜଗତର ରହସ୍ୟକୁ ପରିବୃତ୍ତ କରି ବସେ- ସେତେବେଳେ ଶ୍ରୀ ଆଚାର୍ଯ୍ୟ ଭାରି ଅସ୍ପଷ୍ଟ ମନେ ହୁଅନ୍ତି; କୌଣସି ରହସ୍ୟାତ୍ମକ ଏକକ ଅନୁଭବକୁ ପ୍ରକାଶ କରିବାକୁ ସେ ଗଳ୍ପର ପଞ୍ଜରଟିଏ ଲୋଡ଼ି ନିଅନ୍ତି । ସେଠି ଗାଳ୍ପିକ ଖୁବ୍ ବୌଦ୍ଧିକ, ତାତ୍ତ୍ୱିକ ଓ ଶୁଚିମନ୍ତ । ପ୍ରତୀକ, ଚିତ୍ରକଳ୍ପ ଭିତରେ ପ୍ରକାଶ ପାଏ କେତେଗୁଡ଼ିଏ ଆଇଡ଼ିଆ, ଯାହା ଲେଖକର ଆତ୍ମିକ ଭାବାନ୍ତର- ସେତେବେଳେ ସେ ଥାଏ ମାଟିଠାରୁ ଊର୍ଦ୍ଧ୍ୱ ଏକ ଜଗତରେ, ଆଧାତ୍ମିକ ଜଗତରେ । ସେଠି ଚେତନାର ଉତ୍‌ଲମ୍ଫନ ଓ ଅତିସରଣକୁ ଛୁଇଁବାକୁ ପାଠକର ମଧ୍ୟ ସେହିପରି ବୌଦ୍ଧିକ ପୁଞ୍ଜି ଦରକାର ହୁଏ । ନଚେତ୍ ଗାଳ୍ପିକ ଶାନ୍ତନୁ ରହିଯାଆନ୍ତି ଅପହଞ୍ଚ । ପାଠକର ମୋହଭଙ୍ଗ ଘଟେ । ଏସବୁ ଗଳ୍ପରେ ସ୍ପଷ୍ଟତଃ ମେଟାଫିଜିକାଲ ଦୃଷ୍ଟିଭଙ୍ଗୀ ପୋଷଣ କରନ୍ତି । "ଆଦ୍ୟ ସକାଳ" ଗଳ୍ପଟି ଏହାର ଏକ ସ୍ପଷ୍ଟ ଉଦାହରଣ ।

ଶାନ୍ତନୁ ସରଳ ଗଳ୍ପ କଥକ ନୁହଁନ୍ତି, ନୁହଁନ୍ତି ମଧ୍ୟ କାହାଣୀକାର । ଜଟିଳ, ଭାବାବର୍ତ୍ତକୁ ନେଇ ସେ ଗଳ୍ପ ରଚନା କରନ୍ତି । ଅନେକ ଗଳ୍ପ ରୂପକାତ୍ମକ (allegerical)ତାହାର ଆପାତତଃ ପ୍ରତୀୟମାନ ଅର୍ଥ ପଛରେ ଅନ୍ୟ ଏକ ଅନ୍ତର୍ନିହିତ ନିଗୁଢ଼ ଅର୍ଥ ଥାଏ । ଏପରି ସେ ଦୁଇଟି ପୃଥକ୍ ଗଳ୍ପଭୂମି ସୃଷ୍ଟି କରନ୍ତି । ପ୍ରତୀୟମାନ ଗଳ୍ପ ଭୂମିର ସଂଚର ପଥରେ ପାଠକ ବୁଲୁବୁଲୁ ଅତୃପ୍ତି ଓ ହତାଶାରେ ଆଚ୍ଛନ୍ନ ହୁଏ କାରଣ ଆଉ ଏକ ବିଶେଷ ମନୋଭୂମି ଏକ ନିହିତ ଅପ୍ରକଟିତ ଅତି ମାନସିକ ବା ଅବଚେତନିକ ଭାବ ଭୂମିର ଜଟିଳତା ସ୍ୱତଃ ପ୍ରତିପନ୍ନ ହୋଇଯାଏ- ଯାହା ତାକୁ ଅଧିକରୁ ଅଧିକ ଚିନ୍ତାକ୍ରାନ୍ତ କରେ । ସହଜରେ ତେଣୁ ଗଳ୍ପର କେନ୍ଦ୍ରଭେଦ କରିହୁଏ ନି । ଉଦାହରଣ ସ୍ୱରୂପ ତାଙ୍କ 'ଆଦ୍ୟ ସକାଳ' ଗଳ୍ପ କିମ୍ବା

ଏହିପରି ମନୋଭୂମିକୁ ନେଇ ରଚିତ ଏ ସଂକଳନର ଅନ୍ୟ ତିନୋଟି ଗଳ୍ପ 'ଭକ୍ତ ଲୋକ' 'ଯେଉଁଠି ମୀନ ଖେଳୁଛି', 'ଚାଲ ସେଇଠିକି ଯୋଉଠି ଭଗବାନ ଅଛନ୍ତି' । ଆପାତତଃ ଅର୍ଥରେ ଏ ଗଳ୍ପଗୁଡ଼ିକର ପ୍ରତୀତି ଯାହା ହୁଏ ନିହିତ ଅର୍ଥରେ ଆଉ କିଛି ଭିନ୍ନ ଅନୁଭୂତି, ଭିନ୍ନ ଜଗତ, ଭିନ୍ନ ଭାବନା ନେଇ ଗଳ୍ପ ପାଠକ ମନରେ ଅନେକ ରହସ୍ୟ ସଂଶୟ, ଅବବୋଧ ଓ ଭାବାନ୍ତର ସୃଷ୍ଟି କରିଥାଏ । ଉଦାହରଣ ସ୍ୱରୂପ ବାଘଟିର କିଶୋର ଉପରକୁ ଦୁଇବାର ବ୍ୟର୍ଥ ଲମ୍ଫ ପ୍ରଦାନ ଓ ଗଛ ଡାଳରେ ଚଢ଼େଇର ଆଖିରୁ ଆନନ୍ଦାଶ୍ରୁ ଓ କଣ୍ଠରୁ ଲଳିତ ମୂର୍ଚ୍ଛନାର ସଙ୍ଗୀତ ଉଚ୍ଚାରିତ ହେବା ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ । ଏହି ଚଢ଼େଇଟି କିଛିତ ପୂର୍ବରୁ ବ୍ୟାଘ୍ର କବଳରୁ ନିର୍ବୋଧ ନିର୍ବିକାର କିଶୋରଟିକୁ ବଞ୍ଚେଇବାକୁ କେତେ ଉଦ୍ୟମ କରିଥିଲା- ଠିକ୍ ଯେପରି ନିଜ ଶାବକଙ୍କୁ ପାରଣା କରିବାକୁ ମାଡ଼ି ଆସୁଥିବା ସାପ କିମ୍ବା କଟାଶ ମୁହଁରୁ ସେମାନଙ୍କୁ ରକ୍ଷା କରିବାକୁ ନାନାଦି ଚିରିଚିରା ଶବ୍ଦ କରି ପକ୍ଷୀ ଖାଦକର ଆସକ୍ତ ଚିତ୍ତବୃତ୍ତିକୁ ବିଭ୍ରାନ୍ତ କରିଥାଏ । ଶାନ୍ତନୁଙ୍କ ମତରେ ପ୍ରକୃତିର ଅନ୍ୟନାମ ପକ୍ଷୀ, ଯେ ମଣିଷକୁ ବିପଦରୁ ରକ୍ଷା କରିବାକୁ ସାମୟିକ ଚେଷ୍ଟା କରିଛି । ଖୁବ୍ ଶିଘ୍ର ବୁଝିଚି ମଣିଷ ଭିତରର ଶକ୍ତି- କିଶୋର ଭିତରେ ସେହି ତାରୁଣ୍ୟର ଉଦ୍‌ଗମ କାଳରେ ତା'ର ମନ ଯେଉଁ ଜଗତକୁ ଆବୋରି ବସିଛି ଓ ଯେଉଁ ଶକ୍ତି ବା ଚେତନା ବଳରେ ସେ ଆକର୍ଷକ, କାମାତୁର ଶିମିଳୀ ଗଛକୁ "ଦେବୀ" "ଦେବୀ" ବୋଲି ସମ୍ବୋଧନ କରୁଛି ତାକୁ କ'ଣ କେବେ କୌଣସି ହିଂସ୍ର ଜନ୍ତୁ ନିଃଶେଷ କରି ଦେଇପାରେ ? ତେଣୁ ହିଂସ୍ର ପଶୁର ସମସ୍ତ ଚେଷ୍ଟା ଏଇ ଅହିଂସ ଶକ୍ତିଶାଳୀ ଅନ୍ତର୍ଜଗତର ଆଲୋକ ଉପଲବ୍ଧି କରିଥିବା କିଶୋର ପାଖରେ ବ୍ୟର୍ଥ ହୋଇଯାଉଛି । ତାତ୍ପର୍ଯ୍ୟ ହେଲା ତାକୁ ପୃଥିବୀର କୌଣସି ଅପଶକ୍ତି ପରାଭୂତ କରିପାରିବ ନାହିଁ । ତା' ଭିତରେ ଜାଗ୍ରତ ହୋଇଛି ଦିବ୍ୟ ଆଲୋକ ଶିଖା । ସେ ମଣିଷ ଅମୃତର ସନ୍ତାନ, ଯୌବନର ଉନ୍ମାଦନାରେ ସେ ଅସାଧ୍ୟ ସାଧନ କରିପାରେ, ମନ ତା'ର ସେହିପରି ଉତ୍ତାନପାଦ । ସେ ମୁକ୍ତ, ନିରବଲମ୍ବ । ପ୍ରକୃତି ତାକୁ ଯୋଗାଇ ଦିଏ ଅସୀମ ଶକ୍ତି- କୌଣସି ହିଂସ୍ରତା ଓ ସାମୟିକତା ତାର ଏ ଚୈତନିକ ଅନ୍ତର୍ଶକ୍ତି ପାଖରେ ସ୍ୱତଃ ପରାଭୂତ ହେବା କଥା ।

ଅଧିକାଂଶ ଗଳ୍ପରେ ଶାନ୍ତନୁ ବାବୁ ଭାରତବର୍ଷର ଆତ୍ମାକୁ ଖୋଜିଛନ୍ତି- ଯାହା ଯୁଗେ ଯୁଗେ ସଂସ୍କାର, କୁସଂସ୍କାର, ବିଶ୍ୱାସ, ଅବିଶ୍ୱାସର ଦ୍ୱୈତଧାରାରେ ମହୀୟାନ । ତା'ର ସାଂସ୍କୃତିକ ଚେତନା ମଧ୍ୟ ଏହାରି ମଧ୍ୟରେ ସଂଗଠିତ । ଗଭୀର ଭାବେ ନିଖାତ ତାଙ୍କ ଗଳ୍ପର ବିଷୟବସ୍ତୁ ଶସ୍ତା ପ୍ରେମ କାହାଣୀ ନୁହେଁ ବା ଏକ ଭାସମାନ ବଉଦଖଣ୍ଡ ନୁହେଁ । ପାଠକର ମନ ଆକାଶକୁ ଏହା ଗଭୀର ଭାବେ ଅଚ୍ଛନ୍ନ କରି ରଖେ । ସେହିପରି ନାରେଣାର ସମସ୍ତ ମାନସିକ ଦମ୍ଭ, ସାହସ ସତ୍ତ୍ୱେ ସେ ଏକ ଅନ୍ଧ କୁସଂସ୍କାରକୁ ଛଡ଼ାଇବାକୁ ଯାଇ ବାରମ୍ବାର ରତ୍ନଯୋଡ଼ିରେ ବୁଡ଼ ଦେଇ ଅତଳ ତଳୁ ପଙ୍କ ଆଣି ଶେଷକୁ ମୃତ୍ୟୁ ଦ୍ୱାରା କବଳିତ ହୁଏ । ଲୋକେ ଭାବନ୍ତି ରତ୍ନଯୋଡ଼ିରେ ଥିବା ବଉଳା କୁମ୍ଭୀର ହାବୁଡ଼ରେ ପଡ଼ିଚି ଉଦ୍ଧତ ବିଧର୍ମୀ ନାରେଣା । କିନ୍ତୁ ନାରେଣା ମୃତ୍ୟୁ ପୂର୍ବରୁ କହିଯାଏ "କୋଉ ଜଣାଣ ବୋଲିବି... କୁମ୍ଭୀର ନୁହେଁ ସେ ନିଜେ ଭଗବାନଙ୍କ ହାବୁଡ଼େ (ମହାକାଳ) ପଡ଼ିଯାଇଛି... ଛାଡୁନାଇଁ ସେ...ଛାଡ଼ିବନାଇଁ ମତେ.../ ତମକୁ.... ସମସ୍ତଙ୍କୁ ।" ମୃତ୍ୟୁପରି ଏକ ଚରମ ସତ୍ୟ ପାଖରୁ ମୁକ୍ତି ନାହିଁ । ତେଣୁ ସେଥିପାଇଁ ଭୀତି କାହିଁକି ? କାହିଁକି ଏତେ ଅପପ୍ରଚାର- ବାରହାତ ଖଣ୍ଡା ଧରି ବଉଳା କିମ୍ଭୀର ଉଠିବ ଓ ସମସ୍ତଙ୍କୁ ସଂହାର କରିବ ? ଏ ମାଳିକା ବାଣୀ ଏକ ଅନ୍ଧ କୁସଂସ୍କାର ବୋଲି କହିବାକୁ ଯାଇ ଶେଷକୁ ତା ବିରୁଦ୍ଧରେ ବଜ୍ର

ଶପଥ ନେଇ ଠିଆ ହୋଇଥିବା ସଂସ୍କାରକାମୀ ନାରେଣାର ମୃତ୍ୟୁରେ ଲେଖକଙ୍କ ଆପାତଃ ଉଦ୍ଦେଶ୍ୟ ନିଶ୍ଚୟ ସାଧିତ ହୋଇ ପାରିନାହିଁ- କିନ୍ତୁ ବିପଦ ବେଳେ ମଣିଷମାତ୍ରେ ଯେ ଭଗବାନଙ୍କୁ ଡାକନ୍ତି, ଯେତେ ସଂଶୟବାଦୀ ହୁଅନ୍ତୁ ପଛେ ମୃତ୍ୟୁ ସ୍ୱାଭାବିକ ଭାବେ ମଣିଷକୁ କବଳିତ କରିବ, ସେଥିରୁ ଭକ୍ତଜନର ମଧ ଉଦ୍ଧାର ନାହିଁ- ଏହିପରି ଏକ ନିହିତ ସତ୍ୟକୁ ପ୍ରତିପାଦନ କରିଛନ୍ତି ଗଳ୍ପ ମାଧମରେ- ଯଦିଓ ଗଳ୍ପର ପରିଣତି ଉଦ୍ଦେଶ୍ୟ ସହିତ ଅନୁପାତିକତା ରକ୍ଷାକରି ପାରିନାହିଁ । ଏ ଗଳ୍ପ ରଚନାର ଉଦ୍ଦେଶ୍ୟ କ'ଣ ? ଚଳିତ ଶତାବ୍ଦୀର ଶେଷ ଭାଗରେ ଏପରି ଗଳ୍ପ ମଣିଷ ଜୀବନର କେଉଁ ବାସ୍ତବତାକୁ ପ୍ରକଟିତ କରୁଛି- ତାକୁ କେଉଁ ସତ୍ୟର ସମୀପବର୍ତ୍ତୀ କରୁଛି ?- ଏହାର ସହଜ ଉତ୍ତର ନମିଳିଲେ ବି କୁହାଯାଇ ପାରିବ ଯେ ଲେଖକ ବୈଜ୍ଞାନିକ ସତ୍ୟର ପ୍ରଚାରକ ହେବା ଅପେକ୍ଷା ମାନବିକ ସତ୍ୟର ପ୍ରବକ୍ତା ହେବାକୁ ଶ୍ଳାଘ୍ୟତର ମଣେ । ଯୁଗ ଯୁଗର ବିଶ୍ୱାସକୁ ବୈଜ୍ଞାନିକମାନେ ଅଳୀକ କହିଲେବି ଲେଖକ ପାଇଁ ମଣିଷ ଜୀବନର ଅଦ୍ଭୁତ କଞ୍ଚାମାଲ ଉପେକ୍ଷଣୀୟ ନୁହେଁ । ମଣିଷ ଜଗତରେ ଦ୍ୱନ୍ଦ୍ୱ ଓ ସଂଶୟ ହିଁ ତାର ଚିନ୍ତାକୁ ରସଦ୍ ଯୋଗାଇ ଥାଏ ।

ଏ ଦୃଷ୍ଟିରୁ ଶାନ୍ତନୁ କୁମାର ଜଣେ ରକ୍ଷଣଶୀଳ ଗାଳ୍ପିକ ନିଶ୍ଚୟ । ସେ ପୁରୁଣା କଥାରେ ବିଶ୍ୱାସ କରନ୍ତି । ବୟସ୍କ ଲୋକଙ୍କୁ ସମ୍ମାନ ଦିଅନ୍ତି, ସେମାନଙ୍କ ଅନୁଭୂତିରୁ ସଂଗ୍ରହ କରନ୍ତି ନିଜ ଗଳ୍ପପାଇଁ କଞ୍ଚାମାଲ- ଯେପରି "ମହାପୁରୁଷେର ବାନୀ" ବିଷୟଟି ଯେତେ ଅବୈଜ୍ଞାନିକ ହେଲେବି ଏକ ସତ୍ୟକୁ ପ୍ରତିପନ୍ନ କରିବା ପାଇଁ ପ୍ରତିଷ୍ଠିତ ବିଶ୍ୱାସ ମହାପୁରୁଷେର ବାନୀ ହୋଇଛି ବିଚାରର କଷଟୀ ପଥର । ମାଧବ ହିଁ କେବଳ ସତ କହିପାରେ- କାରଣ ପୁଲିସ୍ ଠାରୁ ମାଡ଼ଖାଇ ପଡ଼ିଯିବା ପରେ ତା ପାଟିରେ ମାଟି ପଶିଯାଇଛି ଓ ବର୍ତ୍ତମାନ ତା' ମାଆ ଆଡ଼କୁ ଈଷତ୍ ଉଲ୍ଲସିତ ହୋଇ ଚାହିଁ ରହିଛି ପ୍ରାୟ ଆଣ୍ଠେଇବା ଅବସ୍ଥାରେ- ମହାପୁରୁଷେର ବାନୀ ବର୍ଣ୍ଣବୋଧରେ ଅଛି "ଏରୁଣ୍ଡି ଉପରେ ଗୁରୁଣ୍ଡି ଗୁରୁଣ୍ଡି ମାଧବ ବସିଛି ଯାଇ/ ମାତାଙ୍କ ମୁଖକୁ ଅନାଇ ଅନାଇ ମାଟି ଦେଉଅଛି ଖାଇ" । ଏହା ମିଥ୍ୟା ହୋଇ ପାରେନା । ତେଣୁ ସେ କେବଳ ସତ କହୁଛି ଓ ତେଣୁ ତାକୁ ସରଜମିନ ତଦନ୍ତ କରୁଥିବା ବଙ୍ଗାଳୀ ପୋଲିସ୍ ହାକିମ ଛାଡ଼ି ଦେଇଛନ୍ତି । ଏପରି ପ୍ରତିଷ୍ଠିତ ବିଶାସର ମୂଳ ସୂତ୍ରଟି ମଣିଷ ଜୀବନର ଗଭୀର ଅନୁଧ୍ୟାନ ଭିତରେ ହିଁ ବର୍ତ୍ତମାନ । ଗାଳ୍ପିକ ଶାନ୍ତନୁ କୁମାର ତେଣୁ ମଣିଷ ଜୀବନର ପ୍ରଚଳିତ ରୀତିସିଦ୍ଧ ପାରମ୍ପରିକ କୌଣସି ବିଶ୍ୱାସକୁ ରିଡ଼ିକୁଲ୍ କରିବାକୁ ଚାହାନ୍ତି ନାହିଁ, ସେ ତାକୁ ସମର୍ଥନ ଜଣାନ୍ତି ଓ ବେଳେବେଳେ ସେହିପରି ବିଶ୍ୱାସର ଜିତାପଟବି ହୋଇଯାଏ । ଏଇ ଦୃଷ୍ଟିରୁ ତାଙ୍କୁ ରକ୍ଷଣଶୀଳ ପରମ୍ପରାବାଦୀ ଗାଳ୍ପିକ ବୋଲି କୁହାଯିବ । ନଚେତ୍ ଦୁଇଜଣ ଯୁବକଙ୍କ କଥୋପକଥନ ପରେ ତାଙ୍କରି ଗ୍ରାମର ତୋଟାରେ ବିଦେଶୀ ଜେଟ୍‌ଟା ଖସି ପଡ଼ିବାର ଆକସ୍ମିକତା ପଛରେ କି ବୈଜ୍ଞାନିକ ସତ୍ୟ ବା ରହିଛି ? କିନ୍ତୁ ବିଦେଶୀ ହାଇଜାକ୍‌ର ମଧ ସ୍ୱୀକାର କରେ ଯେ ଏଇଠି ଭଗବାନ ଅଛନ୍ତି ଏଇଟି ଧର୍ମକ୍ଷେତ୍ର- ବିଶାଳ ଭାରତବର୍ଷର ଏଇ ନୀଳମାଦବ କ୍ଷେତ୍ର- ପାଇଲଟ୍ ବେକମୂଳେ ବନ୍ଧୁକ ରଖି ସେ ତାକୁ ଆଦେଶ ଦିଏ.... "ଚାଲ ସେଇଠିକି ଯୋଉଁଠି ଭଗବାନ **ଅଛନ୍ତି**" । ପରିଣତିରେ ମୃତ୍ୟୁ ହୁଏ ପାଇଲଟ ଓ ବିଧର୍ମୀ ହାଇଜାକ୍‌ର ସହିତ ୩୦୦ ନିର୍ଦ୍ଦୋଷ ବିମାନ ଯାତ୍ରୀଙ୍କର । ମନେ ହେବ ଗଳ୍ପଟି ଏକ ଗାଲୁଗଳ୍ପ ବା ଏକ ଆକସ୍ମିକ ବ୍ୟାପାର । ଆପାତଃ ଅର୍ଥରେ ଏ ଗଳ୍ପର ସାରମର୍ମକୁ ପାଠକେ ପ୍ରଥମେ ଗ୍ରହଣ କରିପାରିବେ ନାହିଁ । କିନ୍ତୁ ତା ପଛରେ ଲେଖକଙ୍କ ରକ୍ଷଣଶୀଳ ବିଶ୍ୱାସ ପ୍ରତିପନ୍ନ ହୁଏ । ବିଦେଶୀ ମାତ୍ରେଇ ଧର୍ମଦ୍ରୋହୀ, ତେଣୁ

ଧର୍ମ କ୍ଷେତ୍ରରେ ମୃତ୍ୟୁବରଣ କରି ସେମାନେ ପାପ ପ୍ରକ୍ଷାଳନ କରିଛନ୍ତି । ହାଇଯାକର ବିଧର୍ମୀ ହୋଇଥିବାରୁ ଜୀବନ୍ତ ଭାବେ ଧର୍ମକ୍ଷେତ୍ରକୁ ଛୁଇଁ ପାରିନି । ଦରିଦ୍ର ଜନ ସାଧାରଣ ଯୁଗେ ଯୁଗେ ଆକସ୍ମିକତା ଉପରେ ବିଶ୍ୱାସ ରଖି ବଞ୍ଚି ରହନ୍ତି । କିଛି ଗୋଟାଏ ଘଟିବ- ଧର୍ମ ଅଛି- ନିଶ୍ଚୟ ସେମାନଙ୍କୁ ପ୍ରଚୁର ସମ୍ପତ୍ତି ବା ସୁଖ ମିଳିଯିବ । ଅଷ୍ଟାଦଶ ଶତାବ୍ଦୀ ୟୁରୋପରେ ଶିଳ୍ପୀକରଣ ବେଳେ ଠିକ୍ ଏହିପରି ପରିସ୍ଥିତି ଉପୁଜି ଥିଲା- ଯେଉଁ ପରିସ୍ଥିତି ବର୍ତ୍ତମାନ ଆମ ଦେଶରେ । ଆକସ୍ମିକତା ଉପରେ ବିଶ୍ୱାସ ରଖି କୁଡ଼ କୁଡ଼ ଲୋକ ଏଠି ବଞ୍ଚି ରହିଛନ୍ତି- ଏହିପରି ଅବୈଜ୍ଞାନିକ ଓ ବିଶ୍ୱାସ ସିଦ୍ଧ ଦୈତ୍ୟ ଭାବରାଶୀର ଆପାତତଃ ଦ୍ୱନ୍ଦ୍ୱ ଭିତରେ ଲେଖକଙ୍କ ଚିନ୍ତ୍ୟର ସଂଘର ପଥ ନିର୍ମିତ ହୋଇଛି ।

ଏ ଗଲା ତାଙ୍କ ଗଳ୍ପର ଗୋଟିଏ ଦିଗ । କିନ୍ତୁ ଶାନ୍ତନୁ କୁମାର ଯେ ଜଣେ ସମୟ ସମାଜ ଓ ରାଜନୀତି ସଚେତନ ଗାଳ୍ପିକ ଏଥିରେ ଦ୍ୱିରୁକ୍ତି ଥାଇନପାରେ । ଅନେକ ସମସାମୟିକ ଘଟି ଯାଉଥିବା ଘଟଣା ଓ ଦୁର୍ଘଟଣାକୁ ଭିତ୍ତି କରି ତାଙ୍କ ଗଳ୍ପ ଗଢ଼ିଉଠେ । କିନ୍ତୁ ଗଳ୍ପଟି ସେଇଠି ଘଟଣା ବା ଦୁର୍ଘଟଣା ପାଖରେ ବନ୍ଦୀ ହୋଇ ରହେନାହିଁ । ତାଠାରୁ ଅଧିକ କିଛି କହେ, ଅଧିକ କିଛି ବାର୍ତ୍ତା ବହନ କରେ । ଅତି ବ୍ୟଞ୍ଜନାପୂର୍ଣ୍ଣ ଭାଷାରେ ସେ ସମାଜ ବା ରାଜନୀତିର ଅସଂଗତିକୁ ପଦାରେ ପକାଇ ଦିଅନ୍ତି ଅତି କଳାତ୍ମକ ଭାବେ । ଏହିପରି ଗୋଟିଏ ଗଳ୍ପ "କ୍ଳାସ୍‌ମେଣ୍ଟ" । ଏ ଗଳ୍ପଟିରେ ସରକାରୀ ପ୍ରଶାସନିକ କଳର ଅଯଥା ବିରୋଧୀ ଦଳ- କୋକୁଆ ଭୟରୁ କେତେଜଣ ଉତ୍ସୁକ ଯୁବକଙ୍କ ଆଗ୍ରହ କିପରି ଶେଷରେ ମର୍ମନ୍ତୁଦ ପରିସ୍ଥିତି ସୃଷ୍ଟି କରିଛି- ତାହାର ଚିତ୍ର ପ୍ରଦତ୍ତ । ମନ୍ତ୍ରୀଙ୍କ କ୍ଲାସ୍‌ମେଣ୍ଟ୍ ପାନଦୋକାନୀ କଣ୍ଟୁରୀ ସ୍ୱାଇଁ ସହିତ ମନ୍ତ୍ରୀଙ୍କର ବନ୍ଧୁମିଳନ କରାଇବା ଆଗ୍ରହରେ ତୋରଣ ଗଢ଼ିଥିବା ଯୁବକମାନେ ସେମାନଙ୍କ ଉଦ୍ଦେଶ୍ୟରେ ବାସ୍ତବତା ବିଷୟରେ ସରକାରୀ କଳକୁ ଜଣାଇନାହାନ୍ତି କି ସରକାରୀ କଳ ପ୍ରକୃତ ଘଟଣାକୁ ବୁଝିବାକୁ ଚେଷ୍ଟା ମଧ କରିନି । ଏହାକୁ ଅପୋଜିସନର ଏକ ଛଲ୍ ବୋଲି ପ୍ରଥମରୁ ନାମିତ କରି ସେମାନେ ଯେଉଁ ଭୁଲ ବୁଝାମଣାର ବଶବର୍ତ୍ତୀ ହୋଇଛନ୍ତି ତହିଁର ପରିଣତିରେ ଲାଠିଚାଳନା ଓ ଏକ ମୂଲ୍ୟବାନ ଜୀବନର ଅବସାନ ଘଟିଛି । ପରିସ୍ଥିତି ଅପୋଜିସନ ଫାଇଦା ନବାକୁ ଚେଷ୍ଟା କଲାବେଳେ ମନ୍ତ୍ରୀ ନିଜର କ୍ଲାସମେଟ୍ କଣ୍ଟୁରୀ ସ୍ୱାଇଁର ମୃତ୍ୟୁରେ ବିବ୍ରତ ଓ ବ୍ୟଥିତ ହେବା ପରିବର୍ତ୍ତେ ତାର ପିଲାବେଳୁ 'ଶହୀଦ ହେବାପାଇଁ ଆଗ୍ରହ ଥିଲା ବୋଲି ମିଛ statement ଦେବାକୁ ଚେଷ୍ଟା କରିଛନ୍ତି । ନା ଅଛି ହୃଦୟ ନା ଅଛି ସୌକୁମାର୍ଯ୍ୟ- ସବୁ ଯେପରି ଯାନ୍ତ୍ରିକ ବା ମେକାନିକାଲ୍ । ଲେଖକ ସରକାରୀ କଳ ଓ କ୍ଷମତାର ଏଇ ଯାନ୍ତ୍ରିକତାକୁହିଁ ବ୍ୟଙ୍ଗ କରିଛନ୍ତି । ସେହିପରି ଆଉ ଏକ ଗଳ୍ପ "ଜାଲ ଇଣ୍ଟରଭିଉ"ରେ ମନ୍ତ୍ରୀ ଶାସନର ଯାନ୍ତ୍ରିକତା, ଦୁର୍ନୀତି ଓ ପ୍ରିୟାପ୍ରୀତି ତୋଷଣ ସମ୍ପର୍କରେ ସ୍ୱଷ୍ଟ ସୂଚେଇ ଦିଆଯାଇଛି । ଯୋଗ୍ୟ ପ୍ରାର୍ଥୀମାନେ ଇଣ୍ଟରଭିଉରେ ସମର୍ଥ ହୋଇ ପାରୁନାହାନ୍ତି- କାରଣ ମନ୍ତ୍ରୀଙ୍କର ଟେଲିଫୋନ ଅନୁଯାୟୀ ସର୍ବୋଚ୍ଚ ଅଯୋଗ୍ୟ ପ୍ରାର୍ଥୀଟିକୁ ନେବାକୁ ହେବ । ସ୍ୱାଧୀନ ଗଣତାନ୍ତ୍ରିକ ଭାରତରେ ଶାସନ ନାମରେ ମୂଲ୍ୟବୋଧର ଏପରି ବିପର୍ଯ୍ୟୟ ଆଗରୁ କେବେ ହୋଇନଥିଲା । ଏଠି ଆଜି ଯୋଗ୍ୟତାର ମୂଲ୍ୟ ନାହିଁ- ଇଣ୍ଟରଭିଉ ନାମକୁ ମାତ୍ର ହେଉଛି । କେତେ କେତେ ଯୋଗ୍ୟ ଦରିଦ୍ର ପ୍ରାର୍ଥୀଙ୍କ ଅଶ୍ରୁ ଓ କାରଣ୍ୟ ସତ୍ତ୍ୱେ ଇଣ୍ଟରଭିଉ ରାକ୍ଷସୀୟ କ୍ଷୁଧା ତଥାପି ପ୍ରଶମିତ ହେଉନାହିଁ । ମେଧା ଓ ଯୋଗ୍ୟତା ହେଉଛି ବିଡ଼ମ୍ବିତ ଓ ପ୍ରତାରିତ ।

'ଆଧୁନିକ ରାକ୍ଷସ' ଗଳ୍ପରେ କ୍ଷମତା ପ୍ରମତ୍ତ ରାଜନୈତିକ ଶକ୍ତି ସମ୍ପନ୍ନ ବ୍ୟକ୍ତିଙ୍କ ଆସୁରିକ କ୍ଷୁଧାର କେତୋଟି ଦୃଷ୍ଟାନ୍ତ ଦିଆଯାଇଛି । ସେମାନଙ୍କ କ୍ଷୁଧା ଏତେ ଉତ୍କଟ ଯେ ସେମାନେ ସୁନ୍ଦର ପାର୍କର

ସୌନ୍ଦର୍ଯ୍ୟ ସବୁଜିମାକୁ ଧ୍ୱଂସ କରି ବସୁଛନ୍ତି- ଶିଶୁଉଦ୍ୟାନ ବାର୍ଦ୍ଧକ୍ୟ ବିଶ୍ରାମ ସ୍ଥଳୀ ଓ ପୁରୁଷ ପୁରୁଷର ଶ୍ମଶାନକୁ ମଧ ଛାଡ଼ି ଦେବାକୁ ପ୍ରସ୍ତୁତ ନୁହଁନ୍ତି । ଏ ଗଳ୍ପଟିରେ ଶ୍ରୀ ଆଚାର୍ଯ୍ୟଙ୍କ ରାଜନୈତିକ ବ୍ୟଙ୍ଗ୍ୟ ଖୁବ୍ ଶକ୍ତିଶାଳୀ । ରାକ୍ଷସ ଏଠି କ୍ଷମତାର ପ୍ରତୀକ- ଯାହା ମଣିଷ ସମାଜର କୌଣସି କୋମଳତା, ସୌନ୍ଦର୍ଯ୍ୟବୋଧ ଓ ମହନୀୟତାର ମୂଲ୍ୟ ଦିଏନି । କେବଳ ନିଜର ଉଦର ପୂର୍ତ୍ତିହିଁ ତାର ଏକମାତ୍ର ଅଭିଳାଷ । ସ୍ୱାଧୀନ ଭାରତରେ କ୍ଷମତାର ଅପ ପ୍ରୟୋଗ କରି ସମ୍ପତ୍ତି ବୃଦ୍ଧି କରିଥିବା ବ୍ୟକ୍ତିଙ୍କ ସଂଖ୍ୟା କିଛି କମ୍ ନୁହେଁ ।

ଅନ୍ୟୂନ ତିନୋଟି ଗଳ୍ପରେ ନାରୀ ଧର୍ଷଣର ଚିତ୍ର ରହିଛି । ଅବଶ୍ୟ ଏ ସମ୍ବାଦ ଆଜି ପ୍ରତିଦିନ ଖବର କାଗଜର ପୃଷ୍ଠା ମଣ୍ଡିତ କରୁଥିବା ଦେଖାଯାଏ, କିନ୍ତୁ ଏହା ଆମ ସମାଜ ପାଇଁ ଏକ ଆଗ୍ନେୟ ସମସ୍ୟା । ଗାଞ୍ଜିକ ଓଡ଼ିଶାରେ ଘଟିଯାଇଥିବା ଏକ ଭୟଙ୍କର ଅମାନବିକ ନାରୀ ଧର୍ଷଣର କାହାଣୀକୁ 'ହିଟଲର' ଗଳ୍ପରେ ଚିରାୟତ କରି ଦେଇଛନ୍ତି । ଅର୍ଥ ଓ ପ୍ରତିପତ୍ତି ସ୍ଥାନୀୟ ସରକାରୀ କଳକୁ ବିପଥଗାମୀ କରିବା ଦ୍ୱାରା ଉପଯୁକ୍ତ ପ୍ରତିକାର ଓ ନିରାପତ୍ତା ବ୍ୟବସ୍ଥା ଅଭାବରୁ ଯେତେ ନାରୀକୀୟ କାଣ୍ଡ ଓଡ଼ିଶାରେ ଘଟି ଆମ ଜନଜୀବନକୁ ଦୋହଲେଇ ଦେଇଚି ତନ୍ମଧ୍ୟରୁ କୌଣସି ଘଟଣାର ଛାୟାରେ ଏ ଗଳ୍ପଟି ରଚିତ ହୋଇ ପାରିଥାଏ । ମଣିଷର ମୂର୍ଖତା ନିର୍ମମତା ସହିତ ମିଶିରହିଛି ସାମ୍ବାଦିକତାର ଶଠତା ଓ ଗ୍ରାମ୍ୟ-ଟାଉଟରୀ, ସବୁକିଛି ମୂଲ୍ୟବୋଧର ବିପର୍ଯ୍ୟୟ ମିଶି ଯାହା ଆମର ଚଳନ୍ତି ସମାଜ-ଯାହାକୁ ସଭ୍ୟ ସମାଜ କହିବା ଏକ ଲଜ୍ଜାକର ବ୍ୟାପାର ହେବ । ହିଙ୍ଗୁ ଓରଫ ହିଟଲର ସ୍ମଗଲିଙ୍ଗ କରି ଧନ କମେଇଛି, ସେ ସିମେଣ୍ଟ ଏଜେଣ୍ଟ ଗେରା ବେପାର ସହ ସମ୍ପୃକ୍ତ, କିନ୍ତୁ ସାମ୍ବାଦିକତା ବ୍ଲାକମେଲିଙ୍ଗକୁ ଧନପତିର କୋକୁଆ ଭୟ । ତା ବିରୁଦ୍ଧରେ ନାନାକଥା ପ୍ରକାଶ ପାଇଛି କାଗଜରେ । ତାକୁ ହିମ୍ମତ୍ ଦିଅନ୍ତି ସ୍ଥାନୀୟ ନିମ୍ନତମ ଶାସନକଳର ମାଲିକ ବି.ଡି.ଓ.- ସେ ମୂର୍ଖ ସ୍ମଗଲରର ବନ୍ଧୁବି ହୋଇପାରନ୍ତି- ତାକୁ ପରାମର୍ଶ ବି ଦିଅନ୍ତି । ସାମ୍ବାଦିକ କିଛି ମୋଟା ଅଙ୍କର ଅର୍ଥବି ଆଦାୟ କରିନିଅନ୍ତି- ସ୍ମଗଲରଠାରୁ । ବଦନାମ ସହିତ ବଦନାମର ଚଢ଼ାବଜାର- ଦରକୁ ହିଟଲର ଭୟ କରେ । ଗ୍ରାମ୍ୟ ଟାଉଟର ସବୁ ଠିକ୍ କରିଦେବ ବୋଲି ମଧ କିଛି ଟଙ୍କା ଆତ୍ମସାତ୍ କରେ ଏଇପରି ଦୁର୍ବଳ ଧନପତିମାନଙ୍କଠାରୁ । ଶେଷରେ ନଈ ବାଲିରେ ଘଟିଯାଏ ଏକ ନାରକୀୟ ନାରୀ ଧର୍ଷଣର କଳଙ୍କିତ କାହାଣୀ । ବି.ଡି.ଓ. ଧନପତି ହିଟଲରକୁ ଉତ୍ୟକ୍ତ ଜନତା ହାବୁଡ଼ରୁ ଖସେଇ ନେଇ ସାହାଯ୍ୟ କରନ୍ତି । ଶେଷରେ ଘଟଣାଟି ଏକ ରାଜନୈତିକ ରୂପ ନେଇଯାଏ । ସରକାରୀ ଓ ବିରୋଧୀଦଳ ମଧ୍ୟରେ ଏଇ ଘଟଣାକୁ ନେଇ ହୁଏ ବଳ କସାକସି- ନିର୍ମମ, ହୃଦୟହୀନ ଘଟଣାଟି ହୋଇଯାଏ ଏକ ଗୌଣ ଭ୍ରାମ୍ୟମାଣ ସ୍ଥାନୀୟ କିମ୍ବଦନ୍ତୀ । ହିଟଲରର ଅପକର୍ମ ଘୋଡେଇ ହୋଇଯାଏ- କାରଣ ତାର ଟଙ୍କା ବଳରେ ବଡ଼ ବଡ଼ ରାଜନୈତିକ ଲୋକେ ଲଢ଼େଇରେ ମାତି ଯାନ୍ତି । ଥାନାବାବୁ ହିଟଲରକୁ ଭରସା ଦିଅନ୍ତି ତମ ଘଟଣା ସେ ଯୁଦ୍ଧରେ ହଜିଯିବ ଖୁବ ଶୀଘ୍ର । ଥୟଧର । 'ଋ' ପିଅ' ଏଇ ହେଲା ଆମ ସମାଜର ବାସ୍ତବ ଚିତ୍ର, ଯେଉଁଠି, ଟଙ୍କା ଓ କ୍ଷମତା ରାଜନୀତିକୁ ନିୟନ୍ତ୍ରଣ କରେ । ସତ୍ୟ ପ୍ରତିଷ୍ଠିତ ହୋଇ ପରେନା- କାରଣ ଅତିରିକ୍ତ ରାଜନୀତି ସତ୍ୟର ତଣ୍ଟିକୁ ଚିପି ଧରିବାକୁ ଆଗେଇ ଆସେ ।

ଶାନ୍ତନୁ ବାବୁଙ୍କ ସମସ୍ୟା ସଚେତନ ସାମାଜିକ ଗଳ୍ପଗୁଡ଼ିକ ଭାରୀ ତୀକ୍ଷ୍ଣ, ବ୍ୟଙ୍ଗଧର୍ମୀ ଓ ଉଦ୍ଦେଶ୍ୟପୂର୍ଣ୍ଣ । ସେ ଘଟଣାଠାରୁ ଘଟଣାର ମୂଳ ବା ଜେନସ୍ ନିରୂପଣ ପାଇଁ ଅଧିକ ପ୍ରଚେଷ୍ଟ ହୁଅନ୍ତି ଓ ଆସି ଶେଷରେ ପହଞ୍ଚନ୍ତି ଆମ ସମାଜ- ରାଜନୈତିକ ବ୍ୟବସ୍ଥା ପାଖରେ, ଯାହା ସ୍ୱାଧୀନ ଗଣତାନ୍ତ୍ରିକ

ଭାରତରେ ସାଧାରଣ ମଣିଷକୁ ନିରାପତ୍ତା ଦେଇ ପାରୁନି । ଅର୍ଥ ଓ କ୍ଷମତା ସବୁ ନିୟନ୍ତ୍ରଣ କରୁଛି । ରାଜନୀତି ଏକ ବିରାଟ ରାକ୍ଷାସୀୟ କ୍ଷୁଧା ନେଇ ସମସ୍ତଙ୍କୁ ଗ୍ରାସ କରୁଛି । ସେଥିରେ ସୁସ୍ଥ, ସୁନ୍ଦର ଓ ସୁକୁମାରର ଅସହାୟ ମୃତ୍ୟୁ ହେବାଠାରୁ ଆଉ ବା କି ଭିନ୍ନ ଉପାୟ ଅଛି ? ଗୋଟାଏ ଶ୍ରମନିର୍ଭର କୃଷିକାରୀ ସଭ୍ୟତା ଭାଙ୍ଗିଯାଇ ଅର୍ଥପାଇଁ ସୃଷ୍ଟି ହୋଇଥିବା ଉଗ୍ର ଲାଳସା ଓ ସେଥିପାଇଁ ଯେତେ ଅନାଚାର ଫଳରେ ଗ୍ରାମ୍ୟ ଜୀବନର ଶାନ୍ତି ନଷ୍ଟ ହେଉଛି, ଅଳ୍ପ ଶ୍ରମରେ ଅଧିକ ଧନ ଠୁଳ କରିଥିବାରୁ ସ୍ମଗଲର ହିଟଲର ମନରୁ ଶାନ୍ତି ତିରୋହିତ ହୋଇଯାଇ ଥିଲେ ବି ତା ବୃଦ୍ଧ ପିତା ତାର କୌଳିକ ଚାଷ କର୍ମରେ ପରମ ତୃପ୍ତି ଅନୁଭବ କରୁଛି । ଏ ଗଳ୍ପରେ ତେଣୁ ଦୁଇ ପିଢ଼ିର ମାନସିକ ତଥା ଚିନ୍ତାଗତ ସଂଘର୍ଷର ଚିତ୍ର ମଧ୍ୟ ପ୍ରତ୍ୟକ୍ଷୀଭୂତ ।

ଏଇ ସଂକଳନର ଆଉ ତିନୋଟି ଗଳ୍ପ 'ସେକ୍‌ସ-ଧର୍ମ', 'ଖରବେଳ', 'ଗାଈ ଖୋଜିବା ନା ବାଘ ଜଗିବା' ଭିନ୍ନ ଦୃଷ୍ଟିକୋଣରୁ ରଚିତ ଭିନ୍ନ ସ୍ୱାଦର ତିନୋଟି ଗଳ୍ପ । ଏ ଗଳ୍ପକୁ ଶାନ୍ତନୁବାବୁଙ୍କ ତୀବ୍ର ବ୍ୟଞ୍ଜନାଧର୍ମୀ ରାଜନୈତିକ ଚେତନ ବା ସାମାଜିକ ବ୍ୟଙ୍ଗ ମଧ୍ୟରେ ମାପି ହେବନାହିଁ । ତିନୋଟି ଭିନ୍ନ ମୁହୂର୍ତ୍ତ ବା ପର୍ଯ୍ୟବେକ୍ଷଣକୁ ନେଇ ଏ ଗଳ୍ପଗୁଡ଼ିକ ରଚିତ । 'ସେକ୍‌ସ- ଧର୍ମ' ଗଳ୍ପରେ ବହୁ ସମ୍ପତ୍ତିର ଅଧିକାରୀ ଶୋଭେଶ ତାର ଏକାଧିକ ରକ୍ଷିତା ଓ ବିବାହିତା ପତ୍ନୀଙ୍କୁ ପ୍ରତ୍ୟାଖ୍ୟାନ କରି ଶେଷକୁ ପ୍ରଥମ ପ୍ରେମିକା କୃଷ୍ଣୀ ସହ ବଡ଼ ଦାଣ୍ଡକୁ ଚାଲିଯାଏ । ସେଠାରେ ପ୍ରେମିକ-ପ୍ରେମିକା ବଗଲା ବଗୁଲି ଦୁହେଁ ଭିକମାଗି ବଞ୍ଚନ୍ତି ଓ ଶୋଭେଶ ମୃତ୍ୟୁ ବୋଲି ପ୍ରଚାରିତ ହୋଇଯାଏ । ତାକୁ ସନ୍ଧାନ କରନ୍ତି ଗାଳ୍ପିକ ବଡ଼ଦାଣ୍ଡରେ ଆତ୍ମୀୟତା ଦେଖେଇ ଯେତେ ତାର ଅନୁଧାବନ କରନ୍ତି ସେତେ ଆତ୍ମ ଗୋପନ କାମୀ ଶୋଭେଶ ଜନଗହଳି ଭିତରୁ ଲୁଚିଯାଏ । ଏପରି ଏକ ପ୍ଲଟରେ ବାସ୍ତବତା କେତେ ମାପି ବସିଲେ ବିଫଳ ହେବା- ଅବଶ୍ୟ ସେକ୍‌ସ ଅପେକ୍ଷା ପ୍ରେମର ହିଁ ଏଠାରେ ଜିତାପଟ ହୋଇଛି ବୋଲି ଲେଖକ କୈଫିୟତ ଦେଉଛନ୍ତି । ଏପରି ଏକ ମତବାଦ ପ୍ରତିଷ୍ଠା କରିବାରେ ଗାଳ୍ପିକଙ୍କୁ ପରମ୍ପରାବାଦୀ ବୋଲି ମଧ୍ୟ କୁହାଯିବ । କାରଣ ଏତେ ଧନ ଓ କୋଠାବାଡ଼ିର ମାଲିକ ଶୋଭେଶ ବଡ଼ ଦାଣ୍ଡକୁ କୁଷ୍ଠୀ ସହିତ ଚାଲି ନ ଯାଇ ତାକୁ ନିଜର କୌଣସି ଏକ ଘରେ ସ୍ଥାନ ଦେଇ ଚିକିତ୍ସାର ବ୍ୟବସ୍ଥା କରି ପାରିଥାନ୍ତା । ସେହିପରି ଏକ କିମ୍ବଦନ୍ତୀ ଭିତ୍ତିରେ ରଚିତ ଦୁଇପାଗଳ ଭାଇ ଦିବା ଓ ସରବାଙ୍କ ବୃତ୍ତାନ୍ତ ଗାଈ ଖୋଜିବା କି ବାଘ ଜଗିବା । ଏ ଗଳ୍ପଟିକୁ handle କରିପାରିଥିଲେ ରେବତୀ ପରି ଏହା ଏକ ଶକ୍ତିଶାଳୀ କାରୁଣ୍ୟ ସୃଷ୍ଟି କରି ପାରିଥାନ୍ତା । ପାଠକର ମନ ଓ ହୃଦୟକୁ ଖୁବ୍ ଦୋହଲେଇ ଦେଇ ପାରିଥାନ୍ତା । କିନ୍ତୁ ତା' ନହେବାର କାରଣ- ଏଥିରେ ଲେଖକଙ୍କ ନିଜସ୍ୱ ଅନୁଭବର ଅଭାବ । କୌଣସି ଶୁଣାକଥାକୁ ଭିତ୍ତିକରି ଗଳ୍ପ ତାଙ୍କ-ଗ୍ରନ୍ଥର ଶକ୍ତି ହୁଏତ ଉପଲବ୍ଧ ହେଉଛି, କିମ୍ବା କଳାକୃତି ବା କାରୁକାର୍ଯ୍ୟ ପ୍ରକଟିତ ହୋଇ ପାରୁନାହିଁ । ସେହି ଦୃଷ୍ଟିରୁ 'ଖାରବେଳ' ସମ୍ପୂର୍ଣ୍ଣ ଭାବେ ଏକ ବିଫଳ ଗଳ୍ପ- ନା ମନକୁ ଆଚ୍ଛନ୍ନ କରୁଛି, ନା ଚିନ୍ତାକ୍ରାନ୍ତ କରୁଛି । ଏସବୁ ଗଳ୍ପ lighter vain ରେ ରଚିତ ବୋଲି କୁହାଯିବ । ଏପରି ଗଳ୍ପରେ ଉଦ୍ଦେଶ୍ୟ ପ୍ରଖର ନୁହେଁ କି ସ୍ପଷ୍ଟ ନୁହେଁ । ତେଣୁ ଗଳ୍ପଟି ରସୋତ୍ତୀର୍ଣ୍ଣ ହୋଇ ପାରିନାହିଁ ।

ଶାନ୍ତନୁ କୁମାର ପ୍ରାୟ ଉତ୍ତର ଷାଠିଏରୁ ଧାରାବାହିକ ଭାବେ ଗଳ୍ପ ଲେଖୁଛନ୍ତି । ଦୁର୍ଗର, ଏଇ ଶେଷ ପଦଟିଏ, ଅଦିନ ବଉଳ ଇତ୍ୟାଦ କେତୋଟି ଗଳ୍ପ ସଂକଳନରେ ସେ ପ୍ରାୟ ଶତାଧିକ ଗଳ୍ପ ଲେଖିଛନ୍ତି । କେତେକ ଗଳ୍ପ ଖୁବ୍ ଶକ୍ତିଶାଳୀ, ପ୍ରତୀକଧର୍ମୀ ଓ ଉଦ୍ଦେଶ୍ୟନିଷ୍ଠ ବୋଲି କୁହାଯିବ । କେତେକ

ଗଳ୍ପରେ ପ୍ରଥମ ପଠନରେ clarityର ଅଭାବ ରହୁଥିଲେ ବି ଏକାଧିକ ପଠନ ପରେ ଅର୍ଥ ବେଶ୍ ପ୍ରତିପନ୍ନ ହେଉଛି । ଏ ଦୃଷ୍ଟିରୁ ସେ ଜଣେ ତାତ୍ତ୍ୱିକ ଗୁରୁ ଗଳ୍ପ ଲେଖକ (Serious writer) । ତେବେ ସବୁ ଗଳ୍ପ ସେ ସମାଜ ଭାବେ seriousର ତା ମୁଁ କହୁନି । କିନ୍ତୁ ସାମଗ୍ରିକ ଭାବେ କହିଲେ ଶାନ୍ତନୁ ବାବୁ ସାଧାରଣ ଗଳ୍ପ ଲେଖକଙ୍କ ଠାରୁ କେତେ ପାହାଚ ଉଚ୍ଚରେ ବା କେତେ ଗଜ ଦୂରରେ ଯେ ନିଶ୍ଚୟ ଅବସ୍ଥାନ କରନ୍ତି- ଏକଥା ସ୍ୱୀକାର କରିବାକୁ ହେବ ।

ଫକିରମୋହନଙ୍କ ଗଳ୍ପ ରୀତିରେ ବର୍ଣ୍ଣନାତ୍ମକତା ଓ ଗୋପୀନାଥ ମହାନ୍ତିଙ୍କ ଗଳ୍ପ ରୀତିର ଅନାଲିସିସ- ଏହାର ମଝାମଝି ଠିଆହୁଅନ୍ତି ଗାଳ୍ପିକ ଶାନ୍ତନୁ କୁମାର । ପ୍ରତୀକଭାଷା ଅପେକ୍ଷା ପ୍ରତୀକୀଭାବ ଓ ଚିତ୍ରକଳ୍ପକୁ ନେଇ ତାଙ୍କର ଅନେକ ଗଳ୍ପ ରଚିତ । କେତେକ ଗଳ୍ପରେ ଭାଷା ଭାରୀ ଗ୍ରାମ୍ୟ ଓ ଦନ୍ତୁରା (crude)ଶେଷ ଭାଗରେ ଚମକ ସୃଷ୍ଟି କଲାପରି ଗାଳ୍ପିକ ସେ ନୁହନ୍ତି । କିନ୍ତୁ ଏପରି ଗୋଟିଏ ଗୋଟିଏ ବାକ୍ୟ ଲେଖିଦିଅନ୍ତି ଯାହା ପାଠକକୁ ଦୋ'ଘାଇରେ ପକାଇଦିଏ । ସେ ଭାବେ ବୋଧହୁଏ କିଛି ଭିତିରି କଥା ଅଛି; କିଛି ତାତ୍ତ୍ୱିକ ଅବନିହିତ ବା ଅନ୍ତର୍ନିହିତ ବୈଶିଷ୍ଟ ଅଛି । ଥାଇପାରେ, ନଥାଇ ବି ପାରେ । 'ଆଦ୍ୟ ସକାଳ' ଗଳ୍ପର ଶେଷବାକ୍ୟ କେତୋଟି- "ଏସବୁ ସତ୍ତ୍ୱେ ବାଘ ତଥାପି ସ୍ଥାନ ଛାଡ଼ି ଅନ୍ୟତ୍ର ଚାଲିଯାଇ ନଥିଲା । ସେ କେବଳ ଅପେକ୍ଷାମାଣ ଥିଲା- କେଜାଣି କେଉଁ ସୁଯୋଗକୁ ।" ନାନା ଦୃଷ୍ଟିରୁ ଏହାର ତର୍ଜମା କରାଯାଇପାରେ । ବାଘକୁ କେଉଁ ସୁଯୋଗର ଅଭାବ ଥିଲା ଯେ ସେ ଅପେକ୍ଷା କରି ରହୁଥିଲା ? ବାଘ ଯଦି ସ୍ଥୁଳଦୃଷ୍ଟିରେ ବାଘ ହୁଏ ତେବେ ଅସ୍ତ୍ରହୀନ ଏକାନ୍ତ କିଶୋରଟିକୁ କ'ଣ ସେ ଡରୁଥିଲା ? ନା ତାର ଅପୂର୍ବ ଭାବଭଙ୍ଗୀରେ ତନ୍ମୟ ହୋଇ ଯାଉଥିଲା ? ଚିନ୍ତାଶୀଳ ପାଠକ ମନ ନିଶ୍ଚୟ ଧ୍ରୁବ ଉପାଖ୍ୟାନ ପାଖକୁ ଟାଣି ହୋଇଯିବ । ଚାରିପାଖରେ ଶ୍ୱାପଦ, ସରୀସୃପ, ହିଂସ୍ରଜନ୍ତୁ ଘେରି ରହିଛନ୍ତି- ଧ୍ରୁବ ମଝିରେ ସତ୍ୟପାଇଁ ତପସ୍ୟାରତ । ତାତ୍ତ୍ୱିକ ପାଠକ କହିବ ସତ୍ୟ ସନ୍ଧାନୀର ଶକ୍ତି ଏତେ ଅଧିକ ଯେ ସେଠାରେ ପୃଥିବୀର ସମବେତ ହିଂସ୍ରତା ମଧ ହାର ମାନିବ । ବେଶ୍ ଏହିପରି ଅର୍ଥଟିଏ ନେଲେ ଗଳ୍ପଟି ଆଉ ସାଂସାରିକ ବାସ୍ତବତା ମଧ୍ୟରେ ବନ୍ଧାହୋଇ ରହିପାରିବନି ? ଚେତନାର କେଉଁ କେଉଁ ସ୍ତରକୁ ନିଶ୍ଚୟ ଆବୋରି ବସିବ । କିନ୍ତୁ ଏତେ କସରତ କାହିଁକି ? ଆଧୁନିକ କବିତା ପରି ଗଳ୍ପ ବି ଅଧିକ ଅବୋଧ ହୋଇ ବସୁଛି । କଳା ମାତ୍ରେଇ ଏଇ ଧର୍ମ ଭିତରେ ଗତିଶୀଳ- ଅର୍ଦ୍ଧେକ ସ୍ୱଷ୍ଟ ଅର୍ଦ୍ଧେକ ଅସ୍ୱଷ୍ଟ । ପାଠକ ଠିକ୍‌କରି କହିପାରିବନି ଶତାୟୁ ଚିନ୍ତାମଳିକ ସେଇ ଟୁବି ଗଡ଼ିଆରେ- ଯେଉଁଠି ମୀନ ଖେଳୁଛନ୍ତି, କଇଁ ଫୁଟିଛି ସେଇଠି ଆତ୍ମହତ୍ୟା କରି ଏ ଦୁଷ୍ଟ ଅଘଟଣ ବହୁଳତ ସଂସାରରୁ ଲୁଚି ଯାଇଛନ୍ତି । କିନ୍ତୁ ପ୍ରତୀତି ମଧ୍ୟରେ ଧରି ନେବାକୁ ହେବ । ଯେହେତୁ ନାରୀଧର୍ଷଣ ଓ ହରିଜନଙ୍କ ଘରପୋଡ଼ି ଆଦି ସମ୍ବାଦ ସ୍କୁଲ ଛାତ୍ରଙ୍କ ମୁହଁରୁ ଶୁଣି ସାରିଲା ପରେ ଆଉ ଏ ପାପ କଳୁଷିତ ପୃଥିବୀରେ ବିଶାଶହେ ବର୍ଷ ବଞ୍ଚିବାପାଇଁ ତାଙ୍କର ଆଗ୍ରହ ନାହିଁ । ସେ ପରମ୍ପରାବାଦୀ ପୁରାତନ ମଣିଷ- ସେ ବୁଝନ୍ତି ନଟୁଙ୍ଖେରୀ, ବସ୍ତଖେରୀ ବା ଲହୁଣିଖେରୀର ବ୍ୟାପାର । ଏପରି ଅସହାୟ ଧର୍ଷଣ ଓ ମଣିଷ ସମାଜର ନିର୍ମମତା ପ୍ରତି ସେ ଉନ୍ମୁଖ ନୁହଁନ୍ତି । ତେଣୁ ତାଙ୍କପାଇଁ ମୃତ୍ୟୁ ହିଁ ଶ୍ରେୟସ୍କର । କିନ୍ତୁ ଯୁବକ ନାରେଣା- ସେ ତାର୍କିକ ଅନ୍ଧବିଶ୍ୱାସଠାରୁ ଦୂରରେ । କ'ଣ ତା'ର ଦୋଷ ଯେ ସେ ଅସମୟରେ ଏ ପୃଥିବୀରୁ ହଜିଯିବ ? ତା'ହେଲେ ତା ଆତ୍ମବିଶ୍ୱାସର ଜିତାପଟ ହେଲା କି ? ତାକୁ ଲୋକେ କହିଲେ "ଭକ୍ତ ଲୋକଟା" । କିନ୍ତୁ ସମସ୍ୟାତ ସେଠି ନଥିଲା । ସମସ୍ୟା ଥିଲା ଅନ୍ଧ କୁସଂସ୍କାର ଓ ତାକୁ ଦୂର କରିବାକୁ ଜଣେ ପ୍ରଗତିଶୀଳ ଯୁବକର

ଉଦ୍ୟମଠି । ଶେଷରେ ତାକୁ କାଳ କବଳିତ କଲା । ଏଥିରେ ଗୁଡ଼େଇ ତୁଡେଇ ପ୍ରଶ୍ନ ଆସିବ ପାଠକ ମନରେ । ଉଦ୍ଦେଶ୍ୟ ଓ ପରିଣତି ଏଠି ଏକମୁଖୀ ନୁହଁନ୍ତି, ବରଂ ଭିନ୍ନମୁଖୀ ।

ଶାନ୍ତନୁ ବାବୁଙ୍କ ଗଳ୍ପରେ ତେଣୁ ଏପରି ଧନ୍ଦା(riddle)ର ଅନେକ ସମୟରେ ସୃଷ୍ଟି ହୁଏ । ତାହା ଗଳ୍ପର ବାସ୍ତବ ସ୍ୱାଭାବିକ ପରିଣତି ନହୋଇ ଲେଖକଙ୍କ ମେଟା ଫିଜିକାଲ ଦୃଷ୍ଟିଭଙ୍ଗୀର ଗଭୀର ଅର୍ଥପୂର୍ଣ୍ଣ ଅଭିବ୍ୟକ୍ତି ବହନ କରେ । ମନୋଜ ଦାସଙ୍କ ଗଳ୍ପ ପରି ଶାନ୍ତନୁ ଆଚାର୍ଯ୍ୟଙ୍କ ଗଳ୍ପରେ ଏହା 'ପ୍ରଫେସି' ନା 'ପରପୋସ'- ପାଠକେ ଏହା ନିର୍ଣ୍ଣୟ କରିବେ ।



# ଅପ୍ରତିଦ୍ୱନ୍ଦ୍ୱୀ କଥାସର୍ଜକ

**ପ୍ରତିଭା ଶତପଥୀ**

ଶ୍ରୀଯୁକ୍ତ ଶାନ୍ତନୁ କୁମାର ଆଚାର୍ଯ୍ୟ ଜଣେ ମନନଶୀଳ କଥାସର୍ଜକ । ତାଙ୍କ ସୃଜନଚେତନା ଏକ ଦିଗରେ ଆଧୁନିକ, ବିଜ୍ଞାନ-ସମ୍ମତ ଜୀବନଶୈଳୀରେ ସମୃଦ୍ଧ ତ ଅପରିଦିଗରେ ପରାମନସ୍ତାତ୍ତ୍ୱିକ, ଉତ୍ତୁଂଗକଳ୍ପନାର ପ୍ରାମଣିକ ଓ ବିଶ୍ୱାସନୀୟ ଚିତ୍ରରେ ରହସ୍ୟମୟ । ତାଙ୍କ ସୃଷ୍ଟିର ଆକଳନ କରିବା ମୋ ପକ୍ଷରେ ସହଜ ନୁହେଁ । ସାହିତ୍ୟ ସମାଲୋଚନା ନିମିତ୍ତ ମୁଁ କେବେ ପ୍ରସ୍ତୁତ ହୋଇନାହିଁ । କେବଳ ଯେଉଁ ଉପନ୍ୟାସ ଓ ଗଳ୍ପକୁ ଭଲପାଇଛି, 'କାହିଁକି ଭଲ ଲାଗୁଛି' ତା'ର କାରଣ ଖୋଜିଛି । ସେହି ଅନ୍ୱେଷଣର ଦାୟରେ ଯେତିକି ବିଶ୍ଳେଷଣ ଜରୁରୀ, ସେତିକିରେ ମୋର ପାଠକୀୟତା ସୀମାବଦ୍ଧ ।

ମୋର ମୂଳ ପୈତୃକ ପରିବାର ସିଦ୍ଧେଶ୍ୱରପୁର ଗ୍ରାମର ୪ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ପରିବାର । ସେହି ସଂଯୋଗରେ ଶାନ୍ତନୁ ଭାଇନା ମୋର ଦଦେଇପୁଅ ଭାଇ । ମୋ ବାପା, ତାଙ୍କ ବାପାଙ୍କୁ 'ଅନୁଭାଇନା' ବୋଲି ଡାକନ୍ତି । ତେବେ, ବାପା ବହୁଦିନ ଧରି ପ୍ରବାସରେ ଥିବାରୁ ସିଦ୍ଧେଶ୍ୱରପୁର ପରିବାର ସହ ମୋର ସଂପୃକ୍ତି ଯଥେଷ୍ଟ ପ୍ରତିଷ୍ଠା ପାଇନଥିଲା । ମୁଁ ଭାଇନାଙ୍କ କଥା ପ୍ରଥମେ ଶୁଣେ ସିଦ୍ଧେଶ୍ୱରପୁରର କେଶବ କକେଇଙ୍କ ପୁଅ ଅରୁଣ ଠାରୁ । ଅରୁଣ ନନ୍ଦ ସିନେମା ଅଭିନେତା, ଶିଳ୍ପୋଦ୍ୟୋଗୀ ଓ ବଡ଼ ସ୍ନେହୀ । କେଶବ କକେଇ ମୋ ବାପାଙ୍କ ମାମୁଁ ପୁଅ ଭାଇ । ତେଣୁ ମୋର କଟକ ଘରକୁ ଅରୁଣ ସମୟେ ସମୟେ ଆସେ, ଆମର ଲେଖକ ପରିବାର ଥିବାରୁ ଶାନ୍ତନୁଭାଇନାଙ୍କ ଲେଖକୀୟ ବ୍ୟକ୍ତିତ୍ୱ କଥା ମୋତେ ପ୍ରାୟ କହେ । ଭାଇନାଙ୍କ ଅପେକ୍ଷା ଭାଉଜଙ୍କ କଥା ବେଶି କହେ । ଭାଉଜ କିପରି ସହିଷ୍ଣୁ, ସ୍ନେହୀ ଓ ଉଦାର, ଏବଂ ଲେଖକ ଭାଇନା କ୍ରୋଧୀ ଅଥଚ ଖୁବ୍ ସ୍ୱାଭିମାନୀ, ଏହିସବୁ କଥା ସେ ମତେ କହେ । ଭାଇନା ରାତିରେ କିଛି ଲେଖି, ମନକୁ ନ ଆସିଲେ ଚିରିଫୋପାଡ଼ି ଦିଅନ୍ତି ଓ ନିରୁ ଭାଉଜ ସେ ସବୁକୁ ଗୋଟେଇ ପୋଟେଇ ରଖିଥାନ୍ତି । ସତକୁ ସତ ଥରେ ଥରେ ଭାଇନା ସେହି ଚିରା କାଗଜକୁ ପୁଣି ସକାଳୁ କାଳେ ଖୋଜନ୍ତି ! ତେଣୁ ଭାଉଜଙ୍କର ଯଥାର୍ଥରେ ଲେଖକ-ପତ୍ନୀ ହେବାର ଯୋଗ୍ୟତା ରହିଛି । ଏକଥା 'ଅରୁ' ଠାରୁ ମୁଁ ଶୁଣିଥାଏ । ଭାଉଜ ଭାଇନାଙ୍କୁ ସମ୍ଭାଳି ରଖିଥାଆନ୍ତି । ପରେ ମୁଁ ଭାବିଛି ଭାଇନା ଭାଗ୍ୟ ବଳରେ ଏପରି ଲକ୍ଷ୍ମୀ ସ୍ତ୍ରୀଟିକୁ ପାଇଛନ୍ତି । ଅବଶ୍ୟ ଭାଇନାଙ୍କ ଭଳି ସୌମ୍ୟଦର୍ଶନ ଜ୍ଞାନୀ ଓ ମର୍ଯ୍ୟାଦାବନ୍ତ ଲେଖକ ସ୍ୱାମୀଟିଏ ପାଇବାରେ ଭାଉଜ କମ୍ ଭାଗ୍ୟବତୀ ନୁହଁନ୍ତି । ଯୋଗ୍ୟଂ ଯୋଗ୍ୟନ ଯୋଜୟେତ୍ ।

ଅରୁଠାରୁ ଶୁଣି ମୂଳରୁ ନଦେଖିବା ଆଗରୁ ମୋର ଭାଉଜଙ୍କ ପ୍ରତି ସମ୍ଭ୍ରମ ଚାଲି ଆସିଛି । ମୁଁ କିନ୍ତୁ ତାଙ୍କୁ ପ୍ରଥମେ ଦେଖିଲି ୧୯୬୫ ଆରମ୍ଭରେ । ସେତେବେଳକୁ ସେ ସନ୍ତାନ ସମ୍ଭବା- ହୁଏତ ପିଲାଟିଏ

ଜନ୍ମ ହେବାକୁ ଅଳ୍ପଦିନ ବାକି ଅଛି । ଦେଖିଲି, ଯୁବ ଲେଖକ ସମ୍ମିଳନୀ ସଭାରେ । କିନ୍ତୁ ମୁଁ ପାଖକୁ ଯାଇନାହିଁ କି କଥାବାର୍ତ୍ତା ହୋଇନାହିଁ । ଆଗେ ପଡ଼ି ସଂପର୍କ ଯୋଡ଼ିବା ମୋ ଦ୍ୱାରା କଦାପି ହୋଇପାରେ ନାହିଁ । ମୋ ଭାଇ ଏ ବିଷୟରେ ଧୁରନ୍ଧର । ପ୍ରହରାଜ ପରିବାରର ମଜାଗପ ଓ ଥଟଲୀ ସ୍ୱଭାବ ଓ ଗପୁଡ଼ିପଣ ମୋ ଭାଇ ଠାରେ ଯଥେଷ୍ଟ । ମାତ୍ର ମୋ ସ୍ୱଭାବରେ ଉଭାଯେତେ, ପୋତା ତାଠୁଁ ଅଧିକ । ଟାପରା-ସ୍ୱଭାବତ ଆଦୌ ନାହିଁ । ପ୍ରକୃତରେ ପ୍ରହରାଜଙ୍କ ପରିବାରର ଲୋକଙ୍କ ସହିତ ଯଦି ଜଣେ ମିଳାମିଶା କରିଥିବ, ସେ ଜାଣିପାରିବ ସେହି ମଜାଳିଆ ଥଟ୍ଟା କଥା । ଏଣେ ଶାନ୍ତନୁ ଭାଇନା ବି ଗମ୍ଭୀର ସ୍ୱଭାବର ବ୍ୟକ୍ତି, ଅବଶ୍ୟ, ଠିକ୍ କ'ଣ ହୋଇଥିବେ ହୁଏତ ମୁଁ ଜାଣେନା । ମତେ ସେ ସେହିପରି ମନେ ହୁଅନ୍ତି । ଭୁବନେଶ୍ୱର ଆସିବା ପରେ, କ୍ରମଶଃ ତାଙ୍କ ପରିବାର ସହ ଆମ ପରିବାରର ଯୋଗାଯୋଗ ଆରମ୍ଭ ହୁଏ । ଭାଉଜ ଖୁବ୍ ବିଚାରଶୀଳା ସ୍ନେହୀ । ଝିଅଗୁଡିକ ଖୁବ୍ ଶାଳୀନ, ସୁନ୍ଦର ଓ ଲକ୍ଷ୍ମୀବନ୍ତ । ସେମାନେ ମୋତେ ଖୁବ୍ ଭଲ ଲାଗନ୍ତି । ଡେରିରେ ହେଲେ ବି ଭାଉଜ, ଆଜିକାଲି ଲେଖୁଛନ୍ତି ଓ ଚମତ୍କାର ଅନୁବାଦ କରୁଛନ୍ତି । ଶାନ୍ତନୁଭାଇନାଙ୍କ ସହ ମୁଁ ଖୁବ୍ ନିବିଡ଼ ହୋଇପାରି ନାହିଁ । ଯଦିଓ ବହୁ ସମୟରେ ତାଙ୍କ ସହ ସାହିତ୍ୟ ଚର୍ଚ୍ଚା କରିଛି । ଭାଇନାଙ୍କ ସହିତ ଘଣ୍ଟାଏ କଥା ହେଲେ ବଡ଼ ଉଦ୍‌ବୁଦ୍ଧ ଲାଗେ । ବିଜ୍ଞାନ, ସାହିତ୍ୟ, ଦର୍ଶନ, ଦେଶବିଦେଶ– ଯେ ସବୁ କିଛି ସଂପର୍କରେ ତାଙ୍କ ମନ୍ତବ୍ୟ ଗଭୀର ନିରୀକ୍ଷଣ ଓ ଉପଲବ୍‌ଧିରୁ ସଂମୂତ ।

ତାଙ୍କ ଗଳ୍ପ ଉପନ୍ୟାସର ମୁଁ ଜଣେ ମୁଗ୍ଧ ପାଠିକା । ସେ ମୋର 'ଭାଇନା' ବୋଲି ନୁହଁ- ତାଙ୍କ ଗଳ୍ପରେ ଅଭିବ୍ୟକ୍ତ ନିର୍ଭୀକତା, ସତ୍ୟାଶ୍ରୟୀତା, ହାସ୍ୟବ୍ୟଙ୍ଗ ଓ ଭାଷାର ନୂତନ ଦ୍ୟୋତନା, କଳ୍ପନା ଶକ୍ତିର ଦିଗ୍‌ବିଦିଗ ସଞ୍ଚାର ମୋତେ ଆକୃଷ୍ଟ କରେ । ତାଙ୍କ ଗଳ୍ପ ଉପନ୍ୟାସରେ ମୋ ପରିବାରର (ପ୍ରହରାଜ) ଅନେକ ବାସ୍ତବ ଘଟଣାକୁ ଅନବଦ୍ୟ କଳାସୃଷ୍ଟିରେ ରୂପାନ୍ତରିତ କରିଛନ୍ତି । ବ୍ୟକ୍ତିଗତତାକୁ ସାର୍ବଜନୀତ ସ୍ତରକୁ ଉନ୍ନୀତ କରିଛନ୍ତି ସେ । ପିଲାଦିନେ ମୋ ଜେଜେମା ଓ ବୋଉଙ୍କ ଠାରୁ ଶୁଣିଥିବା ପାରିବାରିକ ରହସ୍ୟମୟ କାହାଣୀ ଯେତେବେଳେ ଶାନ୍ତନୁ ଭାଇନାଙ୍କ କଲମ କାଳିରୁ କାଗଜ ଉପରକୁ ଓହ୍ଲାଇ ଆସେ, ମୁଦ୍ରିତ ହୁଏ, ସେସବୁର ନୈର୍ବ୍ୟକ୍ତିକତାରେ ମୁଁ ଅଭିଭୂତ ହୋଇପଡ଼େ । ସେ ଯେ ମୋ ବଂଶର ଜଣେ ବିଶିଷ୍ଟ କଥାସର୍ଜ୍ଜକ ଓ ରୋକ୍‌ଠୋକ୍ ବ୍ୟକ୍ତିତ୍ୱର ଅଧିକାରୀ, ଏଥିପାଇଁ ମୁଁ ବେଶ ଗର୍ବକରେ । ଏଇଠି ଗୋଟିଏ ଘଟଣା କହିଲେ ଅପ୍ରାସଂଗିକ ହେବନାହିଁ । ଅଳ୍ପଦିନ ତଳେ ନିରୁ ଭାଉଜଙ୍କଠାରୁ କଥାଟିଏ ଶୁଣିଥିଲି । ତାଙ୍କର ବିଶ୍ୱାସ ତାଙ୍କ ସ୍ୱାମୀ ନାରୀମାନଙ୍କ ସହ ବ୍ୟବହାର କିପରି କରାଯାଏ ଜାଣନ୍ତି ନାହିଁ । ମୋ ମତରେ ସ୍ତ୍ରୀର ଏଭଳି ବିଶ୍ୱାସ ପରିବାର ପାଇଁ ନିହାତି ସ୍ୱାସ୍ଥ୍ୟପ୍ରଦ । ତାଙ୍କ ବିବାହର ପ୍ରଥମ ବର୍ଷ ଘଟଣା ବୋଧେ ସ୍ତ୍ରୀ ବାପଘରେ ରହି ଆ.ଏ. ପଢୁଥାନ୍ତି । ସ୍ୱାମୀ ନୂଆ ଚାକିରିରେ ଯୋଗଦେଲେ । ଛୁଟିରେ ସ୍ତ୍ରୀ ଯିବେ ସ୍ୱାମୀଙ୍କ ପାଖକୁ, ବାପା ବା ଭାଇଙ୍କ ସାଙ୍ଗରେ । ପୂର୍ବରୁ ସ୍ୱାମୀ ଚିଠି ଲେଖିଥାନ୍ତି ସ୍ତ୍ରୀଙ୍କୁ ବାରମ୍ବାର ତାଗିଦା କରିଥାନ୍ତି ଯେ, " ବସ୍‌ରେ ଆସିଲାବେଳେ ତୁମେ ବସ୍ ଝରକାରେ ହାତ ଲଗାଇବ ନାହିଁ । ବସ୍ ଝରକାଗୁଡା ଅପରିଷ୍କାର- ହାତ ପୁଣି ପାଟିରେ ବାଜିବ ।" ତାଙ୍କ ନବ ବିଭା ପତ୍ନୀଙ୍କୁ ଚିଠିରେ ଏହିଥିଲା ଗୁରୁତ୍ୱପୂର୍ଣ୍ଣ ଉପଦେଶ – ସ୍ୱାସ୍ଥ୍ୟ ରକ୍ଷାର ଚିନ୍ତା । ମନ୍ଦ ନୁହେଁ ଅବଶ୍ୟ । କିନ୍ତୁ ଭାଉଜ ଖୁବ୍ ମଜା କରନ୍ତି ଏହି କଥା କହି ।

ତାଙ୍କ ରଚିତ ଉପନ୍ୟାସ 'ଅନ୍ୟ ଏକ ସମୟ, ଅନ୍ୟ ଏକ ଭାରତ'ରେ ନାରୀ ଚରିତ୍ରର ବିଶିଷ୍ଟତା ମୋତେ ଯେତିକି ଅନୁପ୍ରାଣୀତ କରିଛି, 'ଆମ ମାଉସୀ' ଗଳ୍ପଟିର ରହସ୍ୟମୟତା କମ୍ ଅନୁପ୍ରାଣୀତ କରିନାହିଁ । ସେହି ଗଳ୍ପର ଆରେ ଗୋପାଳ, ଆଲୋ ରାଧା' ଭଳି ସଂଳାପ ଅନ୍ତରାଳରୁ ମୋତେ ବେଳେ ବେଳେ ଶୁଭିଯାଏ । ଏକ ଅଚିନ୍ତନୀୟ ଶକ୍ତି ଓ ଅଘଟିତ-ଯୋଗ୍ୟ ଘଟଣାକୁ ସେ ରୂପ ପ୍ରଦାନ କଲାବେଳେ ତାହା ସତ୍ୟ ବା ବାସ୍ତବଠାରୁ କୌଣସି ଗୁଣରେ ଊଣା ଲାଗେ ନାହିଁ । ବରଂ ଅଧିକ ଆବିଷ୍ଟ କରି ରଖେ । ମନେ ହୁଏ, ଯାହା ଯାହା ଘଟେ, ତା' ମଧ୍ୟରେ ଅଲୌକିକ କିଛି ନିହିତ ଥାଏ, ଫୁଲମାଳରେ ସୂତାଖିଅଟି ଲୁଚି ରହିଲାପରି । କିଏ କହିବ ତାହା ମିଥ୍ୟା ? କିଏ ବା କହିବ ତାହା ଅଘଟଣ ଯୋଗ୍ୟ ? ଯଦି ମିଥ୍ୟା, ପ୍ରମାଣ କରି ଦେଖାଇଦିଅ । ଯଦି ମିଥ୍ୟା ବୋଲି ପ୍ରମାଣ କରି ନପାର, ତେବେ ସତ୍ୟ ନୁହେଁ, ବୋଲି କହିବା ଯୁକ୍ତିସଙ୍ଗତ ହେବ କି ? ଏସବୁ ଆଚ୍ଛାଦିତ ସତ୍ୟ ।

ଶ୍ରୀଯୁକ୍ତ ଆଚାର୍ଯ୍ୟଙ୍କ ଆଉ ଏକ ଗଳ୍ପ ଏହି occult ବା ପରାମନସ୍ତାତ୍ତ୍ୱିକ ଘଟଣା ଉପରେ ଆଧାରିତ ଶୀର୍ଷକ ବଙ୍କୁଲିବାଡ଼ି । ବଙ୍କୁଲି ବାଡିଟି ରାସ୍ତାରେ ଚାଲିଛି, ଶ୍ମଶାନରେ ଠିଆ ହେଉଛି- ଠିକ୍ କେହି ଜଣେ ତାକୁ ହାତରେ ଧରିଥିଲାପରି । ଯେଉଁ ବ୍ୟକ୍ତି ଧରି ଯା'ଆସ କରୁଥିଲେ ସେ ମୃତ । ଅଥଚ ତାଙ୍କ ଅନୁପସ୍ଥିତିରେ ବାଡ଼ିଟିର ଏଭଳି ଅବସ୍ଥାକୁ ଭୌତିକ କାଣ୍ଡ କୁହାଯିବ କି ? ଅବଶ୍ୟ ନୁହେଁ । ଏହା ଉତ୍ତରିତ ସତ୍ୟର ଏକ ଆଲେଖ୍ୟ । ଲେଖକଙ୍କ କରଞ୍ଜିଆ ଡାଏରୀରେ ଏହି ସଦ୍ୟ ସତେଜ occultର ସ୍ୱରୂପ ବହୁଭାବରେ ବିଶ୍ଳେଷିତ ଓ ପ୍ରମାଣିତ । ଲେଖକ ଜଣେ ବୈଜ୍ଞାନିକ ହୋଇଥିବାରୁ ତାଙ୍କ ଦ୍ୱାରା ପରୀକ୍ଷିତ ଅଭିଜ୍ଞତାକୁ 'ତାନ୍ତ୍ରିକ ସିଦ୍ଧି' ପର୍ଯ୍ୟାୟବାଚୀ କୁହାଯାଇପାରେ ।

ଔପନ୍ୟାସିକ ଶାନ୍ତନୁ କୁମାର ବକ୍ତବ୍ୟ ଚୟନରେ ସର୍ବଦା ନବଦିଗନ୍ତର ଉନ୍ମୋଚନ କରିଥାନ୍ତି । ତାଙ୍କର ପ୍ରସିଦ୍ଧ ଉପନ୍ୟାସ ମଧରେ 'ଶକୁନ୍ତଳା', 'ମନ୍ତ୍ରୀଙ୍କ ସେୟାର' ଓ ଧରିତ୍ରୀର କାନ୍ଦ' ଏହି ତିନୋଟି ଉପନ୍ୟାସ ବିଭିନ୍ନ ପରିବେଶ ଓ ସ୍ଥିତିରେ ରଚିତ ହେଲେ ହେଁ ଜୀବନର ସାମଗ୍ରୀକତାକୁ ବହୁଭାବେ ଉଦ୍‌ବୁଦ୍ଧ କରିଥାଏ । ଏ ଗୁଡ଼ିକର ଭାଷା ଓ ଶୈଳୀ ପୁଣି ଚିତ୍ରିତ ବାସ୍ତବତା ଓ ଅନ୍ତର୍ନିହିତ ସତ୍ୟ ଦୃଷ୍ଟିରୁ ପରସ୍ପରଠାରୁ ଯଥେଷ୍ଟ ଭିନ୍ନ ଓ ଉଚ୍ଚାଙ୍ଗ ସାହିତ୍ୟ ପର୍ଯ୍ୟାୟବାଚୀ ।

ଅନ୍ୟ ଏକ ସମୟ ଅନ୍ୟ ଏକ ଭାରତର ସିରିଆ ଚାଷୁଣୀର ମହତ୍ତ୍ୱପୂର୍ଣ୍ଣ ଚରିତ୍ର । 'ମନ୍ତ୍ରୀଙ୍କ ସେୟାର'ରେ ଆଧୁନିକ ନାୟିକାର ମନସ୍ତତ୍ତ୍ୱ ଓ ସାହସିକତା, ତାନ୍ତ୍ରିକ ସିଦ୍ଧି ମିଶ୍ରିତ ଜୀବନଚର୍ଯ୍ୟା, 'ଧରିତ୍ରୀର କାନ୍ଦ'ରେ ଅତ୍ୟାଧୁନିକ ଅଭିଶପ୍ତ ଜୀବନ ଭିତରେ ଆକସ୍ମିକତା ଓ ଉତ୍ତୁଙ୍ଗ ମାନବିକତା ସମଗ୍ର ଉପନ୍ୟାସକୁ ମହାର୍ଘ କରି ତୋଳିଛି । ପୁଣି ସମକାଳୀନ ପ୍ରାସଙ୍ଗିକତାକୁ ନେଇ ତାଙ୍କର ଉପନ୍ୟାସ 'ଶକୁନ୍ତଳା' ମିଥ୍‌କୁ ପୁନର୍ଜୀବନ ଦେଇ ପୁନର୍ବିକରଣ କରିଛି । ତେଣୁ ବାସ୍ତବତାର କଷଟିରେ ଉପନ୍ୟାସ ଗୁଡ଼ିକ ଉତ୍ତୀର୍ଣ୍ଣ, ଅଥଚ କଳ୍ପନା ଶକ୍ତି, ଓ ଅକଳଟ୍‌ର ସଞ୍ଚାରଣ ବେଶ୍ ବୌଦ୍ଧିକ ଶୈଳୀରେ ଅନ୍ୟ ଏକ ସାମର୍ଥ୍ୟ ହୋଇଛି Wit of humour ଯାହାକୁ ବୌଦ୍ଧିକ ବ୍ୟଙ୍ଗ ବୋଲି ମଧ୍ୟ କହିହେବ । ଏହି ଧରଣର humour ଓ occult ବର୍ତ୍ତମାନର ଦୁଇ ପ୍ରମୁଖ ଗଦ୍ୟଶିଳ୍ପୀ ଶାନ୍ତନୁ ଆଚାର୍ଯ୍ୟ ଓ ମନୋଜ ଦାସଙ୍କ ଠାରେ ଲକ୍ଷ୍ୟଣୀୟ । ଉପରୋକ୍ତ ୨ଟି ଗୁଣ ଆଧୁନିକତା ଉତ୍ତର ଆଧୁନିକ ରଚନାର ବିଶିଷ୍ଟତା ବୋଲି କହିହେବ । ତାଙ୍କ ଦ୍ୱାରା ଅଙ୍କିତ ନାରୀ ଚରିତ୍ର ଖୁବ ଉଦାର, ଶକ୍ତିମତୀ ଓ ସାହସିନୀ, ଏକଦା

ନରକିନ୍ନର ଉପନ୍ୟାସର ଗୋଦରୀ ବୁଢ଼ୀ ମୋତେ ଖୁବ୍ ଚମତ୍କୃତ କରିଥିଲା, ମୋର ପ୍ରାକ୍‌ତାରୁଣ୍ୟ କାଳରେ । ତହିଁରେ ପ୍ରକଟିତ ଜୀବନ ବୋଧ, ନିୟତି ବିରୋଧରେ ମାନବର ଏକ ଯୁଦ୍ଧଂ ଦେହି ଆହ୍ୱାନ । ଏଥିରୁ ସ୍ପଷ୍ଟ ହୁଏ ଜୀବନ କେତେ ବିପୁଳ ଓ ସମ୍ଭାବନାମୟ, ଅଥଚ କେତେ ବେଶି ସଂଘର୍ଷପୂର୍ଣ୍ଣ ! ମାନବିକତାର ଆକସ୍ମିକ ଓ ମହତ୍ତମ ସ୍ଫୁରଣ ତଥା ପ୍ରତିଷ୍ଠାରେ ଦୀପ୍ତିମନ୍ତ ସେହି ଉପନ୍ୟାସ ଯେ ଏକ ପ୍ରଚଣ୍ଡ ପ୍ରତିଭାର ଉଷାଲୋକ ଏହା ନିଶ୍ଚୟ ସେତେବେଳର ପାଠକ ହୃଦୟଙ୍ଗମ କରିଥିବେ ।

ଚେହେରାରେ ସୁନାତାର ପରି ଉଜ୍ଜ୍ୱଳ ଓ ସ୍ୱଭାବରେ ସ୍ୱାଭିମାନୀ ଏବଂ ଆଶାବାଦୀ ଶାନ୍ତନୁ ଭାଇନାଙ୍କ ବିଷୟରେ ମୁଁ ଯାହା ଏଠାରେ କହିଲି, ତାହା ଯଥେଷ୍ଟ ନୁହେଁ । ସେ ମୋର ବଡ଼ଭାଇ ହେଲେ ବି, ମୁଁ ତାଙ୍କ ଠାରୁ ନିଜକୁ ବହୁ ଦୂରରେ ରଖି ମୋର ଚେତନା ଓ ଅବବୋଧରେ ଅଙ୍କିତ ତାଙ୍କର ସ୍ୱରୂପକୁ, ତାଙ୍କ ସୃଜନକୁ ଓ ବ୍ୟକ୍ତିତ୍ୱକୁ ଚିତ୍ରଣ କରିଛି । ଆପଣାପଣର ସଙ୍କଟ ଏଠାରେ ନାହିଁ । ମୋ ଭାଷାର ଜଣେ ଅପ୍ରତିଦ୍ୱନ୍ଦ୍ୱୀ ସ୍ରଷ୍ଟା ଓ ମନନଶୀଳ ବ୍ୟକ୍ତିତ୍ୱଙ୍କୁ ମୁଁ ଯେପରି ଗ୍ରହଣ କରିଛି, ବୁଝିଛି ମୋର ଏ ଆଲେଖ୍ୟଟି ତାହାର ଯଥାର୍ଥ ପ୍ରତିବିମ୍ବ ବୋଲି ମୁଁ ବିଶ୍ୱାସ କରୁଛି । ମୋ ଭାଷା ଜଣେ କବିର ଭାଷା, ଆଲୋଚକ ବା ସମୀକ୍ଷକର ଆଦୌ ନୁହେଁ । ତଥାପି ଗଦ୍ୟଶିଳ୍ପୀ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ସୃଜନଶୀଳ ବ୍ୟକ୍ତିତ୍ୱ ପ୍ରତି ମୋର ଏହି ଅନୁଶୀଳନ କିଞ୍ଚିତ ଆଲୋକପାତ କରିପାରିଥାଏ ଯଦି, ମୁଁ କୃତକୃତ୍ୟ ହେବା ନିଶ୍ଚିତ ।



# ଶାନ୍ତନୁ କୁମାର ଆଚାର୍ଯ୍ୟ : ପ୍ରତୀକଧର୍ମୀ କଥାକାର

ପୂର୍ଣ୍ଣାନନ୍ଦ ଦାନୀ

''ମୋର, ମନେ ହୁଏ, ଆମେ ଯୁଦ୍ଧୋତ୍ତର କାଳର ସମାଜବାଦ ଓ ଗଣତାନ୍ତ୍ରିକ ଚିନ୍ତନର ଆବାହକ । ଏ ଚିନ୍ତନରେ ମଣିଷ ଏକ ନିର୍ଦ୍ଦିଷ୍ଟ ସମାଜ ବା ବ୍ୟକ୍ତିର ପ୍ରତିଭୂ ନୁହେଁ । ସେହିପରି ମଣିଷ 'କାଷ୍ଟ' ବା 'କାସ୍' ର ସାମଗ୍ରୀ ନୁହେଁ ବୋଲି ଆମର ବିଶ୍ୱାସ । ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ବିଜ୍ଞାନ ମଣିଷର ଟାଇମ୍ ଓ ସ୍ପେସ୍ ଦୃଷ୍ଟିକୁ ଯେତିକି ସମୃଦ୍ଧ ଓ ସୁଦୂରପ୍ରସାରୀ କରିଛି, ସେଥିରୁ ମଣିଷ ଗୋଟିଏ ସାମାଜିକ ବା ବ୍ୟକ୍ତିବାଚକ ଅସ୍ତିତ୍ୱରେ ଆବଦ୍ଧ ଜୀବ ବିଶେଷ ବୋଲି ବୁଝା ପଡ଼େନା । ତେଣୁ, ମଣିଷକୁ ସ୍ଥାନ–କାଳ ବହିର୍ଭୁତ ଅନ୍ୟ ଏକ ଚେତନାର ପରିପ୍ରକାଶ ରୂପେ ପ୍ରତିଷ୍ଠିତ କରିବାକୁ ଆଜିର ସାହିତ୍ୟିକର ପ୍ରଚେଷ୍ଟା । ''(୧) - ଯଶସ୍ୱୀ କଥାକାର ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟ (୧୯୩୩-)ଙ୍କର ଏହି ସ୍ୱୀକାରୋକ୍ତି ଓ ଉଦ୍‌ଘୋଷଣ, ସ୍ପଷ୍ଟ କରିଦିଏ ଯେ, ମଣିଷର ବ୍ୟକ୍ତିତ୍ୱ ବା ସାମାଜିକତା ଅପେକ୍ଷା ଏକ ସ୍ୱତନ୍ତ୍ର ଚେତନାର ପ୍ରକାଶନରେ ସେ ବିଶ୍ୱାସୀ । ଶ୍ରୀ ଆଚାର୍ଯ୍ୟଙ୍କର କଥା ସାହିତ୍ୟ ସେହି ଦୃଷ୍ଟିକୋଣରୁ ବିଜ୍ଞାନ ପ୍ରସାରୀ ଆଧୁନିକ ଜୀବନର ଅନ୍ତରଙ୍ଗ ତଥା ନିର୍ଭୀକ ପ୍ରତିବିମ୍ବ । ନିର୍ଭୀକ ଭାବରେ ମଣିଷ ଜୀବନର ଭାଷ୍ୟକୁ ପରିବେଷଣ କରିବାରେ, କଥାକାର ଶ୍ରୀ ଆଚାର୍ଯ୍ୟଙ୍କର ନିର୍ଭୟ -ଚିତ୍ରଣ ଓ ମୁକ୍ତ ପଦକ୍ଷେପ ବାସ୍ତବାଶ୍ରୟୀ । ମଣିଷର ସାମାଜିକ ଜୀବନ ଅପେକ୍ଷା, ଦୋଷଦୁଷ୍ଟ ସାମାଜିକତା ବିରୋଧରେ ପ୍ରତିବାଦ, ବ୍ୟକ୍ତି ସ୍ୱତନ୍ତ୍ରତା ନିମନ୍ତେ ଯୁକ୍ତିସିଦ୍ଧତା, ଶ୍ରୀ ଆଚାର୍ଯ୍ୟଙ୍କର ଗଳ୍ପ–ଉପନ୍ୟାସର ଅନ୍ୟତମ ସ୍ୱର । ସମାଜ ଅପେକ୍ଷା ବ୍ୟକ୍ତି ଏବଂ ବ୍ୟକ୍ତି ଅପେକ୍ଷା ବ୍ୟକ୍ତି-ସ୍ୱାଧୀନତା ପ୍ରତି କଥାକାର ଶାନ୍ତନୁ କୁମାର ଯଥେଷ୍ଟ ସଚେତନ । ଅପ୍ରକଟ ସତ୍ୟକୁ ଯଥାର୍ଥ ଭାବରେ ପ୍ରକାଶ କରି ଦେବାରେ ଶ୍ରୀ ଆଚାର୍ଯ୍ୟଙ୍କ ମାନସ-ଭୂମିର ଦୁର୍ବାର ପ୍ରସ୍ତୁତି । ତିକ୍ତ ଭଳି ମନେହେଲେ ହେଁ, ଜୀବନ୍ତ-ମଧୁର ଓ ସ୍ୱାଦ୍ୟ । ଅପୂର୍ବ ରଚନାଶୈଳୀ, ଆଞ୍ଚଳିକଭାଷା ତଥା ସାଧାରଣ କଥିତ ଭାଷାର ସାହାଯ୍ୟରେ ତାଙ୍କର କଥା ସାହିତ୍ୟ ମନୋଜ୍ଞ ହୋଇଉଠେ । ଅନ୍ଧାରୀମୂଳକରୁ ମଣିଷକୁ ଅଲୋକର ସତ୍ୟ ନିକଟକୁ ପହଞ୍ଚାଇ ଦେବାରେ, ସମୀମ ସଂକୀର୍ଣ୍ଣତାରୁ ଅସୀମ ଆତ୍ମଶକ୍ତିର ଉନ୍ମେଷ ସ୍ଥଳରେ ପହଞ୍ଚାଇ ଦେବାରେ, ପାଶବିକତାର ଦୁର୍ବୋଧତାରୁ ଶାଳୀନ ମାନବିକତାର ସୁବୋଧତା ନିକଟରେ ପହଞ୍ଚାଇ ଦେବାରେ ଶ୍ରୀ ଆଚାର୍ଯ୍ୟଙ୍କର କଥା ସହିତ୍ୟର ପ୍ରବୀର ପ୍ରତିଜ୍ଞା । ମଣିଷର ଛଳନା, ରାଜ ନୈତିକ ପ୍ରବଞ୍ଚନା, ଅନୈତିକ ପ୍ରତାରଣା, ଆସୁରିକ ଅଶାଳୀନତା ଓ ଅଶ୍ଳୀଳତା ପ୍ରମୁଖର ଉନ୍ମୋଚନ ଓ ପ୍ରକାଶନ ଶାନ୍ତନୁ କୁମାରଙ୍କର କଥା-ସହିତ୍ୟକୁ ପ୍ରତିଭୁ ପ୍ରତିଶ୍ରୁତି । କଥାକାର ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟ ଉଭୟ ଉପନ୍ୟାସ ଓ ଗଳ୍ପ ସାହିତ୍ୟର ସିଦ୍ଧହସ୍ତ ସ୍ରଷ୍ଟା : ତାଙ୍କର ଏ ଯାବତ୍ 'ନର କିନ୍ନର','ଶତାବ୍ଦୀର ନଚିକେତା' ତିନୋଟି ରାତିର ସକାଳ', 'ଦକ୍ଷିଣାବର୍ତ୍ତ','ଯାତ୍ରାର ପ୍ରଥମ ପାଦ','ଅନ୍ୟ ଏକ ସମୟ', 'ଅନ୍ୟ ଏକ ଭାରତ', 'ଶକୁନ୍ତଳା' ପ୍ରଭୃତି ଉପନ୍ୟାସ : 'ଦୁର୍ବାର ','ମନ ମର୍ମର',

'ଏଇ ଶେଷ ପଦଟି', ଅରଣ୍ୟର ଚୁଳ', 'ଅଦିନ ବଉଳ','ଆଦ୍ୟ ସକାଳ', ପ୍ରମୁଖ ଗଳ୍ପ-ସଂକଳନ ସହ ' କରଞ୍ଜିଆ ଡାଏରୀ' ଭଳି ଡାଏରୀ-ସାହିତ୍ୟ ପ୍ରକାଶିତ । ଆଲୋଚ୍ୟ ପ୍ରବନ୍ଧରେ ଶ୍ରୀ ଆଚାର୍ଯ୍ୟଙ୍କର ନିକଟରେ ପ୍ରକାଶିତ 'ଆଦ୍ୟ ସକାଳ' (୧୯୮୫) ଗଳ୍ପ ସଂକଳନର କୋଡେଟି ଗଳ୍ପର ଆଲୋଚନା କରାଯିବାର ପରିକଳ୍ପନା ରହିଛି ।

ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କର ଗଳ୍ପସମୂହର ଅନେକରେ କୃତିତ୍ୱ ହେଲା: ଅନୁଭୂତିର ସରସତା ଓ ବାସ୍ତବ ଅଭିଜ୍ଞତାର ମଧୁର ମିଶାଣ ଫଳ । ଏହି ଅନୁଭୂତି ଭିତରେ ରହିଥାନ୍ତି ସାମାଜିକ ବ୍ୟକ୍ତିଗତ, ରାଜନୈତିକ ଅଭିଜ୍ଞତାର ଜୀବନ୍ତ ପ୍ରତୁଳତା -ଏକ ଭିନ୍ନ ରୁଚିକର ଜାଗତିକ-ସତ୍ୟ । ମାନବ ତଥା ମାନବେତର ଚରିତ୍ରମାନଙ୍କର ସଂଯୋଜନା ସହ କଥାବସ୍ତୁର ପରିବେଷଣ ଓ ବକ୍ତବ୍ୟରେ ପ୍ରତୀକ ଓ ସଂକେତର ସ୍ପର୍ଶ ତାଙ୍କ ଗଳ୍ପର ଚମତ୍କାରିତା ହିଁ ପ୍ରକାଶ କରିଥାନ୍ତି । ବ୍ୟଞ୍ଜନାଧର୍ମୀ ଶବ୍ଦ ଓ ଭାଷା, ମନସ୍ତାତ୍ତ୍ୱିକ ବିଶ୍ଳେଷଣ, ଗତାନୁଗତିକତାଠାରୁ ଭିନ୍ନ ପଥର ଅନୁସରଣ, ନାଟକୀୟ, ପ୍ରବହମାନତା, ବୈଚିତ୍ର୍ୟମଣ୍ଡିତ ପରିମଣ୍ଡଳ, ପରିବେଷଣ କୌଶଳରେ ମାର୍ତ୍ତଣ୍ଡ-ଶକ୍ତି, ବ୍ୟଙ୍ଗୋକ୍ତି ସହିତ ପରିହାସର ପ୍ରୟୋଗ, ଅପୂର୍ବ କଥାବସ୍ତୁର ପରିକଳ୍ପନା ସହିତ ଅନୁଭୂତିର ବିଦ୍‌ଗଧ ଚିତ୍ରାବଳୀ ପ୍ରଭୃତି ଶ୍ରୀ ଆଚାର୍ଯ୍ୟଙ୍କର ଗଳ୍ପ ସାହିତ୍ୟରୁ ସୁଷମା ଓ ସୌରଭ 'ଆଦ୍ୟ ସକାଳ' ରେ ସଂକଳିତ ଅଧିକାଂଶ ଗଳ୍ପରେ ଶ୍ରୀ ଆଚାର୍ଯ୍ୟଙ୍କର ମାନସ ଓ ଲେଖନୀର ଏଇ ସ୍ପର୍ଶ ଅବଶ୍ୟ ଅନୁଭବ୍ୟ । ଔପନ୍ୟାସିକ ଶାନ୍ତନୁ କୁମାରଙ୍କର ଉପନ୍ୟାସ ସଂପର୍କିତ ସ୍ୱୀକୃତି, ତାଙ୍କର ଗଳ୍ପ-ସୃଷ୍ଟିରେ ମଧ ସ୍ୱୀକୃତ ନଥିପତ୍ର । କାରଣ ଔପନ୍ୟାସିକ ଓ ଗାଳ୍ପିକ ଶାନ୍ତନୁ କୁମାର କଥା-ସାହିତ୍ୟର ଜଣେ ସଚେତନ ସ୍ରଷ୍ଟା । ଔପନ୍ୟାସିକ ଶାନ୍ତନୁ କୁମାରଙ୍କର ସ୍ୱୀକୃତି ହେଲା- ଆଜିର ଓଡ଼ିଆ ଔପନ୍ୟାସିକ ମଣିଷର ମନକୁ ଅତିକ୍ରମ କରି ଆତ୍ମା ସହିତ ସଂପର୍କ ଯୋଡ଼ିବାକୁ ଚାହେଁ। ନୈତିକତା ବଦଳରେ ଆତ୍ମିକତା ଏହି କାରଣରୁ ଆଜିର ଔପନ୍ୟାସିକଙ୍କର ବିଷୟବସ୍ତୁ । ଏହି କାରଣରୁ ଆଜିର ଉପନ୍ୟାସର ଭାବ ଓ ଭାଷା ଅନୈତିକ ଓ ବ୍ୟାକରଣ ବହିର୍ଭୂତ ମନେ ହୁଏ ।'' (୨) ପୁନଶ୍ଚ ଭାଷା ପ୍ରୟୋଗ କ୍ଷେତ୍ରରେ ଶ୍ରୀ ଆଚାର୍ଯ୍ୟଙ୍କର ବିଶ୍ୱାସ ହେଲା- ''ସାହିତ୍ୟ ବିଚାରରେ ଭାଷାର ଆଞ୍ଚଳିକତାକୁ ପ୍ରତିବନ୍ଧକ ମନେ ନକରି ଏକ ବୈଶିଷ୍ଟ୍ୟ ବୋଲି ଭାବିଲେ ଆତ୍ମବିଶ୍ୱାସ ଜନ୍ମେ । '' (୩) କଥାକାର ଶାନ୍ତନୁ କୁମାରଙ୍କର ଆତ୍ମିକତା ସହ ଭାଷାର ବୈଶିଷ୍ଟ୍ୟ, ତାଙ୍କ ଗଳ୍ପ ସୃଷ୍ଟିକ୍ଷେତ୍ରରେ ସୁଦ୍ଧା ପ୍ରାଞ୍ଜଳ ଓ ପରିଚ୍ଛନ୍ନ - 'ଆଦ୍ୟ ସକାଳ' ଗଳ୍ପ ସଂକଳନର ଅଧିକାଂଶ ଗଳ୍ପରେ ଶାନ୍ତନୁ କୁମାରଙ୍କର ଆତ୍ମିକତାର ଅନୁଭବ ସ୍ପଷ୍ଟତର । ପ୍ରତିଭା ସେ ପର୍ଯ୍ୟନ୍ତ ଥାଏ ଲୁକ୍‌କାୟିତ, ଯେ ପର୍ଯ୍ୟନ୍ତ ଯଥାବିଧି ଜଳବାୟୁର ସ୍ପର୍ଶରେ ସେ ମୁକୁଳିତ ହୋଇ ନାହିଁ - ଏ କଥା ନୂଆ ନୁହେଁ, ପ୍ରାୟ ପ୍ରତ୍ୟେକ ପ୍ରତିଭାଶାଳୀ ବ୍ୟକ୍ତିତ୍ୱଙ୍କର ଅଙ୍ଗେନିଭା ଅନୁଭୂତି ମାତ୍ର । ସାହିତ୍ୟର ଯଥାର୍ଥ କାଉଁରୀ-ସ୍ପର୍ଶ ଜଣେ ସ୍ରଷ୍ଟାଙ୍କୁ ଅନେକ ସମୟରେ ମନ୍ତ୍ର-ମୁଗ୍ଧ କରେ - ଫିଟେଇ ଦେଇଥାଏ ସୃଷ୍ଟିରମାର୍ଗ । ଅବଶ୍ୟ ଏଠାରେ ଅପ୍ରାସଙ୍ଗିକ ମନେ ହେଉଥିଲେ ହେଁ, ଏ ପ୍ରସଙ୍ଗରେ କଥାକାର ଶାନ୍ତନୁ କୁମାରଙ୍କ ସିଦ୍ଧିର ଅନ୍ୟତମ ସ୍ୱୀକୃତିକୁ ଉଦ୍ଧାର କରିବା ସମ୍ଭବତଃ ସେତେ ଅବାନ୍ତର ହେବ ନାହିଁ ବୋଲି ମନେ ହୁଏ । ଶ୍ରୀ ଆଚର୍ଯ୍ୟଙ୍କର ସେଇ ସ୍ୱୀକୃତିଟି ହେଲା 'ଦିନେ ଆଇ. ଏସ. ସି. ପଢ଼ିଲାବେଳେ ଟ୍ରେନରେ ଯାଉ ଯାଉ କୌଣସି ଷ୍ଟେସନରୁ ତିନିଖଣ୍ଡ ଇଂରେଜୀ ବହି ମୁଁ କିଣିଥିଲି । ଏତେ ଗୁଡ଼ାଏ ବହି ଭିତରୁ ସେ ତିନିଟିକୁ ମୁଁ କେମିତି ବାଛିଲି, କହିପାରିବି ନାହିଁ । ସେଗୁଡ଼ିକ ପଢ଼ିଲାପରେ ମତେ ଲାଗିଲା, ସାହିତ୍ୟ ଜଣେ ମୃତ୍ୟୁକାମୀ ଲୋକକୁ ଏକ ଉଦ୍ଦାମ ଯୌବନଯୁକ୍ତ

ଜୀବନ ଦାନ କରିପାରେ । ଡି.ଏଚ. ଲରେନସ କୌଣସିଠାରେ କହିଥିବା ମନେ ହୁଏ । Novel Saved my life । ମୋ ଜୀବନକୁ ସେଇ ତିନିଖଣ୍ଡ ଉପନ୍ୟାସ ମଧ୍ୟ ସେହିପରି ରକ୍ଷାକରି ଦେଇଥିଲେ ହୁଏତ ସେଦିନ । ଏ ତିନିଖଣ୍ଡ ହେଲା : ମବିଡିକ୍, ଅଫ୍ ହ୍ୟୁମାନ ବଣ୍ଡେଜ, ଗ୍ରୋଥ୍ ଅଫ୍ ଦି ସଏଲ ।'' (୪) ସେହିଭଳି ଅନେକ ସ୍ରଷ୍ଟା –ପୁରୁଷଙ୍କ ଅନବଦ୍ୟ କୃତିସବୁ ମଣିଷକୁ ଅପୂର୍ବ ପ୍ରେରଣାରେ ଉଦ୍‌ବୁଦ୍ଧ ହିଁ କରିଥାନ୍ତି କାଳେ କାଳେ । ଶ୍ରୀ ଆଚର୍ଯ୍ୟଙ୍କ 'ନର କିନ୍ନର' ବା 'ଶକୁନ୍ତଳା' ଉପନ୍ୟାସ ଏଇ ଭଳି ଅନବଦ୍ୟ କୃତି ବୋଲି କୁହାଯାଇ ପାରେ । ତେବେ ଔପନ୍ୟାସିକ ଶାନ୍ତନୁ କୁମାରଙ୍କୁ ଗାଳ୍ପିକ ଭାବରେ ସେଇ ଧାରାରେ ଆବିଷ୍କାର କରିବା, ଅବଶ୍ୟ ସେତେ କଷ୍ଟକର ହେବନାହିଁ ।

ପୁରୀ ଜିଲ୍ଲାର ଗୋଟିଏ ଗାଁର ଦୁଇ ଭାଇ ଦିବା ହୋତା ଓ ସରବା ହୋତା । 'ବାପ ମା' କୁଆଡ଼େ ପାଗଳ ଥିଲେ ବୋଲି, ଦୁଇ ସନ୍ତାନଙ୍କୁ ମଧ୍ୟ ଗାଁ ଲୋକେ ପାଗଳ ବିଚାରିଛନ୍ତି । ସେଥିପାଇଁ ସେ ଦୁହିଁଙ୍କୁ ଏକ ଘରକିଆ କରି ଦେଇଛନ୍ତି । ଆଭିଆଡ଼ା ଦୁହେଁ ଦୁଇଟି ସାଙ୍ଗ ଭଳି ଗାଁ ବାଲାଙ୍କୁ କବାଟ କିଳି ରହନ୍ତି । ଗାଁ ଦାଣ୍ଡ ତାଙ୍କୁ ମନା ହୋଇଥିବାରୁ, ବାରିପଟ ବାଟରେ ସେ ଦୁହିଁଙ୍କର ନିର୍ଜନରେ ଯିବା ଆସିବା । ସେ ଦୁହେଁ ଘର ଭିତରେ ଝଗଡ଼ା ବି କରନ୍ତି, ହେଁ ହେଁ ଫେଁ ଫେଁ ବି ହୁଅନ୍ତି । ବଡ଼ ଭାଇ ଦିବାର ଗୁଣ ବା ଦୋଷ ଭିତରେ ଥାଏ, ବକର ବକର ଭଟର ଭଟର ହେବା- ରାତି ପାହିଗଲେ ବି ଚୁପ୍ ହୁଏ ନାହିଁ । ଆଉ ସାନଭାଇ ସରବା ସେତେବେଳେ ତାକୁ ମୃତ ଉପଦେଶ ଢ଼ାଳି ଦେଇଥାଏ - ଶାସ୍ତ୍ରଚର୍ଚ୍ଚା ଚାଲିଥାଏ । ଦିବାର ବକର ବକର ଚୁପ୍ ହୋଇଗଲା ବେଳକୁ, ସରବାର ଶାସ୍ତ୍ରଚର୍ଚ୍ଚା ବନ୍ଦ ହୁଏ ନାହିଁ - ଏଇମିତି ସେ ଦୁହେଁ, ବେଳେ ବେଳେ କାନ୍ଦ, ବେଳେ ବେଳେ ହସ । କିନ୍ତୁ ସେ ଦୁଇ ବାୟାଙ୍କର ଥାଏ ଗୋଟିଏ ଗାଈ, ଗାଈଟି ଅବଶ୍ୟ ଦୁହାଁଳ ନୁହେଁ । ଗାଈଟିକୁ ହେପାଜତରେ ସେ ଦୁହିଁଙ୍କ ସନ୍ଧ୍ୟା ସକାଳ ବିତିଯାଏ । ଦିନେ ଗାଈଟି ପଡ଼ିଆରେ ଚରୁ ଚରୁ କୁଆଡ଼େ ଅକସାତ୍ ଉଭାନ୍ ହୋଇଗଲା । ଦୁହିଁଙ୍କ ମନରେ ଦୁର୍ଭାବନା । ଗାଁ ପାଖରେ ସମୁଦ୍ର ଏବଂ ତାକୁ ଲାଗି ବୁଦବୁଦୁକିଆ ଗହନରୁ ଗହନତର ବଣଟିଏ । ବାଲି ହରିଣ ପ୍ରଚୁର ଥିବାରୁ, ବେଳେ ବେଳେ ବାଘର ମଧ୍ୟ ପ୍ରାଦୁର୍ଭାବ ଶୁଣାଯାଏ, ଦେଖାଯାଏ । ବର୍ତ୍ତମାନ ଜଣାଯାଏ, ଗାଈକୁ ବାଘ ନେଇଯିବାର ଆଶଙ୍କା ରହିଛି । ଆଗରେ ଦୁଇଟି ବାଟ, ଗୋଟିଏ ହେଲା, ଗାଈ ଖୋଜିବା ଓ ଅନ୍ୟଟି ବାଘ ଜଗିବା - ସରବା ବୁଝାଇଦେଲା । ଦିବା ପଡ଼ିଗଲା ଦ୍ୱନ୍ଦ୍ୱରେ କିନ୍ତୁ ଶେଷରେ ଦିବାକର ଠିକ୍ କରିଦେଲା - ଗାଈକୁ ଖୋଜିବା ବୃଥା, ବାଘକୁ ଜଗିବା ଠିକ୍ ହେବ । ଦ୍ୱିଧାର କୌଣସି ସମାଧାନରେ ପହଞ୍ଚି ନପାରି, ଶେଷରେ ଏକ ଦୋଛକି ରାସ୍ତାରେ, ଯେଉଁଥିରୁ ଗୋଟିଏ ଗାଁକୁ ଓ ଅନ୍ୟଟି ବିଲକୁ ଲମ୍ବିଥିଲା, ସେଠାରେ ସେ ଦୁହେଁ ବାଘ ଜଗି ବସିଲେ । ସାରାରାତି ପାହିଗଲା, ବାଘର ଦେଖା ମିଳିଲା ନାହିଁ । ମାତ୍ର ଏ କ'ଣ ? ଗାଁ ମୁଣ୍ଡରେ ଏକ କରୁଣ ଭୟାବହ ଦୃଶ୍ୟ – ସେ ଦୁହିଁଙ୍କର ପ୍ରିୟତମ ଗାଈଟି ଚାରିକାତ ଲମ୍ବେଇ, କ୍ଷତବିକ୍ଷତ ହୋଇ ପଡ଼ିଛି । ବାଘକୁ ଅବଶ୍ୟ ସେମାନେ ଜଗିଥିଲେ, ବାଘଟି କିନ୍ତୁ କେଉଁ ବାଟରେ ଆସିଲା, ଜାଣି ପାରିଲେ ନାହିଁ । ଦିବାକର ସରବାର ତର୍କରେ ବ୍ରହ୍ମମୂର୍ତ୍ତି ଧାରଣ କରି ଉଞ୍ଚେଇଲା ଠେଙ୍ଗା, ସରବା ମୁଣ୍ଡ ପତେଇ ଠିଆ ହୋଇଥିଲା । ସରବା ପଡ଼ିଲା ଗାଈ ଉପରେ, ଦିବାକର ମଧ୍ୟ ପଡ଼ିଲା । ଅବଶ୍ୟ ଦୁହେଁ ପୁଣି ଉଠିଲେ । ଦିନସାରା ରାତି ସାରା ନିଜ ଘର ଭିତରେ ରହିଥିଲେ । ପରଦିନ ଠାରୁ ସେ ଦୁହିଁଙ୍କର ସୋରଶବ୍ଦ ସୁଦ୍ଧା ଜଣାଗଲା ନାହିଁ । ମାତ୍ର ଆପଦ ବିପଦବେଳେ ଗାଁର ମୁରବିମାନେ ଯୁକ୍ତି କରିଥାନ୍ତି ଗାଈ ଖୋଜିବା ନା ବାଘ ଜଗିବା ।

ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କର ''ଗାଈ ଖୋଜିବା ନା ବାଘ ଜଗିବା'' ଗଳ୍ପର ଏହି କଥାବସ୍ତୁ ଏକ ଅଭିନବ କଥାବସ୍ତୁ । କଥାବସ୍ତୁଟି ସାଧାରଣ ମନେ ହେଲେ ହେଁ, ଏହାର ପରିବେଷଣ ଶୈଳୀରେ ଅଭିନବତ୍ୱ ଲକ୍ଷ୍ୟର ବିଷୟ । ଗଳ୍ପଟି ପ୍ରତୀକଧର୍ମୀ- ପ୍ରତୀକଧର୍ମୀ ଗଳ୍ପ ପରିବେଷଣ କରିବାରେ ଶ୍ରୀ ଆଚାର୍ଯ୍ୟଙ୍କର ରହିଛି ଦକ୍ଷତା । ଏ ଗଳ୍ପଟିରେ ଗାଈଟି ପ୍ରକୃତରେ ଗାଈଟିଏ କେବଳ ନୁହେଁ, ସେ ହେଉଛି ଜୀବନ ଏବଂ ବାଘଟି ପ୍ରକୃତରେ ବାଘଟିଏ କେବଳ ନୁହେଁ, ସେ ହେଉଛି ମୃତ୍ୟୁ । ଦିବା ଓ ସରବା ସେ ଦୁହେଁ ସାଧାରଣ ମଣିଷର ପ୍ରତିନିଧି - ସେ ଦୁହିଁଙ୍କ ଭିତରେ ବାସ୍ତବରେ ରହିଛି ଦ୍ୱନ୍ଦ୍ୱାତ୍ମକ ସ୍ଥିତି - ବାସ୍ତବରେ ମଣିଷ, ଜୀବନକୁ ଖୋଜିବ ନା ମୃତ୍ୟୁକୁ ଜଗିବ ? ବାସ୍ତବିକ, ମଣିଷ ସରବା ଭଳି ପଣ୍ଡିତ ଲୋକର ମାର୍ଗକୁ ବୁଝି ନ ପାରି, ଦ୍ୱନ୍ଦ୍ୱାତ୍ମକ ପରିସ୍ଥିତିରେ ପାର୍ଥିବ ଜଗତରେ ମୃତ୍ୟୁକୁହିଁ ଜଗିବସେ, ଦିବା ଭଳି । ସେଇଠି ମଣିଷ ଭୁଲ କରେ, ବୁଝି ପାରେ ନାହିଁ ଯେ, ମୃତ୍ୟୁକୁ ଜଗିଲେ ସୁଦ୍ଧା, ସେ ଯଥାସମୟରେ ନୀରବରେ ଆସିବ ହିଁ ଆସିବ, ତା କାମ କରିବ ହିଁ କରିବ- ପ୍ରାଣ ନେବ ହିଁ ନେବ । ସେ କ୍ଷେତ୍ରରେ ଜୀବନକୁ ଖୋଜିବା ବରଂ ଶ୍ରେୟସ୍କର- ମଣିଷ କିନ୍ତୁ ଜୀବନକୁ ଖୋଜି ଚାଲିଥାଏ - ଜୀବନର ରହସ୍ୟ ଅନୁସନ୍ଧାନ କରି ଚାଲିଥାଏ - ମାତ୍ର କେବେ ସରେ ନାହିଁ ଜୀବନର ସେଇ ଖୋଜିବା ବ୍ୟାପାରଟି । ସେଇଠି ମଧ ମଣିଷ ଭୁଲ କରେ । ଜୀବନ ପଛରେ ଗୋଡ଼େଇ ଗୋଡ଼େଇ, କେତେବେଳେ ଯେ ମୃତ୍ୟୁର ହାବୁଡ଼ରେ ପଡ଼ିଥାଏ, ସେ ଜାଣି ପାରେ ନାହିଁ । ମାନସିକ ଦ୍ୱନ୍ଦ୍ୱ ଥିବା ପର୍ଯ୍ୟନ୍ତ ଏହା ହୋଇ ଚାଲିଥାଏ - ସେ ଜୀବନକୁ ଖୋଜି ପାଏ ନାହିଁ ବା ମୃତ୍ୟୁକୁ ଜଗି ତା'ଠାରୁ ନିରାପଦ ଦୂରତ୍ୱରେ ଚିରଦିନ ରହି, ତାକୁ ବାରଣ ସୁଦ୍ଧା କରିପାରେନାହିଁ । ଦ୍ୱନ୍ଦ୍ୱ ତୁଟିଗଲେ, ସେମାନଙ୍କର ଆଉ ଆବଶ୍ୟକତା ହୁଏତ ରହେନାହିଁ । ମଣିଷ ପାଇଁ ଜୀବନ ଯେପରି ସତ୍ୟ, ମୃତ୍ୟୁ ମଧ ସେହିପରି ଚିରନ୍ତନ ସତ୍ୟ । ରାତିରେ ଅନ୍ଧାରରେ, ଗହନ ଅରଣ୍ୟରେ ଅଜଣାରେ ଗାଈ ଖୋଜିବା ବା ବାଘ ଜଗିବା ତା' ପାଇଁ ଅବାନ୍ତର । ତେବେ ଦ୍ୱନ୍ଦ୍ୱରେ ମଣିଷ ସ୍ଥିତପ୍ରଜ୍ଞ ନ ହୋଇ, ଅସ୍ଥିର ହେବା, ମୂର୍ଖତା ଭିନ୍ନ, ଅନ୍ୟ କିଛି ନୁହେଁ । ଏହିଭଳି ଏକ ପ୍ରତୀକ ଶାନ୍ତନୁବାବୁଙ୍କର 'ଗାଈ ଖୋଜିବା ନା ବାଘ ଜଗିବା' ଗଳ୍ପରେ ଯେପରି ପ୍ରଚ୍ଛନ୍ନ, ସେହିପରି ପରିଚ୍ଛନ୍ନ ମଧ । ସରବା କହିଥିଲା - ''ତମ ବୁଦ୍ଧିରେ ପଡ଼ି ସର୍ବନାଶ ହୋଇଗଲା । ମୁଁ ସ୍ଥିର କରି ସାରିଥିଲି ଏ ପରିସ୍ଥିତିରେ ବାଘକୁ ନ ଜଗି ଗାଈ ଖୋଜିବା ଶ୍ରେୟ ହୋଇଥାନ୍ତା, ଭାଇନା । ତମେ ମୋ ବୁଦ୍ଧି ବାଉଳା କରି ଦେଲ । ଆମେ ବାଘକୁ ଜଗୁଥିଲେ କାହିଁକି ? ଗାଈ ନ ଖୋଜି ବାଘ ଜଗିବା... ।

''କଅଣ କହିଲୁ ? ମୁଁ ବୁଦ୍ଧି ବାଉଳା କରିଦେଲି ତୋର ? ଭାରି ପଣ୍ଡିତଟାଏ ତୁ ! ଆବେ ଓଲୁ, ବାଘର ବାଟ ଓଗାଳି କି ଭୁଲ କଲେ କହୁଛୁ ? କହ , ଆଉ ଥରେ କହ । '' ଦିବା ଉତ୍ତେଜନା ପ୍ରକାଶ କରିଥିଲା, ଠେଙ୍ଗା ଉଞ୍ଚାଇ ।

ସରବା କିନ୍ତୁ କହିଥିଲା - ''ଠିକ୍ କହୁଚି ଭାଇନା । ଗାଈକୁ ଅନ୍ଧାରରେ ଖୋଜିବା ଅପେକ୍ଷା ବାଘକୁ ଜଗିବା ଏକ ଭୁଲ ନୀତି ! ଆମେ ଆମ ନୀତିରେ ଅଟଳ ରହିଥିଲେ ଗଲା ରାଡିରେ । ଏହା ନିଶ୍ଚିତ କଥା । କିନ୍ତୁ ଜୀବନକୁ ବଞ୍ଚାଇ ରଖିବା ପାଇଁ ମୃତ୍ୟୁର ବାଟ କ'ଣ ଓଗାଳି ହେବ, ଭାଇନା ? ବରଂ ଜୀବନକୁ ଅନୁସରଣ କରିଥିଲେ ଭଲ ହୋଇଥାନ୍ତା । ଆମେ ଭୁଲ କଲେ । ଆହା - ବିଚାରୀ ଗାଈଟାକୁ ଆମର ରକ୍ଷା କରି ପାରିଲେ ନାଇଁ ହୋ ଭାଇନା ।''

'ତୁ ଗୋଟାଏ ଗଣ୍ଡ ମୂର୍ଖ ।' ଦିବା ଚହଟି ଉଠି କହିଲା, 'ଜୀବନକୁ ବଞ୍ଚାଇବା ପାଇଁ ମଣିଷ ମୃତ୍ୟୁର ବାଟ ଓଗାଳୁ ନାଇଁ ତ ଆଉ କ'ଣ କରୁଛିରେ, ଅପଦାର୍ଥ ମୂର୍ଖ, ଚଣ୍ଡାଳ ।'

ତେବେ ଗାଈ ଖୋଜିବା ନା' ବାଘ ଜଗିବା ? କୋଉଟା ଠିକ୍ ?- ଏ ଦ୍ୱନ୍ଦ୍ୱ ଏକ ଚିରନ୍ତନ ଦ୍ୱନ୍ଦ୍ୱ ।

ଅନ୍ୟ ଏକ ଗଳ୍ପ 'ଆଦ୍ୟ ସକାଳ'ରେ ମଧ ଜୀବନ-ମୃତ୍ୟୁ ସଂପର୍କିତ ଏକ ଆପାତ ମାନବେତର କଥାବସ୍ତୁ ସଂଯୋଜିତ । ଶୀତ ଦିନର ଗୋଟିଏ ସକାଳରେ, 'ଭୃଗୁ' ନାମକ କିଶୋରଟିର ହୁଗୁଳା ହାପ୍‌ପେଣ୍ଟଟିଏ ପିନ୍ଧି ଫୁଙ୍ଗୁଳା ଦେହରେ ଏକ ଖଳାବାଡିରେ ବସିଥାଏ । ସୁନାରଙ୍ଗର ପାଣିଚିଆ ଖରା ସୁନାରଙ୍ଗର ଖଳାବାଡ଼ି ଉପରେ ଝରି ପଡୁଥାଏ । ପାଣିଚିଆ ସୁନେଲି ଖରା ଭୃଗୁ ଦେହରେ ଗୋଟାଏ କିମିୟା, ଗୋଟାଏ ଉଲ୍ଲାସ ସୃଷ୍ଟି କରୁଥାଏ - ପ୍ରଥମ କୈଶୋରର ସର୍ବପ୍ରାଥମିକ ବିସ୍ମୟ ତା' ପାଇଁ ସେଦିନ ସବୁକଥାରେ କିମିତି ନୂଆ ନୂଆ ଭାବ ଆଣି ଦେଉଥାଏ । ଖଳାବାଡ଼ିକୁ ଲାଗିଥିବା ନିକାଞ୍ଚନ ବିଶାଳ ଆଉ ଗହଳ ବଣ ଦାଢ଼ରେ ରହିଥିବା ମେଞ୍ଚାଏ ବୁଦା ଆଡୁଆଳରେ କି ଗୋଟାଏ ଜନ୍ତୁ କୌତୁହଳବଶତଃ ଅନେଇ ରହିଥାଏ ଏବଂ ମଝିରେ ମଝିରେ ଲାଲ ଜିଭଟିଏ ଓଠ ଚାଟୁଥାଏ । ପାଖର ଡେଙ୍ଗା ଗଛଟିଏ ଉପର ଡାଳରେ ବସିଥାଏ ଚଢ଼େଇଟିଏ । ଗଛ ଡାଳରୁ ଚଢ଼େଇଟି ସମକାଳୀନ ମଣିଷ ଓ ଜନ୍ତୁଟିକୁଦେଖି ପାରୁଥାଏ । ଚଢ଼େଇଟି ଏ ଦୃଶ୍ୟରେ ସ୍ଥିର ରହି ନ ପାରି, ଏ ଡାଳରୁ ସେ ଡାଳକୁ ଫୁରକିନା ଖଣ୍ଡିଉଡ଼ା ମାରୁଥାଏ ଏବଂ ଗୋଟାଏ ଅସ୍ୱାଭାବିକ ରାବ ତା' କଣ୍ଠରୁ ବାହାରି ଆସୁଥାଏ । ପକ୍ଷୀଟିର ସେପରି ଡାକରେ କିନ୍ତୁ ଜନ୍ତୁଟି ବିରକ୍ତ ହେଉଥାଏ । ଅଥଚ କିଶୋର ଭୃଗୁ ନିଜ ବିଷୟରେ ନିଜେ ଏତେ ବିସ୍ମିତ ହୋଇ ପଡିଥାଏ ଯେ ସେ ବାହ୍ୟଚିନ୍ତା ହିଁ ପାଶୋରି ଦେଇଥାଏ । ନା ସେ ସେଇ ଜନ୍ତୁଟିର ଅସ୍ତିତ୍ୱ ନା ପକ୍ଷୀଟିର ଡାକ ସଂପର୍କରେ ସଚେତନ ହୋଇ ପାରୁଥାଏ । ପକ୍ଷୀଟିର ଡାକ ଶୁଣୁ ନଥିବା ହେତୁ, ପକ୍ଷୀଟି ଆହୁରି ଧୈର୍ଯ୍ୟ ହରାଇ, କ୍ରମଶଃ ଅଧିକ ବିକୃତ ସ୍ୱରରେ ଡାକ ଛାଡୁଥାଏ । ଲୁଚିଥିବା ଜନ୍ତୁଟି ଅଧିକ ବିରକ୍ତିର ସହ ଅଦୃଶ୍ୟ ହୋଇ ଯାଉଥାଏ ସତ କିନ୍ତୁ ସୁଯୋଗର ଅପେକ୍ଷାରେ ହିଁ ଥାଏ । ଭୃଗୁର ଇନ୍ଦ୍ରିୟମାନେ ସେତେବେଳେ ବହିର୍ମୁଖ ଏକ ଅଜଣା ବିଶ୍ୱକୁ ଜାଣିନେବା ନିମନ୍ତେ ଅଧିକ ତତ୍‌ପର । 'ଭୃଗୁର ଇନ୍ଦ୍ରିୟମାନେ ବର୍ତ୍ତମାନ ସେଇ ଦୁନିଆଟା ବିଷୟରେ ଗୋଟାକ ପରେ ଗୋଟାଏ ଅଜବ ସମ୍ବାଦ ଅଜାଡ଼ି ଦେଇ ଚାଲିଥିଲେ । ଅନ୍ତର୍ଜଗତର ସେଇ ଅଲୌକିକତା ଭୃଗୁକୁ ସ୍ତବଧ ବିସ୍ମୟାଭିଭୂତ କରି ସାରିଥାଏ । ତେଣୁ ପକ୍ଷୀର ଡାକ ବା ବଣଆଡୁ ପବନରେ ଭାସି ଆସୁଥିବା ହିଂସ୍ରତାର ମହୁଆ ଗନ୍ଧ ପ୍ରତି ତାର କାନ ନାକ ପୂରାପୂରୀ ଜଡ଼ ପାଲଟି ଯାଇଥାଏ । ସେ ବର୍ତ୍ତମାନ ହୋଇ ପଡ଼ିଥାଏ ସମ୍ପୂର୍ଣ୍ଣ ଉଲଗ୍ନ ।' (ପୃ-୩) ଏଇ ଖେଳ ଚାଲିଥାଏ । ଖଳାବାଡ଼ି ଓ ବଣ ମଝାମଝି ଗୋଟିଏ ବିଶାଳ ଶିମିଳିଗଛ - ଏଇ ଗଛଟା କୁଆଡ଼େ ବସନ୍ତ ଋତୁର ଆବାହକ । 'ଗଛଟିକୁ ଗୋଟିଏ ଭୟଙ୍କର କାମସକ୍ତା ଅସୁରୀନାରୀ ମନେକରି ମଣିଷମାନେ ତା'ପାଖ ମାଡ଼ିବାକୁ ସାହସ କରନ୍ତି ନାହିଁ କେବେ ।' (ପୃ-୫) ଶିମିଳିଗଛରେ କିନ୍ତୁ ଚଢ଼େଇମାନଙ୍କର କଳରବ ହିଁ ଆରମ୍ଭ ହୋଇ ଯାଇଥାଏ । ମଣିଷଟି ଶିମିଳିଗଛ ଆଡ଼କୁ ଆଗେଇ ଯାଉଥାଏ ଏକ ରକ୍ତାକ୍ତ ଆଲିଙ୍ଗନ ନିମନ୍ତେ । ପକ୍ଷୀଟି ଅଧିକ କରୁଣାର୍ଦ୍ର ହୋଇ ଉଠୁଥାଏ । ସେତେବେଳେକୁ ମଣିଷଟି ଶିମିଳି ଗଛଟିକୁ ବାରମ୍ବାର 'ଦେବୀ' 'ଦେବୀ' ସମ୍ବୋଧନ କରୁଁ କରୁଁ ବୃକ୍ଷମୂଳେ ଭୂମିଷ୍ଠ ହେଉଥାଏ । ଏ ଆଚରଣରେ ଚଢ଼େଇଟି ଆଚମ୍ବିତ ହେଉଥାଏ । କିନ୍ତୁ ସେତେବେଳକୁ ଜନ୍ତୁଟି ବୁଦା ଆଡୁଆଳରୁ କେଇ ପାଦ ଆଗେଇ ଆସିଥାଏ । ପକ୍ଷୀଟି ଅଧିକ ବିଚଳିତ ହୋଇ ପଡୁଥାଏ। ସେତେବେଳକୁ

ଭୃଗୁର ନବଯୌବନର ମାତଲାମି ଏକ ସାମୟିକ ଖିଆଲ ହୋଇ ଉଠିଥାଏ ଯେପରି ! ବେଳେ ବେଳେ କୌଣସି ହିଂସ୍ର ବଣ୍ୟ ବିଡ଼ାଳ ବା ସର୍ପଠାରୁ ନିଜଛୁଆକୁ ବଞ୍ଚାଇବା ପାଇଁ ମା' ପକ୍ଷୀଟି ପଥ ମଧ୍ୟରେ ମୃତବତ୍ ପଡ଼ିରହି ଯେଉଁ ଅଭିନୟ କରେ ଓ ହିଂସ୍ର ଜନ୍ତୁ ବା ସର୍ପକୁ ବିଭ୍ରାନ୍ତ କରି, ନିଜ ସନ୍ତାନକୁ ରକ୍ଷା କରେ, ସେହିଭଳି ଅଭିନୟ ସୁଦ୍ଧା କଲା ପକ୍ଷୀଟି । ବାରମ୍ବାର ଛଟପଟ ହୋଇ ଖଣ୍ଡିଉଡ଼ା ଦେଇ, ଭୃଗୁ ନିକଟରୁ ସେଇ ଜନ୍ତୁଟିକୁ ଭୁଲେଇ ନେଇଯିବାର ଉଦ୍ୟମ ମଧ କଲା ପକ୍ଷୀଟି । ସେଇ ଜନ୍ତୁଟି ଥିଲା ଗୋଟିଏ ଭୀଷଣକାୟ ବୁଢ଼ାବାଘ । ଭୃଗୁ କିନ୍ତୁ ଜଗତର ଐଶ୍ୱର୍ଯ୍ୟରେ କିଛି ହିଁ ବୁଝି ପାରୁନଥିଲା । ଭୃଗୁ ଯେତେବେଳେ ଚଢ଼େଇକୁ ଦେଖିଲା, ସେତେବେଳେ କାଳେ ସେ ତାର ଆଦ୍ୟ ଯୌବନ ଗୁମର ଜାଣି ନେଇଛି ବୋଲି ଲଜ୍ଜିତ ହେଲା । ମାତ୍ର ଭୃଗୁ ତଥାପି ବାଘ ସଂପର୍କରେ ସଚେତନ ହୋଇ ପାରି ନଥିଲା । ଭୃଗୁର ଆଖି ବର୍ତ୍ତମାନ ମୃତ୍ୟୁ ସହିତ ଚାରିଚକ୍ଷୁ । ଏତେବେଳ ଯାଏଁ ସେଇ ଚଢ଼େଇଟି ତାକୁ ମୃତ୍ୟୁ ମୁଖରୁ ବଞ୍ଚେଇ ରଖିଥିଲା । ଏକ ଅପୂର୍ବ ଉଲ୍ଲାସରେ ବସ୍ତୁତଃ ନାଚିବାକୁ ଲାଗିଲା ଭୃଗୁ । ଏ ସବୁ ସତ୍ତ୍ୱେ ବାଘଟି ସେ ସ୍ଥାନ ଛାଡ଼ି ଅନ୍ୟତ୍ର ଚାଲି ଯାଇନଥିଲା ।

'ଆଦ୍ୟ ସକାଳ' ଗଳ୍ପର ଏଇ କଥାବସ୍ତୁ । ଏ ମାନବେତର ମନେ ହେଉଥିଲେ ହେଁ, ଏହା ଏକ ପ୍ରତୀକଧର୍ମୀ ବିଷୟବସ୍ତୁ । ଏ ଗଳ୍ପରେ ମଧ ସେଇ ବୁଦା ଅନ୍ତୁଆଳରେ ଲୁଚି ରହିଥିବା, ଲାଲ ଜିଭକୁ ଓଠରେ ବେଳେ ବେଳେ ବୁଲାଇ ଆଣୁଥିବା, ସେଇ ଜନ୍ତୁ, ସେଇ ଅତିକାୟ ବୁଢ଼ା ବାଘଟି ମୃତ୍ୟୁର ପ୍ରତୀକ । ଭୃଗୁ ବାର/ତେର ବର୍ଷର କିଶୋରଟି ମଣିଷର ପ୍ରତୀକ ଏବଂ ତାର କୈଶୋର ଇନ୍ଦ୍ରିୟ ଲିପ୍‌ସାର ପ୍ରତୀକ । ଶେଷ ଶୀତର, ଆଦ୍ୟ ବସନ୍ତର ଶିମିଳି ଗଛଟି କାମନାର ପ୍ରତୀକ । ଚଢ଼େଇଟି ହେଉଛି ଐଶୀ-ଶକ୍ତିର ପ୍ରତୀକ । ଏଇ ପ୍ରତୀକମାନଙ୍କ ସହ ଆତ୍ମୀୟତା ନ ବଢ଼ିବା ଯାଏଁ, ଗଳ୍ପଟିର କଥାବସ୍ତୁ ମାନବେତନର ମନେ ହେବା ସ୍ୱାଭାବିକ । ମାତ୍ର ଜୀବନ ଓ ଜଗତର ଅପୂର୍ବ ରହସ୍ୟ ସଂପର୍କିତ ଏଇ ଗଳ୍ପଟିର ଅଭିବ୍ୟକ୍ତି ପରିଛନ୍ନ । ଜାଗତିକ ଅରଣ୍ୟ ନିକଟରେ ବସବାସ କରୁଥିବା ମଣିଷ ତାର କୈଶୋର ଆଗମନ ପରେ ପରେ ଯୌବନର ପଦଧ୍ୱନି ସହିତ, କ୍ରମେ ଇନ୍ଦ୍ରିୟାସକ୍ତ ହୋଇ ଉଠେ । ଇନ୍ଦ୍ରିୟର ଆସକ୍ତି ଦ୍ୱାରା ମୋହାଚ୍ଛନ୍ନ ହୋଇଯାଏ, ସେ ତାର ସ୍ଥିତିକୁ ଭୁଲିଯାଏ । କାମାସକ୍ତ ଅବସ୍ଥାରେ ରକ୍ତାକ୍ତ ହୋଇଯିବାର ସମ୍ଭାବନା ଥାଏ ଅଧିକ - ଆସୁରୀ ମାୟା ସେ ମଣିଷକୁ ଅଧିକରୁ ଅଧିକ ଆସକ୍ତ କରେ । ଅରଣ୍ୟ ଭିତରେ ଭୟଙ୍କର ଜନ୍ତୁ- ହିଂସ୍ରତା : ମୃତ୍ୟୁର ପ୍ରତିଧ୍ୱନି । ବାଘ, ଯିଏ ମୃତ୍ୟୁର ପ୍ରତିନିଧି ବା ସ୍ୱୟଂ ମୃତ୍ୟୁ, କିମ୍ବା ଅଧିକ ଇନ୍ଦ୍ରିୟାସକ୍ତି, ଯାହା ମୃତ୍ୟୁର ସନ୍ତକ - ସେଇ ବାଘ ଥାଏ ସୁଯୋଗର ଅପେକ୍ଷାରେ । ସୁଯୋଗ ପାଇଲେହିଁ ସେଇ ଜନ୍ତୁ, ମଣିଷ ଉପରେ ମାଡ଼ି ବସେ ମଣିଷକୁ ଇନ୍ଦ୍ରିୟର ଆସକ୍ତିଠାରୁ ଦୂରକୁ ନେଇ ଯିବା ନିମନ୍ତେ, ମାନସିକ ମୃତ୍ୟୁ ପଥଠାରୁ ଦୂରକୁ ନେଇ ଯିବା ନିମନ୍ତେ ଏକ ଅଦୃଶ୍ୟ ଐଶୀଶକ୍ତି ସର୍ବଦା ତତ୍‌ପର । ମଣିଷ କିନ୍ତୁ ସେ କଥା ବୁଝିପାରେ ନାହିଁ । ଅନୁଭବ କରିପାରେନାହିଁ । ଐଶୀଶକ୍ତିର ସ୍ଥିତି ସହିତ ଅନ୍ୱୀୟ ହେବା ନିମନ୍ତେ ନିର୍ବୋଧ ମଣିଷ ସଚେତନ ହୋଇ ପାରେନାହିଁ । ଐଶୀଶକ୍ତି କିନ୍ତୁ ବାରମ୍ବାର ମଣିଷକୁ ଜାଗତିକ ମୋହଠାରୁ, ଇନ୍ଦ୍ରିୟାସକ୍ତିଠାରୁ ଦୂରେଇ ନେବା ପାଇଁ ଉଦ୍ୟମ କରୁଥାନ୍ତି ଅଦୃଶ୍ୟ- ଦୃଶ୍ୟ ଭାବରେ । ମଣିଷ ଯେତେବେଳେ ଏଇ ଉଦ୍ୟମକୁ ଅନୁଭବ କରିପାରେ ସେତେବେଳେ ଏକ ଅପୂର୍ବ ଆନନ୍ଦରେ ନାଚିଉଠେ ଯେପରିକି ସେ ମାର୍ଗ ପାଇଯାଇଛି । ସେତେବେଳେ ସେ ମଣିଷ ଅସ୍ଥିର ହୁଏ ନାହିଁ; ମୃତ୍ୟୁକୁ ଆଦୌ ଭୟ କରେନାହିଁ, ଇନ୍ଦ୍ରିୟକୁ ଖାତିର କରେନାହିଁ । ଭୃଗୁ ଉପରକୁ ପୁଣି

ଥରେ ଯେତେବେଳେ ବାଘଟି ଲମ୍ଫ ଦେଲା, ସେତେବେଳେ "ପିଲାଟି ତଥାପି ଭୂଇଁ ଉପରେ ଠିଆ ହୋଇ ରହିଥିଲା । ତା' ମୁଣ୍ଡ ଉପରେ, ଗଛ ଡାଳରେ ବସି ପକ୍ଷୀଟି ଏ ଅଦ୍ଭୁତ ଦୃଶ୍ୟ ଆଖି ପୂରେଇ ଦେଖି ଚାଲିଥିଲା । ମଝିରେ ମଝିରେ ଆଖିରୁ ଅନନ୍ଦାଶ୍ରୁ ବହିଲା ପରି ତା'କଣ୍ଠରୁ ଲଳିତ ମୂର୍ଚ୍ଛନାର କୌଣସି ଏକ ସଙ୍ଗୀତ ଝରି ପଡୁଥିଲା ।  ଏସବୁ ସତ୍ତ୍ୱେ ବାଘ ତଥାପି ସ୍ଥାନ ଛାଡ଼ି ଅନ୍ୟତ୍ର ଚାଲି ଯାଇନଥିଲା" (ପୃ-୧୧) - ଏହା ହିଁ 'ଆଦ୍ୟ ସକାଳ'ର ପ୍ରତୀକାତ୍ମକ ଅନୁଭବ ।

'ଭକ୍ତଲୋକ', 'ଯେଉଁଠି ମୀନ ଖେଳୁଛି', 'ଚାଲ ସେଇଠିକି ଯୋଉଠି ଭଗବାନ ଅଛନ୍ତି' ଗଳ୍ପ ତିନୋଟିର କଥାବସ୍ତୁରେ ଅଛି ପ୍ରତୀକାତ୍ମାର ସ୍ୱରୂପ । ନାରେଣା ଓରଫ୍ ନାରାୟଣ, ସେ ଥିଲା ଗାଁର ଯୁବକସଂଘର ନେତା - ଏବଂ ଅନ୍ଧବିଶ୍ୱାସଠାରୁ ଉର୍ଦ୍ଧ୍ୱରେ ରହିଥିବା ଏକ ପ୍ରଗତିଶୀଳ ମାର୍ଜିତ ପୁରୁଷ । ରତ୍ନଯୋଡ଼ କୂଳରେ ରହିଥିବା ରତ୍ନବଟ, ଯୋଡ଼ର ବଉଳା କିମ୍ବୀର, ବାରହାତ ଖଡଗ ପ୍ରଭୃତିର କିମ୍ବଦନ୍ତି ସହିତ ନାରେଣା ପିଲାଦିନୁ ଥିଲା ପରିଚିତ । କଳିଯୁଗ ଶେଷରେ ବାହାରିବ ବଉଳା କିମ୍ବୀର, ବାରହାତ ଖଗ, ସେଇଠୁ ସେମାନେ ନାଶିଯିବେ ମ୍ଳେଚ୍ଛ ବିଧର୍ମୀମାନଙ୍କୁ, ଇତ୍ୟାଦିର ଅନ୍ଧବିଶ୍ୱାସରେ ବିଶ୍ୱାସୀ ନଥିଲା ନାରେଣା । ଯୁବକ ବୟସରେ ମାଳିକାର ବାଣୀକୁ ମିଥ୍ୟା ପ୍ରମାଣିତ କରିବାର ସୁଯୋଗରେ ଥିଲା ନାରେଣା । ଦିନେ ସେ ଘୋଷଣା କରି ଦେଲା ଯେ, ଯୋଡ଼ ତଳୁ ମାଟି ଆଣି ଦେଖେଇ ଦେବ ଯେ ବାଉଳା କିମ୍ବୀର ବା ବାରହାତ ଖଡ଼ଗ କଥା ମିଛ । ତାହା ହିଁ ହେଲା– ପରଦିନ ସକାଳ ଗାଧୁଆବେଳେ,  ଆଖପାଖ ଗାଁର ଥାଟପଟାଳି ଲୋକ ରତ୍ନଯୋଡ଼ କୂଳରେ ଜମା ହେଲେ । ଯଥାସମୟରେ ଯୋଡ଼ର ଗଭୀର ଗଣ୍ଡ ଭିତରକୁ ପଶିଗଲା ନାରେଣା । ପାଣି ଭିତରୁ ମୁଠାଏ କାଦୁଅ ଆଣି ମୁଠେଇ ଧରି, ଟେକି ଦେଖେଇଲା ସମସ୍ତଙ୍କୁ । କହିଲା, 'ଦେଖିଲ ! ତମ କଳ୍କୀ ଦେବତା କୁଆଡ଼େ ପଳେଇ ଗଲେ ଦେଖିଲ ? ବଉଳା କିମ୍ବୀର ବାରହାତ ଖଣ୍ଡା - ଫୁଃ ! ...'  ସମବେତ ଲୋକ କିନ୍ତୁ କୁହାକୁହି ହେଲେ, ଠାକୁରେ ଆମର ସମ୍ମିଳିତ ପ୍ରାର୍ଥନା ଶୁଣିବାରୁ ସିନା, ସେ ବଞ୍ଚିଗଲା । ନାରେଣା କିନ୍ତୁ ପୁନଶ୍ଚ ଚମତ୍କୃତ କରି ଦେଇ ପାଣି ଭିତରକୁ ପଶିଲା, ଏବଂ ପୁଣି ଗଣ୍ଡରୁ ମାଟି ଆଣି ଦେଖେଇଲା ହାତ ଦେଖାଇଲା । ସେତେବେଳେ ତା' ପାଇଁ କେହି ଠାକୁରଙ୍କୁ ପ୍ରାର୍ଥନା କରୁ ନଥିଲେ । ବରଂ କହୁଥିଲେ କେହି କେହି - ଯା' ମର୍ ତତେ ବଉଳା ଖାଉ । କିନ୍ତୁ ଯେତେବେଳେ ନାରେଣା କାଦୁଅ ଆଣି ଦେଖାଇବା ପାଇଁ ହାତ ଟେକୁଥିଲା ସେତେବେଳେ ସେ ପାଣି ଭିତରେ ତାର ପୌରୁଷକୁ ନେଇ ଭାବୁଥିଲା , ଏଥର ମଧ୍ୟ ଲୋକେ କହିପାରନ୍ତି, ଉପର ମନରେ ଲୋକେ ମରମର କହୁଥିଲେ ବି, ଭିତରେ ଭିତରେ ପ୍ରାର୍ଥନା କରୁଥିଲେ ଠାକୁରଙ୍କୁ । କଅଣ ଗୋଟାଏ ଭାରିର ଓଜିନିଆ ଜିନିଷ  ପାଣିତଳୁ ଟେକି ଉପରେ ଲୋକଙ୍କୁ ଦେଖେଇବା ଲକ୍ଷ୍ୟରେ ଥାଏ ସେ, କିନ୍ତୁ ଦେଖାଉ ନଥାଏ । ବରଂ ସେ ହାତର ଜିନିଷ ସାଥୀରେ କୁସ୍ତି କଲାଭଳି ଦିଶୁଥାଏ ସମସ୍ତଙ୍କ ଆଖିକୁ । କୁସ୍ତି କରୁଥାଏ ଓ ପୁଳା ପୁଳା ପବନକୁ କାମୁଡି ପକାଉଥାଏ । କୂଳର ଲୋକେ ପାଟି କଲେ - "ଆରେ ! ତତେ ବଉଳା କିମ୍ବୀର ଧରି ନେଇଚିରେ ମୂର୍ଖ ... !" ତତ୍କ୍ଷଣାତ୍ ନାରେଣାର ଜବାବ୍ ଶୁଣାଗଲା - "କିମ୍ବୀର ଫିମ୍ବୀର କିଛି ନାହିଁ । ମନେ ହେଉଛି, ଭଗବାନ ନିଜେ ...ଭଗବାନ ନିଜେ ଧରି ପକାଇଲେ । କହ, କହ ଏଥର କୋଉ ଜଣାଣ ବୋଲିବି ? କହ, କୋଉ ଜଣାଣ... ? ମୁହୂର୍ତ୍ତକ ପାଇଁ ... ଛାଡୁନାଇଁ ସେ...  ଛାଡ଼ିବ ନାଇଁ...  ମତେ ...  ତମକୁ... ସମସ୍ତଙ୍କୁ...' (ପୃ-୨୦) ଦୁଇ କୂଳରେ ହାହାକାର - ଆରେ ଭକ୍ତଟାରେ ! ବୁଡ଼ିଗଲା ! ବୁଡ଼ିଗଲା !"... 'ଭକ୍ତଲୋକ'ର ନାରେଣା

ସାଂପ୍ରତିକ ବିଜ୍ଞାନ ଯୁଗର ପ୍ରାମାଣିକ ସତ୍ୟକୁ ବିଶ୍ୱାସ କରେ । କିମ୍ବଦନ୍ତୀ, ଆଖ୍ୟାୟିକା, ଅନ୍ଧବିଶ୍ୱାସ, କୁସଂସ୍କାର ଏ ସମସ୍ତ ତା' ପାଇଁ ମୂଲ୍ୟହୀନ, ଅବିଶ୍ୱାସ୍ୟ । ମାତ୍ର ସାଧାରଣ ଲୋକେ କିମ୍ବଦନ୍ତୀରେ ଅନ୍ଧବିଶ୍ୱାସୀ, କୁସଂସ୍କାରଗ୍ରସ୍ତ - ପ୍ରାମାଣିକ ସତ୍ୟରେ ସୁଦ୍ଧା ସହଜରେ ବିଶ୍ୱାସ ସ୍ଥାପନ କରି ପାରନ୍ତି ନାହିଁ । କେହି କେହି ପ୍ରତିଦ୍ୱନ୍ଦୀ ପୁରୁଷ ଅସୂୟାର ବଶବର୍ତ୍ତୀ ହୋଇ, ନାରାୟଣର ପୌରୁଷକୁ ସମ୍ମାନ ଦେଇ ପାରନ୍ତି ନାହିଁ । ଯେପରି ଆଲୋଚ୍ୟ ଗଳ୍ପରେ ମାଧିଆ ଓ ତା'ର ସାଥିମାନେ କରିଛନ୍ତି । ମାତ୍ର ନାରେଣା ଆପଣାର ପୌରୁଷ ଓ ସତ୍ୟ ନିଷ୍ଠା ଉପରେ ପ୍ରଚଣ୍ଡ ବିଶ୍ୱାସୀ । ସାଧାରଣ ଲୋକେ ଈଶ୍ୱର ନାମରେ କିମ୍ବଦନ୍ତୀୟ ଅନ୍ଧବିଶ୍ୱାସରେ ଏତେ ବିଶ୍ୱାସୀ ଯେ, ସହଜରେ କୌଣସି ପ୍ରାମାଣିକ ଚରମ ସତ୍ୟକୁ ଗ୍ରହଣ କରିପାରନ୍ତି ନାହିଁ । ବରଂ ବାରମ୍ବାର ଶଙ୍କା ପ୍ରକାଶ କରିଥାନ୍ତି । 'ରତ୍ନଯୋଡ଼' ର ଗଣ୍ଡ ଭିତରେ ଥାଇ, ନାରେଣା ଏହାକୁ ଯେତେବେଳେ ପ୍ରଚଣ୍ଡ ଭାବରେ ଅନୁଭବ କରି ପାରିଛି ଓ ଆପଣାର ପୌରୁଷ-ଶକ୍ତି ଉପରେ ଗଭୀର ବିଶ୍ୱାସୀ ହୋଇ ଉଠୁଛି, ସେତେବେଳେ ସେ ପ୍ରକାଶ କରି ଦେଇଛି ଯେ, ଅନ୍ଧବିଶ୍ୱାସୀ ଜନତାଙ୍କର ଅନ୍ଧବିଶ୍ୱାସ ସହଜରେ ଖଣ୍ଡ ଖଣ୍ଡ ହେବାର ନୁହେଁ; ଭଗବାନ ନାମକ ଏକ ପ୍ରହେଳିକା ସହଜରେ ତୁଟିବାର ନୁହେଁ । ଯେପରିକି ଅନ୍ଧବିଶ୍ୱାସ ଲୋକଙ୍କର କେବଳ ରକ୍ତ ମାଂସଗତ ନୁହେଁ, ମଜ୍ଜାଗତ ସୁଦ୍ଧା । ଏଇ ବିରକ୍ତିର ପରିଣତି, ପ୍ରାମାଣିକ-ସତ୍ୟରେ ବିଶ୍ୱାସୀ ନାରେଣା ଭଳି ଯୁବକର ପୌରୁଷମୟ ପରାଜୟ । ଆଲୋଚ୍ୟ 'ଭକ୍ତଲୋକ' ଗଳ୍ପ କଥାକାର ଶାନ୍ତନୁ କୁମାରଙ୍କ ଅନ୍ଧବିଶ୍ୱାସ ପ୍ରତି ପ୍ରଚଣ୍ଡ ଚପେଟାଘାତ ସହ, ତାଙ୍କ ମାନସର ଶକ୍ତିମୟ ପରିଚୟ ଦେଇଥାଏ ।

'ଯେଉଁଠି ମୀନ ଖେଳୁଛ' । ଗଳ୍ପରେ ଜଣେ ଶତାୟୁ ପୁରୁଷଙ୍କ ସଂପର୍କରେ କୁହା ଯାଇଛି- ଯିଏ ଟୁବ ଗାଡ଼ିଆ ନିକଟରେ ନିକାଞ୍ଚନରେ ନିରୋଳାରେ ବସିଥାନ୍ତି । ସେଦିନ ଯୋଡ଼ିଏ ଚଉଦ ପନ୍ଦର ବର୍ଷର ସ୍କୁଲ ପିଲା, ପିଜୁଳି ଚୋରୀ କରିବା ପରେ, ସେଠିକି ଆସିଥିଲେ ଏବଂ ଟୁବ ଗାଡ଼ିଆରେ ପ୍ରାୟ ଘଣ୍ଟାଏ କାଳ ଗୋଳେଇ ଘାଣ୍ଟି ପାଣିକୁ ମନ୍ଥାମନ୍ଥି କରିଥିଲେ । ପରେ ଶତାୟୁ ମହାତ୍ମାଙ୍କ ସହ ନାନାଦି କଥାବାର୍ତ୍ତା କରିବା ଭିତରେ ତାଙ୍କ ବୟସ କଥା ପଚାରି ଦେଇଥିଲେ ଶତାୟୁ ମହାତ୍ମା କହିଥିଲେ, ମୁଁ ତ ମନେ କରିଚି ବିଶାଶହେ ବଞ୍ଚିବି । ପିଲାଏ ବୁଝି ପାରିନଥିଲେ, ବିଶାଶହେ ବୋଇଲେ କେତେ ? ପିଲା ଯୋଡ଼ିଙ୍କର କିଛି କିଛି ବିରକ୍ତି ଆସି ସାରିଥିଲା, ପଚାରି ଦେଇଥିଲେ, ତମେ ଏତେଗୁଡ଼ାଏ ବର୍ଷ ବଞ୍ଚି କଅଣ କରିବ, କହିଲ ? ଅନ୍ୟାନ୍ୟ କଥୋପକଥନ ଭିତରେ ସେ ଶତାୟୁ ମହାତ୍ମା କହିଥିଲେ "xxx ହେଲେ ଏ ଗାଡ଼ିଆରେ କଇଁଫୁଲ ତ ଫୁଟୁଛି ମୀନ ଖେଳୁଛନ୍ତି, ଗଛରୁ ପତ୍ର ଝଡୁଛି, ପତ୍ର ବି କଅଁଳୁଚି, ନିତି ସକାଳୁ ସୂର୍ଯ୍ୟ ଉଠୁଛନ୍ତି, ଆକାଶରେ ସିନ୍ଦୂରା ଫାଟିଚି, ପୁଣି ସୂର୍ଯ୍ୟ ବୁଡୁଛନ୍ତି, ଚନ୍ଦ୍ର ତାରା ଉଦେ ହଉଚନ୍ତି, ଦିନ ଯାଇଛି - ରାତି " - ଏମିତି କହୁଥିବା ବୁଢ଼ା ଜଣକ ଯେଦୈନିକ ଖବରକାଗଜର କଥା ସୁଦ୍ଧା ଜାଣନ୍ତି ନାହିଁ । ସ୍କୁଲ, ପିଲାଙ୍କଠାରୁ ଶୁଣି, ତାଙ୍କୁ ଆଣିବା ପାଇଁ କହନ୍ତି - ଯେଉଁ ସମ୍ବାଦପତ୍ରରେ 'ଗୋଟିଏ ଗର୍ଭବତୀ ନାରୀକୁ ଆଠଜଣ ଗୁଣ୍ଡା ନଇବାଲିକି ଟେକି ନେଲେ ' ଭଳି ସମ୍ବାଦ ଥାଏ । ପିଲାମାନେ ସମ୍ବାଦପତ୍ର ଧରି ଆସିବାବେଳକୁ, ସେଠାରେ ବୁଢ଼ାଟିକୁ ଆଉ ପାଉ ନଥାନ୍ତି । ସେମାନଙ୍କ ଧାରଣାରେ, ବୁଢ଼ାଟି କେଉଁଠି ଲୁଚି ଯାଇଛି 'ହେଇ ସେଠି । ଯୋଉଠି କଇଁକଢ଼ ହଲୁଚି - ମୀନ ଖେଳୁଚି- ସେଇଠି ସେଇଠି ପରା- ଗଳ୍ପଟିର ପରିଣତି ରହସ୍ୟାଛନ୍ନ । ଯେଉଁ ଶତାୟୁ ମହାତ୍ମା ବିଶାଶହେ ବଞ୍ଚିବାର ବାସ୍ନା ଜାଗ୍ରତ କରିଥିଲେ, ସେପରି ଦିନ କେଉଁ ଆଡ଼େ ହଜି ଯାଇଛି । ଏହା ହିଁ ଜୀବନର

ରହସ୍ୟ – ଚନ୍ଦ୍ର ସୂର୍ଯ୍ୟଙ୍କ ଆତଜାତ ଭିତରେ ଯାହାଙ୍କର ଜୀବନ, ଯିଏ– ଯୁଗର ପ୍ରଗତିକୁ ବୁଝି ପାରନ୍ତି ନାହିଁ- ତାଙ୍କ ପାଇଁ ଯେଉଁଠି ମୀନ ଖେଳୁଛି ହିଁ ଜୀବନର ରହସ୍ୟ ।

ଯେଉଁଠି ବିଶ୍ୱାସ. ସେଇଠି ଭଗବାନ– ଭଗବାନ ସର୍ବବ୍ୟାପୀ –ଧର୍ମଭୂମି 'ଇଣ୍ଡିଆ' ଭଗବାନଙ୍କ ପୀଠଭୂମି । ସେଇଥିପାଇଁ ସେଦିନ ସେ 'ପାଗଳାଟା ହଠାତ୍ ପାଇଲଟର ବେକମୂଳେ ପିସ୍ତଲଟାକୁ ଚାପି ବାରମ୍ବାର ରଡି ପକେଇଲା - ଚାଲ୍ ସେଇଠିକି ଯେଉଁଠି ଭଗବାନ ଅଛନ୍ତି । ପାଇଲଟ ବୁଦ୍ଧିବାଟ ନପାଇ ଇଣ୍ଡିଆକୁ ଉଡ଼ି ଆସିଲା । ଇଣ୍ଡିଆ, ମାନେ ଆମ ଦେଶରେ ଭଗବାନ କୋଉଠି ବିଚରା ପାଇଲଟ ଭାବି ପାରିଲା ନାହିଁ । ହଠାତ୍ ଉଡୁ ଉଡୁ ହାଇଜାକର କହିଲା – ଓହ୍ଲା,! : ଓହ୍ଲା ! ଏଇଠି ।' ପାଇଲଟ ବହୁତ ଚେଷ୍ଟା କଲା – କିନ୍ତୁ ହେଲା ନାଇଁ । ତମ ଗାଁ ଠାକୁର ନୀଳମାଧବ ପ୍ରତ୍ୟକ୍ଷ ଠାକୁର ନିଶ୍ଚେ। (ପୃ: ୩୯ -୩୮) 'ଚାଲ୍ ସେଇଠିକି, ଯେଉଁଠି ଭଗବାନ ଅଛନ୍ତି ' ଗଳ୍ପରେ କଥାକାର ଶାନ୍ତନୁ କୁମାର ଦେଖାଇବାକୁ ଚେଷ୍ଟା କରିଛନ୍ତି, ବିଶ୍ୱାସର ଭଗବାନ ଆଜି ଇଣ୍ଡିଆର କୌଣସିଠାରେ ଭଗବାନଙ୍କୁ ପାଇ ହେଉ ନାହିଁ । ପାଇଲଟ୍ ଉଡ଼ାଜାହାଜ ଓହ୍ଲାଇ ପାରୁନାହିଁ । ଉକୁନ୍ଦ୍ରା ନାମକ ଛୋଟିଆ ଗାଁର ନୀଳମାଧବ ମନ୍ଦିର ନିକଟ ପଡ଼ିଆରେ ଦୁର୍ଘଟଣା ଘଟିଯାଏ, ଉଡାଜାହାଜଟାର ଓ ଏହାର ପ୍ରାୟ ତିନିଶହ ଯାତ୍ରୀଙ୍କର ହୁଏ ବଡ଼ ଶୋଚନୀୟ ଦୁସ୍ଥିତି । ଏଇ ଉକୁନ୍ଦ୍ରା ଗାଁର ଯେଉଁ ଲୋକମାନେ ଆକାଶମାର୍ଗର ବିମାନକୁ ଅନିଷା କରୁଥିଲେ, ଏ ଗାଁର ଯେଉଁ କିରାଣୀ ଯୁବକଟି ରେଡ଼ିଓ ଖଣ୍ଡେ ଆପଣାର ପତ୍ନୀ ପାଇଁ ଚାହୁଁଥିଲା ସତେ ଯେମିତି ଫଳିଗଲା । ବିମାନଟାଏ ଚକର ଚକର କାଟି କାଟି ଶେଷକୁ ଦୁର୍ଘଟଣାରେ ପତିତ ହେଲା – କରୁଣ ପରିଣତି । ବିମାନଟିରୁ ଅବଶ୍ୟ ରେଡ଼ିଓ, ଟେପ୍‌ରେକର୍ଡ଼ର, ସୁନାରୂପା ଅଜାଡ଼ି ହୋଇ ପଡିଥିଲା, ଅଥଚ ପ୍ରାୟ ତିନିଶହ ଲୋକଙ୍କର କରୁଣ ପରିଣତି ନୀଳମାଧବଙ୍କ ମନ୍ଦିର ନିକଟ ପଡ଼ିଆରେ- ସେଇଠି ବୋଧହୁଏ ଥିଲେ ଭଗବାନ, ହିମାଳୟରୁ ବେଳେ ବେଳ ସାଧୁସନ୍ୟାସୀ ଆସୁଥିଲେ ତ !... ମାତ୍ର ବାସ୍ତବରେ ଯେଉଁଠାରେ ରେଡ଼ିଓ, ଟେପ୍ ରେକର୍ଡର ଭଳି ଜିନିଷ ପାଇଁ ବାସନା, ସେଠାରେ ବସ୍ତୁଧର୍ମିତା କ୍ରମେ ବଢ଼ି ବଢ଼ି ଚାଲିଛି - ସେଠାରେ ମାନବିକତାର ଭଗବାନ କ୍ରମେ ଉଭାନ ହୋଇଯାନ୍ତି । ମନ୍ଦିର ସେଠାରେ ଏକ ନିର୍ଜୀବ ବିଶ୍ୱାସ ମାତ୍ର । ମଣିଷର ନିଜଭିତରେ ଯେ ଭଗବାନ - ଏ କଥା ମଣିଷ ଭୁଲି ଯାଏ ଏହା ହିଁ ସମ୍ଭବତଃ ଗାଳ୍ପିକ ଶାନ୍ତନୁ କୁମାରଙ୍କ ଏ ଗଳ୍ପରେ ଅନ୍ୟତମ ଲକ୍ଷ୍ୟ ।

'କ୍ଲାସ୍‌ମେଟ' ଗଳ୍ପରେ ରହିଛି ସାଂପ୍ରତିକ ରାଜନୈତିକ ବ୍ୟଙ୍ଗ ସହିତ ଶାସନ କ୍ଷେତ୍ରରେ ଶାସକମାନଙ୍କର ମାନସଭୂମି । ସହର ତଳି ଅଞ୍ଚଳର କଣ୍ଟୁରୀ ଏକ ପାନ ଦୋକାନୀ, ବିଶେଷତଃ ନିକଟସ୍ଥ କଲେଜ- ଟୋକାଙ୍କର ଗହଳି ତା' ନିକଟରେ । ଦିନେ ଶୁଣାଗଲା, ଉକ୍ତ ଛୋଟ ସହରକୁ ଆସୁଛନ୍ତି ମାନ୍ୟବର ମନ୍ତ୍ରୀ । ମାନ୍ୟବର ମନ୍ତ୍ରୀ ଯେ ପାନଦୋକାନୀଙ୍କର କ୍ଲାସମେଟ- ଏ କଥା କଣ୍ଟୁରୀ ମୁଖରୁ କ୍ରମେ ସଂପ୍ରସାରିତ ହୋଇଗଲା । ପରିଚିତ, ଅପରିଚିତ ପ୍ରାୟ ଅଧିକାଂଶ ଗ୍ରାହକଙ୍କୁ ମନ୍ତ୍ରୀ ତାଙ୍କ କ୍ଲାସମେଟ୍ ଥିବାର ବିଷୟ କଣ୍ଟୁରୀ କହିବାକୁ ଲାଗିଲେ । କେତେକ କଲେଜ - ଯୁବକଙ୍କ ଉଦ୍ୟମରେ କଣ୍ଟୁରୀଙ୍କ ପାନଦୋକାନ ନିକଟରେ ତୋରଣ ନିର୍ମାଣ କାର୍ଯ୍ୟ ଚାଲିଲା - ବନ୍ଧୁ ମିଳନ ହେବ । ମାତ୍ର ପୋଲିସ୍ ଏସ.ପି.ଙ୍କ ଠାରୁ ଶାସକବର୍ଗ ଯାଏଁ ଏ ସମ୍ବାଦରେ ତତ୍‌ପର ହୋଇ ଉଠିଲେ - ଯେ,ଏ ତୋରଣ ନିର୍ମାଣ କାର୍ଯ୍ୟ ସହ ବିରୋଧୀ ଦଳ ସଂପୃକ୍ତ । ନିର୍ଦ୍ଦିଷ୍ଟ ଦିନ ମନ୍ତ୍ରୀ ପହଞ୍ଚିଗଲେ । କଣ୍ଟୁରୀ ପାନଦୋକାନ ପାଖରେ ପୋଲିସଙ୍କର ଭୀଡ଼ । ମନ୍ତ୍ରୀଙ୍କ ଗାଡ଼ି ସେଇଠି ଗହଳି ଯୋଗୁଁ ଅଟକିଗଲା ।

ଘଟଣା ବୁଝୁ ବୁଝୁ ପୋଲିସ ପକ୍ଷରୁ ଲାଠି ଚାଳନାଠାରୁ, ଗୁଳିଚାଳନା ଯାଏଁ କଥା ଗଲା । କେତେକ ଆହତ ହେଲେ, ଜଣେ ନିହତ ହେଲେ– ଆଉ ସେ ଜଣକ ସ୍ୱୟଂ କସ୍ତୁରୀ । କସ୍ତୁରୀ ହୋଇଗଲେ ଶହୀଦ, ଲୋକଙ୍କ ସ୍ଲୋଗାନରେ । ମନ୍ତ୍ରୀଙ୍କୁ କସ୍ତୁରୀଙ୍କ କଥା କୁହାଗଲା- ସମ୍ବାଦପତ୍ରରେ ଯେଉଁ ଫଟୋ ପ୍ରକାଶ ପାଇଥିଲା, ତହିଁରୁ ଚିହ୍ନିଲେ ମାନ୍ୟବର ମନ୍ତ୍ରୀ କସ୍ତୁରୀଙ୍କୁ- ବିବୃତି ଦେଇଥିଲେ ଯେ, କସ୍ତୁରୀ ଥିଲେ ତାଙ୍କ ଅପର୍ ପ୍ରାଇମେରୀ ସ୍କୁଲର କ୍ଲାସମେଟ୍ ; କୁଆଡ଼େ କସ୍ତୁରୀ ଥିଲେ ଜଣେ ନିତାନ୍ତ ନିର୍ବୋଧ ବାଳକ ସବା ପଛ ବେଞ୍ଚରେ ହାତ ଟେକୁଥିବା ଜଣେ ବାଳକ ମାତ୍ର । ଏ ଗଳ୍ପଟିରେ ରହିଛି ଶାସକବର୍ଗଙ୍କର ଶାସନର ଏକ ନମୁନା- କିପରି ଝିମିଟି ଖେଳରୁ ମହାଭାରତ ସୃଷ୍ଟି ହୋଇପାରେ, ସବୁ କାର୍ଯ୍ୟକୁ ସନ୍ଦେହ ଚକ୍ଷୁରେ ଦେଖିବା ଯେଉଁମାନଙ୍କ କାମ । 'କ୍ଲାସମେଟ' ନାଁରେ ଚାଲାକ ଚତୁର ଲୋକ ଆପଣାର ଫାଇଦାଟକ ହାସଲ କରିନେଲାବେଳକୁ, କସ୍ତୁରୀ ଭଳି ନିର୍ବୋଧ ଲୋକ ହିଁ ଶିକାର ହୁଅନ୍ତି । କ୍ଲାସମେଟ କହିବାର ଅହେତୁକ ଆନନ୍ଦ ଓ ଗୌରବର ପରିଣତି ହିଁ ବୁଝି ପାରନ୍ତି ନାହିଁ, ସେଇଭଳି ନିର୍ବୋଧ ଲୋକ ।

'କ୍ଲାସମେଟ' ଗଳ୍ପରେ ଅନ୍ୟ ଏକ ପାର୍ଶ୍ୱ 'ହିଟଲର' ଗଳ୍ପ । ଜଣେ ଚାଷୀର ସନ୍ତାନ ହିଟୁ- ମାଇନର ଯାଏଁ ପଢ଼ିଥିବା ଏଇ ହିଟୁ ଚାଷ କାମରୁ ଦୂରେଇ ରହି ଗାଁ ପାଖ ବଜାରରେ ବୁଲାବୁଲି କରି, ପରେ କ୍ରମେ କ୍ରମେ ଟ୍ରାନ୍‌ଜିଷ୍ଟର, ଟେପ୍‌ରେକର୍ଡ଼ର ଆଦିର ଚୋରା ବ୍ୟବସାୟରେ ମାତିଗଲା । ପରେ ପରେ ବନିଗଲା ଜଣେ ନାମଜ୍ୟାଦା ସ୍ମଗଲର ସହ କନଟ୍ରାକଟର ସୁଦ୍ଧା । କୋଠା, ଜିପ୍ ବଢ଼ିଲା, ଖ୍ୟାତି ବି ବଢ଼ିଲା, ପାନାହାର ବି ଜମିଲା । ଦିନେ ଖବରକାଗଜରେ ତା' ନାଁରେ କ'ଣସବୁ ଖବର ବାହରିଥିବାରୁ ଡରି ମଧ ଯାଇଥିଲା । ବି.ଡି.ଓ. ବାବୁ ତାକୁ ପ୍ରବୋଧନା ମଧ ଦେଇଥିଲେ । ଥରେ ହିଟୁ ପୋଲିସ ଦ୍ୱାରା ଧରା ମଧ ପଡ଼ିଲା । ଥାନାବାବୁ ତାକୁ ଜେରା କରି, ରିପୋର୍ଟ ଲେଖୁଥିଲେ । ବି.ଡି.ଓ. ବାବୁଙ୍କର କ୍ଷମତା – ମହାତ୍ମ୍ୟ, ବତାଇଲା ହିଟୁକୁ ରାଜନୀତିର ମହାତ୍ମ୍ୟ, ବୋଲି ହିଟୁ କହିଥିଲା । ଥାନାବାବୁ ହିଟୁ ସଂପର୍କିତ ଘଟଣା ଖବରକାଗଜରେ ବାହାରିଥିବାର ଜଣାଇଥିଲେ; ହିଟୁ ଓରଫ୍ ହିଟଲର ପଚାରିଥିଲା, ତା ନାଁ ବାହାରିଛି ନା ନାହିଁ ? ଥାନାବାବୁ ହସି ହସି କହି ଥିଲେ, ତେବେ ତମ ନାଁ ନାଇଁ । ବଡ଼ ବଡ଼ ନେତାଙ୍କ ବିବୃତି ଏଇ ଘଟଣା ଉପରେ । ହିଟୁ ଆପଣାର ନିର୍ବୋଧ ପଣିଆର ପରିଚୟ ଦେଇ କହିଥିଲେ- 'କିନ୍ତୁ ଏ ଘଟଣା ତ ମୋର- ମୋ ଟଙ୍କା – ... ସେମାନେ କିଏ ? ମୋ ନାଁ ଏଥିରେ ନାଇଁ ? ସତ ?' ଥାନାବାବୁ ଏଥର ଆହୁରି ଜୋରରେ ହସିଥିଲେ । 'ହିଟ୍‌ଲର' ଗଳ୍ପରେ ଗ୍ରାମୀଣ ଯୁବକଙ୍କର ହଠାତ୍ ବଡ଼ଲୋକ ହୋଇଯିବାରୁ ସ୍ୱପ୍ନ ଓ ମାର୍ଗକୁ ଗାଳ୍ପିକ ଶ୍ରୀ ଆଚାର୍ଯ୍ୟ ବ୍ୟଙ୍ଗ କରିଛନ୍ତି – ହିଟୁ ଭଳି ଗ୍ରାମୀଣ ଯୁବକର ନିର୍ବୋଧତା ଗାଳ୍ପିକଙ୍କ ଶାଣିତ ବ୍ୟଙ୍ଗୋକ୍ତିର ଶରବ୍ୟ କେବଳ ନୁହେଁ, ସହାନୁଭୂତିର ପ୍ରାପ୍ତି ସୁଦ୍ଧା ରହିଛି । ଏଇ ଭଳି ଗାଁର ନିର୍ବୋଧ ଯୁବକମାନଙ୍କୁ ମାମଲତକାର ବି.ଡି.ଓ. ଭଳି ତଥାକଥିତ ସାହେବମାନେ ହିଁ ବିଭ୍ରାନ୍ତ କରିଥାନ୍ତି । ଦୋଷ ଯୁବକର ନୁହେଁ, ଦୋଷ ଏଇ ଭଳି ବିଭ୍ରାନ୍ତ, କରୁଥିବା ଅଫିସର ତଥା, ରାଜନୈତିକ ନେତାମାନଙ୍କର । 'କ୍ଲାସମେଟ' ଓ 'ହିଟଲର' ଏଇ ଦୁଇଟି ଗଳ୍ପରେ ଗାଳ୍ପିକ ଶ୍ରୀ ଆଚାର୍ଯ୍ୟଙ୍କର ବକ୍ତବ୍ୟ ସମପର୍ଯ୍ୟାୟବାଚକ – ନିର୍ବୋଧତାର ସ୍ୱରୂପ ପ୍ରଦର୍ଶନ ସହ, ନିର୍ବୋଧଙ୍କ ପ୍ରତି ସମବେଦନା ପ୍ରକାଶ ।

'ଜାଲ୍ ଇଣ୍ଟରଭ୍ୟୁ' ଗଳ୍ପରେ ମଧ ରହିଛି ରାଜନୈତିକ ପୁରୁଷ ମନ୍ତ୍ରୀଙ୍କର ଇଙ୍ଗିତରେ ତଥାକଥିତ ଅଫିସରମାନଙ୍କ ସ୍ୱାର୍ଥପର ବିନୀତ ଭାବର ଚିତ୍ର । ଅଫିସରମାନେ ଇଣ୍ଟରଭ୍ୟୁ କରନ୍ତି ପ୍ରାର୍ଥୀମାନଙ୍କର – ପ୍ରାର୍ଥୀମାନେ ବାରମ୍ବାର ପ୍ରତାରିତ ହୁଅନ୍ତି– ସାମାନ୍ୟ ପିଅନ୍ ଚାକିରିଟିଏ ପାଇଁ ସୁଦ୍ଧା । ଆଡ଼ହାକ୍ ଭାବରେ

ପୂର୍ବରୁ କେତେମାସ ଚାକିରି କରୁଥିବା ମନ୍ତ୍ରୀଙ୍କର ଆତ୍ମୀୟର ନାଁ ଏମ୍ପଲମେଣ୍ଟ ଏକ୍‌ସଚେଞ୍ଜରୁ ଆସି ନାହିଁ, ଫଳତଃ ଇଣ୍ଟରଭ୍ୟୁରେ ଆସିଥିବା ପ୍ରାର୍ଥୀମାନେ ଅନୁପଯୁକ୍ତ ହୋଇଯାନ୍ତି – ଇଣ୍ଟରଭ୍ୟ ବାତିଲ୍ ହୋଇଯାଏ । ସେଇ କାଳିଆ ହୋଇ ଆଦିବାସୀ ଟୋକାଟା, ଯିଏ ଚଉଦ ଥର ଇଣ୍ଟରଭ୍ୟୁ ଦେଇ ସାରିଥିଲା, କହିଗଲା - ମୁଁ ଜାଣିଚି ଆଜ୍ଞା ! ଯାହା ଚାଲିଚି ଏଠି ସବୁ ଜଣା ଆମକୁ । କିଛି ଚୋରା ଲୁଚା ନାହିଁ । ଗୁପ୍ତ ନାଇଁ, ଆଜ୍ଞା ! ଏଥରକ ଟେଲିଫୋନ ପ୍ରଶ୍ନ ପଡିଗଲା, ସାର୍ ! ଆର ଥରକୁ ଆହୁରି କଣ ପଡ଼ିବ କିଏ ଜାଣେ ? ତେବେ ମତେ ଆଉ ଦେଖିବେ ନାଇଁ ଆଜ୍ଞା ଆରଥର । ଏକ୍‌ସଚେଞ୍ଜ କହି ଦେଇଚି - ଆଉ ନାହିଁ, ଆଉ ପଠେଇବ ନାଇଁ ମୋ ନାଁ!... (ପୃ-୮୪) ଇଣ୍ଟରଭ୍ୟୁ ଆଜିକାଲି ଏକ ପ୍ରହସନରେ ପରିଣତି ହୋଇଯାଇଚି– ପ୍ରତିଦିନ ଇଣ୍ଟରଭ୍ୟୁ ନାମକ ହାଣକୁରାଢ଼ୀ ତଳେ ବଳି ପଡ଼ନ୍ତି ଲକ୍ଷ ଲକ୍ଷ ନାଗରିକ । ଆଲୋଚ୍ୟ ଗଳ୍ପଟି ସଂପ୍ରତିକ ଶାସକୀୟ ଚିତ୍ରର ଏକ ନିର୍ଭୀକ ପ୍ରଦର୍ଶନୀ– ଗାଳ୍ପିକ ଶ୍ରୀ ଆଚାର୍ଯ୍ୟଙ୍କ ଦୃଷ୍ଟିରେ ଶାଣିତ ନିଶ୍ଚୟ ।

ସେଇଭଳି 'ଆଧୁନିକ ରାକ୍ଷସ' ଗଳ୍ପରେ ଶ୍ରୀ ଆଚାର୍ଯ୍ୟ ଦେଖାଇଛନ୍ତି, ସହରର ଏକ ଭଲ ଲୋକାଳୟରେ, ଘର ତିଆରି କରିବାପାଇଁ ଖଣ୍ଡେ ଜାଗାକୁ ଜଣେ ଅଦୃଶ୍ୟ ରାକ୍ଷସକୁ ବିକ୍ରୀକରି ଦିଆଯାଏ– ପାର୍କଟି ରାକ୍ଷସର ଅତ୍ୟାଚାରରେ ଛାର ଖାର ହୋଇଯିବା ପରେ, ରାକ୍ଷସକୁ ପ୍ଲଟଟିକୁ ବିକ୍ରୀ କରି ଦେବା ବ୍ୟତୀତ ଆଉ ଉପାୟ କ'ଣ ଅଛି ? - ସେଇ 'ଆଧୁନିକ ରାକ୍ଷସ' ଆଉ କେହି ନୁହଁନ୍ତି - ଉଚ୍ଚସ୍ତରରେ ଅବସ୍ଥାପିତ ଶାସକବର୍ଗ । ଏ ଗଳ୍ପରେ ସୁଦ୍ଧା ଶ୍ରୀ ଆଚାର୍ଯ୍ୟଙ୍କର ଶାଣିତ ବ୍ୟଙ୍ଗ, ଉପଭୋଗ୍ୟ –'ଆଧୁନିକ ରାକ୍ଷସ' ଯେ ଏକ ପ୍ରତୀକ, ଏହା ବୁଝିବାକୁ ବିଶେଷ କଷ୍ଟକର ହୁଏ ନାହିଁ ।

ବସ୍ତୁତଃ 'ଆଦ୍ୟସକାଳ' ଗଳ୍ପ ସଂକଳନର ଅଧିକାଂଶ ଗଳ୍ପରୁ ଏକଥା ସ୍ପଷ୍ଟ ହୋଇଯାଏ ଯେ, କଥାକାର ଶ୍ରୀ ଆଚାର୍ଯ୍ୟ ତାଙ୍କର କଥାବସ୍ତୁ ପରିବେଷଣରେ, ବକ୍ତବ୍ୟ ପ୍ରତିପାଦନରେ ଯେଉଁଭଳି ନିର୍ଭୀକ, ସେହିଭଳି ପ୍ରତିକଧର୍ମୀ ମଧ୍ୟ – ଶାନ୍ତନୁବାବୁଙ୍କର କଥାଜଗତରେ ଏଇ ସ୍ୱତନ୍ତ୍ରତା ଅବଶ୍ୟ ସ୍ୱୀକୃତ ଓ ସ୍ୱାଦ୍ୟ ।

ସହାୟକ ଗ୍ରନ୍ଥ ଓ ପତ୍ର-ପତ୍ରିକା :

(୧)/ (୨)/ (୩)/ (୪) :'ଧରିତ୍ରୀ ସାପ୍ତାହିକୀ' - ତା ୨୯.୧୦.୭୮ - ରବିବାର-ସାକ୍ଷାତ୍‌କାର - ଔପନ୍ୟାସିକ ଶାନ୍ତନୁ କୁମାର ଆଚାର୍ଯ୍ୟ- ପୃ- ୪ ।



# ଶାନ୍ତନୁଙ୍କ କଥାକାରିତା ବୈଚିତ୍ର୍ୟମୟ ଦିଗ

ଡକ୍ଟର ବିଜୟ କୁମାର ଶତପଥୀ

**ମାନବିକ ସତ୍ତାର ସଂକଟ ଓ ତାର ରୂପକାର-**

ବଡ଼ ବିଚିତ ଶାନ୍ତନୁଙ୍କ କଥା ଜଗତ । ଆହୁରି ବିଚିତ୍ର ସେଇ କଥାଜଗତର ପରିଧି ମଧ୍ୟରେ ଆତଯାତ ହେଉଥିବା ଚରିତ୍ରଗଣ । ସେମାନେ ଜୀବନକୁ ଚିହ୍ନିଥାଆନ୍ତି ଭିନ୍ନ ଢଙ୍ଗରେ । ଜୀବନ ସେମାନଙ୍କ ପାଇଁ ନାନା ଅନୁଭୂତିରେ, ସ୍ୱାଦରେ ମଖା । ବ୍ୟକ୍ତିସତ୍ତା ସେମାନଙ୍କର ବଭକ୍ତ, ଚୂର୍ଣ୍ଣିଭୂତ । ସେଥିପାଇଁ ସେମାନଙ୍କର ମନ ଗୋଟେ ଦର୍ପଣ ନୁହେଁ ବରଂ ଗୋଟାଏ ପ୍ରିଜମ ଯେଉଁଠି ବାସ୍ତବତାର ଆଲୋକ ବହୁ ବର୍ଣ୍ଣର ବିଚ୍ଛୁରଣ ଘଟାଇବାରେ ସମର୍ଥ । ତେଣୁ ବାସ୍ତବ ଜୀବନ ଓ ଘଟଣାରୁ ଆହୃତ ଚରିତ୍ରମାନେ ପାଠକପାଇଁ ଭିନ୍ନ ଏକ ଇଲାକାର ସଂଧାନ ଦିଅନ୍ତି – ତାହା ହେଲା ବାସ୍ତବଠାରୁ ଆହୁରି ବାସ୍ତବ, ଆହୁରି ସତ୍ୟ । ଆଲୋକଠାରୁ ଆହୁରି ନିଷ୍ଠୁର ଏକ ଅଜବ ଇଲାକା । ସେଠି ପୁଣି ଚରିତ୍ରମାନଙ୍କର ମେଟାମରଫସିସ୍ ଘଟେ । ମଣିଷମାନେ ଅସରପା ବା ପୋକ ପାଲଟି ଯାଆନ୍ତି, ହୋଇଯାଆନ୍ତି ନର୍ଦ୍ଦମାର ସାଲୁବାଲୁ କୀଟ । ଚେତନାର ରୂପାନ୍ତର ଘଟେ ବଡ ଅସମ୍ଭବ ଭାବରେ । ବ୍ୟକ୍ତିର ପରିଚୟ କ'ଣ ଏ ପୃଥିବୀରେ ? ବିଂଶ ଶତକର ଦ୍ୱିତୀୟାର୍ଦ୍ଧ ମାନବିକ ସତ୍ତା ପାଇଁ ଯେଉଁ ସଂକଟ ଆଣିଛି, ମୂଲ୍ୟବୋଧର ଯେଉଁ ଦ୍ରୁତ ଅବକ୍ଷୟ ଆଣିଛି, ସେଥିରେ ସତରେ ମଣିଷ କି ପରିଚୟ ନେଇ ବଂଚିବ ? ଯେଉଁଠାରେ ଅତୀତ ଅସ୍ପଷ୍ଟ, କୁହୁଡ଼ିଆ, ବର୍ତ୍ତମାନ ହେଉଛି ଗୋଟାଏ ଗିରି ଗହ୍ୱରର ସଂକଟ ଯାହା ଉପରେ ମଣିଷ ଠିଆ ହୋଇଛି – ଅଉ ଭବିଷ୍ୟତ ଗୋଟେ ଭୟଙ୍କର ଅଂଧକାରର ସୁଡ଼ଙ୍ଗ । ତେଣୁ ଦିଶାହରା ମଣିଷ । ସେ ପ୍ରତୀକ୍ଷା ରତ ଏକ କାଳାନ୍ତର ପାଇଁ । ସେହି କାଳାନ୍ତର ଆସିବ ନାହିଁ କୌଣସି ବାଦ, ବିସମ୍ବାଦ କିମ୍ବା ସ୍ଲୋଗାନ ଦ୍ୱାରା । ସେ ଆସିବ ମାନବିକତାର ଉଦ୍‌ଭାସିତ ଅଲୋକରେ । ଅତୀତର କୁହୁଡ଼ି ଅପସରିଯିବ, ବର୍ତ୍ତମାନର ଅନିର୍ଦ୍ଦିଷ୍ଟତା ଦୂରେଇଯିବ, ଭବିଷ୍ୟତ ସ୍ପଷ୍ଟ ହୋଇଯିବ ଗଭୀର ଅନ୍ତଦୃଷ୍ଟି ବଳରେ । ଜୀବନ ଓ ଜଗତ ପାଇଁ ମାନବିକତାର, ସଂବେଦନାର ମହାମନ୍ତ୍ର ସଂଚରିଯିବ । ଏହା ହେଉଛି କଥାକାର ଶାନ୍ତନୁଙ୍କର ଚରିତ୍ର ଓ ଘଟଣା ମାନଙ୍କର ମର୍ମଲିପି ।

**ଶୂନ୍ୟତା ଓ ନୀରବତାର ଦୁନିଆଁରେ ଶାନ୍ତନୁ –**

କଟକଠାରୁ ପ୍ରାୟ କୋଡ଼ିଏ କିଲୋମିଟର ଦୂର ବିଦ୍ଧେଶ୍ୱର ପୁରରେ ଲାଳିତ ପାଳିତ ଶିକ୍ଷକ ଅନନ୍ତ ଆଚାର୍ଯ୍ୟଙ୍କ ସେଇ ପ୍ରତ୍ୟୁତ୍ପନ୍ନମତି ବାଳକ ଶାନ୍ତନୁ ସେତେବେଳେ କେବେବି ଭାବିନଥିଲେ ଓଡ଼ିଆ କଥା ସାହିତ୍ୟକୁ ସେ ଏମିତି ବହୁ ଭାବ ସଂପଦରେ ପରିପୂର୍ଣ୍ଣ କରିଦେଇ ଯିବେ ବୋଲି । ଶିକ୍ଷକ ପିତାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ବାଲ୍ୟ ଶିକ୍ଷା ସମାହିତ ହୋଇଥିଲେବି ଏକ ଅଭାବ ବୋଧର ତାଡ଼ନା ତାଙ୍କୁ

ସନ୍ତପ୍ତ କରିଥିଲା ସେତେବେଳଠାରୁ । ତାହା ହେଉଛି କଥାକାରଙ୍କର ଜନ୍ମଦାତ୍ରୀର ମୃତ୍ୟୁ । ମଧୁର ଶୈଶବ ଯେତେବେଳେ ଲୋଡୁଥିଲା ମାଆର ପଣତକାନି, ମାଆର ମଧୁର ଗାଳି, ସ୍ନେହ ସମ୍ଭାଷଣ, ସେତେବେଳେ ବିଧାତାର ନିଷ୍ଠୁର ହାତ କଥାକାରଙ୍କ ପାଇଁ ତିଆରି କରି ଦେଇଗଲା ଶୂନ୍ୟତାର ନୀରବତାର ଏକ ଦୁନିଆଁ । ତେବେ ଏ ନୀରବତା ଓ ଶୂନ୍ୟତା ତାଙ୍କ ପାଇଁ ଗୋଟେ ବୋଝ ହୋଇ ଠିଆ ହେଲାନି । ଏହାକୁ ସେ ଆଦରି ନେଲେ । ଲୁହରେ ଢୁଡୁବୁଡୁ ଗୋଟେ ପୃଥିବୀକୁ- ଯିଏ ସବୁବେଳେ ଛଟପଟ ହେଉଛି । ତାକୁ ସେ ଦେଖିବା ପାଇଁ ଆରମ୍ଭ କଲେ ପ୍ରଥମେ ଏଇଠୁ । ଅନ୍ତରରେ ଏକ ଗଭୀର କ୍ଷତ- ଯାହାକୁ ସାରା ଜୀବନବି ଭୁଲି ହବନି-କିଏବା ଭୁଲିପାରିବ ଜନ୍ମଦାତ୍ରୀର ବିଚ୍ଛେଦକୁ ପିଲାଦିନେ ? ଶିକ୍ଷକ ପିତା ଥିଲେ ସତରେ ଶାନ୍ତନୁଙ୍କ ପାଇଁ ଏକ ହିମାଳୟ । ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ଆଦର୍ଶବାଦୀ ଚିନ୍ତାଧାରାର ଉପାସକ ହୋଇ ସେ ଘେରି ରହିଥିଲେ ଶାନ୍ତନୁଙ୍କର ଜୀବନ ପରିଧିକୁ- ଆଶ୍ୱାସନା ଓ ସାନ୍ତ୍ୱନାଟିଏ ହୋଇ ବରାବର ଠିଆ ହୋଇଥିଲେ ତାଙ୍କ ନିକଟରେ । ସେ ଥିଲେ ଯେମିତି ଭାଗବତର ଶୁଦ୍ଧପୂତ ଧାଡ଼ି କଥାକାର ଶାନ୍ତନୁଙ୍କର ଘାତ ପ୍ରତିଘାତମୟ ଜୀବନପାଇଁ । କର୍ମଯୋଗର ଆହ୍ୱାନରେ ସେ ତାଙ୍କୁ ଅନୁପ୍ରେରିତ କରିଥିଲେ । ମହକାବ୍ୟପରି ପିତାଙ୍କର ମହିମାନ୍ୱିତ, ଗାରିମାମୟ ପୁଣି ଆଧିଭୌତିକ ଚେତନାପରି ଏଇ ରହସ୍ୟାଚ୍ଛନ୍ନ ବ୍ୟକ୍ତିତ୍ୱ ଶାନ୍ତନୁଙ୍କ ପାଇଁ ଏକ ମାଧମ ଥିଲା ଦୁନିଆକୁ ଚିହ୍ନିବା ପାଇଁ । ଶୈଶବ ଓ କୈଶୋରରେ ଶାନ୍ତନୁ ପିତାଙ୍କଠାରୁ ସେଇ ସବୁ ଅନୁଭୂତିର କାହାଣୀ ଗୁଡ଼ାକ କେବଳ ଶୁଣୁଥିଲେ ତା ନୁହେଁ, ସଂସାର ସଂପର୍କୀୟ ଅନେକ ଜଟିଳ ପ୍ରଶ୍ନର ତରଂଗ ଯାହା ତାଙ୍କର ମନର ବେଳାଭୂମିରେ ଅଜାଡି ହୋଇ ପଡୁଥିଲା ତାର ଉତ୍ତରବି ସେ ଶୁଣୁଥିଲା – ଜିଜ୍ଞାସୁ ସନ୍ତାନ ଭିତରେ ପିତା ଯେମିତି ଦେଖି ପାରୁଥିଲେ ଆଉ ଏକ ସମ୍ଭାବନାକୁ । ପିଲାଦିନେ ଶାନ୍ତନୁ ଗୋଟେ ଜାଗାରେ ଥୟହୋଇ ବସି ରହିବାର ପିଲା ନ ଥିଲେ । ବାଡ଼ି ଅଗଣା, ପଡ଼ିଶାଘର, ଗାଁ ଗୋହିରୀ ସବୁଆଡ଼ ଡ଼େଇଁ ବୁଲୁଥିଲେ ଗୋଟେ ଅମାନିଆଁ ମନ ନେଇ । ପୁଣି ସମବୟସ୍କ ପିଲାମାନଙ୍କଠାରୁ ଆରମ୍ଭ କରି ଗାଁର ବୁଢାବୁଢୀ, ଶିକ୍ଷିତ, ଅର୍ଦ୍ଧଶିକ୍ଷିତ, ଅଶିକ୍ଷିତ ସମସ୍ତଙ୍କ ସଂଗେ ମିଶୁଥିଲେ, ଭାବର ଆଦାନପ୍ରଦାନ ବି କରୁଥିଲେ । ଏହିସବୁ ଅନୁଭୂତି ଏବଂ ଅଭିଜ୍ଞତା ଶାନ୍ତନୁଙ୍କ ପରବର୍ତ୍ତୀ ଲେଖକ ଜୀବନ ପାଇଁ ହୋଇଥିଲା ପାଥେୟ । ଶାନ୍ତନୁଙ୍କ ଉପନ୍ୟାସ ଦରବାରରେ ଯେଉଁ ଚରିତ୍ରମାନଙ୍କର ଭିଡ଼ ଆମେ ଦେଖୁ ସେମାନେ ପ୍ରାୟ ତାଙ୍କର ଜୀବାନାନୁଭୂତିରେ ପରିପୁଷ୍ଟ ଓ ପରିବର୍ଦ୍ଧିତ । 'ନରକିନ୍ନର'ରେ ଗୋଦରୀ ବୁଢୀଠାରୁ ଆରମ୍ଭ କରି 'ଅନ୍ୟ ଏକ ସମୟ ଅନ୍ୟ ଏକ ଭାରତ'ର ସିରିଆ ଚାଷୁଣୀ ମଧରେ ମାତୃଜାତି ପ୍ରତି ଯେଉଁ ନିବିଡ଼ ଭଲପାଇବା ଓ ଶତାବ୍ଦୀର ନଚିକେତାରେ ବିଭୁପ୍ରସାଦର ପିତା ମଧରେ ଆକାଶର ବ୍ୟାପ୍ତି ଓ ନୀଳିମା ଅନୁସଂଧାନ କରିବା ଏବଂ ବିଭିନ୍ନ ଶ୍ରେଣୀର ବିଭିନ୍ନ ପୀଢିର ଅସଂଖ୍ୟା ଚରିତ୍ର ଭିତରେ ନିବିଡ଼ ପର୍ଯ୍ୟବେକ୍ଷଣ ଓ ଅର୍ନ୍ତଦୃଷ୍ଟିକୁ ରୂପ ଦେବା ଆଦିରେ ଏହାହିଁ ଆମେ ଲକ୍ଷ୍ୟକରୁ ।

**କଥାକାର ଜୀବନର ପହିଲି ଅନୁଭୂତି-**

କଲେଜ କ୍ୟାରିଅର୍‌ରେ ବିଜ୍ଞାନର ଛାତ୍ର ଥିଲେ ଶାନ୍ତନୁ ।' ପିତାଙ୍କ ସମେତ ଜ୍ଞାତି ଓ ଆତ୍ମୀୟସ୍ୱଜନ ମାନେ ଚାହିଁଥିଲେ ସେ ଡ଼ାକ୍ତରଟିଏ ହୁଅନ୍ତୁ ବୋଲି । ମାତ୍ର ବିଧିର ନିର୍ଦ୍ଦେଶ ଅଲଗା ଥିଲା । ଡାକ୍ତରୀ ପାଠ ପଢିବାପାଇଁ ମେଡ଼ିକାଲ କଲେଜରେ ଆଡ଼ମିସନ କରି ସେ ଡାକ୍ତରଟିଏ ହୋଇପାରିଲେ ନାହିଁ । ବର୍ଷେକପରେ ଏକ ଦୁଃଖଦ ଘଟଣା ତାଙ୍କ ଜୀବନର ଗତିକୁ ବଦଳେଇ ଦେଲା । ଥରେ ଆନାଟୋମି ବିଭାଗରେ ଶବ

ବ୍ୟବଚ୍ଛେଦ ପାଇଁ ଗଲାବେଳେ ଛାତ୍ର ଶାନ୍ତନୁ ଧଳା କନା ଢଙ୍କା ଏକ ଶବ ନିକଟକୁ ଯାଇ ତାକୁ ନିଜର ପିଉସୀ ବୋଲି ଚିହ୍ନି ବ୍ୟଥିତ ହୁଅନ୍ତି । ପଚାରି ବୁଝନ୍ତି- ଏ ରୋଗଗ୍ରସ୍ତ ପିଉସୀଟି ମେଡ଼ିକାଲରେ ଦୀର୍ଘଦିନ ପଡି ମୃତ୍ୟୁବରଣ କରିଛି ଏବଂ ଏହାଙ୍କର କେହି ଦାବୀଦାର ନଥିବାରୁ ତାଙ୍କୁ ବ୍ୟବଚ୍ଛେଦ ପାଇଁ ଆନାଟୋମି ବିଭାଗରେ ରଖାଯାଇଛି । ମର୍ମଦାହ ଓ ବେଦନାରେ ଅସ୍ଥିର ଶାନ୍ତନୁ ଏହାପରଠୁ ଠିକ୍ କଲେ ମେଡିକାଲ ଆଉ ପଢିବେ ନାହିଁ ବୋଲି । ରେଭେନ୍ସାକଲେଜ ପୁଣି ଫେରି କେମେଷ୍ଟ୍ରୀ ଅନର୍ସ ନେଇ ପଢିଲେ । ବୃତ୍ତିରେ ଡାକ୍ତର ହେବେନାହିଁ ବୋଲି ସ୍ଥିର କଲେ । ସିଦ୍ଧାନ୍ତ ନେଲେ ସେ ହେବେ ମଣିଷ ଆତ୍ମାର ଡାକ୍ତର ।

କଥାକାର ଜୀବନର ଉନ୍ମେଷ ଘଟାଇବା ଦିଗରେ ରେଭେନ୍ସା କଲେଜର, କନିକା ଲାଇବ୍ରେରୀ ଓ ଓ୍ୱେଷ୍ଟ ହଷ୍ଟେଲ ଶାନ୍ତନୁଙ୍କ ପାଇଁ ପ୍ରେରଣାର ଉତ୍ସ ଥିଲା । ଯେଉଁଦିନ ସେ ରେଭେନ୍ସା କଲେଜରେ ଆଡ଼ମିସନ କରିଥିଲେ ସେହିଦିନ ତାଙ୍କର ପିତା କନିକା ଲାଇବ୍ରେରୀ ଆଡ଼କୁ ଅଂଗୁଳି ନିର୍ଦ୍ଦେଶ କରି ତାଙ୍କୁ କହିଥିଲେ- "ତୋର ପ୍ରକୃତ ମାଆ ହେଉଛି ଏ ଲାଇବ୍ରେରୀ । ଏହାରି ଜଠର ମଧ୍ୟରୁ ତୋର ପାଠପଢା ସରିଲାପରେ ତୁ ଯେତେବେଳେ ଲେଉଟି ଆସିବୁ ତୁ ହୋଇଥିବୁ ପ୍ରକୃତ ମଣିଷ- ଖାସା ମଣିଷ ।"କିଶୋର ଶାନ୍ତନୁ ଏଇ କଥାକୁ ବେଦରଗାର କରିଥିଲେ । ଖୁବ୍ ଭଲ ଉପନ୍ୟାସ ଆତ୍ମଜୀବନୀମୂଳକ ହେବାପାଇଁ ବାଧ । ସେଥିରେ ଆତ୍ମପ୍ରକ୍ଷେପ ରହିବହିଁ ରହିବ । ଏହି ସିଦ୍ଧାନ୍ତକୁ ଯଦି ଗ୍ରହଣ କରି ନିଆଯିବ ତାହେଲେ 'ଶତାବ୍ଦୀର ନଚିକେତା' ଉପନ୍ୟାସର ନିମ୍ନଲିଖିତ ଅଂଶଟି ଜୀବନସତ୍ୟର କେତେ ପାଖପାଖି ତାହା ଲକ୍ଷ୍ୟ କରାଯାଉ ।

"ନଟବର ସହିତ ବାପାଙ୍କୁ ପରିଚୟ କରେଇ ଦେଇ ବିଭୁପ୍ରସାଦ କହେ- ଯୋଉଦିନ ମୁଁ ଏ କଲେଜରେ ପ୍ରଥମେ ନାଁ ମେଖେଇଲି ସେଦିନ ବାପା ଥିଲେ ମୋ ସାଙ୍ଗରେ । ମୋର ମନେ ଅଛି । ବାପା ଏଇ ଲାଇବ୍ରେରୀକୁ ଦେଖେଇ ମତେ କହିଥିଲେ-ବିଭୁପ୍ରସାଦ ଏଇ ଜନନୀର ଜଠରୁ ତୁ ବାସ୍ତବିକ୍ କେବେ ଆତ୍ମପ୍ରକାଶ କରିବୁ ? କେବେ ତୁ ସଂସାରର ଆଲୁଅକୁ ଆସିବୁ ? ଆଉ ସଂସାରବି ଆସିବ ତୋର ଆଲୁଅକୁ ।"

"ଅତି ଶୀଘ୍ର ବାପା" ! ମୁଁ ଉତ୍ତର ଦେଇଥିଲି ଯନ୍ତ୍ରବତ୍ ।

କିନ୍ତୁ ସେଥିରେ ସନ୍ତୁଷ୍ଟ ନହୋଇ ସେ କହୁଥାନ୍ତି-

"କିଏ ଜାଣେ ବାବା ! ମୁଁ ବଂଚିଥିବିକି ନା- ତୋର ସେଇ ଜନ୍ମ ଦିନଟିକୁ ଦେଖିବାକୁ ! ଭାରିକଷ୍ଟ ! ଭାରିକଷ୍ଟ ବାପା !"

କେବଳ ଉପରୋକ୍ତ ଉଦାହରଣଟି ନୁହେଁ ଶାନ୍ତନୁଙ୍କ କଥା ସାହିତ୍ୟରୁ ଅଜସ୍ର ଉଦାହରଣ ଦେଇ ତାଙ୍କ ଆତ୍ମପ୍ରକ୍ଷେପ ରୀତିର ସାର୍ଥକତାକୁ ପ୍ରତିପାଦନ କରିହେବ ।

**ଉପଲବ୍ଧି ଓ ବିଶ୍ୱାସର ଆଲୋକ-**

'ଶତାବ୍ଦୀର ନଚିକେତା'ରେ ଆମେ ଅବିକଳ ଏଇ ୮ ଅନନ୍ତ ଚରଣ ଆଚାର୍ଯ୍ୟଙ୍କୁ ଭେଟିବା ଭବାନୀ ପ୍ରସାଦଙ୍କ ଚରିତ୍ର ମଧ୍ୟରେ । ସତକୁ ସତ କନିକା ଲାଇବ୍ରେରୀର ଜଠର ମଧ୍ୟରୁ ଏକ ଆଲୋକିତ ବ୍ୟକ୍ତିତ୍ୱ ନେଇ ଆସିଥିଲେ ଶାନ୍ତନୁ । ଆତ୍ମା ପାଇଁ ଯେଉଁ ଅନ୍ୱେଷଣ ସେ ଜାରି ରଖିଥିଲେ ଛାତ୍ରାବସ୍ଥାର

ତାହା ଏହିଠାରେ ସଂପୂର୍ଣ୍ଣ ହୋଇଥିଲା । ଦିନେ ଓ୍ୱେଷ୍ଟ ହଷ୍ଟେଲରେ ଭଗବାନ ଅଛନ୍ତି ନାଁ ନାହାଁନ୍ତି- ଏହି ପ୍ରଶ୍ନ ସେ ପଚାରିଥିଲେ ନିଜକୁ । ଛଟପଟ ହୋଇଥିଲେ ବି ଅନେକ ଭଗବାନ ଥିଲେ କ'ଣ ଲାଭ ହୁଅନ୍ତା ? ନଥିଲେ ବି କି କ୍ଷତି ହୁଅନ୍ତା ବିଶ୍ୱର ? ତର୍କ ଶାସ୍ତ୍ରର ଏଇ ତାଙ୍କୁ ଅଣନିଃଶ୍ୱାସୀ କରି ଦେଇଥିଲା । ସେ କାଳର ସେହି ସଂଶୟବାଦୀ ଶାନ୍ତନୁ ପୋଟାସିୟମ୍ ସାଇନାଇଡ ଖାଇଦେବା ପାଇଁ ମନସ୍ଥ କରିଥିଲେ । କିନ୍ତୁ ସେହି ମୁହୂର୍ତ୍ତରେ ଏକ ଐଶ୍ୱରିକ ଶକ୍ତିର ପ୍ରଭାବ ତାଙ୍କୁ ଏଥିରୁ ନିବୃତ୍ତ କରିଥିଲା । ମଂଗଳମୟ ଈଶ୍ୱରଙ୍କ ହସ୍ତର ସ୍ପର୍ଶ ସେ ତାଙ୍କର ଚତୁଃପାର୍ଶ୍ୱରେ ଅନୁଭବ କଲେ । ସଂଶୟର ରାତ୍ରି କଟିଯାଇ ଉପଲବ୍ଧି ଓ ବିଶ୍ୱାସର ଆଲୋକ ଝଲସାଇ ଦେଲା ତାଙ୍କ ଜୀବନକୁ । ଐଶ୍ୱରିକ ସତ୍ତା ପ୍ରତି ସେହି ଅଗାଧ ବିଶ୍ୱାସ ଏଯାବତ୍ ତାଙ୍କର ଅତୁଟ ରହିଛି ।

**ଭିନ୍ନ ଏକ କର୍ଣ୍ଣ ଅନ୍ୟ ଏକ ନଚିକେତା-**

ଶାନ୍ତନୁ କଥା ସାହିତ୍ୟରେ ପଟ୍ଟଭୂମି ୧୯୪୨ ମସିହାଠାରୁ ଏପର୍ଯ୍ୟନ୍ତ ଅର୍ଥାତ୍ ଦୀର୍ଘ ଅର୍ଦ୍ଧଶତାବ୍ଦୀ ଯାଏ ପରିବ୍ୟାପ୍ତ । ଓଡ଼ିଆ ସାହିତ୍ୟ ପାଇଁ ସବୁଠାରୁ ଗୌରବମୟ ଓ ଉଲ୍ଲେଖନୀୟ କଥା ଏହି ଯେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରଠାରୁ ବିଶ୍ୱ ବକ୍ଷରେ ଆତ୍ପ୍ରଗଣ କରିଥିବା ଯାବତୀୟ ଘଟଣାବଳୀର ତରଂଗ ସ୍ପର୍ଶ କରିଛି ଶାନ୍ତନୁଙ୍କ କଥା ସାହିତ୍ୟକୁ । ପୁଞ୍ଜିବାଦ କବଳରେ ଛଟପଟ ମଣିଷର ଅନ୍ତରାତ୍ମା ସେଥିରେ ଧ୍ୱନିତ ହୋଇଛି । କ୍ଲାସିକ ବା ଏପିକ୍ ଯୁଗର ନଚିକେତା କେବେ ମୃତ୍ୟୁକୁ ଖୋଜିବାକୁ ଯାଇଥିଲା ମୃତ୍ୟୁଲୋକକୁ । ସେ ହୋଇଥିଲା ମୃତ୍ୟୁଞ୍ଜୟୀ । କିନ୍ତୁ ଏଇ ବିଂଶ ଶତକର ନଚିକେତା ? ଯାହାପାଇଁ ସମାଜ, ଜୀବନ, ସଂସ୍କୃତି, ବୃତ୍ତି, ସ୍ନେହ ମମତା ସବୁ ଗୋଟେ ଦୂଷିତ ପଚା ଘା'- ବା ସୋଲ୍‌ଝିନତସିନଙ୍କର କ୍ୟାନସର ଓ୍ୱାର୍ଡ- ସିଏ ସତେ କଣ ମୃତ୍ୟୁଞ୍ଜୟୀ ହୋଇପାରିବ ? ଉଦ୍‌ଭାସିତ ହୋଇ ପାରିବ ନୂତନ ସକାଳର ରଂଗୀନ ଆଲୋକରେ ? ପ୍ରଚାର କରିପାରିବ ଅମୃତର ବାର୍ତ୍ତା ? ଜୀବନର ଜ୍ୱାଳାରେ ସେଯେ ବ୍ୟଥିତ, ଯନ୍ତ୍ରଣାକାତର । ଏହି ପ୍ରଶ୍ନର ଉତ୍ତର ଦେଇଛି ମିଥ୍ ଚେତନା ଉପରେ ଆଧାରିତ ତାଙ୍କର ଉପନ୍ୟାସ ଦ୍ୱୟ- 'ଶତାବ୍ଦୀର ନଚିକେତା' ଏବଂ 'ତିନୋଟି ରାତିର ସକାଳ' । ପୂର୍ବରୁ ଆମେ କହିଥିବା ଜାରଜ ସଭ୍ୟତାର ସନ୍ତାନ ହେଉଛି ଜର୍ଜ । ମହାଭାରତ ଯୁଗ ଏହିପରି ଗୋଟେ ବ୍ୟକ୍ତିକୁ ଜନ୍ମ ଦେଇଥିଲା- ସେ ହେଉଛି କର୍ଣ୍ଣ । କିନ୍ତୁ କର୍ଣ୍ଣର ମାନସିକତା ଠାରୁ ଜର୍ଜର ମାନସିକତା ଅଲଗା । ମହାଭାରତର କର୍ଣ୍ଣ କେବଳ ଶତ ଉପେକ୍ଷା ସହ୍ୟ କରିଥିଲେ, ସହ୍ୟ କରିଥିଲେ ଭାଗ୍ୟର ବିପର୍ଯ୍ୟୟକୁ- ପୌରୁଷର ଅଗ୍ନିଶିଖାକୁ ପ୍ରଜ୍ୱଳିତ କରି । ଏ ଯୁଗର କର୍ଣ୍ଣ କେବଳ ଉପେକ୍ଷା ହିଁ ସହ୍ୟ କରିଛି । ପୌରୁଷ ଜାହିର ପାଇଁ ଅବକାଶ ନାହିଁ ? ଏ ଶତାବ୍ଦୀର ସବୁ ସଂକଟର ବୋଝ ତା' ପିଠିରେ । ଆଧାତ୍ମିକ, ରାଜନୈତିକ ଓ ସାଂସ୍କୃତିକ ସ୍ତରରେ ଘଟି ଚାଲିଥିବା କଳଙ୍କ, ବ୍ୟଭିଚାର, ପ୍ରବଂଚନାର ଦୁର୍ଭାରରେ ସେ ଅବସନ୍ନ ଓ ପୀଡିତ ସିସିଫସ୍ ପରି ସେ ଅଭିଶପ୍ତ । ବାରମ୍ବାର ଖସି ପଡୁଥିବା ସତ୍ତ୍ୱେବି ସେ ତୀଖ ପାହାଡ଼ ଉପରକୁ ଯିବା ଆଦୌ ସମ୍ଭବ ନୁହେଁ, ଖସି ପଡିବା ହିଁ ଚିରନ୍ତନ ସତ୍ୟ । ତା' ପାଇଁ ଭଗବାନ ମରି ସାରିଛନ୍ତି କେବେଠୁ । ଇତିହାସ ଢୁଳୋଉଛି କେଉଁ କଣରେ । ପରଂପରା ଐତିହ୍ୟ ଓ ଧର୍ମବିଶ୍ୱାସକୁ କେବେଠାରୁ କ୍ରୁଶବିଦ୍ଧ କରି ଦିଆଯାଇଛି ଏବଂ ତା' ମୁହଁରେ ସେଇ ରକ୍ତର ଛିଟିକା । ଏକ ଅବଲମ୍ବନ ଶୂନ୍ୟ ପୃଥିବୀରେ ଚାଳକହୀନ ନୌକାପରି ତା'ର ଜୀବନ । ପୌରୁଷ ତା'ର ପ୍ରତି ମୁହୂର୍ତ୍ତରେ ପଦାନତ ।

ଏସବୁ ଦୃଷ୍ଟିରୁ ସାଂସ୍କୃତିକ କାଳର ନଚିକେତାମାନେ ଓ ଜର୍ଜ ପ୍ରଭୃତି ସିଧାସଳଖ ମିଥ୍ ଚେତନାକୁ ପ୍ରତିବିମ୍ବିତ କରନ୍ତି ନାହିଁ। ମିଥ୍ର ବିରୋଧାଭାଷକୁ ସେମାନେ ଟୋଳି ଧରନ୍ତି ପାଠକମାନଙ୍କ ସମ୍ମୁଖରେ । କଥାକାରଙ୍କର ଏହି ମାନସ ସନ୍ତାନଗଣ ଯେପରି ଶତାବ୍ଦୀର କ୍ଷୁଧା ମଧ୍ୟରୁ ସଂଜାତ । ସେଥିପାଇଁ ତ ଉପରୋକ୍ତ ଚରିତ୍ରମାନଙ୍କର ବ୍ୟକ୍ତିସତ୍ତାର ବିଚ୍ଛୁରଣ ମଧ୍ୟରେ ଓ ବିଚୂର୍ଣ୍ଣିତ ଅସ୍ତିତ୍ୱ ମଧ୍ୟରେ ରୂପ ନେଇଛି ଏହି ଶତକର ନୈରାଶ୍ୟ, ବିକାର । ଯୁଦ୍ଧ, ଗାନ୍ଧିବାଦ, ମାର୍କ୍ସ ଦର୍ଶନ, ଅସ୍ତିତ୍ୱବାଦ ଫ୍ରଏଡଙ୍କ ଡ୍ରିମ୍ ଥିଓରୀ, ନକ୍ସଲ ଆନ୍ଦୋଳନ ଏମାନେ ସବୁ ଏକାକାର ହୋଇଯାଇଛନ୍ତି, ଫେଣ୍ଟି ହୋଇଯାଇଛନ୍ତି ତା ମଧ୍ୟରେ । ୧୯୬୦ ମସିହା ପରେ ଓଡ଼ିଶାର ଏକ ଛୋଟ ସହରର ପଟ୍ଟଭୂମିରେ ଜୀବନ ସଂଗ୍ରାମ ବ୍ୟାପୃକ୍ତ ଚରିତ୍ରମାନଙ୍କୁ ରୂପରେଖ ଦେବା କଣ କମ୍ ସହଜ କଥା ? ଚରିତ୍ରମାନଙ୍କୁ ନିର୍ଦ୍ଦିଷ୍ଟ ପରିଧି ଓ ଅଞ୍ଚଳରୁ ଠେଲିଦେଇ ସେମାନଙ୍କୁ ସର୍ବୋତଭାବେ ଏକ ଆଧାତ୍ମିକ ଓ ଆନ୍ତର୍ଜାତିକ ମଣିଷରେ ରୂପାନ୍ତରିତ କରିଦେବାର ବାହାଦୂରୀ ହିଁ ଓଡ଼ିଆ ସାହିତ୍ୟରେ ପ୍ରଥମ କରି ଶାନ୍ତନୁ ଦେଖାଇଛନ୍ତି ନରକିନ୍ନର ଉପନ୍ୟାସରେ । ଜର୍ଜ ସେଥିପାଇଁ କଟକର ନାଳନର୍ଦ୍ଦମା ଘେରା ଅପରଛନିଆ ବସ୍ତିର ଟୋକାଟିଏ ନୁହେଁ । ତାକୁ ପ୍ୟାରିସ ହଂକଂ କିମ୍ବା ବ୍ୟାଂକଂ ଆଦି ବଡ଼ ବଡ଼ ସହରରେ ସ୍ଲମ୍ ଏରିଆରେ ବାସ କରୁଥିବା ଏକ ଚରିତ୍ର ଭାବରେ ପାଠକ ଗ୍ରହଣ କରିପାରେ ।

ପ୍ରଖ୍ୟାତ କଥାକାର ସ୍ୱର୍ଗତ ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସ ଗୁଡ଼ିକରେ ଆମେ ଦେଖିଥିଲେ ମହାକାବ୍ୟିକତାର ପ୍ରଲେପ । ଜୀବନର ସବୁ ଅସୁନ୍ଦର, ବେଖାପ କଥାସବୁ ବେସୁରା ରାଗିଣୀ ଏହି ପ୍ରଲେପ ବଳରେ ଦୀପ୍ତିମନ୍ତ, କବିତ୍ୱମୟ ହୋଇ ଉଠୁଥିଲା । ତାଙ୍କର ସବୁ ଉପନ୍ୟାସ ପଢ଼ିଲେ ମନେ ହେଉଥିଲା ଯେପରି ଆତ୍ମହରା କବିଟିଏ ଖାଲି ବର୍ଣ୍ଣନା କରି ଚାଲିଛି- ସୁନ୍ଦର ଅସୁନ୍ଦର, ଅଶୁଭ, ଏମାନେ ସେହି ବର୍ଣ୍ଣନାର ଯାଦୁରେ ସ୍ୱର୍ଣ୍ଣତର ହେବାରେ ଲାଗିଛନ୍ତି । ଜୀବନରେ ଦୁଃଖ ଅଛି ସତ କିନ୍ତୁ ମରଣ ନାହିଁ । ଏହି ଦୁଃଖହିଁ ବହି ଆଣିପାରେ ଅମୃତର ଆଲୋକକୁ, ଉଦୀୟାନ ସୂର୍ଯ୍ୟର ବାର୍ତ୍ତାକୁ । ଶାନ୍ତନୁ କଥା ସାହିତ୍ୟ କିନ୍ତୁ ଏହି ଅମୃତର ଉପାସନାକୁ ଶ୍ରେଷ୍ଠ ବୋଲି ଭାବିନି । 'ଦକ୍ଷିଣାବର୍ତ୍ତ'ରେ ଏହା ସଂକେତ ଥିଲେ ବି ଶାନ୍ତନୁଙ୍କ ସମଗ୍ର ଉପନ୍ୟାସର ସ୍ୱରରେ ଆମେ ଗୋଟେ ଅଶାନ୍ତ, ଅତୃପ୍ତ ବିକ୍ଷୁବ୍ଧ ମଣିଷର ଅସ୍ଫୁଟ ଆର୍ତ୍ତନାଦ ଶୁଣିବା । ଏହି ଆର୍ତ୍ତନାଦ ହିଁ ଗୋପୀନାଥଙ୍କ ପରବର୍ତ୍ତୀ ଓଡ଼ିଆ ଉପନ୍ୟାସର ସ୍ୱର । 'ଦାନାପାଣି'ରେ ଏହି ଆର୍ତ୍ତନାଦର ସଂକେତ ରହିଛି କିନ୍ତୁ ପରବର୍ତ୍ତୀ କାଳରେ ଶାନ୍ତନୁଙ୍କ ସମେତ ଆମର ଅନ୍ୟାନ୍ୟ ଯଶସ୍ୱୀ କଥା ଶିଳ୍ପୀଙ୍କ ହାତରେ ଏହା ରୂପାନ୍ତରିତ ହୋଇଛି ମୃତ୍ୟୁ ଯନ୍ତ୍ରଣାରେ ।

**ବିକ୍ଷୁବ୍ଧ ତରଙ୍ଗର ତିନୋଟି ଚିତ୍ରପଟ୍ଟ-**

'ଶକୁନ୍ତଳା', 'ଯାତ୍ରାର ପ୍ରଥମ ପାଦ', 'ଅନ୍ୟ ଏକ ସମୟ ଅନ୍ୟ ଏକ ଭାରତ' ଏହି ତିନିଗୋଟି ଉପନ୍ୟାସ ଭାରତୀୟ ଜନଜୀବନର ଅଶାନ୍ତ ବିକ୍ଷୁବ୍ଧ ତରଙ୍ଗକୁ ତିନିଗୋଟି ଚିତ୍ର ମାଧ୍ୟମରେ ପ୍ରକାଶ କରିବା ଲାଗି ସମର୍ଥ । ଏହି ଉପନ୍ୟାସ ତିନୋଟିରେ ରହିଛି ଏକ ଏକ ସମାଜ ତାତ୍ତ୍ୱିକ ଜିଜ୍ଞାସା । ଅନୁପମ ଶବ୍ଦ ଶିଳ୍ପର ଚାତୁରୀ ସେଇ ଜିଜ୍ଞାସାଗୁଡ଼ିକୁ ଅଧିକ ପ୍ରାଣବନ୍ତ କରିପାରିଛି । ଯେମିତି "ଅଭୟପୁରରୁ ଜମିଦାରୀ ପ୍ରଥା ଲୋପ କରିବା ପାଇଁ ଅନ୍ୟ କୌଣସି ପନ୍ଥା ଆଉ ନ ଥିଲା । ସାମନ୍ତବାଦ ଗୋଟିଏ ବିଲେଇ, ଯାହାର ନଅଟା ଜୀବନକୁ ଏକାଥରକେ କେହି ମାରିଦେଇ ପାରେନା । ଥରକୁ ଥର ମରି ସେ କୋଉ ଖଞ୍ଜାରେ ପୁଣି ଜୀଇଁ ଉଠି ବସେ କିଏ ଜାଣେ ତା ମରମ !"

**ରାଜନୈତିକ ଅସୁରମାନଙ୍କର ଚିତ୍ର-**

ସ୍ୱାଧୀନତା ପୂର୍ବବର୍ତ୍ତୀ ଆତ୍ମାର ସମାଜ ଜୀବନ ଓ ସେଥିରେ ପରିଲକ୍ଷିତ ନାନା ଦ୍ୱନ୍ଦ୍ୱ ଓ ବିରୋଧ 'ଅନ୍ୟଏକ ସମୟ ଅନ୍ୟଏକ ଭାରତ' ରେ ଏକ ପ୍ରଭାବବାଦୀ ଚିତ୍ରକଳା (Impressionistic Art) ପରି ଅଂକିତ । ଜାତୀୟ ମୁକ୍ତି ଆନ୍ଦୋଳନର ପ୍ରେକ୍ଷାପଟରେ ଗାନ୍ଧିଜୀଙ୍କ ଦର୍ଶନର ପ୍ରଭାବ ଆମର ସାମାଜିକ ସ୍ତରରେ ଯେଉଁ ଘଟାନ୍ତର ଆଣିଥିଲା ପୁଣି ସ୍ୱାଧୀନତା ଲାଭ ପରେ ଏବଂ ମହାତ୍ମାଜୀଙ୍କ ତିରୋଧାନ ପରେ ଏହି ଘଟାନ୍ତର ମାନ ବୁଦ୍ ବୁଦ୍ ପରି କିପରି ମିଳେଇଗଲା ସମୟର ସ୍ରୋତରେ ତାହା ଶାନ୍ତନୁଙ୍କ ସ୍ରଷ୍ଟାମାନସ ଏଥିରେ ଅନୁଧ୍ୟାନ କରିଛି । ପ୍ରୋଟାଗୋନିଷ୍ଟ ଲକ୍ଷ୍ମୀଧର ଏହି ଉପନ୍ୟାସରେ ଓଡିଶାର ସେଇସବୁ ସାମାଜିକ ବିଘଟନମାନଙ୍କର ଯେପରି ହୋଇଛି ମୂକସାକ୍ଷୀ । ଛୋଟଆ ଗାଁ ଅଭୟପୁରର ବୃତ୍ତାନ୍ତ ମଧ୍ୟରେ ଦୁଇଟି ଭିନ୍ନ ସମୟର ଭାରତବର୍ଷକୁ ଆଣି ଠିଆ କରେଇ ଦେଇ ପାରିଛନ୍ତି ଔପନ୍ୟାସିକ । 'ଯାତ୍ରାର ପ୍ରଥମ ପାଦ'ରେ ହତଭାଗ୍ୟ ମିନି ତାର ଯାତ୍ରାର ପ୍ରଥମ ପାଦରେ ସେ ଧତଡ଼ା ଘୋଡ଼ା ଗାଡ଼ିରେ ବସି ଅସୁରମାନଙ୍କ ସହିତ ସହର ବାହାରକୁ ହାତ ରଖି ହାତରୁ ଗୋଟି ଗୋଟି ଚୁଡି କାଢ଼ି ବାହାରକୁ ଫିଙ୍ଗୁଥିଲା । ସେ ବୋଧେ ଏଇଆହିଁ ସାନ୍ତ୍ୱନା ଦେଉଥିଲା ତା ମନକୁ- "ସୀତାଙ୍କୁ ରାବଣ ଧରି ନେଇଥିବା ବେଳେ ସୀତାଙ୍କ କରୁଣ ଆତ୍ମକଥନ ଶୁଣିଥିବା ବନଗିରି ଓ ଲତାଗିରି ଏ ଦେଶରେ ରହିଛନ୍ତି । କିନ୍ତୁ ଏଡ଼େ ବଡ଼ ଦେଶରେ ମଣିଷରେ ସେଭଳି ଦୁର୍ଦ୍ଦଶାର ସାକ୍ଷୀ ହେବାପାଇଁ ବନଗିରି ଇତାଗିରି ବ୍ୟତୀତ ଆଉ କ'ଣ କେହି ନଥିଲେ ବା ନାହାଁନ୍ତି ? ଭାରତର ଏଡ଼େ ବଡ଼ ଜନ୍ମସ୍ଥାନ କଅଣ ଜନଶୂନ୍ୟ ?" ମିନିଥିଲା ସେଇ ହତଭାଗ୍ୟ ଝିଅଟିଏ ଯେକି ତିନିଦିଗରୁ ବିପଦର ଆଶଙ୍କାରେ କାତର ହୋଇ ପଡୁଥିଲା । ପ୍ରଥମ ବିପଦଟି ଥିଲା, ସମାଜ ଆଡୁ, ଦ୍ୱିତୀୟଟି ତା ନିଜ ଭିତରୁ ଓ ଶେଷଟି ଭଗବାନଙ୍କ ଆଡୁ । "ଯା, ମା' ଯା' ! ବଡ଼ ଲୋକମାନଙ୍କ ସାଥିରେ ମୁକ୍ତଜଗତକୁ ଚାଲି ଯା ମା ।" ଏହାକହି ତା ବାପା ତାକୁ ସମର୍ପି ଦେଇଥିଲେ ସେଇ ଧର୍ଷକ ଅସୁରମାନଙ୍କ ହାତରେ । ସେମାନେ ପୁଣି ହେଉଛନ୍ତି ସମାଜର ଏକ ଏକ ପ୍ରତିଷ୍ଠିତ ଅଂଗ । ସମ୍ବିଧାନ ସୁରକ୍ଷାର ଦାୟିତ୍ୱ ପୁଣି ରହିଛି ସେମାନଙ୍କ ହାତରେ । ରାଜନୈତିକ ମଣିଷ ଆଧୁନିକ ମଣିଷ ନୁହେଁ, ସେ ହେଉଛି ଆଦିମ ପ୍ରସ୍ତର ଯୁଗର ବର୍ବର ମଣିଷ । ସେ ଅସୁର । ଏହି ରାଜନୈତିକ ଅସୁରମାନଙ୍କର ପରିସମାପ୍ତି ନଘଟିଲେ ପୃଥିବୀ ପାଇଁ ଭଲ ସମୟ ଆସିବ ନାହିଁ- ଏହାହିଁ ଏ ଉପନ୍ୟାସର ଅନ୍ତଃସ୍ୱର । ସେହିପରି 'ଧରିତ୍ରୀର କାନ୍ଦ'ରେ ଶାନ୍ତନୁ ଦର୍ଶାଇଛନ୍ତି ଯେ ଅହରହ କାନ୍ଦୁଥିବା ଧରିତ୍ରୀମାତାର ଲୁହବୋହିବା ବନ୍ଦ ହେବ ସେତେବେଳେ ଯେତେବେଳେ ସମାଜ ଜୀବନରୁ ଦୁଷ୍ଟଶକ୍ତି ମାନବର ନିପାତ ଘଟିବ ।

**ନବ ମାନବତାବାଦର ଆହ୍ୱାନ-**

**'ଶକୁନ୍ତଳା'**ରେ ୧୯୫୦ ମସିହାଠାରୁ ୧୯୭୦ ମସିହା ମଧ୍ୟରେ ଆତ୍ମପ୍ରକାଶ କରିଥିବା ସମାଜର ବିବର୍ତ୍ତନ ଓ ସାଂସ୍କୃତିକ ପଟ୍ଟପରିବର୍ତ୍ତରେ ସ୍ୱରକୁ ଚମତ୍କାର ଭାବରେ ଉପସ୍ଥାପନ କରାଯାଇଛି ୧୯୫୧ ରେ ତେଲେଙ୍ଗାନାର ସଶସ୍ତ୍ର କୃଷକ ବିପ୍ଳବଠାରୁ ୧୯୭୦ ରେ ନକ୍ସାଲ ଆନ୍ଦୋଳନର ଶେଷ ସୀମା ପର୍ଯ୍ୟନ୍ତ ଭାରତ ବର୍ଷରେ ନୂତନ ରାଜନୈତିକ ଚିନ୍ତାଧାରାର ଯେଉଁ ଅଭ୍ୟୁଦୟ ଓ ବିକାଶ ସାଧିତ ହୋଇଥିଲା ସେଥିରେ ଦେଶର ବହୁ ଶିକ୍ଷିତ ବୁଦ୍ଧିଜୀବୀ ଓ ଛାତ୍ରଛାତ୍ରୀ ଗୁରୁତ୍ୱପୂର୍ଣ୍ଣ ଅଂଶ ଗ୍ରହଣ କରିଥିଲେ । ଏହି ବୈପ୍ଳବିକ ସଶସ୍ତ୍ର ସଂଗ୍ରାମ ବହୁ କାରଣରୁ ଭାରତ ମାଟିରେ ତିଷ୍ଠି ପାରିଲା ନାହିଁ ।

ହତ୍ୟା, ପ୍ରଳୟକାଣ୍ଡ ଓ ବହୁ ଜନନାୟକଙ୍କର ପ୍ରତିକୃତି ଧ୍ୱଂସ ପୂର୍ବକ ଏହି କୃଷି ବିପ୍ଳବ ପ୍ରାଥମିକ ପର୍ଯ୍ୟାୟରେ ବହୁ ଉଚ୍ଚଶିକ୍ଷିତ ବ୍ୟକ୍ତିମାନଙ୍କୁ ଆକୃଷ୍ଟ କରିଥିଲେ ବି ପରେ ଏହା ଜନସମର୍ଥନ ହରେଇଲା । ସି.ପି.ଏମ୍.ଏଲର ଆଭିମୁଖ୍ୟ ଥିଲା ଶ୍ରେଣୀ ଶତ୍ରୁର ବିଲୋପ ସାଧନ କରିବା । କିନ୍ତୁ ବୁର୍ଜୁଆ ସମାଜର ମଧ୍ୟବର୍ତ୍ତୀ ସ୍ତରରେ ରହୁଥିବା ଲୋକମାନଙ୍କ ଉପରେ ଆକ୍ରମଣ କରୁଥିବାରୁ ଏହା ଉପରୁ ଲୋକମାନେ ଆସ୍ଥା ତୁଟେଇ ଦେଲେ । ପୁଣି ଯୁଗ ଯୁଗ ଧରି ରହିଥିବା ଭାରତ ବର୍ଷର ଧର୍ମଧାରଣା, ସାଂସ୍କୃତିକ ଆଦର୍ଶର ବିରୋଧ କରୁଥିବା ହେତୁ ଏହା ଭୂମିହୀନ କୃଷକ ସମାଜକୁ ସଂଗ୍ରାମ ପାଇଁ ପ୍ରସ୍ତୁତ କରି ପାରିଲା ନାହିଁ । ତେଣୁ ନକ୍ସାଲ ଆନ୍ଦୋଳନ ଜନ ସମର୍ଥନ ହରେଇଲା । ଔପନ୍ୟାସିକ ଶାନ୍ତନୁଙ୍କର ଗଭୀର ଜୀବନଦୃଷ୍ଟି ଉପଲବ୍ଧି କଲା ଯେ-ଏ ଦେଶରେ କୃଷକ ଓ ଶ୍ରମଜୀବିମାନଙ୍କ ମଧ୍ୟରେ ଶ୍ରେଣୀ ଚେତନା ସୃଷ୍ଟି କରି ସେମାନଙ୍କୁ ବିପ୍ଳବର ଅଗ୍ନି ମନ୍ତ୍ରରେ ଦୀକ୍ଷିତ କରିବାକୁ ହେଲେ ମାଓବାଦ ବା ଟ୍ରଟସ୍କିବାଦ କିମ୍ବା ଅନ୍ୟ କୌଣସି ଧାର୍ କରା ମତବାଦ ଉପରେ ନିର୍ଭର କଲେ ଚଳିବ ନାହିଁ । ବିପ୍ଳବର ସଫଳତା ପାଇଁ ଏ ମାଟିର ଐତିହ୍ୟ ଓ ସଂସ୍କୃତିକୁ ଆଗରେ ରଖି ଗତି କରିବା ପାଇଁ ପଡ଼ିବ । 'ଶକୁନ୍ତଳା' ଉପନ୍ୟାସରେ ଏହି ମର୍ମବାଣୀ ଧ୍ୱନିତ ହୋଇଛି । ମଣିଷର ଧର୍ମଧାରଣା ଓ ଈଶ୍ୱର ବିଶ୍ୱାସକୁ ରାଜନୈତିକ ଦର୍ଶନ ସହ ସାମିଲ କରି ନବମାନବତା ବାଦ (Neo Humnism) ପାଇଁ ଯେଉଁ ଆହ୍ୱାନ 'ଶକୁନ୍ତଳା'ରେ ଦିଆଯାଇଛି ପ୍ରକୃତରେ ତାହା ଅଭିନବ । କଣ୍ଣୁଆରେ ନକ୍ସାଲ ଅପରେସନ୍ ସାର୍ଥକ ହୋଇ ପାରିନାହିଁ । ଏ କ୍ଷେତ୍ରରେ ଯେପରି ପ୍ରତିବଂଧକ ହୋଇ ଠିଆ ହୋଇଛନ୍ତି ଜଗନ୍ନାଥ- ଆମ ଐତିହ୍ୟ, ପରଂପରାର ପ୍ରତୀକ । ତେଣୁ ବୈପ୍ଳବିକ ମୂଲ୍ୟବୋଧକୁ ପ୍ରତିଷ୍ଠା କରିବା ପାଇଁ ହେଲେ ଆମର ଯୁଗ ଯୁଗର ବିଶ୍ୱାସ, ମୂଲ୍ୟବୋଧ, ଐତିହ୍ୟ ଏସବୁକୁ ନେଇ ଆଗେଇବା ପାଇଁ ପଡ଼ିବ । ସେଇଥିପାଇଁ ତ 'ଶକୁନ୍ତଳା'ର ନକ୍ସାଲ କମ୍ୟୁନିଷ୍ଟମାନେ ନୀଳଗିରି କାଳିଆକୁ ଲାଲ୍ ସଲାମ ଜଣେଇଛନ୍ତି । ମନୁଷ୍ୟର ଧର୍ମଧାରଣା ମିଶି ଯାଇଛି । ରାଜନୈତିକ ଅସୁର ମଣିଷର ରୂପାନ୍ତର ଘଟିଛି । 'ନରକିନ୍ନର', 'ଯାତ୍ରାର ପ୍ରଥମପାଦ', 'ଅନ୍ୟଏକ ସମୟ ଅନ୍ୟଏକ ଭାରତ'ରେ ଆମେ ରାଜନୀତିର ସର୍ବଗ୍ରାସୀ କ୍ଷୁଧା ମଧ୍ୟରେ ପୀଡ଼ିତ ମାନବମ୍ଵାର ଯେଉଁ ଆର୍ତ୍ତ ଚିତ୍କାର ଶୁଣିଥିଲେ, ଯେଉଁ ରାକ୍ଷସମାନଙ୍କୁ ସାମ୍ନା କରିଥିଲେ ସେମାନଙ୍କର ନବଜନ୍ମ ପାଇଁ ଯେପରି 'ଶକୁନ୍ତଳା'ରେ ଆହ୍ୱାନ ଦିଆଯାଇଛି । ଓଡ଼ିଆ ସାହିତ୍ୟରେ କାହିଁକି, ଭାରତୀୟ ସାହିତ୍ୟରେ ଏପରି ପ୍ରୟୋଗରୀତି ଯେ ଅଭିନବ ଏଥିରେ ସନ୍ଦେହ ନାହିଁ ।

**ଚଳନ୍ତିଠାକୁରଙ୍କ ପୂଜାରୀ-**

ଉପନ୍ୟାସର କାରିଗରୀରେ ସିଦ୍ଧହସ୍ତ ଶାନ୍ତନୁଙ୍କ ଗଳ୍ପ ଦିଗନ୍ତରେ ବି ବହୁ ରଂଗର, ଅନେକ, ଆଲୋକର ବିଚିତ୍ର ବର୍ଣ୍ଣାଢ୍ୟ ମହୋତ୍ସବ । ସେଠି ପାଠକ ଅଦିନ ବଉଳର ବାସ୍ନାରେ ବିମୋହିତ ହେଲାବେଳେ ପୁଣି ଆଶ୍ଚର୍ଯ୍ୟରେ ବି ଅଭିଭୂତ ହୁଏ, ସେହି ଅଦିନ ବଉଳ ଗୁଡ଼ାକ ପ୍ରଖର ଅଗ୍ନିତାପରେ ଜଳିଯିବାର ଦେଖି । ମନ ଗହନର ମର୍ମରିତ ଧ୍ୱନି ଓ ଶବ୍ଦମାନଙ୍କୁ ଅକପଟ ସ୍ନେହ ଓ ସୌହାର୍ଦ୍ଦ୍ୟ ଦେଇ ସେ ପ୍ରକାଶ କରି ଦେଇପାରନ୍ତି ତାଙ୍କର ଗଳ୍ପ ସମୂହରେ । ଏଥିପାଇଁ ସେ ଚରିତ୍ର, ଘଟଣା ଓ ଭାଷାକୁ ଖୋଜନ୍ତି ନାଇଁ, ଲୋଡ଼ନ୍ତି ନାଇଁ, ସେମାନେ ଆପେ ଆପେ ଆସି ଧରା ଦିଅନ୍ତି ତାଙ୍କ ହାତରେ ଏକ ଦୁର୍ବାର ଆକର୍ଷଣରେ । ଭାଗ୍ୟ, ଭଗବାନ, ପରିପାର୍ଶ୍ୱର ତାଡ଼ନାରେ ତାଙ୍କର ଗଳ୍ପ ନାୟକମାନେ ପ୍ରପୀଡ଼ିତ

ହେଲେବି ସେମାନେ ତଥାପି କାନ ଡେରିଥାନ୍ତି କେଉଁ ଏକ ଆଦ୍ୟ ସକାଳର ଧ୍ୱନିକୁ । ଏଇ ସକାଳର ସୁନେଲି ଖରା ଖୋଲିଦେଇ ପାରିବ ସେମାନଙ୍କର ଯାବତୀୟ ଛଳନାର ମୁଖାଗୁଡ଼ାକୁ ।

ମନୁଷ୍ୟର ମେଟାମରଫସିସ୍ ପାଇଁ ଏ ଯେଉଁ ସ୍ୱର ଝଂକାର ଅନ୍ୟାନ୍ୟ ସଂକଳନ ଗୁଡ଼ିକ ପରି ମଧ୍ୟ ଉଦାତ୍ତ ହୋଇପଡ଼ିଚି କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଥିବା 'ଚଳନ୍ତିଠାକୁର' ସଂକଳନରେ । ଭାରତୀୟ ସଭ୍ୟତା ବସ୍ତୁତାନ୍ତ୍ରିକ ସଭ୍ୟତା ନୁହେଁ । ଯୁଗେ ଯୁଗେ ଏହା ବସ୍ତୁତନ୍ତ୍ର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଆସିଛି । ପାଶ୍ଚାତ୍ୟ ବସ୍ତୁବାଦୀ ସଭ୍ୟତା ରୂପୀ ରାକ୍ଷସ ଆମ ଭିତରେ ଥିବା ଖାଣ୍ଟି ଭାରତୀୟ ଚେତନାକୁ କଦାପି ବିନାଶ କରିପାରିନି । ଆମରି ବିଶ୍ୱାସ ଓ ଧାରଣା ଆମରି ଆତ୍ମାର କଥାହିଁ କହିଥାଏ । ସେଥିପାଇଁ ଶିଶୁ ମିସ୍ଟୁନ୍ ସୁଦୂର ଆମେରିକାରେ ଲାଳିତ ପାଳିତ ହେଲେବି ତା'ର ରକ୍ତ କଣିକାରେ ଭାରତୀୟ ଚେତନାର, ମହାମନ୍ତ୍ରର ଆବାଜ୍ ଶୁଣାଯାଇଛି । ମ୍ୟୁଜିୟମର ବିରାଟ ବୁଦ୍ଧ ମୂର୍ତ୍ତି ନିକଟରେ ସେ ବସି ରହିଛି ବଦ୍ଧପଦ୍ମାସନରେ ଅର୍ଦ୍ଧନିମୀଳିତ ଚକ୍ଷୁରେ । ସିଦ୍ଧାର୍ଥଙ୍କ ଡାକରେ ସେ ଜବାବ୍ ଦେଇ କହିଛି- "ଆଇ ଆମ ନଟ୍ ଏ ଡେଡ୍ ଗଡ୍ । ନୋ- ୟୁ କାଣ୍ଟ୍ ସେଲ୍ ମି ।"

ପାଶ୍ଚାତ୍ୟ ଦେଶମାନଙ୍କୁ ଏ ଦେଶରୁ ଯେତେ ପ୍ରତିଭା ଚାଲାଣ ହେଲେବି, କୋଟି କୋଟି ଡଲାରର ମୂଲ୍ୟରେ ଏ ଦେଶରେ ସ୍ଥାପତ୍ୟ, ଭାସ୍କର୍ଯ୍ୟ, ମାନ ବିକ୍ରୟ ହୋଇଗଲେବି ଭାରତର ଆତ୍ମା ବା ଯାହାକୁ True Indian Spirit ବୋଲି କୁହାଯାଏ ସେ ଚିରକାଳ ଧରି ସବୁଜ ଓ ସତେଜ ଥିବ । ସମୟ ଓ ସଭ୍ୟତାର ଶତ ବିବର୍ତ୍ତନ ମଧ୍ୟରେ ଏହା ଝଲସି ଉଠୁଥିବା ପ୍ରଖର ସୂର୍ଯ୍ୟାଲୋକ ପରି । ଏ ଦେଶର ମାଟି, ପାଣି ଓ ପବନରେ ଯେଉଁ ମହକ ଅଛି ସେଇ ମହକ ମଣିଷ ପ୍ରାଣରେ ଅନାହତ ବଂଶୀସ୍ୱନ ପରି ଦୈବତ ମହିମାର ରାଗିଣୀ ଛୁଟାଇ ପାରେ । ସକଳ ପ୍ରବୃତ୍ତିର ଯୁପକାଠରୁ ଆତ୍ମାକୁ ମୁକ୍ତି ଦେଇପାରେ । ସେଇଥିପାଇଁ ତ ଭୋଗ ଓ ଐଶ୍ୱର୍ଯ୍ୟର ସ୍ୱର୍ଣ୍ଣଖଚିତ ସିଂହାସନରୁ ଏ ଦେଶର ରାଜପୁତ୍ର ଓହ୍ଲେଇ ଆସି ଯନ୍ତ୍ରଣାଜର୍ଜରିତ ମଣିଷ ପାଇଁ ନୂଆସକାଳର ବାର୍ତ୍ତା ଆଣିଥିଲା । ବସ୍ତୁବାଦୀ, ବ୍ୟକ୍ତିଚେତନାପୀଡ଼ିତ ମଣିଷ ପାଇଁ ମିସ୍ଟୁନ ମଧ୍ୟରେ ଯେଉଁ ରୂପାନ୍ତରର ଆଭାସ ଗାଳ୍ପିକ ଦେଇଛନ୍ତି ତାହା ଅନବଦ୍ୟ । 'ଚଳନ୍ତି ଠାକୁର' ସଂକଳନର ଅନ୍ୟାନ୍ୟ କାହାଣୀ ଗୁଡ଼ିକରେ ଗାଳ୍ପିକ ସମ୍ବେଦନଶୀଳ ମଣିଷମାନଙ୍କୁ ଆମ ନଜରକୁ ଆଣିଛନ୍ତି । 'ପିତୃଋଣ'ର ବୀର ସାଆନ୍ତରା 'ବୃକ୍ଷ ସାକ୍ଷୀ'ରେ ପେମିର ଭୂତ, 'ଗ୍ଲାସନଷ୍ଟ'ର ଅର୍ଦ୍ଧେନ୍ଦୁ । 'ପ୍ରେମର ପ୍ରଣାମ'ରେ ବଳଭଦ୍ର । 'କଲେଜ ହତାରେ ଜହ୍ନ ରାତି'ରେ ବୀର ବାହାଦୁର- ଏମାନେ ସବୁ ଉଦାର ମାନବିକତାର ସ୍ୱର ସଂଚାର କରିଛନ୍ତି । ଶାନ୍ତନୁଙ୍କ ଗଳ୍ପ ମାନସ ଏଠାରେ ମାନବିକତାର ଅଭ୍ୟୁତ୍‌ଥାନ ପାଇଁ ଯେପରି ବେଦମନ୍ତ୍ର ପଢିଛି । ମନେ ହୁଅନ୍ତି ଉପରୋକ୍ତ ସମସ୍ତ ଚରିତ୍ରମାନେ ଯେପରି ଚଳନ୍ତି ଠାକୁର । ଯେଉଁମାନେ ଐଶ୍ୱରୀୟ ଗୁଣାବଳୀକୁ କିଛି ନିଜ ହୃଦୟର ଅଭ୍ୟନ୍ତରରେ ସଂପାଦି ରଖି ପାରିଛନ୍ତି । 'ଦୁର୍ବାର', 'ଏଇ ଶେଷ ପଦଟି', 'ମନମର୍ମର', 'ଅଦିନ ବଉଳ', ଆଦ୍ୟ ସକାଳ, ଆଦି ଗଳ୍ପ ସଂକଳନ ଗୁଡିକରେ ଫାଣ୍ଟାସିର ଯେଉଁ ଶକ୍ତିଶାଳୀ । ପ୍ରୟୋଗ ଆମେ ଦେଖିଥିଲେ 'ଚଳନ୍ତି ଠାକୁର' ସର୍ପଯାନ ଆଦି ସଂକଳନର ଗଳ୍ପ ଗୁଡିକରେ ଏହାର ରମଣୀୟ ପ୍ରୟୋଗ ମଧ୍ୟ ହୃଦୟସ୍ପର୍ଶୀ । ଏହା ଗାଳ୍ପିକଙ୍କର ବର୍ଣ୍ଣିତ ବାସ୍ତବ ଘଟଣାମାନଙ୍କୁ ଆହୁରି ବାସ୍ତବ କରି ତୋଳିଛି । ପାଠକୀୟ ଅନୁଭୂତିର ବିବିଧ ଦର୍ଜାଗୁଡ଼ିକୁ ଖୋଲି ଦେଇପାରିଛି । ବର୍ଣ୍ଣିତ କାହାଣୀ ବା ଘଟଣାର ଅଭ୍ୟନ୍ତରରେ ଗଭୀର ସତ୍ୟର ବ୍ୟଞ୍ଜନା ନିକଟରେ ପାଠକକୁ ପହଂଚାଇବା ଦିଗରେ ସମର୍ଥ ହୋଇପାରିଛି ।

ଶାନ୍ତନୁ କଥା ଦିଗନ୍ତର ଅନ୍ୟତମ ବିଭାବ ହେଉଛି ତାଙ୍କର ସଂସ୍କାର ମୁକ୍ତ ଭାଷା ଯାହା ତାଙ୍କ ମୁକ୍ତ ଓ ସ୍ୱାଧୀନ ଚିନ୍ତାକୁ ପ୍ରକାଶ କରିଥାଏ । ଗଳ୍ପକଥକର ପ୍ରଗଲ୍‌ଭ ବାକ୍‌ଭଂଗୀ, ଅତିକଳ୍ପନାର ଚଟୁଳ, ଫେନିଳ ରୀତି, ମହତ୍ତ୍ୱ ଦେଇଛି ତାଙ୍କ ଗଳ୍ପର ପରିଧିକୁ । ଦୀର୍ଘ ଚାରିଦଶନ୍ଧି ଧରି ଲେଖି ଚାଲିଥିବା ଏହି କଥାକାର ଜୀବନର ଯେ ଅନେକ ନୂତନତମ ବ୍ୟାଖ୍ୟାମାନ କରିଚାଲିଛନ୍ତି ଏହା ତାଙ୍କ ଶକ୍ତିଶାଳୀ କଥାକାରିତାର ପ୍ରକାଶ ।



# ଉପନ୍ୟାସର ଭାଷା ଓ ଶାନ୍ତନୁ ଆଚାର୍ଯ୍ୟଙ୍କ ଭାଷାଭଙ୍ଗୀ

ଡକ୍ଟର ବେଣୁଧର ପାଢ଼ୀ

ଉପନ୍ୟାସ ଏକ ଭାଷା- ସୌଧ । ଶବ୍ଦ–ଚିତ୍ରର ଏକ ମନୋରମ କଳାମନ୍ଦିର ଭାବେ ମଧ୍ୟ ଉପନ୍ୟାସକୁ ଗ୍ରହଣ କରାଯାଇପାରେ । ଯେହେତୁ ଉପନ୍ୟାସର ଆତ୍ମା । (କାହାଣୀ ଓ ଦର୍ଶନ) ଭାଷାର ସୁବିନ୍ୟସ୍ତ ପଞ୍ଜର ଉପରେ ହିଁ ଭରାଦେଇ... ଖଞ୍ଜାଖଞ୍ଜି ହେଇ, ସହଂତ-ସୁନ୍ଦର ରସବୋଧକୁ ପ୍ରକଟିତ କରିଥାଏ; ଅପରୂପ କଳାନୈପୁଣ୍ୟର ମର୍ଯ୍ୟାଦାରେ ଉପନ୍ୟାସକୁ ସାହିତ୍ୟର ରାଜ ସିଂହାସନରେ ଅଭିଷିକ୍ତ କରାଇଥାଏ ! ଔପନ୍ୟାସିକର ସମୁହ ଭାବନା, ତା'ର ଚିନ୍ତା– ଚେତନା ଓ ଆଦର୍ଶ– ଦର୍ଶନକୁ ବିବିଧ ଶାବ୍ଦିକ ବ୍ୟଞ୍ଜନା ମଧ୍ୟରେ ପ୍ରକାଶକ୍ଷମ କରିବାପାଇଁ 'ଭାଷା' ହିଁ ବାହନ ଭଳି ସାହିତ୍ୟିକର 'ଭାବନା-ବୋଝ'କୁ ବୋହିନିଏ ସୁତରାଂ ଉପନ୍ୟାସ ହିଁ ସଂପୂର୍ଣ୍ଣ ଭାବେ ଭାଷା-ନିର୍ଭର । ଭାଷା ହିଁ ତା'ର ପ୍ରାଣ । ଭାଷା ବିହୁନେ ଉପନ୍ୟାସର ପରିକଳ୍ପନା ହିଁ ଅବାସ୍ତବ- ଅଯୌକ୍ତିକ ଓ ଅସମ୍ଭବ ମଧ୍ୟ ।

ଉପନ୍ୟାସର ଭାଷାପାଇଁ ଶାସ୍ତ୍ରକାରର ଯେମିତି କୌଣସି ବୈଧାନିକ ନିର୍ଦ୍ଦେଶ ହିଁ ନାହିଁ, ସେମିତି ଭାଷା ପ୍ରୟୋଗ କାଳରେ କୌଣସି କାନୁନ୍- କଟକଣା, ରୀତି-ନୀତିକୁ ସ୍ୱୟଂ ଔପନ୍ୟାସିକ ମାନ୍ୟତା ଦେବାପାଇଁ ମଧ୍ୟ ବାଧ୍ୟ ହୁଏ ନାହିଁ । ସମୟାନୁକ୍ରମେ ସମାଜର ଧାରା ବଦଳୁଥାଏ । ବଦଳୁଥାଏ ସଭ୍ୟତାର ଭେକ । ମଣିଷର ରୁଚି ବି ସେହି ପରିବର୍ତ୍ତନର ଗୁଳାରେ ରଙ୍ଗ ବଦଳାଏ । ବଦଳିଯାଏ ସେ ଦୃଷ୍ଟିରୁ ମଣିଷ ମୁହଁର ଭାଷା...; ଉପନ୍ୟାସର ଓ ସର୍ବୋଦୌ ସାହିତ୍ୟର ଭାଷା । ''କେଉଁଠି କି ପ୍ରକାର ଭାଷାର ପ୍ରୟୋଗ କରିବାକୁ ହେବ, ଔପନ୍ୟାସିକର ବିଚାରବୁଦ୍ଧି ତାହା ସ୍ଥିର କରେ । ସେଥିପାଇଁ ଧରାବନ୍ଧା ନିୟମ କିଛି ରହିପାରିବ ନାହିଁ ।''

ସୁତରାଂ ଲୌକିକ- ମାନକ ଭାଷା, ମଫସଲୀ – ସହରୀ, ସଭ୍ୟ-ଅସଭ୍ୟ, ଆଦିମ–ନୂତନ ଆଦି ଶାସ୍ତ୍ରୀୟ କଟକଣା ଓ ସୀମାର ଉର୍ଦ୍ଧ୍ୱରେ ଔପନ୍ୟାସିକର ମୁକ୍ତ ଜୀବନ... । ଭାଷାର ପ୍ରୟୋଗ ଘେନି ଆପଣାର ଶୈଳୀ ବିଚାର ଏବଂ ପରିଶୁଦ୍ଧ - ସ୍ୱଚ୍ଛ ମନୋଭାବର ପ୍ରକଟନ କ୍ଷେତ୍ରରେ ତେଣୁ ଲେଖକ ସଂପୂର୍ଣ୍ଣ ସ୍ୱାଧୀନ । ସ୍ୱାଧୀନ ଭାବେ ଆପଣାର ଉଦ୍ଦେଶ୍ୟ ସାଧନ ସକାଶେ ଲେଖକ ଆପଣାର କୌଶଳମତେ ଶବ୍ଦଚୟନ କରେ । ଶବ୍ଦ-ସଂଧାନ କାଳରେ କିନ୍ତୁ ଲେଖକର ଉପଯୁକ୍ତ ଶିକ୍ଷା-ମନସ୍କତା (creative mentality) ହିଁ ସତର୍କତା ଅବଲମ୍ବନ ପୂର୍ବକ ନୂତନ ଭାବ ଓ ଅଭିନବ ଆବେଗର ସୂତ୍ର ଅନ୍ୱେଷଣରେ ସମର୍ଥ ହୁଏ । ଫଳରେ ଭାଷାର ଏହି କଳାତ୍ମକ ଓ ପ୍ରୟୋଗଜନିତ ସ୍ଥାନିକତା ଉପରେ ହିଁ ତା'ର ସମ୍ବେଦନଶୀଳ ମାଧୁର୍ଯ୍ୟ ସଂଚାରର ଶକ୍ତି ନିର୍ଭର କରିଥାଏ ଏବଂ ଲେଖକର ଏହି କଳା- କୌଶଳ ହିଁ ଅବହେଳିତ ସମାଜ ଅପନ୍ତରାର ଭାଷାକୁ ସାହିତ୍ୟରସରେ ରସାଣିତ କରି ଅନାହତ ସୌନ୍ଦର୍ଯ୍ୟ ଓ

ଆବେଗସଂଜାତ ଭାବ– ବାହକର ସମର୍ଥ ଅଧିକାରୀ ରୂପେ ପ୍ରତିଷ୍ଠା ଆଣିଦିଏ । ଷ୍ଟିଫେନ ହେରୋଙ୍କ ଉକ୍ତିଟି ଏ ପ୍ରସଙ୍ଗରେ ଅବତାରଣ କଲେ ଅପ୍ରାସଙ୍ଗିକ ହେବ ନାହିଁ । "Words", he said "have a certain value in the market place - a debased value. Words are simply receptacles of human thought, in the literary tradtion they receive more valuable thoughts than receive in the market placè".

ସାହିତ୍ୟ ପରମ୍ପରା ଭିତରେ ଭାଷାର ମହତ୍ତ୍ୱ ବୃଦ୍ଧିପାଏ - ଭାଷା ଅର୍ଥପୂର୍ଣ୍ଣ... ଆବେଗ ପ୍ରବଣ ହୁଏ ଓ କାଳକ୍ରମେ ବିକାଶଶୀଳ ଯୁଗ- ଆତ୍ମା 'ଉନ୍ନତ ଭାଷା' ର ପାହାଚ ଆରୋହଣ ପୂର୍ବକ ଆପଣା ସଂସ୍କୃତି ତଥା କଳାର ଆଭିଜାତ୍ୟ ପ୍ରତିଷ୍ଠା କରିବାକୁ ସମର୍ଥ ହୁଏ। ଭାଷାରେ ଶିଳ୍ପର ଗୌରବ ଏବଂ ସାହିତ୍ୟରେ ନୂତନତାର ପ୍ରାଣ ସଂଚାର ସମ୍ଭବ ହୋଇଥାଏ। ମାତ୍ର ସମସ୍ତ ପ୍ରାଚୁର୍ଯ୍ୟ ଏବଂ ଭାଷାଗତ କାରିଗରୀ ମୂଳରେ ଥାଏ ଲେଖକର ନିଜସ୍ୱ ଶୈଳୀ, ସାମର୍ଥ୍ୟ ଏବଂ ସ୍ୱୟଂସ୍ୱତନ୍ତ୍ର କଳାପୂର୍ଣ୍ଣ ଦୃଷ୍ଟିଭଙ୍ଗୀ । କୁହାଯାଇପାରେ ଯେ ଯେକୌଣସି ସାଧାରଣ ଲୋକକଥିତ ଅପ୍ରଚଳିତ ଭାଷା ହିଁ ଲେଖକୀୟ ବଳିଷ୍ଠ ବ୍ୟକ୍ତିତ୍ୱ ଦ୍ୱାରା ମାର୍ଜିତ ହେଇ ସେହି ଭାଷାର ଆଙ୍ଗିକତାକୁ ସୌଷ୍ଠବ ମଣ୍ଡିତ କରିବାକୁ ସମର୍ଥ ହୁଏ; ସାହିତ୍ୟ ଜଗତରେ ନୂତନ ରୁଚି ତଥା ଭାବମୋଦି ପରିବେଶ ସର୍ଜନା କରିବାରେ ସଫଳ କାମ ହୁଏ । 'ପରିବେଷଣ'ର ଭଙ୍ଗୀ ବା ଢ଼ାଞ୍ଚାରେ ଲେଖକ, ସ୍ୱପ୍ରତିଭାର ପରିଚୟ ଦେବା ସଙ୍ଗେ ସଙ୍ଗେ, ତାଙ୍କ ସୃଷ୍ଟିରେ ବ୍ୟବହୃତ ଭାଷାକୁ ନୂତନ ରୂପ, ନୂତନ ଅର୍ଥ ଓ ନୂତନ ପ୍ରାଣଶକ୍ତିରେ ସମୃଦ୍ଧ କରିଥାନ୍ତି । ଭାଷାର ଅକଳନ୍ତି - ପ୍ରକାଶଶକ୍ତି, ସୌନ୍ଦର୍ଯ୍ୟ ଓ ସାବଲୀଳତା, ଯାହାକୁ ନେଇ ଏକ ଭାଷା ଅନ୍ୟ ଭାଷାଠାରୁ ଅଧିକ ଗୌରବର ପାତ୍ର ହୋଇଥାଏ, ତାହା ସାଧକ ଓ ଲେଖକମାନଙ୍କର ନିଜତ୍ୱର ଅକ୍ଷୟମୁଦ୍ରା ବ୍ୟତୀତ ଅନ୍ୟ କିଛି ନୁହେଁ ।

ଉପନ୍ୟାସର ସଫଳତା ତେଣୁ ଏକ ପକ୍ଷରେ ତା'ର କାହାଣୀ , ଦର୍ଶନ ଏବଂ ଅନ୍ୟପକ୍ଷରେ ତା'ର କଥା କହିବାର ଭଙ୍ଗୀ, ଶବ୍ଦ ସଂଯୋଜନ ଓ ବାକ୍‌ବିନ୍ୟାସ ଉପରେ ସମ୍ପୂର୍ଣ୍ଣ ନିର୍ଭର କରେ । କଥାବସ୍ତୁ ମଧ୍ୟରେ ଅନ୍ତର୍ନିହିତ ଭାବକୁ, ଶାଣିତ , ମାର୍ଜିତ ତଥା ଅନୁଭବ- ସଂବେଦୀ କରିବା ପାଇଁ ଓ ଔପନ୍ୟାସିକ ତା'ର ଶବ୍ଦ ସମ୍ପତ୍ତିକୁ ଘେନି ହାତ ସଫେଇ କରେ... ମ୍ୟାଜିକ୍ ଆରମ୍ଭ କରେ । ଶାବ୍ଦିକ ବ୍ୟଞ୍ଜନା (ଇଙ୍ଗିତଧର୍ମୀ ଭାଷା), ଆର୍କିଟାଇପ୍, ରୂପକଳ୍ପ ଓ ଚିତ୍ରକଳ୍ପ (imagery) ର ଭିନ୍ନ ଭିନ୍ନ ସଂଯୋଜନା ଦ୍ୱାରା ହିଁ ତା'ର ଏ ଉଦ୍ଦେଶ୍ୟଟିକୁ ସେ ସାର୍ଥକ କରିବାକୁ ଚାହେଁ । ଫଳରେ ବ୍ୟାବହାରିକ ଭାଷାଠାରୁ ସାହିତ୍ୟର ଭାଷା ଅନେକ ସମୟରେ ବଦଳିଯାଏ... । ବଦଳିବାକୁ ବାଧ୍ୟ ହୁଏ । କାହିଁକି ନା ପ୍ରକାଶୋନ୍ମୁଖୀ 'ଭାବ' ବସ୍ତୁକୁ ଠିକଣା ଭାବରେ ପାଠକଙ୍କ ନିକଟରେ ପହଞ୍ଚାଇବାକୁ ହେଲେ କେଉଁ ଢ଼ଙ୍ଗରେ ... ଓ କିଭଳି ଭାଷାରେ କହିବା ଲୋଡ଼ା ହୁଏ, କେଉଁଭଳି କଥାଟି କହିଲେ ଆଶା କରୁଥିବା ଅର୍ଥଟି ପାଠକ ଧରିପାରିବ... ବୁଝିପାରିବ–ତାହା ନିର୍ଦ୍ଧାରଣ କରବା ହିଁ ଅନେକ ସମୟରେ ସମସ୍ୟା ହେଇପଡ଼େ ଓ ଏ କ୍ଷେତ୍ରରେ ଔପନ୍ୟାସିକଙ୍କୁ ଜଣେ ଭାଷାବିଷାରଦ ଭୂମିକାରେ ଅବତୀର୍ଣ୍ଣ ହେବାକୁ ହିଁ ପଡ଼ିଥାଏ । ପ୍ରତି ମୁହୂର୍ତ୍ତରେ ତେଣୁ ଲେଖକର ସଫଳତା ତା'ର ଲେଖନୀକୁ ସଂଜତ କରିବାର ସତର୍କ ବିନ୍ଧାଣୀପଣିଆ ଉପରେ ନିର୍ଭର କରେ । ନଚେତ୍ ସାମାନ୍ୟ ଅସତର୍କତା ହିଁ କଥା ଭିତରେ ଅକଥାର ପ୍ରବେଶ ଓ ଶବ୍ଦ ମଧ୍ୟରେ ଅନର୍ଥକ ଶବ୍ଦର ପ୍ରୟୋଗପାଇଁ ସୁଯୋଗ ସୃଷ୍ଟି କରେ, ସାହିତ୍ୟର ମାନ ହ୍ରାସ କରିବାରେ କାରଣ ହୁଏ।

ସୁତରାଂ ଭଙ୍ଗୀପ୍ରଧାନ ଭାଷାଶୈଳୀ (mannered prose style) କୁ ଆଜିର ଲେଖକ ଅଦରକାରୀ ମନେକରି, ପାରମ୍ପରିକ କୃତ୍ରିମ ଢାଞ୍ଚାର ତତ୍‌ସମ ଶବ୍ଦସମ୍ଭାରକୁ ପରିହାର କରିବା ସହିତ ସ୍ୱଚ୍ଛନ୍ଦ ଜୀବନ ପ୍ରବାହ ମଧ୍ୟରେ ଖେଳିବୁଲୁଥିବା ଲୋକ କଥିତ ସରଳ ଭାଷାକୁହିଁ ଅଧିକ ପ୍ରୟୋଜନ ମନେକରି ସାହିତ୍ୟର 'ପୁଞ୍ଜି' ଭାବେ ତାକୁ ସଞ୍ଚୟ କରେ ଓ ଆବଶ୍ୟକ ସ୍ଥଳେ ତା'ର ସଦୁପଯୋଗ ମଧ କରି ଆପଣାର ବିଚକ୍ଷଣତାର ପ୍ରମାଣ ଦିଏ । ପ୍ରମାଣ କରିଦିଏ ଯେ, ସମସ୍ୟା- ବିକ୍ଷୁବ୍ଧ ସମାଜ ଏବଂ ମଣିଷର ଅନ୍ତର୍ଦାହ, ତା'ର ବେଦନାବିଦଗ୍ଧ ହୃଦୟର କଥା... ଗହନ ମନର କଥା ନିହାତି ବିଶ୍ୱସ୍ତ ଭାବରେ କେବଳ ଏଇ ଲୌକିକ ଭାଷା ହିଁ ପ୍ରକାଶ କରିବାକୁ ସମର୍ଥ ! ତେଣୁ , 'ଆଜିର (ଓଡ଼ିଆ) ଔପନ୍ୟାସିକ ମଣିଷର ମନକୁ ଅତିକ୍ରମ କରି ଆତ୍ମା ସହିତ ସମ୍ପର୍କ ଯୋଡ଼ିବାକୁ ଚାହେଁ । ନୈତିକତା ବଦଳରେ ତେଣୁ ଆତ୍ମିକତାକୁ ସେ ଅଧିକଭାବେ ଗୁରୁତ୍ୱର ସହ ବିବେଚନା କରେ । ଏହି କାରଣରୁ ଆଜିର ଉପନ୍ୟାସର ଭାବ ଏବଂ ଭାଷା ଅନେକାଂଶରେ ଅନୈତିକ ଓ ବ୍ୟାକରଣ ବହିର୍ଭୂତ ମନେ ହୋଇଥାଏ ।

ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଲୌକିକ ଭାଷା ପ୍ରୟୋଗର ପରମ୍ପରା ଏବର ନୁହେଁ । କଥାଜନକ ଫକିରମୋହନଙ୍କ ଠାରୁ ଆରମ୍ଭ ହେଇଥିବା ଏଇ ଧାରା କଥାଗୁରୁ ଗୋପୀନାଥଙ୍କ ଠାରେ ଅଧିକ ଯତ୍ନଶୀଳତାର ସହ ପରୀକ୍ଷିତ ହେଇ କଥାକର୍ଣ୍ଣ ଶାନ୍ତନୁଙ୍କ ଠାରେ ଅତ୍ୟଧିକ ପ୍ରଭାବଶାଳୀ ଭାଷାଶୈଳୀର ସଫଳତା ହାସଲ କରିଛି ବୋଲି ମତ ଦିଆଯାଇପାରେ । ଭାଷା ବିଳାସିତାର ଏଇ ନୂତନ ଦିଗନ୍ତରେ– ଓଡ଼ିଆ ଉପନ୍ୟାସ ଜଗତରେ, ଗୋପୀବାବୁଙ୍କ ପରେ ଶାନ୍ତନୁ ହେଉଛନ୍ତି ଦ୍ୱିତୀୟ ବ୍ୟକ୍ତି ଯେ ଭାଷା ବ୍ୟାପାରରେ ଅତି ଦୁଃସାହସିକ ପଦକ୍ଷେପ ହିଁ ଗ୍ରହଣ କରିଛନ୍ତି ।-କନ୍ଧମାଳ ଆଦିବାସୀ, ଗାଁ ଗଣ୍ଡାର ହରିଜନ ତଥା କିଛି ସହରାଞ୍ଚଳର ନିର୍ଦ୍ଦିଷ୍ଟ ଭାଷାକୁ ଗୋପୀବାବୁ ଆପଣା ଉପନ୍ୟାସର ପୁଞ୍ଜିଭାବେ ଆଦରି ନେଇଥିବା ବେଳେ ଶାନ୍ତନୁକୁମାରଙ୍କ ଭାଷାରୁଚିରେ କୌଣସି ବାଛବିଚାର ହିଁ ଦେଖିବାକୁ ମିଳେ ନାହିଁ । ମନେହୁଏ ତାଙ୍କ ପ୍ରଜାପତିଆ ମନ 'ଭାଷାମଧୁ' ପାଇଁ ସବୁ ଫୁଲଙ୍କୁ ସଙ୍ଖୋଳିଛି... ମିତ ବସିଛି, ଧାର ଉଧାର ମାଗିଛି । ପୋକଶୁଙ୍ଘାଠାରୁ କେତକୀ ଫୁଲଯାଏ, ରିକ୍‌ସାବାଲାଠାରୁ ନ୍ୟାୟାଧୀଶ ଓ ଚାଷୁଣୀଠାରୁ କୋଇଲା ସାଉଁଟାଳି ବସ୍ତିଅଞ୍ଚଳର ବୁଢ଼ୀ ପର୍ଯ୍ୟନ୍ତ – ଏମିତି କୌଣସି ଶ୍ରେଣୀର ଭାଷା ନାହିଁ ଆମ ଓଡ଼ିଆରେ, ଯାହାକୁ ହତାଦର କରିଛନ୍ତି ଶାନ୍ତନୁ !

'ଧୁଆଁଳିଆ ମାଟିଗନ୍ଧ ଥିବା ପଙ୍କୁଆ ଭାଷାରେ ତୁଛାମିଛ ଓ ଆତ୍ମ ପ୍ରବଞ୍ଚନା ସବୁକୁ ଫୁଟାଇବା ପାଇଁ ଓ ପୁଣି କ୍ଲେଦାକ୍ତ ପୃଥିବୀର ପଚମାନ ଅଥଚ ଜୀବନର ମହିମ୍ନ ରୂପଗନ୍ଧକୁ ଲେଖିବାପାଇଁ ସେ ସନ୍ତସନ୍ତିଆ ବସ୍ତିଇଲାକାର ଉପାନ୍ତ ଆଇଁଷିଆ ଭାଷାରେ ତାଙ୍କ ଗଳ୍ପ ଉପନ୍ୟାସ ସବୁ ଲେଖିଛନ୍ତି । ଏ ଶିଳ୍ପୀ ସେ ପାଇଁ ସମସ୍ତଙ୍କ ଭିତରେ କେମିତି ନୂଆ ଲାଗନ୍ତି । ଯେଉଁ ଭାବ ସେ ପୋତିଲେ ତାହା ସେପରି ଅଦ୍ଭୁତ ନ ହେଲେ ହେଁ ଆମ ମାଟିରେ ତାହା ନୂଆ ଫଳିଛି ।'' କାହିଁକି ନା, ଜୀବନର ସତ୍ୟ ସନ୍ଧାନ କରିବାକୁ ଯାଇ ଔପନ୍ୟାସିକର ଶିଳ୍ପ ଦୃଷ୍ଟିଟି ଘୂରି ବୁଲିଛି ସାରା ସମାଜ । ଖୋଜି ଖୋଜି ଅଲକର ନର୍ଦ୍ଦମାର ବସ୍ତିରେ ପହଞ୍ଚି ଘୃଣାରେ ନାକ କୁଞ୍ଚେଇ ଦେଇନି । କି ଦୂରଛଡ଼ା ହେଇ ସାମ୍ବାଦିକ ଭଳି - ସତର୍କ ଦୂରତାରେ ସେ ଖବର ଟିପି ଆଣିନି । ପରନ୍ତୁ ନଟେଇର ସୂତା ଖୋଲି ଆପଣାର ମନଗୁଡ଼ିକି ଦେଇଛି ଲୟେଇ । ଯୋଉଁଠି ଶିଳ୍ପୀ– ଆତ୍ମା ଯାଇ ଲୋଟିଛି ପଙ୍କରେ, ମହୁମାଛିଟି ଭଳି ନର୍ଦ୍ଦମା ନର୍କରୁ ବି ରସ ଖୋଜିଛି – ଜୀବନ ଖୋଜିଛି । ଖୋଜିଛି ଯେମିତି ଉପନ୍ୟାସର ଚରିତ୍ରମାନଙ୍କୁ ସର୍ବହରାମାନଙ୍କ ଭିତରେ

... ସାହି ବସ୍ତିରେ। ବ୍ୟାକୁଳ ଭାବେ ଖୋଜି ଆଣିଛି ସେଇ ସବୁ ଚରିତ୍ରମାନଙ୍କୁ – ଯେଉଁମାନେ ସହର ଉପାନ୍ତରେ, ଗାଁର ଗୋହିରୀ ସେପାରିରେ, ଭଦ୍ର ସମାଜର ଚଉପାଢ଼ୀ ତଳେ ଅତି ନ୍ୟୂନ, ମ୍ଳେଛ ଓ ଅଛବ । ଆଉ ସେଇ ସବୁ ଅଛବମାନଙ୍କ ଜୀବନର ଚିତ୍ର ଆଙ୍କିବାକୁ ଯାଇ- ଛଡ଼ାଇ ଆଣିଛି ସେଇମାନଙ୍କ ପାଟିରୁ ଭାଷା.. । ସାଉଁଟି ଆଣିଛି ଭାଷା ନଜିର ଚାଚା' ଠାରୁ ଶିରିଆ ଚାଷୁଣୀଠାରୁ ଶାରୀକଣ୍ଠିଆ ସ୍ୱାଧୀନତା ସଂଗ୍ରାମୀ ଠାରୁ... ଧୋବା ବୁଢ଼ାଠାରୁ ... ଅହଲ୍ୟ । ବାଉରାଣୀ ଠାରୁ ତ ହରେକ କିସମର ଭାଷା ବୟାନରେ ଗଢ଼ିତୋଳିଛନ୍ତି ଉପନ୍ୟାସର ଚିତ୍ରଶାଳା ଶାନ୍ତନୁ ।

ଶାନ୍ତନୁଙ୍କ ଭାଷା ପ୍ରୟୋଗ କ୍ଷେତ୍ରରେ ଦୁଃସାହସିକତା ଏବଂ ଲେଖକୀୟ ସ୍ୱାଧୀନତା ଘେନି ଏଠାରେ Thomas A Sebeokଙ୍କ ଉକ୍ତିଟି ଉଦ୍ଧାର କରାଗଲେ ଯଥାର୍ଥ ହେବ : "Naturalists for their carelessness in construction and their language without realizing that these matters seemed quite unimportant to them. They aimed for truth, not artistry, the novel or drama must offer a "slice of life" not the structural artifice."

କଳାପାଇଁ କଳା (Art for Art's sake) ସୃଷ୍ଟିରେ ଔପନ୍ୟାସିକର ମହତ୍ତ୍ୱ ତେଣୁ ପ୍ରକଟିତ ହୁଏ ନାହିଁ । ଜୀବନ ସକାଶେ କଳାର ମହତାକାଙ୍କ୍ଷା ହିଁ ସର୍ବବାଦୀ ସ୍ୱୀକୃତ । ଜୀବନ ଶିଳ୍ପୀ ଶାନ୍ତନୁ ଆଚାର୍ଯ୍ୟଙ୍କ କଳାର କଳେବର ତେଣୁ ବାହ୍ୟାଡ଼ମ୍ବର, ଦୃଶ୍ୟମାନ ଚାକଚକ୍ୟ ଓ ଭାଷାର ଭେଳିକି ମଧ୍ୟରେ ଲକ୍ଷ୍ୟଭ୍ରଷ୍ଟ ବା ପୀଡ଼ିତ ନୁହେଁ । ପରନ୍ତୁ ଭାଷା ପ୍ରୟୋଗ କ୍ଷେତ୍ରରେ ନୂତନ ପ୍ରଚୋଦନା ଏବଂ ବୈପ୍ଳବିକ ସାହିତ୍ୟିକ ପଦକ୍ଷେପ ହିଁ ସମଗ୍ର ଓଡ଼ିଆ ଉପନ୍ୟାସକାରମାନଙ୍କ ସପକ୍ଷରେ ଏକ ଜବାବ୍; ଏକ ଦୁର୍ବାର ଆହ୍ୱାନ ବୋଲି କୁହାଯାଇ ପାରେ ।

ଶାନ୍ତନୁଙ୍କର 'ନରକିନ୍ନର' ଉପନ୍ୟାସଠାରୁ 'ମନ୍ତ୍ରୀଙ୍କ ସେୟାର' ପର୍ଯ୍ୟନ୍ତ ପ୍ରତିଟି ଉପନ୍ୟାସର ଭାଷାରେ, ପ୍ରୋକ୍ତ ଅଭିନବ ଭାଷା – କୌଶଳର ପ୍ରୟୋଗ ଦ୍ୱାରା ଜୀବନର ଅନ୍ତରୀଣ ସତ୍ୟ ଉପଲବ୍ଧି ପାଇଁ ଯେଉଁ ମାନବିକ ପ୍ରୟାସ ହିଁ ନିହିତ, ତାହାକୁ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଉପନ୍ୟାସ ଇତିହାସରେ ଶାନ୍ତନୁ କୁମାରୀୟ ନିଷ୍ଠା ତଥା ମର୍ଯ୍ୟାଦାବୋଧର ଏକମାତ୍ର ପ୍ରାମାଣିକ ସନନ୍ଦ ଭାବରେ ଗ୍ରହଣ କରାଯାଇପାରେ । କଥିତ ଭାଷାର ବହୁବର୍ଣ୍ଣ ଅନ୍ତରଙ୍ଗ ବିଧାନଟି ଔପନ୍ୟାସିକର ତଥାକଥିତ 'ଗାମ୍ଭୀର୍ଯ୍ୟ' ରକ୍ଷା କରିବା ଦିଗରେ ଅସମର୍ଥ ହେଇପାରେ ସତ, ମାତ୍ର ଦଳିତ ନିପୀଡ଼ିତର ଜୀବନ-ସତ୍ୟ ଖୋଜିବା ମାର୍ଗରେ ନିହିତ ଥିବା ସଂଗୁପ୍ତ ରହସ୍ୟଟି ଏହା ଦ୍ୱାରା ସହଜରେ ଧରାଦିଏ... ! 'ନରକିନ୍ନର' ଉପନ୍ୟାସର ଗୋଦରୀ ବୁଢ଼ୀ, କାମାୟା, ରାମ୍ ସିଂ, ନଜିର ମିଆଁ, ହରିମିସ୍ତ୍ରୀ, ଲଣ୍ଡିବାଲୀ ମାଇକିନା, ବୀର ସାମଲ ଓ ଏକ ଗୋଡ଼ିକିଆ ଭୈରବ ଚରିତ ମଧ୍ୟରେ ଲୌକିକ ଭାଷାର ବୈବିଧ ଧୂପସମ୍ଭାର ହିଁ ଉଜ୍ଜୀବିତ ହୋଇ ରହିଥିବାର ଲକ୍ଷ୍ୟ କରାଯାଇପାରେ ।

ବସ୍ତିର ଗୋଦରୀବୁଢ଼ୀ, ଯାର ଘର ନାହିଁ, ପରିବାର ନାହିଁ । ବାରବୁଲାଙ୍କ ହୁଗୁଳା ସଂପର୍କ ଘେନି ଯାର ଜୀବନ - '' ଅଳପେଇଷ, ଆଗେ ଯଦି ଆଇଚୁ ଆଗେ ତ ଯିବୁ । କାହାର ଗରଜ ନାଇଁ ତତେ ରଖିବ ? ତିନିକୋଡ଼ି ବରଷ ତ ଏ ସଂସାରରୁ ଖାଇଲୁଣି । xxx ଅଳପେଇଷ, ଶିଙ୍ଘ ଘଷି ହଉଚି ମୋ ଠେଇଁ ?''( ନର କିନ୍ନର -ପୃ-୮)

ପେଟ ପାଟଣାର ମୁହାଁସରେ ବାଆଁରା ଭାବେ, କଣିକିଆ କି ସମାଜଠୁଁ ଆଡ଼ହେଇ ରହିଥିବା ଗୋଟେ ପାରିବାରିକ ବିକ୍ଷୁବ୍ଧ ଜୀବନ ! 'ଆଲୋ ସବାଖାଇ, ଡାହାଣୀ ବାଂଝି । ତୋର ପୁଅ କିଏ, ନାତି କିଏ ଆଉ ଘଇତା କିଏ ଲୋ । ମୋ ଛୁଆଙ୍କ ଉପରେ ଫେଏର ତୋଅର ଆଖିଲୋ ! ହଇଲୋ ହେ ବାରବୁଲି ...,' (ଲଣ୍ଡ୍ରିବାଲି ଧୋବଣୀର ସଂଳାପ -ପୃ-୩୨-ତତ୍ରୈବ)

ଉଦ୍‌ବାସ୍ତୁର ଜୀବନ ଘେନି ବଞ୍ଚିଥିବା ଷ୍ଟେସନ କଡ଼ର ଜଣେ ମୁସଲମାନ - ନଜିର ଚାଚାର ଭାଷା, ''ଆବେ ଏ ବାତ୍ ମାଲୁମ ନେଇଁ ? – ତୁ ଏତନା ବଡ଼ା ହୋଗିୟା, ତୁଝେ ଏତ୍‌ନାଇ ମାଲୁମ ନେହିଁ କୈସେରେ ? xxx ଶେର୍ ତୋ ଶାଲା ଏକଦମ୍ ଦିମାକ୍‌ଦାର ଜାନୁଆର୍ – ସେ ଶାଲା ସବ୍ ସମଝିପାରେ (ତତୈବ- ପୃ- ୫୩)''

ଜଣେ ବିହାରୀ ଫେରିଓ୍ୱାଲାର ସଂଳାପ '' ଅବ୍‌ଲେ ଲୋ ଦବାଇ – ଏକ୍ ଏକ୍ ଫେଣ୍ଟା ହରରୋଜ୍ ଆଖୌଁମେଁତିନ୍ ଦଫା ଫେଁକୋ ଔର ମଚାଲୋ ଆହିସ୍ତା ଆହିସ୍ତା– ଫିର୍ ଇସ୍‌କେ ବାଦ୍ ଚଷମା ' (ପୃ- ଭୂର୍ଜପତ୍ର - ୧୩୮୮ ସାଲ୍-ମାଘ-ଚୈତ୍ର ସଂଖ୍ୟାରେ ପ୍ରକାଶିତ 'ଶକୁନ୍ତଳା'ର ଅଂଶ- ପୃ-୧ )

ରେଲ ଲାଇନ କଡୁ କୋଇଲା ଗୋଟେଇ ପେଟ ପାଳୁଥିବା ତମ୍ପୀମୁହିଁ ବୁଢ଼ୀ : ''ଏ ପୁଅ ହେ ! XXX ଆରେ ହେ ! ମୋ ବାପଟା ପରା, ଧନଟା ପରା, ଧରମ ହେବ ତୋର । ବୁଢ଼ୀ ନୋକ- ଉଠି ପାରୁନାଇଁ, ମୋ ବେଉସା ବୁଡ଼ାନାରେ ହେ- XXX ଏ ପୁଅ... ଏ ଧନ ! ) ପୃଷ୍ଠା- ୫୭, ନରକିନ୍ନର)

ପ୍ରତିଟି ଚରିତ୍ରର ଭାଷା ଏବଂ ସଂଳାପ ଭିତରେ ସ୍ୱାଭାବିକ ଢ଼ଙ୍ଗରେ ପରଖି ବସିଲେ, ଗୋଟିଏ ଗୋଟିଏ ଶ୍ରେଣୀ, ଗୋଟିଏ ଗୋଟିଏ ଗୋଷ୍ଠୀ ଜୀବନର ଗନ୍ଧ ସ୍ପଷ୍ଟ ଉକୁଟି ଉଠେ । ଯେମିତି ଶାନ୍ତନୁ କୁମାରଙ୍କ ଭାଷା ଚରିତ୍ର ପାଇଁ ହିଁ ନୁହେଁ, ଭାଷା ହିଁ ତାଙ୍କର ଚରିତ୍ର । ଭାଷା କହିଦିଏ ତା'ର ପରିଚୟ– ଚରିତ୍ରର ପ୍ରମାଣପତ୍ର ଉପସ୍ଥାପନ କରେ ଭାଷା । ବାଛୁଆରୀ ପଡ଼ିଯାଇ ଥିବା ଗାଁ କଣର ଭାଷା– ଯାହା ଇତିହାସରୁ ହଜିଯିବାକୁ ବସିଛି, ସେହି ସବୁ ଅଚଳନ୍ତି ଭାଷାକୁ ଆପଣାର 'ସାହିତ୍ୟ-ଯାଦୁଘରେ' ଯେମିତି ସାଇତି ରଖିବାପାଇଁ ସ୍ରଷ୍ଟା ଶାନ୍ତନୁ ଉନ୍ମୁଖ ହୋଇ ପଡ଼ିଛନ୍ତି :

''ମୁଁ ମନାକରୁଚି ଏ ନିଆଁଲଗା ବଉଁଶକୁ- ଆମର ଯାତରା ତାମସା ଦରକାର ନାହିଁ, ଆମର ଇସ୍କୁଲ ପାଠ ଦରକାର ନାହିଁ । xxx ସେ ଦିନୁ ମୁଁ କହୁଚି ଏ ଯୋଗିନୀଖିଆକୁ...''(ସର୍ବସ୍ୱାନ୍ତ ହୋଇଯାଇଥିବା ଅଭାବୀ ପରିବାରର ଗୋଟେ ନାରୀ– ନଟବରର ମା: ଶତାବ୍ଦୀର ନଚିକେତା- ପୃ- ୧୭୪)

''ମେତେ ଚିହ୍ନିଚରେ ବାଡ଼ିପୋଡ଼ାଏ ? ନାଜ ଲାଗୁନାଇଁ? -ଏତେ ମିଣିପି ଆଇଚ ଗାଁଟା ସାରା ନୋକ- xxx ନାଜ ନାଇଁ ! ଏଇ କୁଆଡ଼େ ଗାନ୍ଧି ମହାତମା ସରକାର ।'' (ତତ୍ରୈବ-ପୃ- ୧୨୮/ ମୋହନା ହାଡ଼ିର ସ୍ତ୍ରୀ) ପୁଣି ସୁକୁମାରୀର ଭାଷା 'ମୁଁ ନିଆଁନାଗୀ– ମୋର ମନେ ନାହିଁ- ଡାକ୍ତରଖାନା ଗଲାବେଳକୁ ନଟଭାଇ କହିଯାଇଥେଲେ- ଆପଣଙ୍କୁ ପଚାରିକିନି ଖାଇବାକୁ ଦବାକୁ' (ପୃ- ୧୫୪) ଭବାନୀ ପ୍ରସାଦଙ୍କ ଚାକର : ''ବୁଢ଼ାବାବୁ ଚିଠି ନେଖିଥେଲେ, ତମ ପରୀକ୍ଷା ଫି ବାବତ ଟଙ୍କା ଆଉଚି ପଛରେ– ଧାନ ବିକିରି ହେଲେ ।'' (ପୃ- ୫୭)

ରୈକ୍ୱର ମା' 'ଦକ୍ଷିଣାବର୍ତ୍ତ' ଉପନ୍ୟାସରେ : ''ତୁ ତ ଜନ୍ମ ହେଲୁ ଗହୀର ବିଲରେ ଟେଣ୍ଟେଇ ଡିମ ପାରିଲାପରି, ଘଣ୍ଟାଏ କାଳ ତୋ' ତୋଟିରେ ଶବ୍ଦ ଦେଲା ନାଇଁ ଶଠୀଦୁଶୀ କିଟି କିଟି ଅନ୍ଧାର... ।(ପୃ -୬)

ଜଣେ ଚାଷୁଣିର ଭାଷା : ''ସେ ସୁଆଗ ରଖିଦିଅ ତେଣିକି । ଆଗ କହିଲ-ସେ ଜମିଦାର ଖଣ୍ଡିଆଏ ପୁଣି ବାହାରିଲେଣି ନା ପଦାକୁ ! ଆମ ଦଳ ହାରିଗଲେ କିଆଁ ? ତମେ ପରା ଜିହଲ ଖଟିଥେଲ ! ଯୋଗିନୀଖିଆ ତଥାପି ଭୋଟ ଦେବେ ନାହିଁ ତୁମ ଦଳକୁ ?'' (ଅନ୍ୟ ଏକ ସମୟ, ଅନ୍ୟ ଏକ ଭାରତ- ପୃ-୭୬)

ଅନ୍ୟ ଏକ ଭାରତରେ ପରିବେଷ୍ଟିତ ଅର୍ଜୁନା ପାଣର ଭାଷା : ''ବେ ହେଡ଼ାଖିଆ ଲକ୍ଷିଆ ବାହ୍ମଣ ! xxx ଆବେ ଉଠୁଚି କି ନାଇଁ ! xxx ତୋ ମା'କୁ ପଠାଣ ନଉ ! ତୋ ଭଉଣୀକୁ ହାଡି ନଉ ।

(ପୃ-୨୪-୨୫)

ଭାଷାର ଭିନ୍ନ କିସମ ଘେନି ଆଉ କେତୋଟି ଉଦାହରଣ ଦେଲେ ଯଥାର୍ଥ ହେବ । 'ଶକୁନ୍ତଳା'ରେ ବେପାରୀ, ପୁଲିସ୍ ଓ ପ୍ରାକ୍ତନ ମଣିଷର ରହଣିଆ ଭାଷାକୁ ନିଆଗଲେ ଜଣାଯିବ ଭାଷାର ସ୍ୱାତନ୍ତ୍ୟ ଶାନ୍ତନୁଙ୍କ ଉପନ୍ୟାସରେ କେଡ଼େ ବିଚିତ୍ର ।

ଜଣେ ବେପାରୀ କହୁଚି, ''ଆରେ ସରକାର ପହ୍ଲାରେ ହାତ ମାରନା । ସେ୍ ଜନ୍ତୁ ପହ୍ନେଇବ ଯଦି ପଇସା ବାହାରିବ ନାଇଁ - ବାହାରିବ ହିଣ୍ଡୁଆ ! ' (ଶକୁନ୍ତଳା-ପୃ- ୪୬) ପୋଲିସ , ''ଆବେ କେତେ ଫଟେଇ ହଉଚୁ ମଣିଷ ମାରିବା ମଣିଷ ମାରିବା କଥା ପଚାରି ପଚାରିକା ଶାଲା କୁକୁର ତୋ... ମହାଜନକା ବଚା ? ପୁଲିସବାଲାକୁ ଶାଲା କଅଣ ସମଜିଚ କିବେ !'' (ପୃ-୩୧୦) କଣୁଆଁ ରାଜପୁତ୍ରଙ୍କ ମୃତ୍ୟୁ ଯେକି ପ୍ରଚଳିତ ମଣିଷର ରହସ୍ୟମୟ ଭାଷା ଲୋକମୁଖରେ ଯେଉଁଭଳି ଭାବେ ପ୍ରକାଶିତ, ''ରାଜାପୁଅ କେତେ ଓଷଦ ବଇଦ କବିରାଜି କଲା। ହେଲେ ପାରିଲା କି ? ୟାପରେ ବନ୍ଧୁକ ଚୁଟୁମିବା ଛଡ଼ା ଆଉ କି ରାସ୍ତା ଥିଲା କହୁନ ! କିନ୍ତୁ ରାଜାପୁଅ ସେ ! କିଛି ତମ ଆମ ଭଳି ନୁହଁ ଯେ ଏକା ଗୁଳିକେ ଶେଷ । ଛ ଛ ଗୁଳି ମାଇଲା ସେ । କାହାକୁ ? ତମ ଆମ ଭଳି ନିଜ ଛାତିକୁ ? ନିଜ ମୁଣ୍ଡକୁ ? ମାଇଲା କାହାକୁ– ଇନ୍ଦ୍ରିଙ୍କୁ, ପାଞ୍ଚ ଇନ୍ଦ୍ରିର ପାଞ୍ଚ ରିପୁଙ୍କୁ । ଆଗ ମାଇଲା ପାଟି ଭିତରେ ଜିଭ ଇନ୍ଦ୍ରିକୁ । xxx ସେଇଠୁ ଯୁବରାଜ ମାଇଲେ ତାଙ୍କର ଦ୍ୱିତୀୟ ଗୁଳି- କାହାକୁ କାନ ଇନ୍ଦ୍ରିକୁ । xxx କେତେ କାନ୍ଦ ନ ଶୁଣୁଚି ନିତି ଏ ଶଳା ଇନ୍ଦ୍ରି କହିଲ ! ପହିଲେ ଆଖି ନ ଫିଟୁଣୁ ନିଜ ତୁଣ୍ଡରୁ କୁଆଁ କୁଆଁ ଶବ୍ଦ ପରା ଶୁଣେ ଏ ବାହାଞ୍ଚ !'' (ଶକୁନ୍ତଳା- ପୃ- ୧୭)

ଜୀବନର ମଧୁ ସଂଭାବନା, ତା'ର ନିଛକ ସତ୍ୟାନ୍ୱେଷା ଏବଂ ଗହନ ଆବେଗଟି କଥିତଭାଷା ବ୍ୟତିରେକେ ଏତିକି ସହଜ ଓ ଭାବପୂର୍ଣ୍ଣ ମନେହେବା ଆଦୌ ସମ୍ଭବପର ନୁହେଁ । ସାହିତ୍ୟିକ ଶିଷ୍ଟତା ଦୃଷ୍ଟିରୁ ବର୍ଣ୍ଣଶୁଦ୍ଧି ଆଶାଳୀନତା, ମ୍ଳେଚ୍ଛ ଓ ଆଶ୍ରାବ୍ୟ ଭାଷାର ଦୋଷ ଦୁଷ୍ଟତାରେ ଏସବୁକୁ ରୁଚିହୀନ ବୋଲି ତଥାକଥିତ ସାହିତ୍ୟ ସମାଲୋଚକମାନେ ଡେଙ୍ଗୁରା ପିଟିଲେ ବି ଭାବଗମ୍ୟତା ଓ ଅର୍ଥାନୁଭବ ଦିଗରେ ୟାଠାରୁ ବଳିଷ୍ଠ ଶୈଳୀ ଆଉ ଥାଇ ନପାରେ ବୋଲି ଦୃଢ଼ତାର ସହ କୁହାଯାଇପାରେ । ଆମାର୍ଜିତ ବେଆଡ଼ା ଗ୍ରାମ୍ୟ ଚଷାଚଷଣ୍ଡିର ଭାଷା, ହରିଜନର ଅଳନ୍ଧୁଲଗା ଅଚଛା ଭାଷା, ବସ୍ତିଅଞ୍ଚଳ କୁଳିର

ସହରୀମିଶା ଭେଜାଲିଭାଷା, ପାଠଶାଠରୁ ଦୂରରେ ଥିବା ମାଇପି ମଣିଷଙ୍କର ଅମୁହରି ଗାଉଁଲି ଭାଷା- ଯାହାକୁ ପଙ୍କୁଆ, ଆଇଁଷିଣିଆ, ଉଷୁମୁଳିଆ କି ଅଖାଡୁଆର ବିଶେଷଣରେ ଚିହ୍ନିତ କଲେ ବି, ଏଇ କଥିତ ଭାଷାର ନିରାଡ଼ମ୍ବର କଳେବର ମଧ୍ୟରେ ଯେ ଦିବ୍ୟ ସୁନ୍ଦର 'ଭାବ'ର ମୂର୍ତ୍ତିଟି ଗୋପ୍ୟ ଥାଏ-ତାହା କେହି ଅସ୍ୱୀକାର କରିପାରିବେ ହିଁ ନାହିଁ । ଏ ପ୍ରସଙ୍ଗରେ Herbert Read ଙ୍କ ମତଟି ଉଦ୍ଧାର କଲେ କଥିତ ଭାଷାର ଶକ୍ତି ଓ ସାମର୍ଥ୍ୟ ସମ୍ପର୍କରେ ଧାରଣା ଅଧିକ ସ୍ପଷ୍ଟ ହେବ । "reflect the speed of life, the pressure of life, its very very essence."

କୁଶଳୀ କୁମ୍ଭାର ହାତରେ କଞ୍ଚାନଚପଚ ମାଟିଆ ଦରବ ପରି କଞ୍ଚା କଞ୍ଚା ଭାଷାର ଅଷଣ୍ଡୁଣା ପ୍ରୟୋଗ ହିଁ ଶାନ୍ତନୁଙ୍କ ଶୈଳୀର ଏକାନ୍ତ ବୈଶିଷ୍ଟ୍ୟ । କେତେବେଳେ ତେଣୁ ଉଲଗ୍ନ- ଆଦିମ ପ୍ରବୃତ୍ତିର ନିରୁତା ପ୍ରକାଶପାଇଁ ଶାନ୍ତନୁଙ୍କ ଭାଷା ସେମିତି ଅବିକଳ ଅଚଞ୍ଚା ଆଇଁଷିଆ ଭାଷାର ଅକୃପଣ ଢ଼ଙ୍ଗରେ ପ୍ରକାଶିତ ହେଇଛି, ତ କେତେବେଳେ ଅପରିଶୁଦ୍ଧ ମଣିଷର ଚାରିତ୍ରିକ ଗୁରୁତ୍ୱ ଆରୋପଣ ନିମନ୍ତେ ସାହିତ୍ୟରେ ଅବ୍ୟବହାର୍ଯ୍ୟ ଓ ଅପରିଶୀଳିତ / ଅପରିଚ୍ଛନ୍ନ ମଣିଷର ଅନ୍ତରର ଭାଷା ନିହାତି ଅକୃତ୍ରିମ ଉପାୟରେ ଉପନ୍ୟାସରେ ଉତୁରି ପଡ଼ିଛି । ଯେଉଁଠାରେ ଖୋଜି ବସିଲେ ଅଶିଷ୍ଟତା ବା ଅଶ୍ଳୀଳତାର ଗନ୍ଧ ବି ବାରିହୁଏନା ଆଦୌ । ତେଣୁ ତ, ଓଡ଼ିଆ ଉପନ୍ୟାସ ସାହିତ୍ୟର ବଳିଷ୍ଠ ରୂପକାର ଭାବେ ଏବଂ ଅପୂର୍ବ ଭାଷା କାରିଗରୀର ଏକନିଷ୍ଠ ଭାଷ୍ୟକାର ଭାବେ ଶାନ୍ତନୁ ଆଚାର୍ଯ୍ୟଙ୍କ ସିଦ୍ଧି ତାଙ୍କର ଶ୍ରେଷ୍ଠ ସଫଳତା । ଏ ପ୍ରସଙ୍ଗରେ ସମାଲୋଚକ ଡକ୍ଟର ବାଉରୀ ବନ୍ଧୁ କରଙ୍କର ମତ ହିଁ ପ୍ରଣିଧାନଯୋଗ୍ୟ ।

''ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ଉପନ୍ୟାସ ଗୁଡ଼ିକର ସଫଳତା ଅନେକାଂଶରେ ତାଙ୍କର ସାଧାରଣ ରଚନାଶୈଳୀଦ୍ୱାରା ସମ୍ଭବ ହୋଇଛି । ବ୍ୟାବହାରିକ ଭାଷା ପ୍ରୟୋଗରେ ତାଙ୍କ ସମକକ୍ଷ ଔପନ୍ୟାସିକଟିଏ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ବିରଳ । ଯେତେ ଅଶ୍ଳୀଳ ହେଲେ ମଧ୍ୟ ସେ ସବୁକୁ ସାହିତ୍ୟରେ ସ୍ଥାନ ଦେବାକୁ ସେ କୁଣ୍ଠିତ ହୋଇ ନାହାନ୍ତି ।'' ପରିବେଶ ଏବଂ ପରିସ୍ଥିତିର ଗୁରୁତ୍ୱ ଉପଲବ୍ଧି କରି, ଔପନ୍ୟାସିକର ଭାଷା ତଦନୁସାରେ କେତେବେଳେ ଭାବ- ଗମ୍ଭୀର ତ, କେତେବେଳେ କାବ୍ୟିକ ସୁଲଭ ଚଟୁଳତାରେ ନିହାତି ଜୀବନ ଚଞ୍ଚଳ । ଭାଷା ପ୍ରୟୋଗ କାଳରେ ମିଶ୍ର ବା ଯାବନିକ ଭାଷା, ଅଥବା ହିନ୍ଦୀ ଓ ଇଂରାଜୀ ମିଶା ଓଡ଼ିଆ ଭାଷାର ପ୍ରୟୋଗ କ୍ଷେତ୍ରରେ ଶାନ୍ତନୁ ଆଦୌ ନିଜକୁ ଅପ୍ରତିଭ ମଣି ନାହାନ୍ତି କିମ୍ବା ଦୋଦୋପାଞ୍ଚ ବିଚାରରେ ସେଭଳି ଭାଷା ପ୍ରୟୋଗକୁ ଏଡ଼ିଯାଇ ନାହାନ୍ତି । ସେଇଭଳି କେତେକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ କରାଗଲା ।

''ଗୁରୁ, ସାରା ପୃଥିବୀରେ ହିନ୍ଦୁଙ୍କ ପରି, ଅବ୍‌ସେସ୍‌ଡ଼' ଲୋକ ଆଉ ଅଛନ୍ତି କେଉଁଠି ଭଲା କୁହ ତ । ଯେଉଁମାନେ ଗୋଟେ ଘୁଷୁରୁଣୀ ପ୍ରତି ସେକ୍‌ସସୁଆଲି, ଏତେ ଆକୃଷ୍ଟ ସେମାନେ ପୃଥିବୀକୁ ବେଦ ଉପନିଷଦ ଭଳି 'ଟ୍ରାସ' ଉପହାର ନଦେବେ ତ ଦେବେ ଆଉ କଅଣ'' (ଶକୁନ୍ତଳା- ପୃ- ୨୦୨) ''ଗାନ୍ଧିବାଦ୍ ଗୋଟାଏ ଗାଲୁ- ହୋକ୍‌ସ'' (ପୃ- ୩୮୩) 'ୟୁ, ମିନ୍- ଆଓ୍ୱାର ଓଲ୍‌ଡ ମ୍ୟାନ ଜଣେ ରେପିଷ୍ଟ !'' (ପୃ- ୩୮୫) ଖାଣ୍ଟି ଓଡ଼ିଆ ସହ କଥନଶୈଳୀ ଅନୁସରରଣରେ କେତେକ ଖାଣ୍ଟି ଇଂରାଜୀ ଶବ୍ଦ ପଦ (term) ଏକଭଳି ସଂଯୋଜିତ ହୋଇ ଭାଷାର ସାବଲୀଳ- ତାକୁ ପ୍ରକାଶ କରୁଥିବା ବେଳେ, କେତେକ ସ୍ଥାନରେ ସମ୍ପୂର୍ଣ୍ଣ ଇଂରାଜୀ ବାକ୍ୟର ପ୍ରୟୋଗ ମଧ୍ୟ ବିନା ଦ୍ୱିଧାରେ ଓ ସ୍ୱାଭାବିକ

ଢ଼ଙ୍ଗରେ ପ୍ରକାଶ କରି ସେଇ ସେଇ ଏକା ଚମତ୍କାରିତା ଔପନ୍ୟାସିକ ପ୍ରଦର୍ଶନ କରିଛନ୍ତି । ଯଥା: କହିପକେଇଲେ ସେ, 'ଓ ଗଅଡ୍' ! ସୋ ୟୁ ହାଭ୍ କମ୍ ଆଟ୍‌ଲାଷ୍ଟ ଟୁ ସିଇକ୍ ସେଲ୍‌ଟର ହିଅର ଦିସ୍ ନାଇଟ୍ ଇନ୍ ସଚ୍ ଏ ଫ୍ୟାସନ୍' (ମନ୍ତ୍ରୀଙ୍କ ସେୟାର, କଥା - ପୃ-୬) ସେମିତି- 'ପ୍ଲିଜ ଡୋଣ୍ଟଆଇ ଆମ୍ ଓକେ, କ୍ୱାଇଟ୍ ଓକେ '' (ତତୈବ-ପୃ- ୧୧) ପାଠକୀୟ ଭାବଆସ୍ୱାଦନ ପ୍ରକ୍ରିୟାରେ ଏଇ ସଂପୂର୍ଣ୍ଣ ଇଂରାଜୀ ଭାଷାର ପ୍ରୟୋଗ କୌଣସି ବ୍ୟାଘାତ କରିବାର ପ୍ରଶ୍ନ ତ ଉଠିପାରେନା, ପରନ୍ତୁ ସ୍ୱାଭାବିକ ଓ ବାସ୍ତବିକତାର ନିଛକ ମାୟାବଳୟ ଭିତରେ ପାଠକ ଆତ୍ମବିସ୍ମୃତ ହେଇପଡ଼େ । ସାହିତ୍ୟିକର କଳ୍ପଜଗତ (ମାୟା) ଠାରୁ ସେ ସଚେତନ ବସ୍ତୁଜଗତର ତାରତମ୍ୟ ବି ପାଶୋରି ଯାଏ ।

ହିନ୍ଦୀ ଏବଂ ଇଂରାଜୀ ଭାଷାର ଅପଭ୍ରଂଶ ତଥା ମିଶ୍ରିତ ଭାଷାର ଏକ କଳାତ୍ମକ ପ୍ରକାଶ ଅପୂର୍ବ ଢ଼ଙ୍ଗରେ ଶାନ୍ତନୁଙ୍କ ଉପନ୍ୟାସରେ ସଂଯୋଜିତ ହେଇଥିବାର ଲକ୍ଷ୍ୟ କରାଯାଇପାରେ : 'ହେ, ଥୋଡ଼ା ରହବେ ଛୋକ୍ରି ! କେତେନା ଚାଉଳ, ଚିନି, କିରୋସିନ ଲବୁ କହୁନୁ - ଦଉଡୁଛୁ କାହିଁକି ? (ଯାତ୍ରାର ପ୍ରଥମ ପାଦ, ପୃ- ୧୩)

''ଓ ପୋର୍ ଫେସର ସାହେବ ! ତୁମ୍ ଅବି ପୋର୍‌ଫେସର ବନ୍‌ଗିୟା- ନେହିଁ ?''

(ଶତାବ୍ଦୀର ନଚିକେତା, ପୃ-୧୩୮)

''କାପ୍‌ଟେଲିଷ୍ଟ ଡାବୁନ ଡାବୁନ

ଡାବୁନ୍ ଡାବୁନ୍ କପ୍‌ଟେଲିଷ୍ଟ'' XXX

"ପଇସା ବାଲାକୋ- ଫାଡ୍ ଦୋ ।

ସିନେମା ଘର କୋ- ତାଡ୍ ଦୋ

"ବାଲ୍‌କନି ଖୁଣ୍ଟିକୋ- ଉପାଡ୍ ଦୋ'' ଇତ୍ୟାଦି (ନରକିନ୍ନର -ପୃ- ୧୪୬)

ଉପରୋକ୍ତ ବାକ୍ୟଗଠନ ଓ ସଂଳାପ ପ୍ରୟୋଗ କାଳରେ ହିନ୍ଦୀ ଓ ଇଂରାଜୀ ଭାଷାର ବିକୃତ ପ୍ରୟୋଗ, ଅର୍ଥ ଏବଂ ଭାବ ଅବବୋଧ କ୍ଷେତ୍ରରେ ଅନ୍ତରାୟ ହୁଏ ନାହିଁ । ବରଂ ପାରିପାର୍ଶ୍ୱିକତା, ସ୍ଥାନିକତା ଏବଂ ଚାରିତ୍ରିକ ବିଶିଷ୍ଟତା ହିଁ ଉପନ୍ୟାସର କାବ୍ୟିକ ରସମୋଦିତାକୁ ଅଧିକ ତୀବ୍ର ଏବଂ ମର୍ମଭେଦୀ କରାଏ। ଏଭଳି ଭାଷା ପ୍ରୟୋଗ ଯେ ଗର୍ହିତ ଏହା କୁହାଯାଇ ନପାରେ । ଯେଣୁ ଭାଷାବିଦ୍‌ମାନଙ୍କର ଶାସ୍ତ୍ରୀୟ ସ୍ୱୀକୃତି ଏହା ପଛରେ ଦୃଢ଼ ଭାବେ ହିଁ ଉପସ୍ଥାପିତ । ଭାଷାବିଦ୍ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ମତରେ ''ଯେତେଦୂର ପର୍ଯ୍ୟନ୍ତ ବିଶୁଦ୍ଧ ଘରୋଇ ଓଡ଼ିଆ ଭାଷା ବ୍ୟବହାର କରି ଆମ୍ଭମାନଙ୍କ ଭାବବ୍ୟକ୍ତ କରିବା ତେତିକି ଉତ୍ତମ । ଯେଉଁଠାରେ ଉପାୟାନ୍ତର ନାହିଁ, କିମ୍ବା ନକଲେ ଶୋଭନୀୟ ହେବ ନାହିଁ, ସେଠାରେ ମାର୍ଜିତ ଆମଦାନୀ ଓ Conventional (ଆଡ଼ମ୍ବରଯୁକ୍ତ) ଭାଷା ବ୍ୟବହାର କରିବା ଯୁକ୍ତିସିଦ୍ଧ ।'' କୁହାଯାଇପାରେ ଯେ, ଏଇଭଳି ଦେଶୀୟ କଥିତ ଓ ବୈଦେଶିକ ତଥା ଲୌକିକ କଥୋପକଥନ ଶୈଳୀର ଭାଷା ସଂଳାପ ପ୍ରୟୋଗ ଦ୍ୱାରା, ଉପନ୍ୟାସର କଳା-ଶିଳ୍ପ କ୍ଷୁର୍ଣ୍ଣ ହେବା ପରିବର୍ତ୍ତେ ଏକ ଅଭିନବ ସାହିତ୍ୟିକ ଭାଷାର ଅନ୍ତରୀଣ ସାବଲୀଳତା ହିଁ ସ୍ୱତଃସ୍ଫୂର୍ତ୍ତ ଆବେଗର ଭାବ-ପାଠକମାନଙ୍କ ଭିତରେ ଉଦ୍ବେରିତ କରିବାକୁ ସମର୍ଥ ହୋଇଥାଏ ।

ଭାଷା ବିନ୍ୟାସର ବୈଚିତ୍ର୍ର ଏବଂ ଭାବର ଅପୂର୍ବ ବର୍ଣ୍ଣାଳୀ ସୃଷ୍ଟି ନିମନ୍ତେ କାବ୍ୟିକ ରୂପକଳ୍ପ (Allegory) ଓ ଚିତ୍ରକଳ୍ପ (Imagery) ର ସୁଷମ ସଂଯୋଜନା କରିବା କ୍ଷେତ୍ରରେ ଶାନ୍ତନୁଙ୍କୁ ମଧ୍ୟ ଓଡ଼ିଆ ଉପନ୍ୟାସ ଜଗତର ଅବ୍ୟର୍ଥ ବିନ୍ଧାଣୀ ମର୍ଯ୍ୟାଦା ଦିଆଯାଇପାରେ । ଅନେକତ୍ର ପରିବେଶ ଏବଂ ପରିସ୍ଥିତିର ଅବିକଳ ନକ୍ସାଟିଏ ପାଠକ ସମକ୍ଷରେ ତୋଳି ଧରିବାକୁ ସେ ରୂପକଳ୍ପ ଓ ଚିତ୍ରକଳ୍ପ ପ୍ରୟୋଗ ମାଧ୍ୟମରେ ପ୍ରଯତ୍ନ କରିଥିବା ଲକ୍ଷ୍ୟ କରାଯାଇଥାଏ । ଏଥିପାଇଁ ସାମାନ୍ୟ କେତୋଟି ଉଦାହରଣ ନେଲେ ଯଥେଷ୍ଟ ହେବ।

'ରାତି ଅଧରେ ଉଠିପଡ଼ି ମାଆଛଡ଼ା କୁକୁରଛୁଆ ଭଳି ଯେତେବେଳେ ପ୍ରଥମେ ପ୍ରଥମେ ସେ ଚିତ୍କାର କରିଉଠେ...' (ନରକିନ୍ନର -ପୃ- ୮୮)

'ହଠାତ୍ ହରିମିସ୍ତ୍ରୀର ଗେଣ୍ଡାକେଶର ଭଳି ବିଛେଇ ହେଇଯାଇଥିବା ଓଠ ଦିଟା ଚାପିଚୁପି ହେଇ ଭିତରକୁ ପଶି ପଶି ଗଲା' (ତତ୍ରୈୟବ-ପୃ- ୧୧୮)

'ଏଭଳି ଗୋଟାଏ ଗୋଟାଏ ସବାରଙ୍କୁ ରିକ୍ସାରେ ବସେଇ ନେଲାବେଳେ ତା'ର ମନେହୁଏ, ସତେ ଯେମିତି କୌଣସି ମଣିଷଙ୍କୁ ପିଠିରେ ବସେଇ ସେ ନଉନାହିଁ । ନଉଚି କୌଣସି ଗୋଟାଏ କିଛି କାଠ ଡ଼ବଲ ଯାହା ଭିତରେ ଗୁଡ଼ାଏ କାଚ ଜିନିଷ ଖୁନ୍ଦା ହେଇଛି, କି ଗୋଟାଏ ଗୁଡ଼ମାଠିଆ ଯାହା ଭିତରେ ଗୁଡାଏ ପାଣିଆ ଭେଜାଲ ଗୁଡ଼ ଭର୍ତ୍ତି ହେଇଚି... ।'

(ତତ୍ରୈବ-ପୃ- ୧୨୯)

'ମାଟି ଉପରୁ ହାତେ ଉଞ୍ଚର ଗୋଟାଏ ଡାଙ୍ଗ ଭଳି ସେ ପୋତା ହେଇଥିଲା XXX ଚାଷ କ୍ଷେତରେ ପୋତା ହେଇଥିବା ହୁରୁଡ଼ାଟିଏ ଭଳି ' (ତତ୍ରୈବ, ପୃ-୧୫୩)

'ମାଛଘଣ୍ଟା ସରିଥିବା ଗାଡ଼ିଆ ଚାରିପଟେ ପିନ୍‌ପିନ୍ ଧଳାବଗମାନଙ୍କର ଭେଳା ଭଳି ଆଜି ସେପଟେ ଲାଗିଯାଇଥାଏ ପିନ୍‌ପିନ୍ ଧଳା ଖଦି, ପଞ୍ଜାବୀ ଆଉ ଚଦର ପୋଷାକ ପିନ୍ଧା ମଣିଷମାନଙ୍କର ମେଳା' (ତିନୋଟି ରାତିର ସକାଳ : ପୃ-୧୭)

'ପ୍ରଥମ ଆଶ୍ୱିନର କାଚକେନ୍ଦୁ ପରି ପ୍ରବହମାନ ନେଳିଆ ଏହି ନାଳଟି ତା' ଆଖିକୁ ଦିଶେ କୌଣସି ଦୟାଳୁ ଇଂରେଜୀ ଲୋକର ଚିଲା ଆଖିରୁ ନିଗିଡି, ଆସିଥିବା ଧାରେ ଲୁହ ପରି ।' (ପୃ-୧୯)

'ଖବର କାଗଜଟା ଜୟଦ୍ରଥର ମୁଣ୍ଡପରି (Myth) ବିଭୁପ୍ରସାଦର କୋଳରୁ ଖସିପଡ଼ିଲା,' (ପୃ-୧୪୧) । କିମ୍ବା 'ଆକାଶ ଗୋଟେ ଫଳନ୍ତି ଗଛପରି ଠିଆ ହୋଇଥାଏ ସେଦିନ ।' (ଅନ୍ୟ ଏକ ସମୟ, ଅନ୍ୟ ଏକ ଭାରତ-ପୃ-୧)

'ଦୁର୍ବୃତ୍ତମାନେ ଦଳେ ହେଟା ବାଘଭଳି ସାଉଁସାଉଁ ହେଇ ଖେଦି ଆସୁଥିଲେ ପଛରେ ।' (ଯାତ୍ରାର ପ୍ରଥମ ପାଦ-ପୃ-୧୧) ଅଥବା, 'ସବାଶେଷ ଲୋକଟା ଆପଣାର ବିକୃତ ଲାଳସା ମେଣ୍ଟନ ପାଇଁ ଚକୁଳି ଲେଉଟାଇଲା ଭଳି ମିନିକୁ ଓଲଟେଇ ଦେଇଥିଲା କେତେଥର ।' (ପୃ-୧୭)

ଅସତୀ ସ୍ତ୍ରୀ ଲୋକର ନାଗର ଭଳି ଧନ, ଯୋଡ଼ିଏ ଚଢ଼େଇ ଭଳି ବାଡ଼େଇ ପିଟି ହବା, ଗିଲ ଫଳ ଭଳି କଣ୍ଟା କଣ୍ଟା ଓଠ, ଅଖ ଭଙ୍ଗାରଥର ଚକଟେ ଭଳି ତାଳପତର ଛତା ଆଦି ଅଜସ୍ର ରୂପକଳ୍ପ/

ଚିତ୍ରକଳ୍ପର ପ୍ରୟୋଗ ସମଗ୍ର ଉପନ୍ୟାସମାନଙ୍କରେ ସଂଯୋଜିତ ହୋଇ ଶାନ୍ତନୁଙ୍କ ଭାଷାଶୈଳୀର ଗୌରବ ପ୍ରତିଷ୍ଠା କରିଛି ।

ଚିତ୍ରକଳ୍ପ, ରୂପକଳ୍ପ, ମିଥ୍, ଆର୍କିଟାଇପ୍, ପ୍ରତୀକ ଓ ଫାଣ୍ଟାସିର ଅସୀମ– ସୁନ୍ଦର ପ୍ରୟୋଗ ମାଧ୍ୟମରେ, ଆଧୁନିକ ସମାଜର ସମସ୍ୟାସଂକୁଳ ଜୀବନବୋଧର ଓ ନିରୁତା ଚେତନାର ଚିତ୍ରଟିଏ ଖୋଜିବା, ପୁଣି କେବଳ ଖୋଜିବାରେ ନିଶ୍ଚିନ୍ତ ନରହି ବହିର୍ଦେଶର କଠିନ ଆବରଣକୁ ଉଖାରି ନିଖାରି ଅନ୍ତର୍ପ୍ରଦେଶର ଗହନ ଦ୍ୱନ୍ଦ୍ୱ–ଦୋଳନକୁ ଠାବ କରିବାର ପ୍ରଶଂସନୀୟ ଉଦ୍ୟମ ହିଁ ସ୍ୱୟଂ ଶାନ୍ତନୁ ଆଚାର୍ଯ୍ୟଙ୍କ ନୂତନ ଭାଷା ଶୈଳୀର ପରମ୍ପରା । ଯେଉଁ ପରମ୍ପରାର ବଗିଚାରେ ପ୍ରଜାପତିଟି ଭଳି ଆପଣା ଚିତ୍ରିତ ପକ୍ଷର ଶୋଭା ଘେନି ଝଡର ମଣିଷଠାରୁ ଝାଡୁଦାର ଓ ଝୋଲାଠୁଁ ଝୁମ୍ପଡ଼ି ପର୍ଯ୍ୟନ୍ତ ଉଡ଼ି ବୁଲିବା । ଯାବତ ମଣିଷର ଦୁଷ୍କୃତିଠାରୁ ସୁକୃତି ପର୍ଯ୍ୟନ୍ତ ସମସ୍ୟା, ଘଟଣା, ସଂସ୍କାର, କୁସଂସ୍କାର, ସଂସ୍କୃତି, ସଭ୍ୟତା , ଶିକ୍ଷା ସମେତ ମୂଲ୍ୟବୋଧ ଜନିତ ସଂକଟ ମଧ୍ୟରେ ପହଁରି ପହଁରି, ବୁଢ଼ିଆଣୀଟେ ଭଳି ଆପଣା ଚେତନା–ନାଭିରୁ ସୂତା ଯୋଡି କଳ୍ପନାର କଥା ନଥା, ନିଜସ୍ୱ ସୃଷ୍ଟିସୌଧ ନିର୍ମାଣ କରିବା ଯେମିତି ଶାନ୍ତନୁଙ୍କ ଶିଳ୍ପୀ ପ୍ରତିଜ୍ଞା । ଆପଣାର ତୂଳୀରେ, ଆପଣାର କୌଶଳରେ ହିଁ, ଆପଣାର ନିଜସ୍ୱ ଦୃଷ୍ଟିରଙ୍ଗ ରଞ୍ଜେଇ ସୁନ୍ଦର ପୃଥିବୀର ମାନଚିତ୍ରଟିଏ ଅଙ୍କିବା, ମାଟିରୁ ଗଜୁରି ଆସୁଥିବା ଶବ୍ଦମାନଙ୍କୁ , ଉତୁରି ପଡୁଥିବା ଭାଷାମାନଙ୍କୁ ଚାଙ୍ଗୁଡ଼ି ଭରି ଗୋଟି ଗୋଟି କରି ତୋଳି ଆଣିବା ! ଆଉ କୁଶଳୀ ମାଳୀଟିଏ ଭଳି ନିଜର ଏରୁଣ୍ଡି ଉପରେ ଗୋଡ଼ ଲମ୍ବେଇ କରି- ସେଇ ସବୁ ଶବ୍ଦ, ସେଇ ସବୁ ଭାଷା ଓ ଚରିତ୍ରମାନଙ୍କୁ ଆପଣାର କଳା କୁଶଳତାରେ ଗୁନ୍ଥି ମାଳା ତିଆରିବା ହିଁ ତାଙ୍କର ଶୈଳୀ, ତାଙ୍କର କଳାଧର୍ମିତା ।

କବି ସମାଲୋଚକ ସୀତାକାନ୍ତ ମହାପାତ୍ର କହିଛନ୍ତି ''ସାହିତ୍ୟର ଭାଷା ପ୍ରତୀକ ଭାଷା, ସ୍ୱଚ୍ଛ ସାମାଜିକତାର ଭାଷା ନୁହେଁ ।'' ସେହି ଭାଷାକୁ ଯେଉଁ ଭାବରେ ଯେଉଁ ଢଙ୍ଗରେ କହିଲେ ମନକୁ ଛୁଇଁବ । ନର୍ଦ୍ଦମା ଭିତରେ ନର୍କସ୍ନାନ କରୁଥିବା ମଣିଷ ଗଙ୍ଗାକୁ ବାଟରେ ଖୋଜିବ । ନୈରାଶ୍ୟର ଚଉରା ମୂଳେ ଢୁ ଢୁ ମୁଣ୍ଡ କୋଡୁଥିବା ନାରୀଟିର ହୃଦୟରେ ଜହ୍ନିଫୁଲର ରଙ୍ଗ ନେସି ହେଇଯିବ । ଯେଉଁ ବାଗରେ ଓ ଯେଉଁ ଖଞ୍ଜରେ କହିଲେ ବାଟଗଲା ଲୋକବି ଦଣ୍ଡେ ଠିଆହେଇ ସମଝି ପାରିବ ଦୁଃଖ । ସେଇ କିସମର ଭାଷାଟି ତୋଳି ଧରିବାପାଇଁ ଉପନ୍ୟାସରେ ହିଁ ଶାନ୍ତନୁଙ୍କର ସକଳ ପ୍ରୟାସ ନିବଦ୍ଧ । ସେହି ବ୍ୟାକୁଳ ପ୍ରୟାସରୁ ଯେଉଁ ଶୈଳୀ, ତାହା ହେଲା- ଗାଲୁକଥା କହୁ କହୁ ଅସଲ କଥା ପାଖରେ ପହଞ୍ଚେଇ ଦେବା, ଅଖାଡୁଆ ବେଢ଼ଙ୍ଗ ଭାଷାରେ କହୁ କହୁ ଅପସଂସ୍କୃତି, ଅସଭ୍ୟତା ଓ ଶୋଷଣର ଗୁମରଟି ଖୋଲିଦବା ବୌଦ୍ଧିକ ପ୍ରୟାସ ହିଁ ତାଙ୍କର ଭାଷାଶୈଳୀ ।



# କଥାଶିଳ୍ପୀ ଶାନ୍ତନୁ ଆଚାର୍ଯ୍ୟ ଓ ତାଙ୍କ ଭାବଜଗତ

ମହାପାତ୍ର ନୀଳମଣି ସାହୁ

କେହି ଯଦି ଅବଚେତନ ମନସମ୍ଭୂତ ସ୍ୱପ୍ନଜଗତ ଓ ସୃଜନୀ କଳ୍ପନାରେ ନିର୍ମିତ ଏକ ବାସ୍ତବ ପ୍ରାଣଜଗତରେ ଅଭୂତପୂର୍ବ ନାଟକୀୟ ପରିବେଶ ଭିତରେ ଘୂରି ଆସିବାକୁ ଚାହେଁ – କେହି ଯଦି ଗୋଟାଏ ଅଜବଜଗତର ନର ଓ କିନ୍ନରମାନଙ୍କୁ ଗୋଟିଏ ରଙ୍ଗମଞ୍ଚରେ ଲୀଳାଭିନୟ କରୁଥିବାର ଦେଖିବାକୁ ଚାହେଁ – କେହି ଯଦି ଏକଇ ସ୍ଥାନରେ, ଏକଇ ସମୟରେ ଦିନ ଓ ରାତି ଚାଲିଥିବା ଗୋଟିଏ ବିଚିତ୍ର ଗ୍ରହମଣ୍ଡଳରେ ବୁଲି ଆସିବାକୁ ଚାହେଁ–ଅଥବା କେହି ଯଦି ରାତିରେ ସୂର୍ଯ୍ୟ ଓ ଦିନରେ ଚନ୍ଦ୍ର ତାରାମାନଙ୍କୁ ଦେଖିବାକୁ ଚାହେଁ– ଅଥବା କେହି ଯଦି ଚାହେଁ ଏପରି ଏକ ଜଗତର ପ୍ରତ୍ୟକ୍ଷ କରିବ, ଯୋଉଠି ଭୂତପ୍ରେତମାନେ ମଣିଷ ଭଳି ଦିଶୁଥିବେ ଓ କାରବାର କରୁଥିବେ ଏବଂ ମଣିଷମାନେ ବି ଭୂତପ୍ରେତ ଭଳି ଦିଶୁଥିବେ ଓ କାରବାର କରୁଥିବେ, ହଇଚଇ ଓ ହୈହୁଲ୍ଲା କରୁଥିବେ କିମ୍ବା କେହି ଯଦି ଏପରି କିଛି ଉପଲବ୍ଧି କରିବାକୁ ଚାହେଁ-ଯାହାକି ରାତିରେ ସତ୍ୟ ବୋଲି ମନେ ହେଉଥିବ ଓ ଦିନରେ ମନେ ହେଉଥିବ ସ୍ୱପ୍ନ ଭଳି, ଏପରିକି ଦୁଃସ୍ୱପ୍ନ ଭଳି–କିମ୍ବା କେହି ଯଦି ଏପରି ଏକ ତୀର୍ଥସ୍ଥଳିକୁ ଦର୍ଶନ କରିବାକୁ ଚାହେଁ, ଯୋଉଠି ଭଗବାନମାନେ ମଣିଷଙ୍କ ସାଙ୍ଗରେ ଓ ମଣିଷମାନେ ଭଗବାନମାନଙ୍କ ସାଙ୍ଗରେ ଧରାପରା ଲଗାଇଥିବେ ଓ ପରସ୍ପରକୁ ଲଙ୍ଗଳାମୁକୁଳା କରି ଅସମ୍ଭାଳ କରୁଥିବେ–ତା'ହେଲେ ତାଙ୍କୁ ମୁଁ ନିଶ୍ଚୟ ଆମ ସାହିତ୍ୟର ଅନନ୍ୟ ପ୍ରତିଭାଶାଳୀ କଥାଶିଳ୍ପୀ ଶାନ୍ତନୁ ଆଚାର୍ଯ୍ୟଙ୍କର ଅମର କଥାସାହିତ୍ୟର ବିସ୍ମୟ–ବିମୂଢ଼ ସାରସ୍ୱତ ଜଗତ ଭିତରେ ପ୍ରବେଶ କରିବାକୁ ପରାମର୍ଶ ଦେବି ।

ରୂପ ଓ ରସରେ–ଭାବ ଓ କଳ୍ପନାରେ–କ୍ରିୟା ଓ ପ୍ରକ୍ରିୟାରେ - ଭାଷା ଓ ଭଙ୍ଗୀରେ–ଅର୍ଥ ଓ ଧ୍ୱନିରେ–ଉଚ୍ଚାରଣ ଓ ସଂଚରଣରେ-ଯୌକ୍ତିକତା ଓ ଅହଂକାରୀତାରେ ଶାନ୍ତନୁ ଆଚାର୍ଯ୍ୟଙ୍କର ସେହି ସାରସ୍ୱତ ଜଗତ ଯେତିକି ଏବଂଭୂତ, ସେତିକି ମଧ୍ୟ କିଂଭୂତ-ଯେତିକି ଉଦ୍‌ଭୂତ, ସେତିକି ମଧ୍ୟ ଅଦ୍‌ଭୂତ ।

ଊଣେଇଶ ପଚାଶ ମସିହା ପରବର୍ତ୍ତୀ ଓଡ଼ିଆ ଗଦ୍ୟ କାବ୍ୟ ଆକାଶରେ ଶାନ୍ତନୁ ଆଚାର୍ଯ୍ୟ ଏକ ଜାଜ୍ୱଲ୍ୟମାନ ସ୍ଥିର ପ୍ରତିଷ୍ଠ ଧ୍ରୁବତାରା । ଉତ୍କଳର ସାରସ୍ୱତ ଭୂମିରେ ଭୂମିଷ୍ଠ ହେବାର ମାତ୍ର କିୟତ୍‌କ୍ଷଣ ଉତ୍ତାରେ ଏହି ଅସୀମପ୍ରତିଭାଦୃପ୍ତ, ଭାବ–ଦର୍ପିଷ୍ଠ, ପ୍ରବଳ ପରାକ୍ରମୀ, ବାକ୍ୟ ପ୍ରଗଳ୍ଭ, ନବଜାତକ ଶାରଳା-ନନ୍ଦନ ଓଡ଼ିଆ ସାହିତ୍ୟାକାଶର ଦୀପ୍ତିମାନ ସୂର୍ଯ୍ୟ ଓ ଦ୍ୟୁତିମାନ ଚନ୍ଦ୍ରମାନଙ୍କୁ ଅତିକ୍ରମଣ–ପ୍ରେରଣା ପ୍ରବଣତାରେ ମହାକାଶର ସମୁଚ୍ଚପାଦଚ୍ଛମାନଙ୍କୁ ଅବଲୀଳାକ୍ରମେ ଉହୁଁକି ଯାଇଥିଲେ ଏବଂ ସେତେବେଳେ ଓଡ଼ିଶାର ସାହିତ୍ୟାମୋଦୀ ଦେବ, ଦୈବତ, ଗନ୍ଧର୍ବ, ଯକ୍ଷ ଓ କିନ୍ନରମାନେ ତାଙ୍କ ଉପରେ ଘନଘନ ପୁଷ୍ପବୃଷ୍ଟି ଓ ଶଙ୍ଖନାଦ ଦ୍ୱାରା ତାଙ୍କୁ ବିପୁଳ ଅଭିନନ୍ଦନ, ସମ୍ବର୍ଦ୍ଧନା ଓ ସ୍ୱାଗତ ଜ୍ଞାପନ କରିଥିଲେ ।

ତାଙ୍କର "ମନ ମର୍ମର" ଗଳ୍ପ ସଂକଳନଠାରୁ "ଦୁର୍ବାର", "ଏଇ ଶେଷପଦଟି", "ଅଦିନ ବଉଳ", "ଆଦ୍ୟ ସକାଳ" ଓ "କରଂଜିଆ ଡାଏରୀ" ଯାଏ ଏବଂ "ନରକିନ୍ନର" ଠାରୁ ଆରମ୍ଭ କରି "ଶତାବ୍ଦୀର ନଚିକେତା", "ତିନୋଟି ରାତିର ସକାଳ", "ଦକ୍ଷିଣାବର୍ତ୍ତ", "ଶକୁନ୍ତଳା", "ମନ୍ତ୍ରୀଙ୍କ ସେୟାର", "ଧରିତ୍ରୀର କାନ୍ଦ", "ତୃଷ୍ଣା" ଓ "ଅନୋମାର କନ୍ୟା" ଇତ୍ୟାଦି ଉପନ୍ୟାସ ପର୍ଯ୍ୟନ୍ତ ଶାନ୍ତନୁଙ୍କ କଥାସାହିତ୍ୟର ଜଗତ ବହୁ ବିସ୍ତୃତ । ଅସଂଖ୍ୟ ସାନବଡ଼ ଚିତ୍ରବିଚିତ୍ର ଘଟଣା, ଦୁର୍ଘଟଣା– ଅସଂଖ୍ୟାସଂଖ୍ୟା ରୂପ, ଭେକ, ଗୁଣ ଦୁର୍ଗୁଣାଦିରେ ପରିପୂର୍ଣ୍ଣ ନରନାରୀ, ବାଳବୃଦ୍ଧଯୁବା–ଅସଂଖ୍ୟ ପ୍ରକାର ସରଳ ଜଟିଳ ସମସ୍ୟାମାନଙ୍କରେ ଆକ୍ରାନ୍ତ ଓ ଅଧ୍ୟୁଷିତ ନାନା ପରିସ୍ଥିତି ଓ ପରିବେଶରେ ସମାକୀର୍ଣ୍ଣ ସେ ଜଗତ– ସ୍ୱକୀୟ ମହିମାରେ ବିଧାତା–ନିର୍ମିତ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳପୁରୀର ସୃଷ୍ଟି-ଗୌରବକୁ ସ୍ପର୍ଦ୍ଧା କରେ । ଶାନ୍ତନୁଙ୍କ କଥାଜଗତରେ ନରନାରୀମାନେ ନାନାଦି ସମସ୍ୟା ସଙ୍କଟରେ ସବୁବେଳେ ବ୍ୟତିବ୍ୟସ୍ତ ହେଉଥାନ୍ତି । ସବୁଠି ଚରିତ୍ର କେବଳ ସାମାଜିକ ସମସ୍ୟାରେ ନୁହେଁ- ନୈତିକ, ମନସ୍ତାତ୍ତ୍ୱିକ ଓ ଆଧ୍ୟାତ୍ମିକ ସମସ୍ୟା ଜାଲରେ ପଡ଼ି ଛଟପଟ ହେଉଥାନ୍ତି ।

ମଣିଷମାନଙ୍କର ବ୍ୟକ୍ତିଗତ ସ୍ଥିତି, ସ୍ୱପ୍ନ, ଅଭିଳାଷ ଓ କ୍ରିୟା--କାଣ୍ଡ ସମେତ ମାନବୀୟ ହତାଶା, ପ୍ରଜ୍ୱଳନ, ଅନ୍ତର୍ଦୋଳନ, ଅନ୍ତର୍ଦ୍ୱନ୍ଦ୍ୱ, ଆପ୍ତକାମୀତା ବା ଆତ୍ମସନ୍ତୋଷ ପ୍ରଭୃତି ଜଣେ ଦେଖିବାକୁ ପାଇବ ତାଙ୍କର ବିଭିନ୍ନ ଗଳ୍ପ ଓ ଉପନ୍ୟାସରେ । କିନ୍ତୁ ତା' ସହିତ ମଧ ଜଣେ ଦେଖିବାକୁ ପାଇବ ସେହି ମେଞ୍ଚାମେଞ୍ଚା ମଣିଷମାନଙ୍କୁ- ସାଲୁବାଲୁ, ମନ୍ଦାମନ୍ଦା, ଦଳଦଳ, ଖଣ୍ଡବିଖଣ୍ଡ ସେହିସବୁ ତଥାକଥିତ ସାମାଜିକ ମଣିଷମାନଙ୍କୁ- ରାଜନୀତିକ ଓ ସାମ୍ପ୍ରଦାୟିକ ମଣିଷମାନଙ୍କୁ- ଯେଉଁମାନେ ବାତୁଳ ଭଳି ଦଳବାନ୍ଧି ସଭାସମିତି କରୁଛନ୍ତି- ବିଦ୍ରୋହ ବିପ୍ଳବ କରୁଛନ୍ତି– ଶାସନ କରୁଛନ୍ତି ଖବରକାଗଜ ପଢୁଛନ୍ତି- ଦିଲ୍ଲୀ ଭୁବନେଶ୍ୱରଠାରୁ ମସ୍କୋ ନ୍ୟୁୟର୍କ ପର୍ଯ୍ୟନ୍ତ ନିତିଦିନ ଧାଁଧପଡ଼ କରୁଛନ୍ତି- ସ୍ଲୋଗାନ ଦେଉଛନ୍ତି- ଇନ୍‌କିଲାବ୍ ଜିନ୍ଦାବାଦ୍- କେତେବେଳେ ଅଲଗା ଅଲଗା ଭାବେ– ବା କେତେବେଳେ ଏକାଠି ବଂ ବଂ ଭୋଳାନାଥ– ଆଲ୍ଲା ହୋ ଆକବର ରଡ଼ିରେ ମନ୍ଦିର ମସ୍‌ଜିଦ୍‌ମାନ ଭାଙ୍ଗୁଛନ୍ତି ଆଉ ଗଢୁଛନ୍ତି ! ସେମାନେ ପୁଣି କେବେକେବେ ଭକୁଆ ହୋଇ ବା ଶୂନ୍ୟରୁ କିଛି ଖସିବ ବୋଲି ପ୍ରତ୍ୟାଶା କରି ଆକାଶକୁ ହାଁ କରି ଚାହିଁ ଠିଆ ହୋଇଛନ୍ତି ଏବଂ ସେମାନଙ୍କ ଭିତରେ ଖସି ପଡ଼ିଛି ଅକସ୍ମାତ୍ ଆକାଶରେ ଉଡ଼ିଯାଉଥିବା କୌଣସି ଅଜ୍ଞାତ ସ୍ୱପ୍ନ ବା ଆଦର୍ଶର ଉଡ଼ାଜାହାଜଟିଏ ଭାଙ୍ଗିଭୁଙ୍ଗି ପୋଡ଼ିପାଡ଼ି ଛିନ୍‌ଛତର ହୋଇଯାଇଛି ।

ତଥାପି, ସେହିସବୁ ଦଳଦଳ, ମନ୍ଦାମନ୍ଦା ଉଦ୍‌ଭ୍ରାନ୍ତ ମଣିଷମାନେ କି ଏକ ଦୁର୍ନିବାର ଅନ୍ଧ ପ୍ରାଣାବେଗରେ ଉତ୍‌କ୍ଷିପ୍ତ ହୋଇ, ସେହି ଭଙ୍ଗା ଦରଭଙ୍ଗା ଟୁକୁରାଗୁଡ଼ିକୁ ଗୋଟେଇ ପୋଟେଇ ଯେଝା ବାଗରେ ଯିଏ ଯୋଡ଼ି ଲାଗିଛନ୍ତି–କିନ୍ତୁ ସେସବୁ ଆଉ ଯଥାସ୍ଥାନରେ ଯୋଡ଼ି ହେଉନାହିଁ । କେବଳ ଲାଗୁଛି ଯୋଡ଼ି ହେଲା ଭଳି । ଶାନ୍ତନୁଙ୍କ ଦଳଦଳ ମଣିଷମାନେ କୋଳାହଳ କରୁଛନ୍ତି– ଚିତ୍କାର କରୁଛନ୍ତି– କେହି କେହି ଏକାଠି ମିଶି ଅଟ୍ଟହାସ କରୁଛନ୍ତି- କେବେକେବେ ବା କ୍ରୋଧ ଓ ଆକ୍ରୋଶରେ ଉନ୍ମତ୍ତ ହୋଇ କାନ୍ଦୁକାନ୍ଦୁ ନିଜେ ଫାଟିଯାଇ ଛିନ୍ନଛତର ହୋଇ, ନିକ୍ଷିପ୍ତ ହୋଇ ପଡୁଛନ୍ତି ଏବଂ ପୁଣି ସେହି ଦଳଦଳ ସାଲୁବାଲୁ ଛିନଛତର ମଣିଷମାନଙ୍କ ଭିତରୁ କୋଉ ଡାକ୍ତରଖାନାର ନାଳନର୍ଦ୍ଦମା ଭିତରୁ ଉଠି ପରିତ୍ୟକ୍ତ ଜାରଜଟୋକା ଜର୍ଜଟିଏ ମୁଣ୍ଡଟେକି ଉଠି ଆସୁଛି । ଉଠି ଆସୁଛି ବରା ଗୁଲୁଗୁଲା ଛାଣି ବିକୁଥିବା ଅଧାବୁଢ଼ୀ ଗୋଦରୀ ମାଇପିଟିଏ- ନଜୀର ମିଆଁଟିଏ- ଚରଣ ରାଓ ଆଉ କବିରାଜ ବୁଢ଼ାଟିଏ-

ବିଭୁପ୍ରସାଦ ଆଉ ନଟବରଟିଏ- ଯୁଦ୍ଧଭୂମିରୁ ପଳାଇ ଆସି ଦକ୍ଷିଣ ଆଡ଼କୁ ମୁହାଁଇଥିବା ରୈକ୍ୱ ନାମଧାରୀ ଯୁବକଟିଏ- ଦାମା ଗଉଡ଼ଟିଏ- ଥେଟର ମାଇକିନା ଶକୁନ୍ତଳାଟିଏ– ବାୟା ନାମରେ ପରିଚିତ ଅଧା ପାଗଳା ମଣିଷଟିଏ- ମହାଜନଟିଏ– ରାଣୀଟିଏ– କିମ୍ବା ମାଧୁର୍ଯ୍ୟ ରସର ଉପାସକ ବୈଷ୍ଣବଟିଏ- କିମ୍ବା ନକ୍ସଲପନ୍ଥୀ ଦର୍ଶନର ଉପାସକ ବିଦ୍ରୋହୀ ଯୁବକଟିଏ– କିମ୍ବା ଆଧୁନିକ ଯୁଗର ସ୍ୱାର୍ଥ ବିଖଣ୍ଡିତ ଜୀବନର ଆପେକ୍ଷିକ ମୂଲ୍ୟଗୁଡ଼ିକୁ ଅସ୍ୱୀକାର କରି ନିଜ ଭିତରୁ ଉଦ୍‌ଭୂତ ଅଗ୍ନିରେ ଦଗ୍ଧ ହେଉଥିବା ସୁପ୍ରୀତି ନାମ୍ନୀ ସେହି ଆଧୁନିକା ବିଦ୍ରୋହୀ ମହିଳାଟିଏ– କିମ୍ବା ଏହି ଆଧୁନିକ ଯୁଗ ସମୁଦ୍ରର ମନ୍ଥନ ଭିତରୁ ବହିର୍ଗତ ହୋଇଥିବା ଆତ୍ମାବିନାଶକାରୀ ହଳାହଳକୁ ପାନ କରିବା ପାଇଁ ତୃଷ୍ଣାତୁରା ସେହି ତୃଷ୍ଣାନାମ୍ନୀ ଆଧୁନିକାଟି ।

ଶାନ୍ତନୁଙ୍କର ଦଳମଣିଷ ମନ୍ଦାମଣିଷଙ୍କ ଘେରି ଭିତରୁ ବ୍ୟକ୍ତି ମଣିଷମାନେ ଫିଟିପଡ଼ି ସହଜରେ ବାରି ହୋଇଯାଉଛନ୍ତି । ଦଳ ସବୁ ଭାଙ୍ଗି ଯାଉଛନ୍ତି । ତା' ଭିତରୁ ବ୍ୟକ୍ତି ମଣିଷମାନେ ଆପଣା ଆପଣାର ଭଗ୍ନାଂଶଗୁଡ଼ିକୁ ଗୋଟେଇ ପୋଟେଇ ଯୋଡ଼ିଯାଡ଼ି ଗଢ଼ି ଉଠୁଛନ୍ତି । ଶାନ୍ତନୁଙ୍କର ଅଧିକାଂଶ ନରନାରୀ ପାଗଳ, ଅର୍ଦ୍ଧପାଗଳ, ଆଡ଼ବାଇଆ, ସ୍ୱପ୍ନାବିଷ୍ଟ, ଇଡ଼ିଓ ସିନ୍‌କ୍ରେଟ୍ (ଖିଆଲୀ), ସୋମ୍ନାବ୍ୟୁଲିଷ୍ଟ (ନିଦ୍ରାଛନ୍ନ ଅବସ୍ଥାରେ ଭ୍ରାମ୍ୟମାଣ), ଅଟୋମାନିଆକ୍ (ସ୍ୱେଚ୍ଛାଚାରୀ) ବାଚାଳ ଏକବାଗିଆ, ନହେଲେ ଉଦ୍‌ଭ୍ରାନ୍ତ ବୋଲି ଆପତତଃ ମନେ ହୁଅନ୍ତି । କିନ୍ତୁ ଏଇସବୁ ଅସାଧାରଣ ମଣିଷମାନଙ୍କ ଭିତରେ ହିଁ ମଣିଷର ସାଧାରଣସ୍ତରକୁ ଉତ୍ତୀର୍ଣ୍ଣ ହୋଇ ଯିବା ଲାଗି ଏକ ପ୍ରବଣତା ରହିଛି । ତେଣୁ ଶାନ୍ତନୁ ଯଥାର୍ଥରେ ନିଜର ଜାଣତରେ ବା ଅଜାଣତରେ ଜଣେ ଉତ୍ତୀର୍ଣ୍ଣତାବାଦୀ । ଏକ ମନୁଷ୍ୟୋତ୍ତର ବା ମାନୁଷୀସୀମା ଅତିକ୍ରମ କରିବା ପାଇଁ ଓ ଏହି ସ୍ଥୁଳ ସୀମିତ ବାସ୍ତବ ଜୀବନର ପାଖାପାଖି ଆଉ ଏକ ସୂକ୍ଷ୍ମ ଜୀବନ ଓ ଜଗତର ଆବିଷ୍କାର ପାଇଁ ତାଙ୍କର ସୃଜନୀ କଳ୍ପନା ସର୍ବଦା ଚିଦାକାଶରେ ଉଡ଼ିବୁଲୁଥାଏ ।

ସେଥିପାଇଁ ଆମେ ତାଙ୍କ ଗଳ୍ପ ଓ ଉପନ୍ୟାସ-ବର୍ଣ୍ଣିତ ନରନାରୀମାନଙ୍କ ଭିତରେ ଦେଖୁ ପ୍ରଚଣ୍ଡ ପ୍ରାଣଶକ୍ତିର ପ୍ରକାଶୋନ୍ମୁଖୀ ଅଦମ୍ୟ ଆବେଗ- ବିକ୍ଷୁବ୍ଧ ଓ କ୍ଷୁବ୍ଧ ପ୍ରବେଗ । ପ୍ରତିଟି ଚରିତ୍ର ତାଙ୍କର ନିଜକୁ ଜାହିର କରିବାକୁ ଚାହେଁ– ଅନ୍ୟକୁ ଅତିକ୍ରମ କରିବାକୁ ଚାହେଁ – ଉଚ୍ଚକିତ କରିବାକୁ ଚାହେଁ । ସମସ୍ତେ ଥାନ୍ତି ନିଜ ନିଜର ଅହଂକାରରେ, ପରସ୍ପରଠାରୁ ପୃଥକ୍ ସ୍ଥିତିରେ । କିନ୍ତୁ ଏହି ପୃଥକ୍ ମଣିଷମାନେ କେଉଁ ଏକ ଅଜ୍ଞାତ ରହସ୍ୟମୟ ପ୍ରଚଣ୍ଡ ପ୍ରାଣ–ପ୍ରେରଣାରେ ଉଚ୍ଚାଟିତ ହୋଇ କେତେବେଳେ ବିମାନଟିଏ ବା କେତେବେଳେ ଚାରିଗୋଡ଼ିଆ ଖଟଟିକୁ ଏକାଠି କାନ୍ଧେଇ ବୋହି ନେଉଥାନ୍ତି ଗହୀର ବିଲରେ ମୁହଁମାଡ଼ି ପଡ଼ିଥିବା ଭଗବାନମାନଙ୍କୁ ଦେଉଳ ଭିତରେ ପୁନଃପ୍ରତିଷ୍ଠିତ କରିବା ଲାଗି । ସେମାନେ କେତେବେଳେ ଶାଳଗ୍ରାମଗୁଡ଼ିକୁ ଟେକା ଭଳି ପରସ୍ପର ଉପରକୁ ଫିଙ୍ଗି ପରସ୍ପରକୁ ଆହତ କରୁଥାନ୍ତି ତ ପୁଣି ଆଉ କେତେବେଳେ ସମସ୍ତେ ମିଳିମିଶି ରାଜ୍ୟଯାକର ଟେକା ଖପରା ଗୋଟାଇ ଆଣି ଖଟୁଲି ବା ବିମାନରେ ରଖି ଶାଳଗ୍ରାମ ଜ୍ଞାନରେ ସେମାନଙ୍କୁ ପୂଜା କରୁଛନ୍ତି ।

ଶାନ୍ତନୁଙ୍କର ସବୁ ଚରିତ୍ର ପ୍ରାଣ–ପ୍ରଧାନ । ସମସ୍ତଙ୍କ ଭିତରେ ପ୍ରଚଣ୍ଡ ପ୍ରାଣଶକ୍ତିର ସ୍ପନ୍ଦନ ସେମାନଙ୍କୁ ପକାଉଥାଏ– ଉଠାଉଥାଏ । ସେମାନଙ୍କ ଚେହେରାରେ ପ୍ରାଣର ରୂପ ଆଉ ରଙ୍ଗ, ସେମାନଙ୍କ ଅନ୍ତର୍ଲୋକରେ ପ୍ରାଣର ରସ, ପ୍ରାଣର ପ୍ରଜ୍ଞା- ପ୍ରାଣର ଏଷଣା- ପ୍ରାଣର ଯଜ୍ଞ ଓ ପ୍ରଜ୍ୱଳନ ଓ ଶେଷରେ ପ୍ରାଣର ସମାଧି । ତାଙ୍କର ପ୍ରତିଟି ମଣିଷ ପ୍ରାଣର ଜ୍ୟୋତିରେ ସମୁଜ୍ଜ୍ୱଳ- ପ୍ରାଣଚେତନାରେ ଜୀବନ୍ତ–ପ୍ରାଣପ୍ରବାହରେ ଉତ୍ତାଳ ଓ ପ୍ରାଣ–ପ୍ରେରଣାରେ ଅଶାନ୍ତି, ଅସ୍ଥିର, ଉତ୍ତୁଙ୍ଗ, ଉତ୍‌କ୍ଷିପ୍ତ ଏବଂ ଉଦ୍ଦୀପ୍ତ ।

ଏବଂ କହିବାରେ ଦ୍ୱିଧା ନାହିଁ ଯେ, ଏହି ଅଫୁରନ୍ତ ସୃଜନୀଶକ୍ତି ଓ ଜୀବନୀଶକ୍ତିର ଅଧିକାରୀ ଲେଖକଙ୍କର ପ୍ରତିଟି ସୃଷ୍ଟ ଚରିତ୍ର ଅଜର ଓ ଅମର ହୋଇ ରହିବେ । ସତେକି ସେମାନେ ଆଦିକାଳରୁ ଏଠି ରହି ଆସିଛନ୍ତି । ସେମାନେ ଯଦି କେବଳ ଏହି ପଞ୍ଚଭୌତିକ ବସ୍ତୁଜଗତରେ ଥାନ୍ତେ- ତେବେ ସେମାନେ ମରିସାରନ୍ତେଣି । ବହୁ ପ୍ରତିଷ୍ଠିତ କଥାକାରମାନଙ୍କ ଚରିତ୍ରମାନେ ଦିନେ ହୁଏତ ଖୁବ୍ ଜୀବନ୍ତ ଥିଲେ । ଆଜି କିନ୍ତୁ ସେମାନେ ମରିଗଲେଣି । କେତେକ ମଧ୍ୟ ମରିବା ପ୍ରାଏ ହେଲେଣି । କେତେକ ବଞ୍ଚିଥିଲେ ବି ମଲା ଭଳି । କିନ୍ତୁ ଶାନ୍ତନୁଙ୍କର ଜର୍ଜ ବା ଶକୁନ୍ତଳା କେବେ ମରିବେ ନାହିଁ । ଏପରିକି ସେଇ ଗୋଦରୀ ବୁଢ଼ୀ, ନଜୀର ମିଆଁ, ବୀରା ସାମଲା, ଚରଣ ରାଓ, ସୁକୁମାରୀ, ରୈକ୍ୱ, ଧୋବାବୁଢ଼ା, ଦାମାଗଉଡ଼ ଏବଂ ସେମାନଙ୍କ ପରି ବହୁ ସାନବଡ଼ ଚରିତ୍ର ବା ପ୍ରତୀକିତ ବ୍ୟକ୍ତିତ୍ୱମାନେ କେବେ ବି ମରିପାରିବେ ନାହିଁ । ସେମାନେ ଅଜର ଅମର । ନା- ନା ! ଆତ୍ମାର ଅମରତ୍ୱ କଥା ମୁଁ ଏଠି କହୁନାହିଁ । ଶାନ୍ତନୁଙ୍କ ମଣିଷମାନେ ସୃଷ୍ଟିର ଆଦିମ ପ୍ରାଣଜଗତରୁ ଯେ ଜନ୍ମ ହୋଇଥିଲେ- ଆଜି ମଧ୍ୟ ସେମାନେ ସେହି ପ୍ରାଣଜଗତରେ ବଞ୍ଚି ରହିଛନ୍ତି ଓ ରହିଥିବେ । କାରଣ ସେମାନେ କେବଳ ଜୀବନ୍ତ ବ୍ୟକ୍ତି ନୁହଁନ୍ତି-- ସେମାନେ ମଧ୍ୟ ଅଦମ୍ୟ ପ୍ରାଣଶକ୍ତି ଓ ପ୍ରାଣ-ଚେତନାର ପ୍ରତୀକ ଓ ପ୍ରତିନିଧି ମଧ୍ୟ । ସେମାନେ ଯୁଗ ଯୁଗ ଧରି ମଣିଷର ଅବଚେତନ ଭିତରେ ବଞ୍ଚି ରହିଛନ୍ତି ଓ ରହିବେ । ପ୍ରେତ ହୋଇ ବଞ୍ଚି ରହିବେ ଏବଂ ଆମକୁ ସ୍ୱପ୍ନରେ ଦେଖାଦେବେ ଆହୁରି ଜୀବନ୍ତ ଓ ବଳିଷ୍ଠ ଭାବେ । ବେଳେବେଳେ ଆମେ ସେମାନଙ୍କୁ ଆମ ଦୁଃସ୍ୱପ୍ନରେ ବି ଦେଖିବୁ ଓ ଡରିବୁ ।

ଶାନ୍ତନୁ କଥାଜଗତରେ ସବୁ କିଛି ସମ୍ଭବ । ସେଠି ଭଗବାନମାନେ ରତ୍ନସିଂହାସନକୁ ଛାଡ଼ି ଆସି ଗାଁ ଗହୀର ବିଲରେ ମୁହଁମାଡ଼ି ପଡ଼ିଥାନ୍ତି । କେତେବେଳେ ବା ତ୍ରିମୂର୍ତ୍ତି ଭଗବାନ ତିନୋଟି ନକ୍ସାଲପନ୍ଥୀ ବେଶରେ ବନ୍ଧୁକମାନ ଧରି ବଣପାହାଡ଼ ଗାଁଗଣ୍ଡାରେ ଲୁଚି ଲୁଚି ବୁର୍ଜୋୟା ଶୋଷକମାନଙ୍କୁ ଶିକାର କରୁଥାନ୍ତି । ଶାନ୍ତନୁଙ୍କ କଥାରାଜ୍ୟର ଅରଣ୍ୟ ଭିତରେ ପ୍ରବେଶ କଲେ ସେଠାରେ ବାଘ ଉପରେ ବସି ନେପଥ୍ୟ ଜଗତର ସୂକ୍ଷ୍ମ ସତ୍ତାମାନଙ୍କ ସଙ୍ଗେ କାରବାର କରିହୁଏ । କିମ୍ବା ଅଜଗର କି ଅହିରାଜ ସାପ ଉପରେ ଚଢ଼ି କୋଉ କଳ୍ପଲୋକର ଅଗ୍ନାଗ୍ନି ବନସ୍ତ ଭିତରକୁ କୋଉ ରହସ୍ୟମୟ ଉଦ୍ଦେଶ୍ୟରେ ଯାଇ କୋଉ ଭଗ୍ନ ମନ୍ଦିରରେ ଅବହେଳିତ ହୋଇପଡ଼ିଥିବା କୋଉ ଜୀବନ୍ତ ଦେବ ବା ଦେବୀ ବିଗ୍ରହ ସହିତ କିଛି ଆଦାନପ୍ରଦାନ ବି କରିହୁଏ ।

ଆମ ସମୟର ଏହି ଅସୀମ ପ୍ରତିଭାଧର କଥାଶିଳ୍ପୀଙ୍କର କଳ୍ପନାଶକ୍ତି ତଥାକଥିତ ବାସ୍ତବତାର କୌଣସି ସୀମା ସରହଦକୁ ମାନେନାହିଁ । ତାଙ୍କର ସୃଜନୀକଳ୍ପନା ନାରଦଙ୍କ ପରି ମନୋଯାନରେ ବସି ଏକଇ ମୁହୂର୍ତ୍ତରେ ତିନିପୁରକୁ ଗୋଟିଏ ଦୃଶ୍ୟରେ ଏକତ୍ରିତ କରି ଦେଇପାରେ ।

ସେ ତାଙ୍କର ବିଷୟବସ୍ତୁ ଖବରକାଗଜରୁ ବା ପ୍ରତ୍ୟେକ୍ଷ ବାସ୍ତବ ଅଭିଜ୍ଞତାରୁ ବା ଇତିହାସରୁ ଆଣିପାରନ୍ତି- କିନ୍ତୁ ତାକୁ ସେ ପୁରାଣ ବା ମିଥ୍‌ଟିଏ ବନେଇ ଦିଅନ୍ତି । ଖବରକାଗଜରୁ ବିଷୟଟିଏ ଆଣନ୍ତି– କିନ୍ତୁ ତାକୁ ପ୍ରଚାର କରନ୍ତି ନାରଦମୁନିଙ୍କ ତୁଣ୍ଡରେ । ସେ ନାରଦ ପୁଣି ଆମରି ଗାଁର ଢ଼ିଙ୍କିଟିଏ ଉପରେ ବସି ସିଦ୍ଧେଶ୍ୱରପୁରରୁ କରଂଜିଆ ଯାଏ ଓ କରଂଜିଆରୁ ଆମେରିକା ଯାଏ ଦଉଡ଼ ଧାପଡ଼ ଲଗାଇଥାନ୍ତି । ସେ ଆମର ଏଇ ଉପସ୍ଥିତ ସମୟର ଗାଁ ଗହଳରୁ ବା ସହର ବଜାରରୁ ଘଟଣା ଓ ଚରିତ୍ରମାନ ଯୋଗାଡ଼ କରନ୍ତି- କିନ୍ତୁ ସେସବୁକୁ କୋଉ ଅଜ୍ଞାତ ରାଜ୍ୟ ଓ ବିସ୍ମୃତକାଳର ପ୍ରାଣଧର୍ମରେ

ରୂପାନ୍ତରିତ କରିଦିଅନ୍ତି । ସେମାନଙ୍କୁ ଦେଖିଲେ ମନେହୁଏ– ସତେକି ଏମାନଙ୍କୁ ଆମେ ଆମର ଆଉ କୋଉ କୋଉ ଜନ୍ମରେ, ସ୍ୱପ୍ନରେ କି ବାସ୍ତବରେ ଦେଖିଥିଲୁ– ଏବଂ ପୁଣିଥରେ ଏ ଜନ୍ମରେ ସେମାନଙ୍କୁ ଶାନ୍ତନୁ ଆଚର୍ଯ୍ୟଙ୍କ ଗଳ୍ପ ଉପନ୍ୟାସରେ ଦେଖୁଛୁ । ଅଂଶୁପା ହ୍ରଦ କୂଳର କଣୁଆ ଗାଁ ସଙ୍ଗେ ପ୍ରାଚୀନ ଭାରତର କଣ୍ୱମୁନିଙ୍କ ଆଶ୍ରମର କି ସମ୍ପର୍କ ବା କୋଉ ଇତିହାସ ପୁରାଣରେ ଅଛି ? ଯୁଗପୁରୁଷ ମହାଯୋଗୀ ଶ୍ରୀଅରବିନ୍ଦଙ୍କର ଅତିମାନସ ତତ୍ତ୍ୱ ଓ ପ୍ରକୃତିର ଦିବ୍ୟ ରୂପାନ୍ତର ସହିତ ଧୋବାବୁଢ଼ାର ଲୁଗାକଚା ତୁଠ ସଙ୍ଗେ କି ସମ୍ପର୍କ ଅଛି ? ଦାରୁବ୍ରହ୍ମ ପୁରୁଷୋତ୍ତମ ଜଗନ୍ନାଥଙ୍କର ଚତୁର୍ଦ୍ଧାମୂର୍ତ୍ତି ତତ୍ତ୍ୱ ସହିତ ଦେଶର ରାଜନୈତିକ ଓ ଅର୍ଥନୈତିକ ସମସ୍ୟା ସମାଧାନର କି ସୂତ୍ର ନିହିତ ଅଛି ? କିନ୍ତୁ ଶାନ୍ତନୁଙ୍କର ଅଘଟଣ ଘଟଣ ପଟ୍ଟିୟସୀ ନବ ନବ ଉନ୍ମେଷ ଶାଳିନୀ ପ୍ରଜ୍ଞାଦୀପ୍ତ ସ୍ରଷ୍ଟା ପୁରୁଷର 'ମନମୁନ ଚଇତନ' ସେହି ଅଦୃଶ୍ୟ ଅସମ୍ଭବ ସମ୍ପର୍କକୁ ଉଦ୍ଧାର କରିପାରେ- ଯୋଡ଼ି ଦେଇପାରେ– ମିଶାଇ ମଧ୍ୟ ଦେଇପାରେ ।

ଏମନ୍ତ ସେ ଅପୂର୍ବ ଅଭୁଦ କଥାବିନ୍ଧାଣୀ ଶାନ୍ତନୁ ଆଚର୍ଯ୍ୟ । ପ୍ରାତଃସ୍ମରଣୀୟ ଆମର ଆଦିକବି ଶୁଦ୍ରମୁନି ଶାରଳା ଦାସଙ୍କର ସୁଯୋଗ୍ୟ ବଂଶଧର । ଉତ୍କଳଭାରତୀ ମା' ଶାରଳା ଠାକୁରାଣୀଙ୍କର ଯଥାର୍ଥ ବରପୁତ୍ର ।

ଆମ ସମସ୍ତଙ୍କର ଗୁରୁକଳ୍ପ, ଆମ ଯୁଗର କଥା ସମ୍ରାଟ ସ୍ୱର୍ଗତ ପୂଜ୍ୟ ଗୋପୀନାଥ ମହାନ୍ତି ଶାନ୍ତନୁଙ୍କର 'ଶକୁନ୍ତଳା' ଉପନ୍ୟାସ ପାଠକରି ଆମ ସମସ୍ତଙ୍କ ଆଗରେ ସନ୍ତୋଷ ଓ କଲ୍ୟାଣ ପ୍ରକାଶ କରି କହିଥିଲେ- "ଶାନ୍ତନୁର ଏହି ଉପନ୍ୟାସଟି ପଢ଼ିବି ବୋଲି ଭଗବାନ ମୋତେ ଆଜି ପର୍ଯ୍ୟନ୍ତ ବଞ୍ଚାଇ ରଖିଛନ୍ତି !"

ଶାନ୍ତନୁଙ୍କର ପାଠକପାଠିକାମାନେ ତାଙ୍କୁ ଅସାମାନ୍ୟ ବୋଲି ଭାବି ଆସିଛନ୍ତି । ସେ ତାଙ୍କ ସାହିତ୍ୟରେ ମଣିଷକୁ ଖୁବ୍ ମର୍ଯ୍ୟାଦା ଦେଇଛନ୍ତି । ମଣିଷ ଉପରେ ମଧ୍ୟ ଖୁବ୍ ଆସ୍ଥା ଓ ବିଶ୍ୱାସ ରଖିଛନ୍ତି । ମଣିଷର ଭୁଲଭ୍ରାନ୍ତି, ଔଦ୍ଧତ୍ୟ ଓ ଅବାଧ ଦାମ୍ଭିକତାକୁ ସେ ଖୁବ୍ ବିଦ୍ରୁପ ଆଉ ପରିହାସ କରିଥିଲେ ବି ପରିଶେଷରେ ମଣିଷର ଭାଗ୍ୟ ଓ ଭବିଷ୍ୟତକୁ ସେ ସେହି ମଣିଷ ହାତରେ ଇ ସମର୍ପି ଦେଇଛନ୍ତି ।

ଆଜି ଶ୍ରୀ ଗଙ୍ଗାଧର ରଥ ଫାଉଣ୍ଡେସନ୍ ସଂସ୍ଥା ତାଙ୍କୁ 'ସାହିତ୍ୟ ଭାରତୀ ସମ୍ମାନ' ପୁରସ୍କାରରେ ସମ୍ମାନିତ କରୁଛନ୍ତି । ଏହା ଆମ ସମସ୍ତଙ୍କ ପକ୍ଷରେ ଖୁବ୍ ଆନନ୍ଦର କଥା । ଏହି ଶୁଭ ଅବସରରେ ଆମେ ତାଙ୍କର ଗୁଣଗ୍ରାହୀ ମୁଗ୍ଧ ପାଠକପାଠିକାମାନେ ଶ୍ରୀଜଗନ୍ନାଥଙ୍କ ନିକଟରେ ତାଙ୍କର ଦୀର୍ଘ ସୁସ୍ଥ ସୁଖୀ ଜୀବନ ପ୍ରାର୍ଥନା କରୁଛୁ ।

ମା ଉତ୍କଳଭାରତୀ ଶାରଳାଙ୍କର ଜୟ ହେଉ

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଜୟ ହେଉ

ଜୟ ଉତ୍କଳ-ଜୟ ଭାରତ ।



# ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ କଥା ଜଗତ

ଡକ୍ଟର ଶତ୍ରୁଘ୍ନ ପାଣ୍ଡବ

(୧)

ଉତ୍ତର ଷାଠିଏର ଓଡ଼ିଆ କଥା ଜଗତରେ ଏକ ନିଆରା ନାମ, ଉଦାତ ଉଚ୍ଚାରଣ ଶାନ୍ତନୁ କୁମାର ଆଚାର୍ଯ୍ୟ । କଥା ଜଗତରୁ ଦୁଇଟି ପ୍ରଖର ପ୍ରବାହ-ଉଭୟ ଗଳ୍ପ ଉପନ୍ୟାସ ରଚ଼ନା କ୍ଷେତ୍ରରେ ସମାନ ପ୍ରଯତ୍ନ-ଏକ ମୁଗ୍ଧ ସନ୍ତୁଳନ ତାଙ୍କୁ ଦେଇଛି କଥା ସାହିତ୍ୟରେ ଅସପତ୍ନ ପ୍ରତିଷ୍ଠା । ବୃତ୍ତିରେ ରସାୟନ ବିଜ୍ଞାନର ଅଧ୍ୟାପନା । ଚିନ୍ତନ ଓ ଉପସ୍ଥାପନରେ ଏଣୁ ବିଜ୍ଞାନର ଯୁକ୍ତିପ୍ରବଣ ଜଗତ ସହ ସେ ମିଶାଇଛନ୍ତି ସାହିତ୍ୟର କୋମଳ ଲାବଣ୍ୟସଂବେଦୀ ଜଗତକୁ । ଚେତନାର ଚାରଣ ଭୂମିରେ ମାଟିଠୁଁ ଅନ୍ତରୀକ୍ଷ ଯାଏଁ ତାଙ୍କର ସୃଜନ ଯାତ୍ରା ।

ଏକଦା ଛାତ୍ର ଜୀବନରେ ଈଶ୍ୱର-ନିରୀଶ୍ୱର ଭାବ ଭାବନା ଜନିତ ସଂକଟ ନେଇ ସଂଶୟ ଓ ଗଭୀର ଜିଜ୍ଞାସାବୋଧ ତାଙ୍କ ଭିତରେ ଭରିଦେଇଥିଲା ଏକ ଅସମାହିତ ଅତୃପ୍ତି ଓ ଅମଦୀୟ ନିର୍ଭୀକତା । ପରିଣତିରେ ସ୍ୱକୀୟ ଉପଲବ୍ଧିଗତ ଅଭିଜ୍ଞାନ ଓ ଆତ୍ମଦର୍ଶନ ତାଙ୍କୁ ଉର୍ତ୍ତୀର୍ଣ୍ଣ କରାଇଥିଲା ଏ ସଂଶୟରୁ । ଜୀବନ ଓ ଜଗତ ପ୍ରତି ଏକ ଅନ୍ତରଙ୍ଗ ମମତ୍ୱବୋଧ ଓ ଅନ୍ୱେଷାବୋଧରୁ ସୃଷ୍ଟି ହୋଇଥିଲା ତାଙ୍କ କଥା ସାହିତ୍ୟର ଘୋଷଯାତ୍ରା । କିନ୍ତୁ ଅଧିକାଂଶ ସ୍ରଷ୍ଟାଙ୍କ ପରି ଆବେଗ ଓ ସୌନ୍ଦର୍ଯ୍ୟର ମୂର୍ତ୍ତିମନ୍ତ ଦେବୀ କବିତା ସହ ତାଙ୍କର ଥିଲା ବିହ୍ୱଳ ଅଭିସାର, ପ୍ରଥମ ପ୍ରଣୟ । କିନ୍ତୁ ସ୍ୱବର୍ଣ୍ଣନା, ବକ୍ତବ୍ୟ ଓ ଚିନ୍ତନରେ ଯୁକ୍ତି, ମନନଶୀଳତା, ବୌଦ୍ଧିକତା, ଦର୍ଶନ ପୁଣି ଜୀବନ ଓ ଜଗତର ବହୁ ରୂପ, ରସ ରହସ୍ୟର ପରିପ୍ରକାଶ ତାଙ୍କୁ ଠିଆ କରାଇଥିଲା କଥା ଜଗତର ଭବ୍ୟ ତୋରଣ ନିକଟରେ । ଅନ୍ୟୁନ ଚାରିଦଶନ୍ଧି ଧରି ନିରବଚ୍ଛିନ୍ନ ଭାବେ କ୍ରିୟାଶୀଳ ତାଙ୍କ ସାଧନାର ମଧୁପର୍ବ । ସଂପ୍ରତି ପୂର୍ଣ୍ଣମାତ୍ରାରେ ସକ୍ରିୟ ଶାନ୍ତନୁ ଓଡ଼ିଆ କଥା ଜଗତର ନୂତନ ଦିଶା ସଂଧାନରେ ତପସ୍ୟାରତ ।

(୨)

ସେଦିନ ଏକ ଅପାରମ୍ପରିକ ନାମକରଣ ନେଇ ସଂପୂର୍ଣ୍ଣ ନୂଆ ଧରଣର ବିଷୟ ବିନ୍ୟାସ, ନୂତନଶୈଳୀର ସୂତ୍ରପାତ ଘଟିଥିଲା ଶାନ୍ତନୁ ଆଚାର୍ଯ୍ୟଙ୍କର ବୃହତ୍ କଳେବର ସଂପନ୍ନ ପ୍ରଥମ ଉପନ୍ୟାସ 'ନରକିନ୍ନର' (୧୯୬୨)ରେ । ପ୍ରଥମ ଗଳ୍ପଥିଲା 'ମନମର୍ମର' ଯାହାକି ତାଙ୍କର ପ୍ରଥମ ଗଳ୍ପ ସଂକଳନର ନାମ । ତା'ପରେ ଗତି ତାଙ୍କର ଦୁର୍ବାର – ସଂପ୍ରତି ପ୍ରକାଶୋନ୍ମୁଖୀ ତିନୋଟି ଅନତି

ବୃହତ ଉପନ୍ୟାସର ମିଳିତ ରୂପ ଶାନ୍ତନୁ ଆଚାର୍ଯ୍ୟଙ୍କ 'ସ୍ୱର୍ଣ୍ଣ ତ୍ରିଭୂଜ' ଏବଂ ଉପନ୍ୟାସୋପମ ଭ୍ରମଣ ବୃତ୍ତାନ୍ତ 'ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ' ଯାଏ ।

ଏଗାର ଗୋଟି ଗଳ୍ପ ଗ୍ରନ୍ଥ ('ଶ୍ରେଷ୍ଠ ଗଳ୍ପ' ବ୍ୟତୀତ) ଏଗାର ଗୋଟି ଉପନ୍ୟାସ, ଆଠ ଗୋଟି ଶିଶୁ-କିଶୋର ବିଷୟକ ଗଳ୍ପ-ପ୍ରବନ୍ଧ ପୁସ୍ତକ ଏବଂ ଗଳ୍ପୋପମ ସୃଜନଶୀଳ ସାଂବାଦିକତାର ପୁସ୍ତକ 'କରଞ୍ଜିଆ ଡାଏରୀ' ଶାନ୍ତନୁ କୁମାରଙ୍କ ଚାରିଦଶନ୍ଧିର ସାଧନାର ପୂଜାଫୁଲ । ଏହା ଭିନ୍ନ ନ୍ୟାସନାଲ ବୁକଟ୍ରଷ୍ଟ ଦ୍ୱାରା ପ୍ରକାଶିତ It Happened Tomorrowର ଅନୁବାଦ ପ୍ରକାଶିତ ହୋଇଛି 'ଆସନ୍ତାକାଲି ଯାହା ଘଟିଗଲା' ଶିରୋନାମାରେ । ଏହା ବିଜ୍ଞାନ ଭିତ୍ତିକ ଗଳ୍ପମାଳା । ଲେଖକଙ୍କ ଉପନ୍ୟାସ ମଧ୍ୟରୁ 'ଦକ୍ଷିଣାବର୍ତ୍ତ' ଗୁଜରାଟି ଭଷା (୧୯୮୬) ରେ ଏବଂ ଶକୁନ୍ତଳା ହିନ୍ଦୀ ଭାଷା (୧୯୯୭) ରେ ଅନୁଦିତ ।

ବେଦ, ଉପନିଷଦ, ପୁରାଣ, ଇତିହାସର ଉପାଦାନ, ପ୍ରସଙ୍ଗ, ଦର୍ଶନକୁ ଉପଜୀବ୍ୟ କରି ପରିବ୍ୟାପ୍ତ ଶାନ୍ତନୁଙ୍କ କଥା ଜଗତର ବର୍ଣ୍ଣାଢ୍ୟ କାନ୍‌ଭାସ - ସାଂପ୍ରତିକ ଜଗତର ବିଜ୍ଞାନ, ଦର୍ଶନ, ମନସ୍ତତ୍ତ୍ୱ ଉଦ୍‌ଭାବନ, ସିଦ୍ଧାନ୍ତ, ସମାଜ-ଅର୍ଥନୀତି ଓ ସାଂସ୍କୃତିକ ଜାଗରଣ ପର୍ଯ୍ୟନ୍ତ । ଏ ଧାରାରେ ସ୍ମରଣକୁ ଆସନ୍ତି ବିଶିଷ୍ଟ ଗାଳ୍ପିକ ୰ ବାମା ଚରଣ ମିତ୍ର । ଶାନ୍ତନୁଙ୍କ ଭିତରେ ଆମେ ଭେଟୁ ସ୍ୱମୃର୍ତ୍ତିକାରେ ପାଦଥାପି ତା'ର ଗନ୍ଧକୁ ଆଘ୍ରାଣ କରୁଥିବା ବସୁଧା ଭାବନାର ସ୍ୱପ୍ନମଗ୍ନ ଜଣେ, ପ୍ରଚଣ୍ଡତପା ସ୍ପର୍ଦ୍ଧାବାନ ଭାରତୀୟଙ୍କୁ - ସେ ମୃର୍ତ୍ତିକା ଯାହା ସାରଳା, ଜଗନ୍ନାଥ, ଫକିରମୋହନ, ଗୋପାଳ ପ୍ରହରାଜଙ୍କ ସ୍ନେହ ଓ ଶୁଶ୍ରୁଷାରେ ଲାଳିତ ଓ ଧନ୍ୟ ।

'ନରକିନ୍ନର' (୧୯୬୨) ଠୁଁ 'ସ୍ୱର୍ଣ୍ଣତ୍ରିଭୂଜ' (୧୯୯୮) ଯାଏ ଉପନ୍ୟାସ ସକଳ ସାମାଜିକ ବିବର୍ତ୍ତନ ଓ ବିଘଟଣର ପ୍ରାଣବନ୍ତ ଚିତ୍ରସହ ବ୍ୟକ୍ତିସତ୍ତାର ମହତ୍ତର ଅନ୍ୱେଷାବୋଧ, ଉଦ୍‌ବର୍ତ୍ତନ ଓ ଉତ୍ତରଣର ଭାଷ୍ୟ ବହନ କରିଛି । ଆମ ପରିଚିତ ପୃଥିବୀର ସରହଦଠୁଁ ଆମକୁ ଅପରିଚିତ କେଉଁ ରହସ୍ୟମୟ ଜଗତଂଆଡ଼କୁ ନେଇ ଯାଆନ୍ତି ଶାନ୍ତନୁ । ତାଙ୍କ ଉପନ୍ୟାସ ଯେମିତି ଚେତନାର ଏକ ମହାଯାତ୍ରା-ଧୂଳିମଳି ଅଧୁକ୍ଷିତ ମାଟିରେ ଏକ ପରିବ୍ରାଜକୀୟ ବ୍ୟାକୁଳତା, ଜ୍ଞାନଲିପ୍ସୁ ଦାର୍ଶନିକର ଅନ୍ୱେଷାବୋଧର ଇତିକଥା । 'ମନମର୍ମର' (୧୯୬୨) ଠୁଁ 'ଗଳ୍ପବର୍ଣ୍ଣାଳୀ: ୧' (୧୯୯୭) ପର୍ଯନ୍ତ ଗଳ୍ପ ସକଳ ସମକାଳୀନ ଜୀବନ ଓ ଜଗତର ଅସରନ୍ତି ରୂପରାଗ, ଛାଇଆଲୁଅ ଓ ରସ ରହସ୍ୟର ଉଦ୍‌ଘାଟନ ଦିଗରେ ପ୍ରେରଣା ସୃଷ୍ଟି କରନ୍ତି । ଦେଢ଼ଶତକରୁ ଊର୍ଦ୍ଧ୍ୱ ଗଳ୍ପ ସେମାନଙ୍କର ଅପୂର୍ବ ସୁନ୍ଦର ବିଷୟ ବିନ୍ୟାସ, ନାଟକିୟ ରହସ୍ୟ ବ୍ୟଞ୍ଜକ କେତେ ଫାଣ୍ଟାସି ସୁଲଭ ଭଙ୍ଗି ନେ ଇ ପାଠକଙ୍କୁ ଚକିତ ଓ ଚମକୃତ କରାନ୍ତି । ଆଙ୍ଗିକ ବିନ୍ୟାସ ଓ ଅମ୍ରିକ ଭାବପ୍ରସ୍ଥରେ ବହୁ ପରୀକ୍ଷା ଓ ପ୍ରୟୋଗରେ ଅଭିଷିକ୍ତ ଶାନ୍ତନୁଙ୍କ ଗଳ୍ପଜଗତ ।

(୩)

'ନରକିନ୍ନର' (୧୯୬୨), 'ଶତାବ୍ଦୀର ନଚିକେତା' (୧୯୬୫) ଓ 'ତିନୋଟି ରାତିର ସକାଳ' (୧୯୬୯) ଶାନ୍ତନୁଙ୍କ ଉପନ୍ୟାସ ସୃଷ୍ଟିର ଆଦିପର୍ବର ରଚନା । ସାମଜିକ ପ୍ରତିବଦ୍ଧତା

ସହିତ ଏକ ଆଧାତ୍ମିକ ଅନ୍ୱେଷା ଏଥିରେ ରୂପାୟିତ ହୋଇଛି । 'ନରକିନ୍ନର' ର ଜର୍ଜ, 'ଶତାବ୍ଦୀର ନଚିକେତା' ଓ 'ତିନୋଟି ରାତିର ସକାଳ'ର ବିଭୁପ୍ରସାଦ, ନଟବର , ଦକ୍ଷେଣାବର୍ତ୍ତ (୧୯୭୩)ର ରୈକ୍ୱ ଏବଂ ଅନୁ ହଜିଯିବା ପରେ' (୧୯୯୬)ର ଅନୁ ପ୍ରଭୃତିଙ୍କ ଜୀବନ ଜିଜ୍ଞାସା, ସ୍ୱପ୍ନ ଓ ଅଭୀପ୍‌ସା ମଧ୍ୟଦେଇ ଶାନ୍ତନୁଙ୍କ ପରିବ୍ରାଜକୀୟ ଅନ୍ୱେଷାବୋଧ ସ୍ୱର ମୁଖ୍ୟତଃ ଏକ ଆଧାତ୍ମିକତା ବା ଉତ୍ତୀର୍ଣ୍ଣତାର ପରିମଣ୍ଡଳ ଆଡ଼କୁ ପ୍ରଧାବିତ । ପୁନଶ୍ଚ 'ଯାତ୍ରାର ପ୍ରଥମ ପାଦ' (୧୯୭୬), 'ଅନ୍ୟ ଏକ ସମୟ ଅନ୍ୟ ଏକ ଭାରତ'(୧୯୭୭), 'ଶକୁନ୍ତଳା' (୧୯୮୦), 'ମନ୍ତ୍ରୀଙ୍କ ସେୟାର' (୧୯୮୮) 'ବିଲିଗୋଟ୍ ବନାମ ଉରୁବେଳ ଘୋଟକ' (୧୯୯୭) ଆଦି ଉପନ୍ୟାସ ମୁଖ୍ୟତଃ ସାମାଜିକ ବାସ୍ତବତାର କଳାଙ୍ଗଗତ ଓ କାଳସଂଗତ ରୂପାୟନ । ଏହା ମଧ୍ୟ ଦେଇ ସଂସ୍କୃତି, ମୂଲ୍ୟବୋଧ ସଂପ୍ରୀତି, ସମାଜ ସଚେତନତା ଏକ ଦାର୍ଶନିକ ଦୃଷ୍ଟିଭଙ୍ଗୀ ଏବଂ ଦ୍ରଷ୍ଟା ସୁଲଭ ମନନଶୀଳତା ଦେଇ ପରିସ୍ଫୁଟ ହୋଇଛି ।

ବସ୍ତୁତଃ ଭାବ ସ୍ପନ୍ଦନ ଓ ବକ୍ତବ୍ୟ ପ୍ରଦାନ କ୍ଷେତ୍ରରେ ଗଳ୍ପ ଓ ଉପନ୍ୟାସର ଗୁଣ ଏକ ପ୍ରକାରର; କିନ୍ତୁ ଉଭୟଙ୍କର ସଂରଚନା ପ୍ରାୟତଃ ବିପରୀତଧର୍ମୀ । ଉପନ୍ୟାସର ପରିଧି ବ୍ୟାପକ ଏବଂ ସମୟର ଏକ ବଡ଼ ଅଂଶ, ଜୀବନର ଏକ ବିସ୍ତୀର୍ଣ୍ଣ ଦିଗନ୍ତ ସେଥିରେ ପ୍ରତିଭାତ ହୁଏ-ଅଥଚ ବିନ୍ଦୁ ମଧ୍ୟରେ ସିନ୍ଧୁର ଉତ୍‌କର୍ଷ ପାଇଁ ପ୍ରଯତ୍ନ କରୁଥିବା ଗଳ୍ପ ସୀମିତ କଳେବର ଓ ସ୍ୱଳ୍ପ ସମୟ ପରିସରରେ ତା'ର ବକ୍ତବ୍ୟ ବାଢ଼ିଥାଏ । ଅତଏବ ଏ ଦୁଇଟିର ସହାବସ୍ଥାନ ଘଟାଇବା ଜଣେ ଲେଖକ ପକ୍ଷରେ ସହଜସାଧ୍ୟ ନୁହେଁ । ଏ ସହାବସ୍ଥାନକୁ ସଫଳ ମନାଇଥିବା ଶାନ୍ତନୁ ଏପ୍ରସଙ୍ଗରେ କହନ୍ତି- 'ଗଳ୍ପ ଓ ଉପନ୍ୟାସ ଏକ ଜାତିର । ଭଲ ଗାଳ୍ପିକ ହିଁ ଭଲ ଔପନ୍ୟାସିକ ହେବା ସମ୍ଭବ । ଅବଶ୍ୟ ଉପନ୍ୟାସରୁ ଗଳ୍ପକୁ ଓହ୍ଲାଇବା ସାମାନ୍ୟ କଷ୍ଟକର । କାରଣ ଗଳ୍ପରେ କଳାର ଅତ୍ୟଧିକ ସକ୍ରିୟତା ଆବଶ୍ୟକ । ଏହା ଦ୍ୱାରା ବହୁ ବିସ୍ତୃତ ବ୍ୟାପାରକୁ କୌଣସି ଏକ ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣରୁ ବିଚାର କରାଯାଇ ସମାଧାନରେ ପହଁଚିବା ଗଳ୍ପର ଲକ୍ଷଣ । ଏହି ଆକୁଞ୍ଚନ ଓ ସଙ୍କୁଞ୍ଚନ ପ୍ରକ୍ରିୟା ଔପନ୍ୟାସିକ ପକ୍ଷରେ କିଞ୍ଚିତ କଷ୍ଟକର । ନଚେତ୍ ଉଭୟ ଏକ ଶ୍ରେଣୀୟ କଳା । ଏହି କଳାରେ ସିଦ୍ଧିଲାଭ କରିଥିବା ବହୁ ପାଶ୍ଚାତ୍ୟ ଓ ପ୍ରାଚ୍ୟ ଲେଖକଙ୍କ ନାମ ଉଲ୍ଲେଖ କରାଯାଇପାରେ, ଯଥା: ଟଲଷ୍ଟୟ, ଦସ୍ତୋଭସ୍କି, ଗର୍କି, ବାଲ୍‌ଜାକ୍, ସମରସେଟମ୍‌ମ, ଫକ୍‌ନର, ରବୀନ୍ଦ୍ରନାଥ, ପ୍ରେମ୍‌ଚାନ୍ଦ, ଫକିରମୋହନ, କାଳନ୍ଦୀ, ଗୋପୀନାଥ, ସୁରେନ୍ଦ୍ର ପ୍ରମୁଖ ।

'ନରକିନ୍ନର'ର ନାୟକ ଜର୍ଜ ସତେକି ଲେଖକର ନିଜ ସତ୍ତା ଓ 'ଶତାବ୍ଦୀର ନଚିକେତା'ର ବିଭୁ ପ୍ରସାଦ, ନଟବରମାନେ ଲେଖକୀୟ ସତ୍ତାର ଭିନ୍ନ ପ୍ରତିରୂପ । ଏ ଉପନ୍ୟାସମାନଙ୍କରେ ସମକାଳୀନ ସମୟକୁ ଆଧାର କରି ଏକ ବିଧିବଦ୍ଧ କାହାଣୀ ରହିଛି । ସହର ତଳି ସ୍ଲମର ଧୂଳିମଳି ଧୂଆଁ ନର୍ଦ୍ଦମା ଅଧୁଷିତ ପରିବେଶରୁ ଜର୍ଜର ଜୀବନ ଆରମ୍ଭ ହୁଏ । ଏଥି ସହିତ ଯୋଡି ହୋଇ ଯାଆନ୍ତି ବହୁ ପର୍ଯ୍ୟାୟ ଘଟଣା ଓ ବିବିଧ ଚରିତ୍ର । ମାର୍କସଙ୍କ ଥିଲାବାଲା-ନଥିଲାବାଲା ମଣିଷଙ୍କ କଥା, ଫ୍ରଏଡ୍ ଓ ୟୁଙ୍ଗ୍‌ଙ୍କ ମନସ୍ତାତ୍ତ୍ୱିକ ଦର୍ଶନ, ସ୍ୱାଧୀନତା ପରବର୍ତ୍ତୀ ଗଣତାନ୍ତ୍ରିକ ବ୍ୟବସ୍ଥାର ଚିତ୍ର ଏହାର କଥାଭାଗରେ ସଂଯୋଜିତ । ନଚିକେତାର ଅନ୍ୱେଷାବୋଧ ନେଇ ବିଜ୍ଞାନ ଗବେଷଣାଗାରରେ ପରୀକ୍ଷାରତ ତିନୋଟି ତରୁଣ ପ୍ରାଣର ସ୍ୱପ୍ନ, କଳ୍ପନା, ପ୍ରେମ ପ୍ରବଣତା, ଆଶା ନିରାଶାର ରୂପରାଗ 'ଶତାବ୍ଦୀର ନଚିକେତା'ରେ

ସମକାଳୀନ ସମୟର ପ୍ରବହମାନତା ସହ ଗତିଶୀଳ । 'ତିନୋଟୀ ରାତିର ସକାଳ'ଅବଶ୍ୟ ହୁଏ । ଏ ଉପନ୍ୟାସମାନଙ୍କରେ ଗୋଟିଏ ପକ୍ଷରେ ବିଶ୍ୱମୁଖୀ କ୍ଷୁଧା, ଦାରିଦ୍ର୍ୟ, ଜାତିଧର୍ମ ଶ୍ରେଣୀ ସମସ୍ୟା ଓ ତଦ୍‌ଜନିତ ସଂଘର୍ଷର ଚିତ୍ର ପରିବେଷଣ ପରିପ୍ରେକ୍ଷୀରେ ଲେଖକର ସାମାଜିକ ପ୍ରତିବଦ୍ଧତାର ପ୍ରତିଫଳନ ଏବଂ ଅନ୍ୟପଟରେ ବ୍ୟକ୍ତି ସତ୍ତାର ଆତ୍ମିକ ଉଦ୍‌ବର୍ତ୍ତନ ପାଇଁ ଅଭୀପ୍‌ସା ପରିଲକ୍ଷିତ । ଶାନ୍ତନୁଙ୍କର ପରିପକ୍ୱ ମାନସିକତା ଓ ପୋଖତ ଶୈଳୀ ସମୃଦ୍ଧ ପ୍ରଥମ ଉପନ୍ୟାସ 'ନରକିନ୍ନର'ର ସଂରଚନା, ଜର୍ଜ ଚରିତ୍ରର ପରିକଳ୍ପନା ସଂପର୍କରେ ଶାନ୍ତନୁ ସହଜାତ ଭାବେ ବହୁକଥା କହିବସନ୍ତି । ଯେଉଁ ଆତ୍ମିକ ଅସନ୍ତୋଷ ଓ ଜିଜ୍ଞାସାବୋଧ ବେଳହୁଁ ଅହରହ ଶାନ୍ତନୁଙ୍କ ଚିନ୍ତାଜଗତକୁ ଆଚ୍ଛନ୍ନ କରିଥିଲା 'ନରକିନ୍ନର' ହିଁ ଦେଇଥିଲା ସେଥିରୁ ନିଷ୍କୃତି ଓ ପ୍ରଶମନ । ଲେଖକ କହନ୍ତି- 'ସେ ସମୟର ଅବ୍ୟବହିତ ପୂର୍ବାବସ୍ଥା ମୋ ଜୀବନର ଏକ ଭୟଙ୍କର ସମୟ ଥିଲା । ମୁଁ ଆଉଟୁ ପାଉଟୁ ହେଉଥିଲି ମୋ ନିଜର ଆତ୍ମ ପରିଚୟ ପାଇବା ପାଇଁ ଆଉ ମୋ ବିଷୟରେ ମୁଁ ଯାହା ଭାବି ସ୍ଥିର କରିଥିଲି ତାହା ପ୍ରକାଶ କରିଦେବା ପାଇଁ । ଏ ପ୍ରକାଶ ଭଙ୍ଗୀ ଉପନ୍ୟାସ ଆକାର ଧାରଣ କଲା । ମୋର ଅବଚେତନ ସମ୍ପୂର୍ଣ୍ଣ ଭାବେ ଏହି ଉପନ୍ୟାସ ଜରିଆରେ ପ୍ରକାଶିତ ହେବାକୁ ଇଚ୍ଛା କଲା । ଏହି ପରିସ୍ଥିତିରେ ଜର୍ଜ ବୋଲି ଏକ ଚରିତ୍ର ମୋ ଭିତରୁ ବାହାରିଲା । ସେ ନିଜେ କେବଳ ମୋର ପ୍ରତିନିଧିତ୍ୱ କରି ନଥିଲା- ମୋର ଚୈତ୍ୟ ପୁରୁଷ ସହିତ ମୋର ବାଲ୍ୟ କୈଶୋରର ଅନେକ ଘଟଣାବଳୀର ସଂଘାତରୁ ଉଦ୍‌ଭୂତ ଅନେକ ରୂପକଳ୍ପ ନେଇ ସେ ଚରିତ୍ର ଏକ ସ୍ୱତନ୍ତ୍ର ଜଗତରେ ବିଚରଣ କରିବା ଆରମ୍ଭ କରିଥିଲା । ମାନବୀୟ ଜଗତର ବୈଚିତ୍ର୍ୟ ଏହି ଚରିତ୍ର ଓ ତା'ର ପରିପାର୍ଶ୍ୱରେ ଏକ ପ୍ରକାର ସ୍ୱପ୍ନଭଳି ଭାସି ବୁଲୁଥିଲା । ଏ ଦୃଷ୍ଟିରୁ 'ନରକିନ୍ନର' ମୋର ଚୈତ୍ୟ ପୁରୁଷର ଏକ ଡାଏରୀ କହିଲେ ଚଳେ । ଏ ଡାଏରୀରେ ମୁଁ ଯେତିକି ଅଛି, ମୋ ସମୟର ବହୁ ମଣିଷ ସେହିପରି ଏକାତ୍ମ ଭାବେ ଏକ ସ୍ୱରରେ ପ୍ରକାଶିତ ହୋଇଛନ୍ତି । 'ନରକିନ୍ନର' ଆତ୍ମାର ଉଦ୍‌ବର୍ତ୍ତନର କାହାଣୀ ।'

ଶାନ୍ତନୁଙ୍କର କ୍ଷୁଦ୍ରକଳେବର ବିଶିଷ୍ଟ ଉପନ୍ୟାସ 'ଦକ୍ଷିଣାବର୍ତ୍ତ' ୧୯୭୩ରେ ଆତ୍ମପ୍ରକାଶ କରେ ପୂର୍ବ ଉପନ୍ୟାସଗୁଡ଼ିକରୁ ଏକ ବ୍ୟତିକ୍ରାନ୍ତ ପରିଚୟ ନେଇ । ଏହାର ପ୍ରମୁଖ ଚରିତ୍ର ରୈକ୍ୱ-ଉପନିଷଦୀୟ ନାମ ବହନ କରିଛି । ତା' ଆଚରଣ ପଛରେ ଭାରତୀୟ ପରମ୍ପରାର ପ୍ରତିଫଳନ । ଦକ୍ଷିଣ ଦିଗଟିକୁ ପାରମ୍ପରିକ ବିଶ୍ୱାସବୋଧରେ ଅଶୁଭ ଓ ମୃତ୍ୟୁବୋଧର ପ୍ରତୀକ ବୋଲି ଗ୍ରହଣ କରାଯାଏ ।

କିନ୍ତୁ 'ଦକ୍ଷିଣାବର୍ତ୍ତ'ର ଦକ୍ଷିଣଦିଗଟି ପରୋକ୍ଷ ଭାବେ ପଣ୍ଡିଚେରୀସ୍ଥ ଶ୍ରୀଅରବିନ୍ଦଙ୍କ ସାଧନାଭୂମିକୁ ସୂଚାଇଛି । ଦକ୍ଷିଣ ଦିଗକୁ ଯାତ୍ରା ଆସ୍ଥା, ବିଶ୍ୱାସ, ଆଲୋକ, ଆନନ୍ଦ ଓ ପବିତ୍ରତା, ଦିଗରେ ଯାତ୍ରା । ରୈକ୍ୱ ଚରିତ୍ରର ଯାତ୍ରା ମଧ୍ୟରେ ହିସାବୀ ଜୀବନ ଯାପନ ଓ କାମନାର ବଳୟରେ ପିଷ୍ଟ ବ୍ୟକ୍ତି ମଣିଷର ଉତ୍ତୀର୍ଣ୍ଣ ଓ ମହତ୍ତର ହେବାର ଅଭିଳାଷ ପ୍ରକଟିତ ହୋଇଛି । ମିଲିଟାରୀ କ୍ୟାଂପ୍ ଛାଡ଼ି ଧୂପକାଠି କାରକାନାରେ ରହିବା, ଧୋବାଲୁଗା ଗଣ୍ଡିରାକୁ ଠାକୁର ଜ୍ଞାନ କରିବା ଏବଂ ସବୁ ପାର୍ଥିବ ମୋହ ପରିହାର କରି ଜନମାନସକୁ ଦକ୍ଷିଣ ପଥର ଯାତ୍ରାରେ ସାମିଲ କରିବା ଆଦି ନାନା ପ୍ରସଙ୍ଗ, ପ୍ରତୀକ ଓ ଅନୁସଙ୍ଗ ମଧ୍ୟ ଦେଇ ଉପନ୍ୟାସର କାବ୍ୟିକ ସଂରଚନା । ଗୋଟେ ବିହ୍ୱଳ ଓ ବାସ୍ନାବିଭୋର ଆତ୍ମ

ସମର୍ପଣ, ପବିତ୍ର ଭାବର ପରିପ୍ରକାଶ ସର୍ବୋପରି ଅତିମାନସର ଉଦୟ ଉତ୍ସବରେ ସାମିଲ୍ ପ୍ରଚୋଦନା ପ୍ରଦାନ କରେ 'ଦକ୍ଷିଣାବର୍ତ୍ତ' । 'ଦକ୍ଷିଣାବର୍ତ୍ତ' ଆଧ୍ୟାତ୍ମିକ ଆକୁଳତାର ସ୍ୱରଲିପି ।

'ଦକ୍ଷିଣାବର୍ତ୍ତ' ପରି ସାନ କଳେବର ବିଶିଷ୍ଟ 'ଯାତ୍ରାର ପ୍ରଥମପାଦ' (୧୯୭୬) ସମକାଳୀନ ସାମାଜିକ ବାସ୍ତବତା ଉପରେ ଆଧାରିତ । 'ଅବଶେଷରେ ସେମାନେ ମିନି ବୋଲି ସେଇ ହାଡୁରୀ ଝିଅଟିକୁ ଧର୍ଷଣ କଲେ'- ପରିକା ଏକ ହତବମ୍ଭ ନାଟକୀୟ ପ୍ରାରମ୍ଭରେ ଉପନ୍ୟାସର ଆରମ୍ଭ । ଆମର ସାମାଜିକ ନୈତିକ ଅବକ୍ଷୟର ମହଳଣ ସ୍ୱର ଏବଂ ଅନ୍ୟ ପକ୍ଷରେ ନାରୀଶକ୍ତିର ମହିମାମଣ୍ଡିତ ମା'ପଣ ଏ ଉପନ୍ୟାସଟିର ଘଟଣା ସଂଘଟନ ଦେଇ ରୂପାୟିତ ହେଇଛି । ସମକାଳୀନ ସାମାଜିକ ଘଟଣ ଅଘଟଣ, ବିଡମ୍ବନାର ଅବିକଳ ଦସ୍ତାବିଜ 'ଅନ୍ୟ ଏକ ସମୟ ଅନ୍ୟ ଏକ ଭାରତବର୍ଷ' (୧୯୭୭) କିନ୍ତୁ ଏ ପର୍ଯ୍ୟାୟରେ ଔପନ୍ୟାସିକ ନିଜ ଅନ୍ତର୍ଜଗତରେ ଏକ ଭିନ୍ନ ଭାବାବେଶରେ ମଗ୍ନଥିଲେ । ତା' ହେଉଛି ଭାରତବର୍ଷର ଆତ୍ମିକ ପରିଚୟ ଖୋଜିବା ସହ ସାମାଜିକ ସ୍ତରରେ କ୍ରିୟାଶୀଳ ବିଭିନ୍ନ ଆନ୍ଦୋଳନର ଗତି, ପରିଣତି ଓ ପରିପ୍ରେକ୍ଷୀକୁ ବାସ୍ତବତା ସହ ମିଳେଇ ଦେଖିବା । ଏ ପର୍ଯ୍ୟାୟରେ 'ଶକୁନ୍ତଳା' (୧୯୮୦) ଏକ ପରୀକ୍ଷାପ୍ରବଣ ବୌଦ୍ଧିକ ବିସ୍ଫୋରଣ । କଣ୍ଟୁଆ ଗାଁ ଏଠି କଣ୍ୱମୁନି ଆଶ୍ରମରେ ରୂପାନ୍ତରିତ ହୋଇଛି ସେ ଯେମିତି କୁନି ଭାରତଟିଏ । ଏତେ ବିଶାଳ ଓ ପୁଷ୍ଟକ ସାଂସ୍କୃତିକ ପୃଷ୍ଠଭୂମିର 'ଭାରତବର୍ଷ'ରେ କୌଣସି ଆନ୍ଦୋଳନ ତା'ର ଧାର୍ମିକ ଓ ଆଧ୍ୟାତ୍ମିକ ଅଭ୍ୟୁତ୍ଥାନ ସହ ସାମିଲ ନହେଲେ ଯେ ଫଳପ୍ରଦ ହେବ ନାହିଁ ଏହା ଉପନ୍ୟାସର ଅସଲ ବକ୍ତବ୍ୟ । ଏଣୁ ନକ୍ସାଲପନ୍ଥୀଙ୍କ ସଂଗ୍ରାମର ଧାରା ସହ ଆମ ସାଂସ୍କୃତିକ ପ୍ରାଣ ସ୍ପନ୍ଦନର ପରମ ପ୍ରତିଭୂ ଜଗନ୍ନାଥ ଏବଂ ବଳଭଦ୍ର, ସୁଭଦ୍ରାଙ୍କୁ ସାମିଲ କରାଯାଇଛି । ଭାରତବର୍ଷର ପରିଚୟ ଖୋଜିବା ମର୍ମରେ ତାହା ଯେମିତି ଏକ ନାମମାତ୍ର ନୁହେଁ; ତାହା ଆତ୍ମାଟିଏ ବା ଚେତନାଟିଏ । 'ଶକୁନ୍ତଳା' ବା 'କଦମ୍ବ' ଏପରି କିଛି ଉଚ୍ଚାରଣରୁ ହିଁ ଯେମିତି ବୁଝା ପଡ଼ିଯିବ ଭାରତବର୍ଷ । ଜଗନ୍ନାଥ ଦାସଙ୍କ ଭାଗବତ ଓ ଶ୍ରୀଜଗନ୍ନାଥ ଚେତନାକୁ ମୂଳତଃ ଆଧାର କରି 'ଶକୁନ୍ତଳା'ର ବିନ୍ୟାସ । ମାର୍କସ୍, ଗାନ୍ଧୀ, ମାଓ, ଲେନିନ୍ ଆଦି ଚିନ୍ତାବିତ୍‌ଙ୍କ ତତ୍ତ୍ୱର ଭାଷ୍ୟ ଉପନ୍ୟାସର ବକ୍ତବ୍ୟକୁ ରୂପ ଦେଇଛି 'ଶକୁନ୍ତଳା'ର କାବ୍ୟିକ ବିନ୍ନ୍ୟାସ । 'ଦକ୍ଷିଣାବର୍ତ୍ତ' ପରି ଏହା ଶାନ୍ତ ସୁନ୍ଦର ଆଉ ଏକ ପରୀକ୍ଷା । ଆଂଚଳିକ ଭୂମି ଉପାଦାନକୁ ଆଧାର କରି କାଳିଦାସୀୟ ଶକୁନ୍ତଳା ମିଥ୍‌ର ଏହା ଏକ ନୂତନ ସଂସ୍ଥାପନ । 'ଶକୁନ୍ତଳା' ଉପନ୍ୟାସର ପୃଷ୍ଠଭୂମି ସଂପର୍କରେ ଲେଖକ କହନ୍ତି- ଏହା ପରେ ମୁଁ ପୁଣି ସମାଜ ସଚେତନତା ସମ୍ପର୍କରେ ସଚେତନ ହେଲି । ଗୋଟିଏ ଛୋଟ ଉପନ୍ୟାସ 'ଅନ୍ୟ ଏକ ସମୟ ଅନ୍ୟ ଏକ ଭାରତ' ଲେଖିଲି । କିନ୍ତୁ ଏହା ଆତ୍ମସନ୍ତୋଷ ଜନକ ନ ହେବାରୁ ମୁଁ ଗୋଟିଏ ବିରାଟ କାନଭାସ୍ ଉପରେ କୌଣସି ଏକ ଗଭୀର ମନନଶୀଳ ବିଷୟବସ୍ତୁକୁ ସାମାଜିକ ପରିପ୍ରେକ୍ଷୀରେ ଉପସ୍ଥାନ କରିବାକୁ ଇଚ୍ଛା କଲି । ୧୯୭୫ ନଭେମ୍ବର ମାସ ସୁଦ୍ଧା ଘନୀଭୂତ ଜରୁରୀ ପରିସ୍ଥିତି ଭିତରେ ମୋ ଜାତୀୟ ଅନୁଚିନ୍ତା ବଳବତ୍ତର ହେବାକୁ ଆରମ୍ଭ କଲା । ମୁଁ ଭାରତବର୍ଷକୁ ସେଯାବତ୍ ଏତେ ଭଲ ପାଇ ନଥିଲି ଯଦ୍ୱାରା ମୋର ଜନ୍ମଭୂମିକୁ ନେଇ ଏକ ମହାକାବ୍ୟ ରଚନା କରିବା ପାଇଁ ଇଚ୍ଛା କରିଥାନ୍ତି । ଦେଶରେ ଇମରଜେନ୍‌ସି

ଓ ତତ୍‌ପୂର୍ବବସ୍ଥାରେ ନକସଲ ବିପ୍ଲବ ଜନିତ ସମସ୍ୟାବଳୀ ମୋତେ ମୁହ୍ୟମାନ କଲା । ୧୯୭୫ରୁ ୧୯୮୦ ଜୁନ୍ ପର୍ଯ୍ୟନ୍ତ ମୁଁ ଆଛନ୍ନ ଅବସ୍ଥାରେ 'ଶକୁନ୍ତଳା' ଉପନ୍ୟାସ ଲେଖିଥିଲି । ଏଥିପାଇଁ ମୋତେ ପ୍ରଥମେ ନକସଲ ତତ୍ତ୍ୱ ଅର୍ଥାତ୍ ମାର୍କସବାଦର ଯାବତୀୟ ମୌଳିକ ତତ୍ତ୍ୱ ସହିତ ପରିଚିତ ହେବାକୁ ପଡ଼ିଲା । ସେହିପରି ଗାନ୍ଧୀବାଦ ସମ୍ପର୍କରେ ଗବେଷଣାତ୍ମକ ଅଧ୍ୟୟନର ଆବଶ୍ୟକତା ମଧ୍ୟ ଆସିଲା । ଏ ଦୁଇ ପରସ୍ପର ବିରୋଧୀ ଦର୍ଶନ ଅନ୍ତରାଳରେ ଭାରତୀୟତାର ଏକ ସ୍ୱତନ୍ତ୍ର ଦର୍ଶନ ମୁଁ ଭାଗବତରୁ ଉପଲବ୍ଧି କଲି । ଏ ତିନୋଟି ସମନ୍ୱୟରେ 'ଶକୁନ୍ତଳା' ରଚିତା ।

'ଶକୁନ୍ତଳା' ପରେ 'ମନ୍ତ୍ରୀଙ୍କ ସେୟାର' (୧୯୮୮) ସାମାଜିକ ବାସ୍ତବତା ଓ ନାରୀ ସ୍ୱାଧୀନତା ସଂପର୍କିତ ଏକ ଭିନ୍ନ ଉଚ୍ଚାରଣ । 'ମନ୍ତ୍ରୀଙ୍କ ସେୟାର' ସମେତ ନାରୀ ସ୍ୱାଧୀନତା ସଂପର୍କିତ ଅନ୍ୟ ଏକ ଉପନ୍ୟାସ 'ବିଲିଗୋଟ ବନାମ ଉରୁବେଳ ଘୋଟକ' (ଏପ୍ରିଲ୍ ୯୭, 'ଝଙ୍କାର' ପ୍ରକାଶିତ୍) ଏବଂ ଅନ୍ୟ ଜଗତର ଅନୁଭବ ସଂପର୍କିତ ଉପନ୍ୟାସ 'ଅଦୃଶ୍ୟ ଜଗତର ବାର୍ତ୍ତା' ('ଅପୂପମ ଭାରତ'ରେ ୧୯୯୭ରେ ଧାରାବାହିକ ଭାବେ ପ୍ରକାଶିତ) ଏକତ୍ର ସମନ୍ୱିତ ହୋଇ ଶ୍ରୀ ଆଚାର୍ଯ୍ୟଙ୍କର ଚଳିତବର୍ଷ ପ୍ରକାଶିତ ହେବାକୁ ଯାଉଛି 'ସ୍ୱର୍ଣ୍ଣ ତ୍ରିଭୁଜ' ।

'ଶକୁନ୍ତଳା' ଓ 'ମନ୍ତ୍ରୀଙ୍କ ସେୟାର' ପର ପର୍ଯ୍ୟାୟରେ ପୁନଶ୍ଚ ଏକ ବୃହତ୍ତର ଭାରତୀୟ କାନ୍‌ଭାସକୁ ନେଇ ଆଞ୍ଚଳିକ ଘଟଣା ସଂଘଟନରେ ସମୃଦ୍ଧ ଏକ ବିଶ୍ୱଜନୀନ ଚିନ୍ତାଧାରାର ଉପନ୍ୟାସ 'ଧରିତ୍ରୀର କାନ୍ଦ' (୧୯୯୪) ଶାନ୍ତନୁଙ୍କ ଉପନ୍ୟାସ ଜଗତର ଆଉ ଏକ କୀର୍ତ୍ତିମାନ ସ୍ତମ୍ଭ । ଚଳିତ ଶତକର ଓଡ଼ିଶା, ଭାରତବର୍ଷର ବହ୍ନିମାନ ସମାଜ-ରାଜନୀତିକ-ସାଂସ୍କୃତିକ ସମସ୍ୟା ସଂକଟର ପରିବେଷଣ ସହ ଶାଶ୍ୱତ ମୂଲ୍ୟବୋଧ ଏବଂ ମାନବିକ ସଂବେଦନଶୀଳତାର ମହିମାଗାନ 'ଧରିତ୍ରୀର କାନ୍ଦ'କୁ ଏକ ମହନୀୟ ସୃଷ୍ଟିର ଗୌରବ ଦିଏ । କଷଣ, ଶୋଷଣରେ ମାନବାତ୍ମା, ଧର୍ମ ବିଶ୍ୱପ୍ରକୃତି ନିପାଡ଼ିତ ହେଲେ କୋଉଠି ନା କୋଉଠି ଧରିତ୍ରୀର କାନ୍ଦ ଶୁଭେ । ଲୁମ୍ବିନୀରେ ଭୂମିଷ୍ଠ ହୁଅନ୍ତି ବୁଦ୍ଧ । ଯୀଶୁ, ମହମ୍ମଦଙ୍କ ପରି ପୁଣ୍ୟାତ୍ମା ଧରିତ୍ରୀକୁ ଆଲୋକ ଓ ଅଭୟ ଦିଅନ୍ତି । ବିଶ୍ୱଯୁଦ୍ଧ ଅଧ୍ୟୁଷିତ ପୃଥିବୀରେ, ବ୍ରିଟିଶ୍ ଶାସିତ ଭାରତବର୍ଷରେ ଆବିର୍ଭୁତ ହୁଅନ୍ତି ଗାନ୍ଧୀ । ବିଶ୍ୱମାନବାତ୍ମାର ମୁକ୍ତି ପାଇଁ ସେ ହୋଇଯାଆନ୍ତି ଏ ଶତାବ୍ଦୀ ଓ ଅନାଗତ କାଳ ପାଇଁ ଏକ ମହତ୍ତର ଚେତନା । 'ଧରିତ୍ରୀର କାନ୍ଦ' ଅନେକ ଗମ୍ଭୀର ଓ ତାତ୍ତ୍ୱିକ ପ୍ରଶ୍ନ ଉତ୍‌ଥାପନ କରେ । ଅହଂ ଓ ଧ୍ୱଂସ ସର୍ବସ୍ୱ ରାଜନୀତିର ଆସୁରିକ ସଂକ୍ରମଣ ସତ୍ତ୍ୱେ ଗୁରୁ ପରମ୍ପରାର ମହାନତା, ସାବରମତିର ଆଲୋକ, ଆଲ୍ଲା ଓ ଜଗନ୍ନାଥଙ୍କ ସମନ୍ୱୟ ହିଁ ନିପୀଡ଼ିତ ଧରିତ୍ରୀର ଲୁହ ପୋଛି ପାରେ- ଏହିପରି ଏକ ଶାଶ୍ୱତ ବାର୍ତ୍ତା ଏ ଉପନ୍ୟାସ ବହନ କରିଛି । ସାମାଜିକ ପ୍ରତିବଦ୍ଧତାର ଏହା ଆଉ ଏକ ଉଚ୍ଚାରଣ । ଆଂଚଳିକ ପୃଷ୍ଠଭଙ୍ଗିରେ ଭାରତଭାବନା ଓ ବିଶ୍ୱଭାବନା ଶାନ୍ତନୁଙ୍କ ମୌଳିକ ଦୃଷ୍ଟି ଓ କଳାକୁଶଳତାର ପରିଚାୟକ । 'ଅନୁ ହଜିଯିବା ପରେ' (୧୯୯୬) ଶାନ୍ତନୁଙ୍କ କ୍ରମ-ଉତ୍ତରିତ ମାନସର ଅନ୍ୟ ଏକ ପ୍ରତିନିଧି ଶ୍ରେଣୀୟ ସୃଷ୍ଟି । ଦକ୍ଷିଣାବର୍ତ୍ତ ଯାତ୍ରାଟି ଏଠାରେ ଏକ ଭବ୍ୟ, ଦିବ୍ୟ ଓ ପରିପୂର୍ଣ୍ଣ ରୂପ ପରିଗ୍ରହଣ କରିଛି । ଚେତନାର ଉତ୍ତରଣ, ରୂପାନ୍ତରୀକରଣ, ଏ ପରିଚିତ ଜଗତର ବାହାରେ ଥିବା ଭିନ୍ନ ଜଗତର ଅନ୍ୱେଷଣ ସର୍ବୋପରି ଅତିମାନସ ଭାବନାର

ବିଜ୍ଞାନ ସମ୍ମତ ରୂପାୟନରେ ଏହାର ନୂତନ ଉପଲବ୍ଧି ପ୍ରଦାନ କରେ । 'ଅନୁ ହଜିଯିବା ପରେ' ସମ୍ବନ୍ଧରେ ଶାନ୍ତନୁ କହନ୍ତି- 'ଏହାର ପୃଷ୍ଠଭୂମିରେ ଶ୍ରୀ ଅରବିନ୍ଦ ଥିବାରୁ ଅନେକ ଏହାକୁ 'ଦକ୍ଷିଣାବର୍ତ୍ତ' ଧାରାର କହନ୍ତି । କିନ୍ତୁ ଶ୍ରୀ ଅରବିନ୍ଦ ଓ ଦି ମଦରଙ୍କୁ ମୁଁ ଆର୍ଯ୍ୟ ଋଷିର ପ୍ରତୀକ ଭାବେ ନେଇଛି । ସେମାନେ ବେଦବେଦାନ୍ତ ଯୁଗରୁ ବଂଚିରହିଛନ୍ତି । ପୁଣି ବସ୍ତୁ (matter)ର ତିନି ଡାଇମେନ୍‌ସନ୍ ଛଡ଼ା ଅନ୍ୟ ଡାଇମେନସନ୍ ମାନ ଅଛି । ରୂପାନ୍ତରୀକରଣ ସମ୍ପର୍କରେ ଆମର ଭୁଲ୍ ଧାରଣା ଅଛି । ଏବେ ବୈଜ୍ଞାନିକ ତତ୍ତ୍ୱ ବେଦବେଦାନ୍ତ ସହ ମିଶିଲାଣି । ଅତି ମାନସ ତତ୍ତ୍ୱଟି Science of evolution - ପାଶ୍ଚାତ୍ୟ ବିଜ୍ଞାନ ସହ ସମନ୍ୱିତ ହେବା ଆବଶ୍ୟକ । ଆମେ ଯେ ଯାଏଁ evolution ladderରେ ନ ଚଢ଼ିଛନ୍ତି -ସେମିତି ଧନ୍ଦି ହେଉଥିବା ।'

'ଧରିତ୍ରୀର କାନ୍ଦ'ଟି ତା'ର ସମୟ, ପରିସର ଓ ପ୍ରକାଶଭଂଗୀ ଦୃଷ୍ଟିରୁ 'ଶତାବ୍ଦୀର ନଚିକେତା' ଧାରାର । ଭାରତୀୟ ପୃଷ୍ଠଭୂମି ଓ ମାନବିକ ଆବେଦନ ଦୃଷ୍ଟିରୁ 'ଦକ୍ଷିଣାବର୍ତ୍ତ' ଓ 'ଶକୁନ୍ତଳା'ର ସମଗୋତ୍ରୀୟ । 'ନରକିନ୍ନର'ର ଆତ୍ମ ପରିଚୟ ଖୋଜିବାର ଅସ୍ତିତ୍ୱବାଦୀ ଭାବଟି ଏ ଉପନ୍ୟାସରେ ବିଶ୍ୱମାନବିକତା ଓ ସନାତନ ମୂଲ୍ୟବୋଧ ପିଣ୍ଡିତ ଭାରତୀୟ ସଂସ୍କୃତିର ମଞ୍ଜ ଭିତରେ ଏକ ନୂତନ ସଂଜ୍ଞା ଓ ପରିପୂର୍ଣ୍ଣତା ପାଇଛି । 'ଅନୁ ହଜିଯିବା ପରେ' ବିଶ୍ୱଚିନ୍ତା ଜଗତର ସର୍ବୋତ୍ତମ ଓ ସଦ୍ୟତମ ଚିନ୍ତାର ରୂପାୟନ । କହିବାକୁ ଗଲେ ଶାନ୍ତନୁ ଆଚାର୍ଯ୍ୟଙ୍କର ସମସ୍ତ ଉପନ୍ୟାସ ଗୁଣାତ୍ମକ ଉତ୍କର୍ଷ, ନାନ୍ଦନିକତା, ଦାର୍ଶନିକ ଅଭିବ୍ୟକ୍ତି, ନୂତନ ପ୍ରକାଶଭଙ୍ଗୀ, ସାମାଜିକ ବାସ୍ତବତା ସହ ଆଧ୍ୟାତ୍ମିକ ଚେତନାର ପରିପ୍ରକାଶ, ସମକାଳର ଯଥାର୍ଥ ପରିସ୍ଫୁଟନ, କ୍ଷେତ୍ର ବିଶେଷରେ କାଳୋତ୍ତୀର୍ଣ୍ଣ ଅଭିବ୍ୟକ୍ତି ପ୍ରଦାନ ତଥା ବିଶ୍ୱ ଉପନ୍ୟାସ ପରିପ୍ରେକ୍ଷୀରେ ଚିନ୍ତା ଜଗତର ସଦ୍ୟତମ କଥା ପରିବେଷଣ ଦିଗରେ ଗୋଟିଏ ଗୋଟିଏ ସାର୍ଥକ ଉଚ୍ଚାରଣ ।

(୪)

ଉପନ୍ୟାସର ବର୍ଣ୍ଣନା ବିନ୍ୟାସର ନାଟକୀୟତା, ରୂପକ, ପ୍ରତୀକ ଓ ମିଥ୍‌ର ପ୍ରୟୋଗ, ଚିତ୍ର ଓ ଚିତ୍ରକଳ୍ପ ନିର୍ମାଣ, ଫାଣ୍ଟାସିର ଅବତାରଣା, ବେଦ, ଉପନିଷଦ ଓ ପୁରାଣର ସୁସମ ଉପଯୋଗ, କଥିତ ଓ ଲୋକ ପ୍ରଚଳିତ ଭାଷାର ସୁଷ୍ଠୁ ପ୍ରୟୋଗ, କାବ୍ୟିକ ଭାଷା ପ୍ରୟୋଗ ସହିତ କାବ୍ୟିକ ପରିମଣ୍ଡଳ ସୃଷ୍ଟି ଶାନ୍ତନୁଙ୍କ କଳା କାରିଗରୀର ଉତ୍‌କର୍ଷ ପ୍ରମାଣିତ କରେ । ଏ ବିଶେଷତ୍ୱକୁ ସଂକ୍ଷେପରେ କହିବା ସମ୍ଭବ ନୁହେଁ । ଉପନ୍ୟାସ ଚର୍ଚ୍ଚାର ଏକ ପରିଚିତି ଉପସ୍ଥାପନ ପରିଶେଷରେ ଏକ ଭଲ ଉପନ୍ୟାସର ସଂଜ୍ଞା ଓ ଉଦ୍ଦେଶ୍ୟ ସଂପର୍କରେ ଲେଖକଙ୍କ ଅଭିମତ ଶୁଣିବା । ସେ କହନ୍ତି- 'ଯେକୌଣସି ସଫଳ ଉପନ୍ୟାସ ପାଠକକୁ ଏକ ନିର୍ଦ୍ଦିଷ୍ଟ idea ଦିଏ ଯାହା ତା'ର ପ୍ରତିଷ୍ଠିତ ideaକୁ ହୁଏତ ଚାଲେଞ୍ଜ କରେ କିମ୍ବା ପରିପୁଷ୍ଟ କରେ । ଏହି idea ଆସେ ଲେଖକର ମୌଳିକ ଦାର୍ଶନିକ ଚିନ୍ତାରୁ । ଲେଖକ ତା' ନିଜ ସମୟର ଚିନ୍ତାର ସୀମାନ୍ତରୁ ଆହ୍ୱାନ ଦିଏ । ଏ ଆହ୍ୱାନକୁ ଶୁଣିବା ପାଇଁ ଯେଉଁ ପାଠକ ପ୍ରସ୍ତୁତ ଥାନ୍ତି ସେଇମାନେ ହିଁ ସେ ସମୟର ଚିନ୍ତାଶୀଳ ବ୍ୟକ୍ତି । ଏହିମାନଙ୍କ ଜରିଆରେ ଲେଖକର ଚିନ୍ତା ବା ଦର୍ଶନ କ୍ରମଶଃ ସାର୍ବଜନୀନ ହୁଏ । ତେଣୁ ଲେଖକ ତା' ସମୟର ଦ୍ରଷ୍ଟା ପୁରୁଷ । କବିକୁ ଏହି କାରଣରୁ ଦ୍ରଷ୍ଟା

କୁହାଯାଏ । ପୂର୍ବେ ଋଷିମାନେ ଦ୍ରଷ୍ଟାର ଦାୟିତ୍ୱ ତୁଲାଉଥିଲେ । ଏବେ କବି ଲେଖକମାନେ ଋଷିର ଦାୟିତ୍ୱ ଗ୍ରହଣ କରିଛନ୍ତି । ଏହି ଦୃଷ୍ଟିରୁ ଭଲ ଉପନ୍ୟାସର ସଂଜ୍ଞା କ'ଣ ତାହା ବୁଝାପଡ଼ିବ ।'

(୫)

ଏବେ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ କଥା ଜଗତର ଧାରା ଗଳ୍ପ ସମଗ୍ରର ପରିଚିତ ଓ ତାତ୍ପର୍ଯ୍ୟ ସଂପର୍କରେ ଚର୍ଚ୍ଚା କରିବା । ଶାନ୍ତନୁ କୁମାରଙ୍କ ପ୍ରଥମ ପାଞ୍ଚଗୋଟି ସଂକଳନ 'ମନମର୍ମର' ୧୯୬୨, 'ଦୁର୍ବାର' (୧୯୬୫), 'ଏଇ ଶେଷ ପଦଟି' (୧୯୭୨), 'ଅରଣ୍ୟର ଚୁଳ'(୧୯୭୪) 'ଅଦିନ ବଉଳ' (୧୯୭୮)କୁ ଆଦ୍ୟ କାଳୀନ ଗଳ୍ପ ଏବଂ 'ଏକବିଂଶ ଶତାବ୍ଦୀ ପାଇଁ ଗଳ୍ପ' (୧୯୮୧), ଆଦ୍ୟ ସକାଳ (୧୯୮୫), 'ସର୍ପଯାନ' (୧୯୮୯), 'ଚଳନ୍ତି ଠାକୁର' (୧୯୯୧), 'ନାଟାଲିଆର ଓଁକାର' (୧୯୯୫) 'ଗଳ୍ପବର୍ଣ୍ଣାଳୀ:୧' (୧୯୯୭)କୁ ଉତ୍ତର କାଳୀନ ଗଳ୍ପ ଭାବେ ଗ୍ରହଣ କରାଯାଇ ପାରେ । ଶାନ୍ତନୁ ଗଳ୍ପ ରଚନାର ପ୍ରାରମ୍ଭ କାଳରୁ ଉଭୟ ଭାବ ଓ ଶୈଳୀଶିଳ୍ପରେ ଜଣେ ପୋଖତ ଓ ପ୍ରାଜ୍ଞ କଥାଶିଳ୍ପୀର ପରିଚୟ ଦିଅନ୍ତି । ଏଠାରେ ଗାଳ୍ପିକଙ୍କର ପ୍ରାରମ୍ଭିକ ଗଳ୍ପର ସୂଚନା ସହ ବିଶେଷ ଭାବେ ଉତ୍ତରକାଳୀନ ଗଳ୍ପର ବୈଶିଷ୍ଟ୍ୟ ଉପସ୍ଥାପନ କରାଯାଉଛି ।

(୬)

ଶାନ୍ତନୁଙ୍କ ଆଦ୍ୟକାଳୀନ ଗଳ୍ପଗୁଡ଼ିକରେ ଯେଉଁ ବିଶେଷତ୍ୱମାନ ପ୍ରକଟିତ ଉତ୍ତରକାଳୀନ ଗଳ୍ପଗୁଡ଼ିକ ତା'ର ମାର୍ଜିତ ଓ ପରିଣତ ରସ ରୂପ । ଗଳ୍ପର ସ୍ଥାପତ୍ୟ ଓ ଭାବବୈଚିତ୍ର୍ୟ ମଧ କିଛି ଭାବେ ବିବର୍ତ୍ତିତ ହୋଇଛି । ବ୍ୟକ୍ତି ମନସ୍ତତ୍ତ୍ୱ ହେଉ କି ସାମାଜିକ ସମସ୍ୟାର ଉତ୍‌ଥାପନ କିମ୍ବା ସଂସ୍କୃତି ଓ ମୂଲ୍ୟବୋଧ ସଚେତନତାର କଥା ହେଉ ଉତ୍ତର କାଳୀନ ଗଳ୍ପର କଥା ପରିସର ବିସ୍ତୃତ । ଶାନ୍ତନୁଙ୍କ ଗଳ୍ପର ଆଙ୍ଗିକ ଓ ଆତ୍ମିକ ଦିଗ ଦ୍ୱୟ ଏପରି ଭାବେ ସମ୍ବନ୍ଧାନ୍ୱିତ ଯେ ଗୋଟିକୁ ଭିନ୍ନ କରି ଅନ୍ୟ ଦିଗଟିକୁ ଦେଖିବା ସହଜ ହୁଏ ନାହିଁ । ନିଜର ବକ୍ତବ୍ୟ ବା ତାତ୍ପର୍ଯ୍ୟକୁ ରୂପ ଦେବା ପାଇଁ ଗାଳ୍ପିକ କଥାବସ୍ତୁ ନିର୍ବାଚନ ତଥା ଉପସ୍ଥାପନ ଢଙ୍ଗଟିକୁ ଏପରି ଚମକ ପ୍ରଦ ଓ ବର୍ଣ୍ଣାଢ଼୍ୟ ଚମକକୁ ସହଜେ ଧରି ହୁଏନା । ପାଠକ ଯେଉଁ ମୁହୂର୍ତ୍ତରେ ମନରେ ଏକ ନିର୍ଦ୍ଦିଷ୍ଟ ଧାରଣା ତିଆରି କରୁଥାଏ, ସେ ଧାରଣା-ଜଗତକୁ ଓଲଟ ପାଲଟ କରି ଗାଳ୍ପିକ ତାକୁ ଏକ ବିଶେଷ ଧରଣର ଜଗତକୁ ନେଇଯାଆନ୍ତି । ଗଳ୍ପର ପରିଣତିରେ ସବୁ କଥା ରହେନା- ଗଳ୍ପ ପରିବେଷ୍ଟିତ ଭାବର ଉଦ୍‌ବେଳନରୁ ପାଠକ ଗଳ୍ପର ଅସଲ ମର୍ମବିନ୍ଦୁକୁ ଚିହ୍ନଟ କରିପାରେ । ଆକସ୍ମିକତା, ଘଟଣାର ଅପ୍ରତ୍ୟାଶିତ ଘଟାନ୍ତର, ଆପାତଃ ଅବିଶ୍ୱାସ୍ୟ ପରିଣତି, ନୂତନ ଚମକ ପ୍ରଦାନ, ଗଭୀର ବ୍ୟଞ୍ଜନାତ୍ମକ ଅର୍ଥ ସୃଷ୍ଟି ହିଁ ତାଙ୍କ ଗଳ୍ପ ସ୍ଥାପତ୍ୟର ଆୟୁଧ । ସମକାଳୀନ ଜୀବନଧାରାରେ ସଂଘଟିତ ସାଧାରଣ ଅସାଧାରଣ ଯେକୌଣସି ଘଟଣା ଠୁଁ ଗଭୀରତମ ମାନବୀୟ ଓ ସାଂସ୍କୃତିକ ଘଟଣାମାନ ତାଙ୍କ ଗଳ୍ପର ଉପାଦାନ ହେଇଥାନ୍ତି । ପ୍ରତୀକ, ରୂପକ, ସଂଳାପ ନିର୍ଭର କଥା-ଭଙ୍ଗୀ, ପରିମିତ ବର୍ଣ୍ଣନା କୌଶଳ ମଧ ଦେଇ ପାଠକ ତାଙ୍କ ଗଳ୍ପର ଦୁର୍ଗତୋରଣକୁ ପ୍ରବେଶ କରେ । ଗଳ୍ପର ଏକ ସ୍ଥୁଳ ଓ ଲଘୁ ଆବରଣ ଓ ଆବେଦନ ଥାଏ- କିନ୍ତୁ ତା'ର ଅତଳରେ ଏକ ବିସ୍ମୟୋଦ୍ଦୀପକ ଓ ଗଭୀର ଉପଲବ୍ଧିର ଅର୍ଥମୟ ଜଗତ ଯେ ଆତ୍ମଗୋପନ କରିଥାଏ ତାହା ଅନିସନ୍ଧିତ୍ସୁ ପାଠକ

ମାତ୍ରେଇ ଅନୁଭବ କରିଥାଏ । ବହୁ ଜଟିଳ ଓ ବିରଳ ଉପଲବ୍‌ଧି ଓ ମାନସିକତାର ଭିନ୍ନ ଧର୍ମୀ ଉପସ୍ଥାପନ ହିଁ ଶାନ୍ତନୁଙ୍କୁ ସମସାମୟିକ କଥାଶିଳ୍ପୀଠୁଁ ନିଆରା କରି ଚିହ୍ନାଏ । ପ୍ରତୀକ, ରୂପକ ଓ ଦୃଶ୍ୟ-ବିହ୍ୱଳତାର ଚାବିକାଠି ଧରି ଅଧିକ ବୁଦ୍ଧିଦୀପ୍ତ ପାଠକ ହିଁ ଶାନ୍ତନୁଙ୍କ ଗଳ୍ପ ଜଗତକୁ ଅନୁପ୍ରବେଶ କରିବାରେ ସଫଳ ହୁଏ ।

(୭)

ଶାନ୍ତନୁଙ୍କର ଉତ୍ତରକାଳୀନ ଗଳ୍ପଗୁଡ଼ିକ ସଂଖ୍ୟାରେ (ଅସଂକଳିତକୁ ମିଶାଇ) ଶତାଧିକ । ଏ ପର୍ଯ୍ୟାୟରେ ସମାଜ-ରାଜନୀତିକ ସ୍ୱରୂପ ଭିତ୍ତିକ ଗଳ୍ପଗୁଡ଼ିକର ବିକାଶ ପ୍ରାଧାନ୍ୟ ପାଇଛି । ସମକାଳୀନ ଦୁଃସ୍ଥିତିର ଅବିକଳ ଚିତ୍ର ପରିବେଷଣ ସହିତ ତୀକ୍ଷ୍ଣ ତାପିତ ବ୍ୟଙ୍ଗ ବିଦ୍ରୂପର ପ୍ରୟୋଗ ଏହାର ବିଶେଷତ୍ୱ । ବିଷୟ ବିନ୍ୟାସରେ ଗାଳ୍ପିକ ଏତେ ପ୍ରତ୍ୟକ୍ଷ ଓ ସୁନିର୍ଦ୍ଦିଷ୍ଟ ଯେ ଏହା ସମକାଳୀନ ଭାରତବର୍ଷର ରାଜନୀତିକ ଇତିହାସର ସାମଗ୍ରୀ, ଉପାଦାନ ବା ତଥ୍ୟ ଭାବେ ଗୃହୀତ ହୋଇପାରନ୍ତି । ମନ୍ତ୍ରୀ-ବିଧାୟକ ବଳୟିତ ରାଜନୀତି ଓ ବ୍ୟୁରୋକ୍ରାସିର ଜନ୍ତା ବ୍ୟକ୍ତି ଓ ସାମାଜିକ ଜୀବନ-ସ୍ଫୁର୍ତ୍ତିକୁ କେଉଁ ପରି ନାରଖାର ଓ ଧ୍ୱଂସମୁଖୀ କରିଛି ତା'ର ନାଟକୀୟ ବିନ୍ୟାସ ଓ ଯଥାଯଥ ପରିବେଷଣ ଗାଳ୍ପିକଙ୍କୁ ଏକ ସାମାଜିକ ଅଙ୍ଗୀକାରବଦ୍ଧ ଓ ସମକାଳ ସଚେତନ ଗାଳ୍ପିକର ମାନ୍ୟତା ଦିଏ ।

ସ୍ୱାଧୀନତା ପରବର୍ତ୍ତୀ ଭାରତବର୍ଷର ରାଜାନୀତି କବଳିତ ଗ୍ରାମ୍ୟ ଓ ସହରୀ ଜୀବନ, ହତ୍ୟା, ଧର୍ଷଣ, ସାମାଜିକ ସଂଘର୍ଷ ଓ ସଂଗ୍ରାମଠୁଁ ଆରମ୍ଭ କରି ମଣ୍ଡଳ, ଡଙ୍କେଲ୍ ଓ ରୁଷିଆର ଗ୍ଲାସ୍‌ନସ୍ତ ଓ ପେରିସ୍ତ୍ରୋଇକା ପର୍ଯ୍ୟନ୍ତ ଘଟଣାମାନ ଆଚାର୍ଯ୍ୟଙ୍କ ଗଳ୍ପ ପରିସରଭୁକ୍ତ । ଏ ପ୍ରକାର ଗଳ୍ପରେ ଗାଳ୍ପିକର ଏକ ଭବିଷ୍ୟ ଦୃଷ୍ଟି ମଧ ପ୍ରତିଫଳିତ । ସେଇ ଲାଗି ଗଳ୍ପ ସଂକଳନର ନାଁ ଦିଅନ୍ତି ଏକବିଂଶ ଶତାବ୍ଦୀର ଗଳ୍ପ । ବିଧିବଦ୍ଧ ବର୍ଣ୍ଣନା ହେଉ କିମ୍ବା ଘଟଣାଚୟନ ଜରିଆରେ ହେଉ ଗାଳ୍ପିକ ଚରିତ୍ରମାନଙ୍କ ମୁହଁରେ ଅନେକ କଥା କୁହାଇଛନ୍ତି । ଅର୍ଥ ଓ କ୍ଷମତାର ଅସୁର ନିରୀହ ମଣିଷମାନଙ୍କୁ ଯେଉଁ ନିର୍ଯ୍ୟାତନା ଦେଇ କ୍ଷମତାର ଖେଳ ଜାହିର୍ ରଖନ୍ତି ତା'ର ପ୍ରତ୍ୟକ୍ଷ, ସମୟାନୁସାରୀ, ସତେଜ ଓ ସଦ୍ୟତମ ରୂପାୟନରେ ଶାନ୍ତନୁ ହିଁ ସମକାଳୀନ ଗଳ୍ପ କ୍ଷେତ୍ରରେ ଅଗ୍ରଗଣ୍ୟ ଶିଳ୍ପୀ । ଆଦ୍ୟକାଳୀନ ଗଳ୍ପ 'ପଡ଼ୋଶୀ', 'ଇନ୍ଦ୍ର ଓ ଇନ୍ଦୁର', 'ପିଠି', 'ସତ୍ୟାଗ୍ରହୀ' ଆଦି ଗଳ୍ପ ଏଗୁଡ଼ିକ ପରବର୍ତ୍ତୀ ବିସ୍ତାରିତ ରୂପ । ଏ ପ୍ରକାର ଗଳ୍ପରେ ଦୁଇଧାରାର ଚରିତ୍ର-କ୍ଷମତା ସିଂହାସନର ମଣିଷ ବ୍ୟଙ୍ଗ ବିଦ୍ରୂପର ଶରବ୍ୟ ଏବଂ ଅନ୍ୟପକ୍ଷରେ ଏମାନଙ୍କ ଦ୍ୱାରା ନିର୍ଯ୍ୟାତିତ ଅଧସ୍ତନ ମଣିଷ ଓ ସାଧାରଣ ଚରିତ୍ର ସକଳ ସ୍ରଷ୍ଟା ହୃଦୟର ସଂବେଦନା ସିକ୍ତ । ଏହି ସମାଜ-ରାଜନୀତିକ ଚେତନା ଭିତ୍ତିକ ଗଳ୍ପରେ ସମକାଳର ଭାରତବର୍ଷର ଯେକୌଣସି ସ୍ଥାନ ଗଳ୍ପର ପୃଷ୍ଠଭୂମି । କ୍ଷମତା ପଶାପାଲିର ଏ ତଥାକଥିତ ବର୍ଗ ବା ଯୋଦ୍ଧାମାନଙ୍କୁ ଗାଳ୍ପିକ ଶ୍ୱାନ, ଶୃଗାଳ, ଅସୁର, ରାକ୍ଷସ ଓ ଭୂତ ରୂପକ ମଧ ଦେଇ କଳା ସଙ୍ଗତ ଭାବେ ଚର୍ଚ୍ଚିଣା କରିଛନ୍ତି । କ୍ଷମତାସୀନ ମଣିଷର ନିଷ୍ପ୍ରଭ ଓ ମଳିନ ଚେହେରା ପାଠକ ଭିତରେ ଏକ ସଚେତନତାର ଭିତ୍ତି ପ୍ରସ୍ତୁତ କରେ । ଏପ୍ରକାର ଗଳ୍ପମାନଙ୍କର ଉପସ୍ଥାପନ ଭଙ୍ଗୀ ଏତେ ନାଟକୀୟ ଓ କୌତୁହଳପ୍ରଦ ଯେ ତାହା ପାଠକକୁ ସ୍ୱକୀୟ ବ୍ୟକ୍ତିଗତ ଓ ସାମାଜିକ ଅସ୍ତିତ୍ୱ ସମ୍ପର୍କରେ ଶକ୍ ଦେଇପାରେ । 'ସନ୍ନ୍ୟାସୀ ଓ

କୁକୁର' 'ଗାନ୍ଧୀ ଭବନର ଭୂତ', 'ଟେକ୍‌ନିକ୍', 'ହିଟ୍‌ଲର', 'ଅଲିମୁଦ୍ଦିନ୍', 'ରାମରାଜ୍ୟ', 'କ୍ଲାସମେଟ୍', 'ଆଧୁନିକ ରାକ୍ଷସ', 'ଅସତ୍ୟ ଯୁଗର ପଦଧ୍ୱନି', 'ମନ୍ତ୍ରୀଘର', 'ଚନ୍ଦ୍ରର ବାହାଘର', 'ବାଣୁଆ', 'ଭବିଷ୍ୟବାଣୀ' ପ୍ରଭୃତି ଗଳ୍ପଗୁଡ଼ିକ ଏକ ଧାରାର । ଯେକୌଣସି ଗଳ୍ପକୁ ବିଶ୍ଳେଷଣ କରି ସାମାଜିକ ଅସଙ୍ଗତି ଓ ଗାଳ୍ପିକର ସଂସ୍କାର ଓ ଶୋଧନ ଆଭିମୁଖ୍ୟ ତଥା ବିଦ୍ରୋହୀ ଦୃଷ୍ଟିଭଙ୍ଗୀକୁ ଠାବ କରାଯାଇପାରେ । ଏ ଦିଗଟି ସ୍ୱତନ୍ତ୍ର ଭାବେ ଆଲୋଚ୍ୟ ।

ଆଦ୍ୟକାଳୀନ ଗଳ୍ପ ପରି ଉତ୍ତରକାଳୀନ ସୃଷ୍ଟିରେ ଶାନ୍ତନୁଙ୍କର ପ୍ରାଚୀନ କାହାଣୀ, ଫାଣ୍ଟାସି ଓ ରୂପକ ଧାରାରେ କେତେକ ଗଳ୍ପ ରହିଛି । ବ୍ୟକ୍ତିର ସୂକ୍ଷ୍ମ ମନସ୍ତତ୍ତ୍ୱର ରୂପାୟନ ସହିତ ସାମାଜିକ ଦୁଃସ୍ଥିତିର ଚିତ୍ର ଫାଣ୍ଟାସି ଓ ରୂପକ ଧାରାର ଗଳ୍ପରେ ଆଲୋକିତ । ରୂପକ, ପ୍ରତୀକ ଓ ଅବାସ୍ତବ ବିନ୍ୟାସ ଆନ୍ତରାଳରେ ଗାଳ୍ପିକ ମାନବୀୟ ପ୍ରବୃତ୍ତିର ଯେଉଁ କେତେକ ବିରଳ ଦିଗକୁ ରୂପ ଦେଇଛନ୍ତି- ସାଧାରଣ ଘଟଣା ବିନ୍ୟାସ ଜରିଆରେ ତା'ର ପ୍ରକାଶ ସମ୍ଭବ ହୁଅନ୍ତା ନାହିଁ । ଏ ଧାରାର ଗଳ୍ପଗୁଡ଼ିକ ପ୍ରାଚୀନ କାହାଣୀର ପରମ୍ପରା ସହିତ  ସାଂପ୍ରତିକ ସମୟକୁ ସମନ୍ୱିତ କରିଛି । 'ନିଉଟ୍ରନ୍‌ବୋମା ବା ପ୍ରେମର ଔଷଧ', 'ସର୍ପଯାନ', 'ପ୍ରୋଜେକ୍ଟ ଟାଇଗର୍', 'ଜ୍ଞାନଦାନ୍ତ' ଆଦି ଗଳ୍ପ ଏଇ ଧାରାର 'ନିଉଟ୍ରନ୍ ବୋମା' ବା ପ୍ରେମର ଔଷଧ ଗଳ୍ପର ଏଣୁଅ ଓ ବୁଢ଼ିଆଣୀ ଚରିତ୍ରଦ୍ୱୟ ଅୟୁତବର୍ଷ ତଳର ଡିନୋସାର ଓ ମାଙ୍କଡସାର ସାଂପ୍ରତିକ ସଂସ୍କରଣ ଆଧୁନିକ ମଣିଷର ପ୍ରତୀକ ରୂପ । ମନୁଷ୍ୟର ପ୍ରବୃତ୍ତିଗତ ଆସୁରିକତାର ରୂପାୟନ ଓ ଗଳ୍ପର ପ୍ରତିପଦ୍ୟ । 'ପୋଜେକ୍ଟ ଟାଇଗର୍'ରେ ପ୍ରାଣୀ ରୂପକ ଜରିଆରେ ଅଗଣତାନ୍ତ୍ରିକ ଯୋଜନା ଓ ପଶୁସୁଲଭ ବାସନା ଓ ଆଚରଣକୁ ବିଦ୍ରୁପ କରାଯାଇଛି । 'ସର୍ପଯାନ' ଏ ଧାରାରେ ଏକ ସ୍ୱତନ୍ତ୍ର ଗଳ୍ପ । ଏହାର ଘଟଣା ସଂଘଟନ କେତେକାଂଶରେ ଅବାସ୍ତବ ବା ଫାଣ୍ଟାସିଧର୍ମୀ । ସାଧୁ ମହାନ୍ତ ଓ ତା'ର ସ୍ତ୍ରୀ ସାପ ପିଠିରେ ବସି ଏକ ଅଜଣା ଜଗତକୁ ଚାଲିଯାଆନ୍ତି ବୋଲି ଗଳ୍ପ ପ୍ରାରମ୍ଭରେ ବିସ୍ତୃତ ଭାବେ ବର୍ଣ୍ଣିତ । ନାରୀ ମୁକ୍ତି ଓ ସ୍ୱାଧୀନତାର କଥା ଗଳ୍ପଟିରେ ପ୍ରକଟିତ ହୋଇଛି । ଘୁଅ ଚରିବା ବା ଡାଆଣୀ ସାଜିବା ପରି ଘଟଣା ଗଳ୍ପଟିର ଦ୍ୱିତୀୟ ଭାଗରେ ସଂଯୋଜିତ । ବର୍ଷ ବର୍ଷ ଧରି ବାପ ଘର ଓ ପରେ ଶାଶୁଘର ଭିତରେ ବନ୍ଧ ଜୀବନଯାପନ କରୁଥିବା ନାରୀର ମନସ୍ତତ୍ୱ ଏଥିରେ ରୂପ ପାଇଛି । ଯେଉଁମାନେ ଗାଳ୍ପିକଙ୍କର ସୃଜନାତ୍ମକ ସାମ୍ବାଦିକତା (creative journalism)ର ରଚନା 'କରଞ୍ଜିଆ ଡାଏରୀ' (୧୯୮୪) ପାଠ କରିଥିବେ-ଏ ଗଳ୍ପଟି ସେମାନଙ୍କ ପାଇଁ ଅଧିକ ଗ୍ରହଣୀୟ ହେବ ବୋଲି ଆଲୋଚକ ମନେକରେ । ସାଧୁ ମହାନ୍ତର ପତ୍ନୀ କୁଇର ଉକ୍ତିରେ ଗାଳ୍ପିକର ବକ୍ତବ୍ୟ ପ୍ରକାଶ ପାଇଛି- 'ତମେ ପୁରୁଷମାନେ ଜନ୍ମରୁ ସ୍ୱାଧୀନ । ଆମେ ସ୍ୱାଧୀନତା ପାଉ ଚାଳିଷ ବର୍ଷରେ । ତମ ପାଇଁ ଜହ୍ନରାତି, ଜହ୍ନରାତି ଆମ ପେଇଁ ନୂଆ ଦୁନିଆ । କହିଲ- ଚାଳିଶ ବର୍ଷ ଘର କଣ ଅନ୍ଧାରେ ପଡ଼ିଥିବା ଜୀବନଟା ଯଦି ସ୍ୱାଧୀନତା ପାଇଲା ରାତି ଅଧରେ । ପୁଣି କୋଇଲିଟା ବା କାଇଁକି ଡାକିଲା ଏ ଜହ୍ନରାତିରେ ? ସେମିତି ଆଗକୁ ଆସୁଚି ରେ ଧନ ଅମେଇସା ରାତିର କିଟିକିଟ ଅନ୍ଧାର । ମୁଁ ପୁଣିଯିବି । ଆସୁ ଅମେଇସା.... ।' 'ଜ୍ଞାନଦନ୍ତ' ଗଳ୍ପଟି ଲୋକ କଥାରୁ ହିଁ ସଂଗୃହୀତ ଉପାଦାନର କଳାସଂଗତ ରୂପାୟନ । ଜ୍ଞାନଦନ୍ତ ଯୋଗୁଁ ଅଧିକ ଜ୍ଞାନ କେଜାଣି କାହିଁକି ପଣ୍ଡିତଙ୍କ ପାଇଁ ସମସ୍ୟା ସୃଷ୍ଟି କରିଛି । ଏ ସମସ୍ୟା ସମାଧାନ ପାଇଁ ସେ

ବ୍ୟାକୁଳ । ଘଟଣା କ୍ରମେ ଏହି ଦାନ୍ତଟି ଖସି ପଡ଼ିଛି ଓ ପଣ୍ଡିତଙ୍କ ଚାକରାଣୀ କର୍ତ୍ତୃକ ପିକଦାନୀରେ ଆଶ୍ରାପାଇଛି । ଜ୍ଞାନର ବୋଝ ଓହ୍ଲାଇ ଯିବାରୁ ପଣ୍ଡିତେ ଉଶ୍ୱାସ ଅନୁଭବ କରନ୍ତି । ଅଜ୍ଞାନତା ଓ ନିର୍ବୋଧତା ଅଧିକ ଜ୍ଞାନ ଲାଭ ଅପେକ୍ଷା ଶ୍ରେୟ ବୋଲି ସେ ବିଚାରନ୍ତି । କିନ୍ତୁ ରାଜଦରବାରରେ ନିଯୁକ୍ତ ଅନ୍ୟ ଏକ ପଣ୍ଡିତ ପାଣ୍ଡିତ୍ୟ ବୃଦ୍ଧି ପାଇଁ ଜ୍ଞାନଦାନ୍ତର ସନ୍ଧାନରେ ଆସି ପୂର୍ବ ପଣ୍ଡିତଙ୍କ ପିକଦାନୀରୁ ଜ୍ଞାନଦନ୍ତଟି ନେଇ ନିଜଠିଁ ରୋପଣ କରନ୍ତି । ସାଥେ ସାଥେ ଅଧିକ ଜ୍ଞାନର ଔଜଲ୍ୟ ହେତୁ- 'ଏହା ପାପକି ? ଜମା ନୁହେଁ'- ବୋଲି ବିବେଚନା କରି ପଣ୍ଡିତଙ୍କ ଚାକରାଣୀକୁ ଜୋର ଜବରଦସ୍ତି ସମ୍ଭୋଗ କରନ୍ତି । ଏପରି ଏକ ଅଜବ ଉପସ୍ଥାପନା ପାଠକର ଚେତନାକୁ ଚକିତ କରିବା ସହିତ ପ୍ରବୃତ୍ତିର ଅନ୍ଧାରୀ ଦିଗ ଓ ଛଦ୍ମଜ୍ଞାନ ଗାରିମାର ଭ୍ରଷ୍ଟ ଧାରାକୁ ପ୍ରତିଫଳିତ କରେ । ସାମାଜିକ ବାସ୍ତବତା ସହିତ ଏହି ପ୍ରସଙ୍ଗକୁ ଯୋଡ଼ିଲେ ତଥାକଥିତ ଜ୍ଞାନୀ ମଣିଷଟି ଅଧିକ ଶଠ ଓ ଅପରାଧ ଜଡ଼ିତ ହୋଇପାରେ ବୋଲି ମନେ ହୁଏନା କି ?

ଉତ୍ତରକାଳର ଗଳ୍ପରେ ଶାନ୍ତନୁଙ୍କର ରହସ୍ୟ ବ୍ୟଞ୍ଜକ ଉପସ୍ଥାପନା ଓ ଉପଲବ୍ଧି କେତେକ ଗଳ୍ପକୁ ସ୍ୱତନ୍ତ୍ର ସ୍ୱାଦ ମଣ୍ଡିତ କରିଛି । ଆଦ୍ୟ କାଳୀନ 'ଆମ ମାଉସୀ', 'ହରିଜନ' ଗଳ୍ପ ଏଇ ଧାରାର । ପାର୍ଥିବ, ମହାଜାଗତିକ ଉପଲବ୍ଧିର ବ୍ୟାଖ୍ୟା, ତଥାପଥିତ ଧାର୍ମିକ ବିଶ୍ୱାସ, ଈଶ୍ୱର ଏଷ୍ଣା ଓ କାଳବୋଧ ଏହି ରହସ୍ୟ ବ୍ୟଞ୍ଜନ ଗଳ୍ପମାନଙ୍କରେ ବିଶେଷ ପ୍ରତିପାଦ୍ୟ ବୋଲି ମନେହୁଏ । 'ଗାଈ ଖୋଜିବା ନା ବାଘ ଜଗିବା', 'ଆଦ୍ୟ ସକାଳ', 'ଭକ୍ତଲୋକ', 'ବୃକ୍ଷସାକ୍ଷୀ', 'ଯେଉଁଠି ମୀନ ଖେଳୁଛି', 'ଚାଲ୍ ସେଇଠିକି ଯୋଉଠି ଭଗବାନ ଅଛନ୍ତି' ଆଦି ଗଳ୍ପରେ ଏହା ମୂର୍ତ୍ତିମନ୍ତ । ଆମର ବିଶ୍ୱାସ ଓ ଅବବୋଧକୁ ଏହା ଉଖାରିଦିଏ । ସାମା ଚିକ ଅସଙ୍ଗତି, ଅପରାଧବୋଧ, ସଂସ୍କୃତି ଓ ମୂଲ୍ୟବୋଧର ଅବକ୍ଷୟର ଚିତ୍ର ବାଢ଼ିବା ସହିତ ଆଚାର ଓ ସଂସ୍କାର ବିଜଡ଼ିତ ଆମ ଅବଚେତନାରେ ନୂତନ ଉପଲବ୍ଧି ଅନୁସନ୍ଧିତ୍ସାର ଦ୍ୟୋତନା ସୃଷ୍ଟି କରେ । ଗଳ୍ପଗୁଡ଼ିକ ସହଜ ଗମ୍ୟ ନୁହଁନ୍ତି; ଅଧିକନ୍ତୁ ବହୁପ୍ରସ୍ଥୀ । ଏହାକୁ ବିଭାତକ ବା ଦ୍ୟୋତନାଧର୍ମୀ ଗଳ୍ପ ଭାବେ ଆଖ୍ୟାୟିତ କରାଯାଇପାରେ । ଏକ ଭିନ୍ନ ସାମାଜିକ ପୃଷ୍ଠଭୂମିରେ ରଚିତ 'ଗାଈ ଖୋଜିବା ନା ବାଘ ଜଗିବା' ଗଳ୍ପରେ ଜୀବାତ୍ମା-ପରାମାତ୍ମା, ପିଣ୍ଡ-ବ୍ରହ୍ମାଣ୍ଡ ବା ଜୀବନମୃତ୍ୟୁ ସମ୍ପର୍କୀୟ ଗହନ ଦାର୍ଶନିକ ତତ୍ତ୍ୱର ବିଶ୍ଳେଷଣ ଆମକୁ ସବୁ ସତ୍ୟ ଓ ଦ୍ୱନ୍ଦ ପାଖକୁ ନେଇଯାଏ । ଜୀବନ ଅନିସନ୍ଧିତ୍ସୁ ନା ପରମସତ୍ତା ଅନିସନ୍ଧିତ୍ସୁ ହେବା- ଜୀବନକୁ ନା ମୃତ୍ୟୁକୁ ଜଗିବା କେଉଁଟି ସତ୍ୟ ଓ କରଣୀୟ - ଏ ପ୍ରକାର ଗମ୍ଭୀର ପ୍ରଶ୍ନ ଚେତନାକୁ ଆଲୋଡ଼ିତ କରେ । ସେମିତି 'ଆଦ୍ୟ ସକାଳ' ରେ ଆଦ୍ୟ ଯୌବନର ବାସ୍ନାରେ ପୁଲକିତ ଓ ଉଚ୍ଚାଟିତ ଏକ କିଶୋରକୁ ଜୈବିକ ବାସ୍ନାର ବଳୟରୁ ଚଢ଼େଇଟିଏ ରକ୍ଷା କରୁଛି । ଚଢ଼େଇଟି ଏକ ଚିରକାଳୀନ ମାତୃସତ୍ତା ଓ ମୂଲ୍ୟବୋଧର ମହିମାମୟ ପ୍ରତୀକ ଭାବେ ଚିତ୍ରିତ । ବାଘଟି ଜୈବିକ ସତ୍ତା, ବାସନା ଅଧ୍ୟୁଷିତ ସାଂପ୍ରତିକ ସଭ୍ୟତା ଓ କାଳ ମଧ । 'ଆଦ୍ୟ ସକାଳ' ଗଳ୍ପଟିକୁ ଭିନ୍ନ ଦୃଷ୍ଟିରୁ କେହି ଅର୍ଥ କରିପାରନ୍ତି । ପୁଣି ଈଶ୍ୱରଙ୍କ ଅସ୍ତିତ୍ୱ ଓ ଅନସ୍ତିତ୍ୱ ସମ୍ପର୍କରେ 'ଭକ୍ତଲୋକ', 'ଚାଲ ସେଇଠିକି' ଯୋଉଠି ଭଗବାନ ଅଛନ୍ତି' ଇତ୍ୟାଦି ଗଳ୍ପ ଆମକୁ ଗଭୀରତମ ଭାବେ ଜିଜ୍ଞାସୁ କରେ । ଏକ ଭିନ୍ନ ଉପଲବ୍ଧି ଓ ପ୍ରତ୍ୟୟ ବାର୍ତ୍ତା ଆମ ଭିତରେ ସଂଚରିତ ହୁଏ ।

ଶାନ୍ତନୁଙ୍କର କେତେକ ଗଳ୍ପ ଆମକୁ ପାର୍ଥିବ ଜୀବନ ଅନ୍ତରାଳରୁ ପାରତ୍ରିକ ଜଗତକୁ ନେଇ ଯାଆନ୍ତି । ଉତ୍ତୀର୍ଣ୍ଣ ବା ଆଧାତ୍ମିକ ସ୍ପର୍ଶ ଦିଅନ୍ତି । ତାଙ୍କର ଆଦ୍ୟକାଳୀନ 'ଅରଣ୍ୟର ଚୂଳ' ଗଳ୍ପରେ ଅରଣ୍ୟର ଚୂଳ ସୂର୍ଯ୍ୟାଲୋକରେ ଗଳ୍ପ ପୁରୁଷଙ୍କୁ ଦିଶି ଯାଇଛି ମନ୍ଦିର ମିତି । 'ଏ ଚଢ଼େଇର ନା କଅଣ' ଗଳ୍ପଟିକୁ ଦେଖନ୍ତୁ । ଯାନ୍ତ୍ରିକ ଓ ଯନ୍ତ୍ରଣା ଜଡ଼ିତ ଯୁଗ ଓ ଜୀବନ ପରିପ୍ରେକ୍ଷୀରେ ନାଁ ଅଜଣା ଚଢ଼େଇଟିର ଡାକ ଗଳ୍ପ ନାୟକକୁ ଶୁଭିଯାଏ । ତାହା ଅରୂପ, ଅସୀମ ଓ ଅପାର୍ଥିବତାର ଡାକ । ତାକୁ ଶୁଣିବାକୁ ଆତ୍ମିକ ପ୍ରସ୍ତୁତି ଓ ଉନ୍ମୁଖତା ଲୋଡ଼ା । ଯାତନା ଓ କୋଳାହଳକ୍ଳାନ୍ତ ଜୀବନ ଅନ୍ତରାଳରେ ଏ ସମ୍ଭାବନା ଆମକୁ ଆଧାତ୍ମିକ ସ୍ପର୍ଶ ଅଭିଳାଷୀ କରେ । ଆମେ ଚଢ଼େଇର ନାଁ ଖୋଜୁ ଖୋଜୁ ନିଜକୁ ଖୋଜୁ- ଆତ୍ମ ପରିଚୟ ସନ୍ଧାନ କରୁ । ମନୋଜ ଦାସଙ୍କର 'ପର୍ଦ୍ଦା' କିମ୍ବା ବିଭୂତି ଭୂଷଣ ତ୍ରିପାଠୀଙ୍କର 'ପ୍ରସ୍ତୁତି ପର୍ବ' ଗଳ୍ପ ଏଧାରାର ସମଧର୍ମୀ ଉପସ୍ଥାପନ । 'ଚଳନ୍ତି ଠାକୁର' ଗଳ୍ପଟିରେ ନିରୀହ ନିଷ୍ପାପ ଶିଶୁ ହୋଇଯାଏ ଆଧାତ୍ମିକ ଓ ଐଶ୍ୱରୀକ ଉପଲବ୍ଧିର ଦ୍ୟୋତକ । ହିସାବନିକାଶ କ୍ଳାନ୍ତ, ଅର୍ଥ ଓ ପଦବୀ ପୀଡ଼ିତ ପାରିପାର୍ଶ୍ୱିକ ଜଗତକୁ ଏହା ଗ୍ରହଣ କରିବାକୁ କଷ୍ଟ ଲାଗେ । ଏହି ମହତ୍ତମ ଭାବ ଐଶ୍ୱର୍ଯ୍ୟର ଉପଲବ୍ଧି ଆମ ଚେତନାକୁ ଭିନ୍ନ ସ୍ପର୍ଶ ଦିଏ ।

ଶାନ୍ତନୁଙ୍କ ଗଳ୍ପ-ଶିଳ୍ପରେ ପୁରାଣ ଓ ଉପନିଷଦୀୟ ଭାବ ବିଳସିତ ଭାରତବର୍ଷର ମାଟି ପାଣି ପବନର ସ୍ୱାଦଗନ୍ଧ ଅନୁଭୂତ ହୁଏ । ଭାଙ୍ଗି ପଡୁଥିବା ସଂସ୍କୃତି ଓ ମୂଲ୍ୟବୋଧର ଶିଖଟିକୁ ସଜାଡ଼ିବାକୁ ଏହା ଅନୁପ୍ରେରଣା ପ୍ରଦାନ କରେ । ଅଧିକନ୍ତୁ ଏହା ଭିତରେ ଏକ ଭାରତୀୟ ସମତା-ସଂହତି ଏବଂ ଐତିହ୍ୟର ସଂରକ୍ଷଣ ସର୍ବୋପରି ଏକ ଭାରତୀୟତାର ଅଭିବ୍ୟକ୍ତି ପାଇଁ ପ୍ରଯତ୍ନ ପରିଲକ୍ଷିତ ମୂଲ୍ୟବୋଧର ଅଧଃପତନ ଏବଂ ସାଂସ୍କୃତି ବିଲକ୍ଷଣ ଗାଳ୍ପିକଙ୍କୁ ଗଭୀରଭାବେ ବ୍ୟଥିତ ଓ ବିମର୍ଷ କରିଛି । ଉତ୍କଳୀୟ ପୃଷ୍ଠଭୂମିରେ ରଚିତ 'ଅପଶବ୍ୟ', 'ମହାକବି ସାକ୍ଷୀ', 'ପରକୀୟା' ଏଇ ଧାରାର ଉଦାହରଣ । 'ଅପଶବ୍ୟ' ଗଳ୍ପରେ ପୁରୁଣା ମନ୍ଦିରର ମୂର୍ତ୍ତି ବଦଳରେ ନୂଆ ମୂର୍ତ୍ତି ଖଞ୍ଜି ଓ ପୁରୁଣା ମୂର୍ତ୍ତିକୁ ବିକି ପ୍ରଚୁର ଧନର ଅଧିକାରୀ ମଣିଷ ଜଣକ ଅର୍ଥ ଲାଳସାର ଅସୁର କବଳିତ ହୋଇପଡ଼ିଛି । ଆପଣାର ସଂସ୍କୃତିକୁ ଉଜାଡୁଥିବା ଅର୍ଥଲାଳସା ଗ୍ରସ୍ତ ଏଇ ମଣିଷଟି ମନ୍ଦିର ପ୍ରାୟ ପବିତ୍ର ନିଜ ସ୍ତ୍ରୀର ଇଜ୍ଜତକୁ ବିକିବାକୁ ପ୍ରସ୍ତାବ ଦିଏ ଏବଂ ପରିଶେଷରେ ତାକୁ ମାରିଦିଏ ମଧ୍ୟ । ଆସୁରିକତାର ନଗ୍ନ ପ୍ରତିଧ୍ୱନି ଯୋଗୁଁ ଆମ ସଂସ୍କୃତି ଓ ପରମ୍ପରା କାଳିମାଗ୍ରସ୍ତ ହୋଇ ପଡୁଛି । ଏଇ ଧାରାରେ 'ମହକବି ସାକ୍ଷୀ' ଗଳ୍ପ । ଗୀତ ଗୋବିନ୍ଦର କଳିତ ଲଳିତ ପଦାବଳୀ ଦୃଶ୍ୟ ଅଧ୍ୟୁଷିତ ଏ ସଂସ୍କୃତି ଭୂମିଟି ଅନ୍ୟ ମଣିଷଟିର ଭାବଜଗତକୁ ସ୍ପନ୍ଦିତ କରେ । ମାତ୍ର ଗୀତଗୋବିନ୍ଦ ପରି ପବିତ୍ର ନିଷ୍ପାପ କିଶୋରୀ ବି ସେଇ ଭୂମିରେ ଧର୍ଷିତା ହୁଏ । କାବ୍ୟକବିତା ଓ ମନ୍ଦିର ମାଳା ଅଧ୍ୟୁଷିତ ଏ ସାଂସ୍କୃତିକ ଭୂମିର ସୌନ୍ଦର୍ଯ୍ୟ ଓ ମର୍ଯ୍ୟାଦା ନିଜ ଭୂଇଁର ସଭ୍ୟ ମଣିଷର ଆସୁରିକ ଚେତନା ଦ୍ୱାରା ଲୁଣ୍ଠିତ ହେବା ଚରମ ବିଡ଼ମ୍ବନା ନୁହେଁ କି ? ଆମ ସାଂସ୍କୃତିକ ଅବକ୍ଷୟର ଗହନ ସ୍ୱରଟି ଚେତନାରେ ଏକ ବିଷାଦକ୍ରାନ୍ତ ପରିବେଶ ତିଆରି କରେ । ଓଡ଼ିଶା ପରିପ୍ରେକ୍ଷୀରେ ରଚିତ ଅନ୍ୟ ଏକ ଗଳ୍ପ 'ମାଟିର ସ୍ୱପ୍ନ' ସେଇ ବିଡ଼ମ୍ବନାର ଏକ ଭିନ୍ନଧର୍ମୀ ଉପସ୍ଥାପନା ।

ଶାନ୍ତନୁଙ୍କର ଆଦ୍ୟକାଳୀନ ସୃଷ୍ଟି 'ହୃଦକୋଲପ' ଗଳ୍ପଟି ଭାରତୀୟବୋଧର ଏକ ଶ୍ୟାମଳ ଦ୍ୟୋତନା ସୃଷ୍ଟି କରେ । ଏ ପରିପ୍ରେକ୍ଷୀରେ 'ଜାତୀୟ ଶୋକର ଅଧିକାରୀ', 'ଅଗଷ୍ଟ ପନ୍ଦର', 'ଅସତ୍ୟ ଯୁଗର ପଦଧ୍ୱନୀ'; 'ରାତିର ଶବ୍ଦ', 'ଦେବୀଙ୍କ ବାସ୍ନା' ଆଦି ଗଳ୍ପ ଭାରତୀୟ ସଂହତି, ସମତା, ସ୍ୱାତନ୍ତ୍ୟ ଓ ସ୍ୱାଧୀନତା ସମ୍ପର୍କରେ ଗଭୀର ପ୍ରଶ୍ନ ଉତ୍‌ଥାପନ କରେ । 'ଜାତୀୟ ଶୋକର ଅଧିକାରୀ' ଗଳ୍ପଟି ଗଳ୍ପ ପୁରୁଷର ସୃତିଚାରଣ କ୍ରମରେ ଲିଖିତ । ନିଜକୁ ହିନ୍ଦୁ ବୋଲି ଗର୍ବିତ ଓ ଗୌରବାନ୍ୱିତ ମନେକରୁଥିବା ଭାରତୀୟଟି ହିଁ ହୋଇଯାଏ ନିଜ ସଂସ୍କୃତି ଓ ମୂଲ୍ୟବୋଧର ଦାରୁଣ ହତ୍ୟାକାରୀ । ପିଲାଦିନର ଯେ ସମପର୍ଯ୍ୟାୟୀ- ଏ ନିର୍ଯ୍ୟାସ ସାଂପ୍ରଦାୟିକତା କବଳିତ ଦେଶରେ ଆମର ସ୍ଥିତି, ପରିଚୟ (identity) ସମ୍ପର୍କରେ ଆମକୁ ସନ୍ଦିହାନ କରେ । ଗଳ୍ପଟିର ନିର୍ମାଣ ଓ ଆବେଦନ ସମଗ୍ର ଭାରତୀୟ କଥା ସାହିତ୍ୟରେ ଅନନ୍ୟ ବୋଲି କୁହାଯାଇପାରେ । 'ଅଗଷ୍ଟପନ୍ଦର' ଦିନଟି ଭାରତୀୟ ମଣିଷ ପାଇଁ ସ୍ମରଣର ପବିତ୍ର ଦିବସ ନ ହୋଇ ଆଳସ୍ୟ, ବିଳାସ, ଶଠତା ଓ ମୃତ୍ୟୁର ଦିବସରେ ପରିଣତ ହୋଇଥିବାର ହୃଦୟ ବିଦାରକ ଅଭିବ୍ୟକ୍ତି ନିର୍ଦ୍ଦିଷ୍ଟ କାହାଣୀ ସଂଯୁକ୍ତ ହୋଇ 'ଅଗଷ୍ଟ ପନ୍ଦର' ଗଳ୍ପରେ ରୂପାୟିତ ହୋଇଛି । 'ଦେବୀଙ୍କ ବାସ୍ନା' ଗଳ୍ପରେ ସଂଗ୍ରାମୀ ତ୍ୟାଗପୂତା ନାରୀଚରିତ୍ର ଭିତରେ ଭାରତମାତାଙ୍କୁ ଠାବ କରିବା ଏବଂ ଦେବୀଙ୍କ ବାସ୍ନା ଆଘ୍ରାଣ କରିବା ଏକ ଭିନ୍ନ ଅବବୋଧ ଆଣିଦିଏ ।

ଶାନ୍ତନୁ ତାଙ୍କ ଗଳ୍ପମାନଙ୍କରେ ଆମର ସାମାଜିକ ଓ ମାନିବିକ ସମସ୍ୟାଗୁଡ଼ିକୁ ବଡ଼ ଗଭୀର ଭାବେ ଚର୍ଚ୍ଚମା କରି ତା'ର ମୂଳସୂତ୍ର ଓ ଉତ୍ସର ସନ୍ଧାନ କରି ବସନ୍ତି ବୋଲି ମନେହୁଏ । ଚଳିତ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ପଞ୍ଜାବ ସମସ୍ୟା ସାଂପ୍ରତିକ ଭାରତବର୍ଷର ଏକ ଜ୍ୱାଳାମୁଖୀ ସମସ୍ୟା । ପ୍ରତିଦିନ ନିରୀହ ମଣିଷଙ୍କୁ ହତ୍ୟା କରୁଥିବା ଆତତାୟୀଟି ପ୍ରତିଟି ଭାରତୀୟ ଆଖିରେ ସନ୍ତ୍ରାସ ଓ ଘୃଣାର ଭାବମୂର୍ତ୍ତି ତିଆରି କରେ । ବାଲି ଟ୍ରକର ଡ୍ରାଇଭର ଉତ୍ତମ ସିଂ ମୁହଁରେ ଗଳ୍ପନାୟକ ଦେଖେ ତା'ର ପ୍ରତିଫଳନ । ଯେଉଁ ମୁହଁ ଭିତରେ ଏତେ ସୌନ୍ଦର୍ଯ୍ୟ, ଉଦାରତା ଓ ମହାନୁଭବତା ପୂରି ରହିଛି ସେଇ ଶିଖ୍ ମଣିଷଟି ଯେ କେବେ ହତ୍ୟାକାରୀ ହୋଇ ପାରେନା- ଏ ପ୍ରକାର ଏକ ଆସ୍ଥା ଓ ପ୍ରତ୍ୟୟ ସାମାଜିକ ସମସ୍ୟା ବୁଝିବା ସହିତ ମାନସିକ ସହୃଦୟତାର ସ୍ଫୁରଣ ପାଇଁ ବାର୍ତ୍ତା ଦିଏ । ସମକାଳୀନ ବଧୂ ଓ ଶିଶୁ ନିର୍ଯ୍ୟାତନା ପରି ଗଭୀର ମାନସିକ ସମସ୍ୟାକୁ ପ୍ରକାଶ କରିବାରେ ଶାନ୍ତନୁଙ୍କର ଉପସ୍ଥାପନା ରୀତି ଭିନ୍ନ ଧରଣର । ମା' ପରିକା ମାତୃତ୍ୱର ସ୍ନେହସ୍ନିଗ୍ଧ ଝଲକ ପ୍ରକାଶ କରୁଥିବା ମାଇଁ ହିଁ 'ମାଈଙ୍କ ମ୍ୟାପ' ଗଳ୍ପରେ ଭାରତୀୟ ଜୀବନଧାରାରେ ନାରୀ ନିର୍ଯ୍ୟାତନାର ଏକ ମୂର୍ତ୍ତରୂପ । ଆଭିଜାତ୍ୟର ସୁନ୍ଦର ଆବରଣ ତଳେ ନିର୍ଯ୍ୟାତିତ କରିବାର ପରମ୍ପରା କିପରି କ୍ରମଶଃ ରକ୍ତଗତ ହୋଇ ଯାଇଛି ତା'ର କଳା ସଂଗତ ରୂପ 'ମାଈଙ୍କ ମ୍ୟାପ' । ଶିଶୁ ଓ ନାରୀ ନିର୍ଯ୍ୟାତନାର ଅନ୍ୟତମ ପରିପ୍ରକାଶ 'କୋକି' ଗଳ୍ପ । ଶାନ୍ତନୁଙ୍କ ଆଦ୍ୟକାଳୀନ ଗଳ୍ପରେ ଗୁରୁତ୍ୱ ପାଇଥିବା ବ୍ୟକ୍ତି ମନସ୍ତତ୍ତ୍ୱର ବିଶ୍ଳେଷଣ ଏ ପରିଣତ ପର୍ଯ୍ୟାୟରେ ସାମାଜିକ ମନସ୍ତତ୍ତ୍ୱର ରୂପାୟନରେ ସତେକି ରୂପାନ୍ତରିତ ହୋଇଯାଇଛି । ମାନବିକ ସହୃଦୟତାର ପରିପ୍ରକାଶ ତଥା ମାନବୀୟ ଅବିମୃଶ୍ୟକାରିତାର ରୂପାୟନ ଦିଗରେ ଶ୍ରୀ ଆଚାର୍ଯ୍ୟଙ୍କର 'ମୂଲ୍ୟବାନ ଦିନ' ଓ 'ପିତୃଋଣ' ପରିକା ଗଳ୍ପ ଦୁଇଟିକୁ ଚର୍ଚ୍ଚା କରାଯାଇପାରେ ।

ପାଶ୍ଚାତ୍ୟ ପୃଷ୍ଠଭୂମିର କିଛି ଗଳ୍ପ ଓଡ଼ିଆ ସାହିତ୍ୟକୁ ଏକଦା ଦେଇଯାଇଥିଲେ କଥାଶିଳ୍ପୀ ୰କୃଷ୍ଣପ୍ରସାଦ ମିଶ୍ର । କିଶୋରୀ ଚରଣ ଦାସ ମଧ୍ୟ ଏ ଧାରାରେ କିଛି ଗଳ୍ପ ଲେଖିଛନ୍ତି । ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ଆମେରିକା ଯାତ୍ରା ପୃଷ୍ଠଭୂମିରେ ଆମେ ପାଉ ଏଇ ଧାରାର ଆଉ କିଛି ନୂଆ ଧରଣର ଗଳ୍ପ । ଶାନ୍ତନୁଙ୍କ ଶେଷ ଦୁଇଟି ସଂକଳନ 'ନାଟାଲିଆର ଓଁକାର' ଏବଂ 'ଗଳ୍ପ ବର୍ଣ୍ଣାଳୀ:୧'ରୁ ଏ ଧାରାର କିଛି ଗଳ୍ପ ଭିନ୍ନସ୍ୱାଦ ପ୍ରଦାନ କରିଥାଏ । ଶ୍ରୀ ଆଚାର୍ଯ୍ୟଙ୍କ ଉପନ୍ୟାସୋପମ ଭ୍ରମଣ କାହାଣୀ 'ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ' ସୁଦୀର୍ଘ ରଚନା ଭାରତୀୟ ଜୀବନଚଳଣି ସହ ପାଶ୍ଚାତ୍ୟ ଜୀବନାଦର୍ଶର ଏକ ତୁଳନାତ୍ମକ ବିଶ୍ଳେଷଣ । ବସ୍ତୁତଃ ପ୍ରାଚୁର୍ଯ୍ୟ, ବିଳାସ ଓ ବିଜ୍ଞାନର ଅଗ୍ରଗତିରେ ସମୃଦ୍ଧ ପାଶ୍ଚାତ୍ୟ ଭୂମିର ଜୀବନ-ଧାରା କିପରି ବିପର୍ଯ୍ୟସ୍ତ ଓ ଅବକ୍ଷୟମୁଖୀ ତା'ର ସ୍ୱରୂପ ପ୍ରଦର୍ଶନ କରିବା ଏ ପ୍ରସଙ୍ଗର ଗଳ୍ପ କ୍ଷେତ୍ରରେ ଶାନ୍ତନୁଙ୍କର ଲକ୍ଷ୍ୟ । ପୁଣି ଅନ୍ୟପକ୍ଷରେ ଭାରତୀୟ ସଂସ୍କୃତିର ମହାନତା ପ୍ରତିପାଦନ କରିବା ସହିତ ପାଶ୍ଚାତ୍ୟ ଭୂମିରେ ଏବଂ ଚରିତ୍ରଙ୍କ ମନୋଜଗତରେ ଭାରତୀୟତାର ବିମଳ ସ୍ପନ୍ଦନକୁ ସଂଚରିତ କରାଇବା । ଏଣୁ ପାଶ୍ଚାତ୍ୟ ଭୂମିର ମଣିଷ ନାଟାଲିଆ ଓ କାର୍ଲ ଭାରତୀୟ ଜୀବନଧାରାର, ତା'ର ଅସଲ ସତ୍ତା ଓ ସୌନ୍ଦର୍ଯ୍ୟର ସ୍ୱରଝଙ୍କାରକୁ, ଓଁକାରକୁ ଶୁଣିପାରନ୍ତି ('ନାଟାଲିଆର ଓଁକାର', 'ବିଦାୟକାର୍ଲ') । ଜଗନ୍ନାଥ ଭାବରେ ବିହ୍ୱଳ ପାଶ୍ଚାତ୍ୟ ମଣିଷ 'ଓଚିଓନି' ତା'ର କଥାକଥିତ ଧାର୍ମିକ ବର୍ମରୁ ବାହାରି ଗାଁ ମୁଣ୍ଡ ଟୋଟେମ୍ ଖୁଣ୍ଟରେ ଖୋଦେଇ ମୂର୍ତ୍ତି ଭିତରେ ଜଗନ୍ନାଥଙ୍କୁ ପାଏ, ଅନୁଭବେ । ଏ ସାଂସ୍କୃତିକ ସମନ୍ୱୟ ବସୁଧା ସଂପ୍ରୀତିର ପରିଚାୟକ (ଓଚିଓନିର ଜଗନ୍ନାଥ) । ଫିଜିକ୍ସରେ ଡକ୍ଟରେଟ୍ କରିଥିବା ଆମେରିକୀୟ ମହିଳା ମିସ୍ ଜୋସେଫାଇନ୍ ଆସକ୍ୟୁ ଭାରତବର୍ଷକୁ ଆସି ଚାନ୍ଦ୍ରାୟଣ ବ୍ରତ ପାଳନ କରିବସନ୍ତି ନିଜ ଗର୍ଭରେ ଗାନ୍ଧୀଙ୍କ ପରି ସନ୍ତାନକୁ ଧାରଣ କରିବା ସ୍ୱପ୍ନରେ (ଚନ୍ଦ୍ରାୟଣ) । ନୀଳ ଆଖିର ଆମେରିକୀୟ ଝିଅ ଜୟସ୍ ଭାରତୀୟ ଦମ୍ପତିଙ୍କ ଆଖିରେ ଦେଶରେ ଛାଡ଼ି ଆସିଥିବା ତାଙ୍କ କନ୍ୟା ସିତୁନାର ପ୍ରତିରୂପ ହୋଇ ଛିଡ଼ା ହୁଏ । ଅଥଚ ଜୟସ୍ ଆଜି ତା'ର ନିଜ ଭୂଇଁରେ ହୋଇ ସାରିଥାଏ ପାରିବାରିକ ସ୍ନେହ ବିପର୍ଯ୍ୟସ୍ତ ପରିଚୟହୀନ ଏକ ଛିନ୍ନମୂଳ ସତ୍ତା (ବ୍ଲୁ ବେରି) । ଅତଏବ ପାଶ୍ଚାତ୍ୟ ପୃଷ୍ଠଭୂମିର ଗଳ୍ପମାନଙ୍କରେ ସାଂସ୍କୃତିକ ସମନ୍ୱୟର ଚିନ୍ତାଧାରା ସହ ବିଶ୍ୱ ମଣିଷର ଜୀବନଚଳଣିର ରୂପାୟନ ହିଁ ଯେମିତି ଗୁରୁତ୍ୱ ପାଇଛି । ଭାରତୀୟତାର ରସ ରୂପ ପ୍ରଦର୍ଶନ ହିଁ ଅସଲ ଲକ୍ଷ୍ୟ । ଏ ନେଇ ଗାଳ୍ପିକଙ୍କୁ (ଆମେରିକା ପୃଷ୍ଠଭୂମିରେ ଆପଣଙ୍କର ଏବକାର କିଛି ଗଳ୍ପ ଲିଖିତ- ସେ ସବୁ ପ୍ରଚ୍ଛନ୍ନରେ ଆପଣଙ୍କର ଅଭିମୁଖ୍ୟ କ'ଣ?) ପ୍ରଶ୍ନ ହେବାରେ ସୁଦୀର୍ଘ ଉତ୍ତର ଦେଇ କହନ୍ତି- ''ଆମେ ଚିନ୍ତାଧାରାରେ ଭାରତୀୟ; କିନ୍ତୁ ଆମର ପାତ୍ରପାତ୍ରୀ ଆଞ୍ଚଳିକ । ଆମ ଚିନ୍ତା ଚେତନାର Universilisation ହେବା ଦର୍କାର । ମୋର ଏହି ଭୂମଣ୍ଡଳୀକରଣ ଭାବ ରହିଛି । ଏହି ଭାବଟି ହେଉଛି ଜାତି ଧର୍ମ ନିର୍ବିଶେଷରେ ଗ୍ରହଣୀୟ ମାନବୀୟ ଚିନ୍ତାଧାରା- ଯାହାର ବିକେନ୍ଦ୍ରୀକରଣ ଲୋଡ଼ା । ଭାରତୀୟ ଚିନ୍ତାଧାରାକୁ ଗ୍ରହଣ କରିବା ପାଇଁ ଆମେରିକା ପ୍ରସ୍ତୁତ ଅଛି । କିନ୍ତୁ ତାଙ୍କୁ କହିବା ପାଇଁ, ରସସିକ୍ତ ପ୍ରଭାବ ସୃଷ୍ଟି କରିବା ପାଇଁ ପୁଷ୍କଳ ଉଦ୍ୟମ ଆବଶ୍ୟକ । ଆମେରିକା କହିଲେ Whiteman's America ନୁହେଁ; ଲକ୍ଷ ଲକ୍ଷ ଭାରତୀୟ ସେଠି ଅଛନ୍ତି । ଏହି ଧଳା ଲୋକଙ୍କୁ impress କରିବା ପାଇଁ ଆମେ ଲେଖା ମାଧ୍ୟମରେ ଚେଷ୍ଟା କରୁଛୁ- ଏହା ଭୂଲ । ଆମର ବ୍ରହ୍ମତତ୍ତ୍ୱ ତାଙ୍କର ବିଗବ୍ୟାଙ୍ଗ୍

ଥିଓରୀ । ଆମର ବ୍ରହ୍ମତତ୍ତ୍ୱ ଓ ତାଙ୍କର ବିଜ୍ଞାନର ସମନ୍ୱୟ ଦର୍କାର । ଫାମିଲି ସିଷ୍ଟମ ସେଠି ଭାଙ୍ଗିଚି । ଆମ ଲେଖାରେ ଆଦର୍ଶ ଫାମିଲିର ଚିତ୍ର ରହିବା ଆବଶ୍ୟକ । କିନ୍ତୁ ତାଙ୍କ ପ୍ରଭାବରେ ଆମ ଫାମିଲି ଭାଙ୍ଗୁଚି । ସେଠି ଯେଉଁ ମସ୍ତିଷ୍କ ବିକୃତି, ଡିଭୋର୍ସ, ନିଶାଖୋରି- ଏ ଅବକ୍ଷୟ ଏଠି ସଂପ୍ରସାରିତ ହେଉଛି । ଆମେରିକାରେ ଗରିବ ଓ ଚୋର ଢେର ଅଛନ୍ତି । ବିଶ୍ୱ ମାନବ ସର୍ବତ୍ର ସମାନ । ମୁଁ ବୁଲି ଆସିଛି ବୋଲି କଥା ଲେଖୁଛି । ସେମାନେ ସାହିତ୍ୟ ନାଁରେ ଅସାହିତ୍ୟ ଶିଖାଉଛନ୍ତି । ମୌଳିକ ଭାରତୀୟ ଚିନ୍ତାଧାରାର ଚିରନ୍ତନତା ପ୍ରତିଷ୍ଠା ହବା ଦର୍କାର । Comparision ଓ ସମନ୍ୱୟ ଆସିଲେ ଭାରତୀୟ ସାହିତ୍ୟଗୋଷ୍ଠୀ ଜାଣିବେ ଆମର ଭିତ୍ତିଭୂମି କ'ଣ । ବିଜ୍ଞାନରେ ବିଶ୍ୱାସ କରୁଥିବା ସେଠାକାର ବୈଜ୍ଞାନିକମାନେ କେବଳ 'ସତ୍', ଗୁଣର ଧାରକ, 'ଚିତ୍' ଓ 'ଆନନ୍ଦ' କଥା ତାଙ୍କଠି ନାହିଁ । ଏହା ଆମ ଦର୍ଶନ । ଆମର ଧାର୍ମିକ ଚିନ୍ତାଧାରା ଓ ଆଧାତ୍ମିକ ଚିନ୍ତାଧାରାର ସମନ୍ୱୟ ନିରପେକ୍ଷ ଭାବେ ସାହିତ୍ୟ କ୍ଷେତ୍ରରେ ସଂଘଟିତ ହେବା ଜରୁରି । ସେ ସମନ୍ୱୟର ମୁଖପାତ୍ର ବାବାଜୀମାନେ ହେବା ଉଚିତ୍ ନୁହେଁ । ସାହିତ୍ୟିକମାନଙ୍କର ସେ ଦାୟିତ୍ୱ ।''

ଶାନ୍ତନୁଙ୍କ ଗଳ୍ପ ସମଗ୍ରରେ ନାରୀ ମନସ୍ତତ୍ତ୍ୱ, ଭାରତବର୍ଷର ସାମାଜିକ ଓ ନୈତିକ ଅଧଃପତନ, ଅନ୍ୟଜଗତ ଏବଂ ଆନ୍ତର୍ଜାତିକ ପଟ୍ଟଭୂମି (ଭବିଷ୍ୟତର ନୋବେଲ ପୁରସ୍କାର ବିଜେତା: ଗଳ୍ପବର୍ଣ୍ଣାଳୀ ୧:୧୯୯୭) ନେଇ କେତୋଟି ସୂକ୍ଷ୍ମବୋଧୀ ଗଳ୍ପ ରହିଛି । ଅଳ୍ପରେ ସେ ସବୁର ପରିଚିତି ଓ ଚର୍ଚ୍ଚା ସମ୍ଭବ ନୁହେଁ ।

(୮)

ଗଳ୍ପଚର୍ଚ୍ଚାରେ ଉପସଂହାର ପର୍ଯ୍ୟାୟରେ କୁହାଯାଇପାରେ ଯେ- ଶାନ୍ତନୁଙ୍କର ଆଦ୍ୟକାଳୀନ ଗଳ୍ପ ପରିଣତ ପର୍ଯ୍ୟାୟରେ ଅଧିକ ମାର୍ଜିତ ଓ ସବଳିତ। ସାଂସ୍କୃତିକ ଓ ମୂଲ୍ୟବୋଧଗତ ଅବକ୍ଷୟ ଓ ସାମାଜିକ ଜୀବନର ମହଳଶତା ଗାଳ୍ପିକଙ୍କୁ ବ୍ୟଥିତ କରିଛି । ସାମାଜିକ ସଚେତନତା ପାଇଁ ବ୍ୟଙ୍ଗବିଦ୍ରୂପ ଗାଳ୍ପିକଙ୍କ ପାଇଁ ହୋଇଛି ଅମୋଘ ଆୟୁଧ । ଏକ କଲ୍ୟାଣକାମୀ ଚେତନା ଓ ମାନବିକ ସହୃଦୟତାର ପରିସ୍ଫୁଟନରେ ଗାଳ୍ପିକଙ୍କର ଏକ ପ୍ରତ୍ୟୟଯୁକ୍ତ ଆଶାବାଦୀ ଦୃଷ୍ଟିକୋଣର ଝଲକ ଗଳ୍ପମାନଙ୍କରେ ସର୍ବତ୍ର ଉପଲବ୍ଧ । ଫାଣ୍ଟାସି ଓ ରୂପକ ଧାରାର ରହସ୍ୟ ବ୍ୟଞ୍ଜନ ଉପସ୍ଥାପନ ଏବଂ ଆଧାତ୍ମିକ ଉପଲବ୍ଧିର ଝଲକ ପ୍ରଦାନ ଗାଳ୍ପିକଙ୍କର ଉତ୍ତରଣମୁଖୀ ମାନସିକତାର ପରିଚାୟକ । ଭାଷା ବ୍ୟବହାରରେ ଲୋକ ପ୍ରଚଳିତ ଶବ୍ଦାବଳୀ, ସ୍ଥଳ ବିଶେଷରେ ଉତ୍ତମ ଓ ଇଂରାଜୀ ଶବ୍ଦର ପ୍ରୟୋଗ ତାଙ୍କ ଗଳ୍ପକୁ ଶକ୍ତି ଯୋଗାଇଛି । ଗଳ୍ପରେ ପ୍ରତିଫଳିତ ଅଭିବ୍ୟକ୍ତି ବା ଉପଲବ୍ଧି ସମଗ୍ର ଜୀବନରେ ଉଦ୍‌ଭାସନ ପ୍ରଦାନ କରେ ।

(୯)

ଉଭୟ ଗଳ୍ପ ଓ ଉପନ୍ୟାସରେ ଉତ୍ତରଣ ମୁଖୀ ଶାନ୍ତନୁ କୁମାର ଆଚାର୍ଯ୍ୟ ବିପୁଳ ସ୍ୱୀକୃତି ଓ ସମ୍ମାନର ତୁଙ୍ଗତମ ପର୍ଯ୍ୟାୟରେ ବର୍ତ୍ତମାନ । ଶାନ୍ତନୁଙ୍କ ଶିଶୁ-କିଶୋର ମାନସିକତା ସମ୍ପର୍କିତ ଗଳ୍ପ ଓ

ପ୍ରବନ୍ଧ ତଥା 'କରଞ୍ଜିଆ ଡାଏରୀ'ର ସ୍ୱତନ୍ତ୍ର ଆଲୋଚନା ଆବଶ୍ୟକ । ଓଡ଼ିଆ କଥା ଜଗତର ଦିଗନ୍ତକୁ ସେ ଯେ ଆହୁରି ନୂତନ ରାଗ ରଙ୍ଗ ଓ ବର୍ଣ୍ଣ ବିଭାରେ ଆଲୋକଦୀପ୍ତ କରିବେ- ଏହା ଆଶା କରାଯାଇ ପାରେ ।

[ଆଲୋଚନାରେ ପ୍ରଦତ୍ତ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ବିଭିନ୍ନ ବକ୍ତବ୍ୟ ତାଙ୍କ ସହ ବ୍ୟକ୍ତିଗତ ସାକ୍ଷାତକାରରୁ ଉଦ୍ଧୃତ । ଏହି ସାକ୍ଷାତକାରର ପ୍ରଥମ ପର୍ଯ୍ୟାୟ (ଫେବୃୟାରୀ - ମାର୍ଚ୍ଚ :୧୯୮୮) 'ଇସ୍ତାହାର'-୪୫ (ମେ- ୧୯୮୯)ରେ ପ୍ରକାଶିତ ହୋଇଛି] ।



## ''ଅନୋମାର କନ୍ୟା ଓ ନବନ୍ୟାୟିକ ଦୃଷ୍ଟିଭଙ୍ଗୀ''

ଡକ୍ଟର ସନ୍ତୋଷ ତ୍ରିପାଠୀ

ଭାରତୀୟ କାବ୍ୟଶାସ୍ତ୍ର ବିବେଚନା ଧାରାରେ ମହତସ୍ରଷ୍ଟାଙ୍କ ପରିଭାଷା ନିର୍ଣ୍ଣୟ ଅବକାଶରେ ଗୋଟିଏ ବୃହତ୍ତମ ସିଦ୍ଧାନ୍ତରେ ଭାମହ, ଆନନ୍ଦବର୍ଦ୍ଧନ, ରାଜଶେଖର, ଧନଞ୍ଜୟ, ରୁଦ୍ରଟ, କୁନ୍ତକ, ବିଶ୍ୱନାଥ, ଗଙ୍ଗାଧର ପ୍ରମୁଖ ବିଦ୍ୱାନମାନେ ଉପନୀତ ହୋଇଛନ୍ତି ଯେ ମହତ- ବାଙ୍‌ମୟ- ଶିଳ୍ପୀମାନେ ପୁରାତନ ସତ୍ୟକୁ ଓ ଭାବମାନଙ୍କୁ ନୂଆ ସୌନ୍ଦର୍ଯ୍ୟରେ ବିଭାଜନ କରାଇବାରେ ସମର୍ଥ । ସେମାନେ ପୂର୍ବରୁ ବଳିଷ୍ଠ ଜୀବନ ଓ ଜଗତ ସଂପୃକ୍ତ ପ୍ରସିଦ୍ଧ କଥନ ଓ ଦର୍ଶନରେ ଭିନ୍ନ ବିଲକ୍ଷଣ ସର୍ଜନ କରିବାରେ ନିଜର ଅନ୍ତଃର୍ଦୃଷ୍ଟି ତଥା ଦ୍ୱିତୀୟ ଈଶ୍ୱରତ୍ୱର ସାଧନାକୁ ବିନିଯୋଗ କରିଥାନ୍ତି । ସେମାନଙ୍କର ସୂକ୍ଷ୍ମଭାବନା ବାମନର ତ୍ରିପାଦ ଭଳି ତ୍ରିକାଳ ଓ ତ୍ରିସ୍ତର ବ୍ୟାପିଯାଇଥାଏ । ପ୍ରତିପାଦ୍ୟ ବକ୍ତବ୍ୟକୁ ପୁରାତନ ଜୀବନ ବଂଚିବାର ସତ୍ୟଠାରୁ ମୁକ୍ତକରି ସମୟୋଚିତ ହୃଦୟ ସମ୍ବାଦରେ ପରିଣତ କରନ୍ତି । ଏମାନେ ମୁଖ୍ୟତଃ ପ୍ରାରବ୍ଧ ଅବବୋଧକୁ ପ୍ରକୃଷ୍ଟ ଉପଲବ୍ଧିରେ ରୂପାନ୍ତରିତ କରିଦିଅନ୍ତି । ପାଶ୍ଚାତ୍ୟ ସମାଲୋଚନା ଧାରାରେ ଇଲିୟଟଙ୍କ ପରସ୍ପର ବିଷୟାଶ୍ରୟୀ ସମ୍ବନ୍ଧତତ୍ତ୍ୱ, ଦେରିଦା, ରୋଲାଁ ବାର୍ଥସ୍, ଜାଁ ପଲସାର୍ତ୍ତ, ରସେଲ, ପ୍ରମୁଖ ଚିନ୍ତାନାୟକମାନେ ମଧ୍ୟ ସମର୍ଥନ କରନ୍ତି । ସାହିତ୍ୟ ସୃଷ୍ଟିର ପାଠକୀୟ ଆବେଦନଟି ଲେଖକଙ୍କର ସାଧାରଣ ଦୃଷ୍ଟି ସମର୍ଥିତ ସର୍ବୋତ୍ତମ ଦୃଷ୍ଟି ନିମନ୍ତେ ପୁରାତନ ବିଧାନ ଓ ଦର୍ଶନୋଚିତ ଅର୍ଥମେଳକୁ ଭାଙ୍ଗିଦେଇ ନୂଆ ନ୍ୟାୟବିଧାନ ଦେବା ଉପରେ ଚିରାଚରିତ ଓ ଧର୍ମରେ ପ୍ରତିଷ୍ଠିତ ହୋଇଥାଏ ।

ଏହି କ୍ରମରେ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ସର୍ଜନସତ୍ତା ପାଠକଙ୍କ ଉତ୍ତର ଦାୟବଦ୍ଧତା ସୂତ୍ରରେ ଅର୍ଜିତ ପ୍ରାରବ୍ଧ ଆଖ୍ୟାକୁ ଅଧାରକରି 'ଅନୋମାର କନ୍ୟା', 'ଉପନ୍ୟାସର ଚିତ୍ର ଚରିତ୍ର ବୃତ୍ତିରେ' ଅନୋଚ୍ଛାରିତ ଓ ଅନୁପଲବ୍ଧ ବିଶେଷତା ପ୍ରଦର୍ଶନ କରିଛନ୍ତି ।

'ଅନୋମା-ର- କନ୍ୟା' - ଏହି ତିନୋଟି ଶବ୍ଦର ସମନ୍ୱୟରେ ଉପନ୍ୟାସର ନାମକରଣ କରାଯାଇଛି । ଆଭିଧାନିକ ଅର୍ଥବିଧାନ ଦିଗରୁ ତିନୋଟି ଶବ୍ଦକୁ ନିମ୍ନମତେ ବିଚାର କରାଯାଇପାରେ-

- ଅନୋମା (ପୁରାଣ-ଐତିହ୍ୟବାଚକ ଶବ୍ଦ) - ଅର୍ଥ : ମହାନଦୀ (ଓଡ୍ରଭୂଖଣ୍ଡର ପବିତ୍ର / ଇତିହାସ ସଂପୃକ୍ତ /ଦୀର୍ଘ/ ବିସ୍ତାରିଣୀ ନଦୀ ବିଶେଷ). ।

● 'ର' - ଷଷ୍ଠୀ ବିଭକ୍ତିର ସମ୍ବନ୍ଧ ଭାବସୂଚକ ପ୍ରତ୍ୟୟ ବା ଚିହ୍ନ ।

●'କନ୍ୟା' - (କନ୍-ଯ-ଆ/ କନ୍ୟକା, କନ୍ୟା - ସଂସ୍କୃତାନୁସାରୀ ଶବ୍ଦ), ଅର୍ଥ: ଅବିବାହିତା/ ବିଭାପାଇଁ ମନୋନୀତା ଝିଅ/ ନାରୀର ସ୍ୱଅଂଶରୁ ଜାତ ଅନୋମାର ଉତ୍ତର ଅଂଶୀ ନଦୀ ଚିତ୍ରୋତ୍ପଳା ।

ଉପରୋକ୍ତ ଶବ୍ଦ- ବ୍ୟାଖ୍ୟାନ ଦିଗରୁ 'ଅନୋମାର କନ୍ୟା' ଉପନ୍ୟାସର ଆଭିଧାନିକ ନାମକରଣ ସୁଲଭ ପରିଭାଷାଟି ହେଉଛି - 'ମହାନଦୀର ପ୍ରାପ୍ତ ବୟସ୍କାଝିଅ- ''ଚିତ୍ରୋତ୍ପଳା''ର (ଅଂଶନଦୀ) ପ୍ରସଙ୍ଗ ଆଧାରିତ କଥାଗ୍ରନ୍ଥ ହେଉଛି 'ଅନୋମାର କନ୍ୟା'

ମାତ୍ର ଭାବଗତ ଅର୍ଥବୈଚିତ୍ର୍ୟ ତଥା ଚମତ୍କାରୋତ୍ପାଦକ ଅର୍ଥବିଧାନ ଦିଗରୁ କୁନ୍ତକଙ୍କ 'ନାମକରଣ ବକ୍ରତା'ତତ୍ତ୍ୱ ଭିତ୍ତିରେ 'ଅନୋମାର କନ୍ୟା' ଏହି ନାମଟି ଉଚ୍ଚାରଣ ପଠନ / ସ୍ମରଣ କରିବା ମାତ୍ରେ ସହୃଦୟ ହୃଦୟରେ ଯେଉଁ ବିସ୍ତାରିତ ଅର୍ଥଟି ଆତ୍ମପ୍ରକାଶ କରୁଛି ତାହା ହେଉଛି-

● 'ଅନୋମା' - ଉତ୍କଳର ଗୌରବମୟ ଅତୀତର ପ୍ରାରବ୍ଧ ପ୍ରତୀକ, ଯେଉଁ ନଦୀ ପ୍ରତୀକ ଇତିହାସର ଯୁକ୍ତି ଓ ପ୍ରାମାଣିକ ତଥ୍ୟ ଉର୍ଦ୍ଧ୍ୱରେ ବହୁ ଅନୋଦ୍‌ଘାଟିତ ସତ୍ୟ, ସଂସ୍କାର, ସଂସ୍କୃତି, ସଭ୍ୟତା ଓ ମାନବପ୍ରଗତିର ମୂକସାକ୍ଷୀ ହୋଇ ବହି ଚାଲିଛି ।

● 'ର' - ଅନୋମା/ ମହାନଦୀ - ଅବବାହିକା ସହିତ ଐତିହ୍ୟ ତଥା ପ୍ରାରବ୍ଧ ସୂତ୍ରରେ ସମ୍ବନ୍ଧ ସ୍ଥାପନ କରିଆସିଥିବା ଦେଶ -କାଳ- ପାତ୍ରର ସମ୍ବନ୍ଧ ସୂଚନା ।

●'କନ୍ୟା' - ମହାନଦୀ-ସଂସ୍କୃତିର ଉତ୍ତର - ଯୁବ ପିଢ଼ିର ଦାୟାଦ ଯିଏ ଏହାର ସମ୍ମାନ, ପ୍ରଚାର, ସୁରକ୍ଷା ଓ ନବମୂଲ୍ୟାୟନ କରିବାର ଦାୟବଦ୍ଧତାକୁ ଜୀବନର ଏକ ବ୍ରାତିକନିଷ୍ଠା ଭାବରେ ଅନୁଭବ କରିପାରିବ ।

ଉପନ୍ୟାସର ନାୟିକା ହେଉଛି 'ନଦୀ ନାମ ବିଶେଷା' ଚିତ୍ରୋତ୍ପଳା ଓରଫ ଚିତୁ । ଚିତ୍ରୋତ୍ପଳା ଅନୋମା ସଂସ୍କୃତିର ଉତ୍ତର ପିଢ଼ି, ଯାହାର ଦାୟିତ୍ୱ ଅନୋମାର ମର୍ଯ୍ୟାଦାକୁ ଭୂମିରୁ ଭୂମାସ୍ପର୍ଶୀ କରିବା । ଅନୋମାର କନ୍ୟା ଭାବରେ ଏ ଜାତିର ଯୁବପିଢ଼ିର ପ୍ରତିନିଧିତ୍ୱ କରିବାରେ ସମର୍ଥା ଚିତ୍ରୋତ୍ପଳା ମାନେ ନିଜର ପ୍ରାରବ୍ଧ ସ୍ମରଣ କ୍ରମେ ତଥାକଥିତ ଇତିହାସର ଯୁକ୍ତିକୁ କାଟି ନିଜ ସଂସ୍କୃତି ଓ ମାଟି ପଣର ସ୍ୱାଭିମାନ ସଂପର୍କରେ ନବନ୍ୟାୟିକ ଯଥାର୍ଥତାକୁ ପ୍ରମାଣିତ କରିବା ହେଉଛି ପ୍ରକୃତରେ ସାମାଜିକ ଦାୟବଦ୍ଧତା - ଏ ପ୍ରକାର ଏବଂ ଐତିହ୍ୟବାଦୀ ବିରଳ ଓ ବଳିଷ୍ଠ ଅନୁଭବରୁ ଔପନ୍ୟାସିକ ଉପନ୍ୟାସର ନାମକରଣ ନାରୀନାୟକ ପ୍ରଧାନ - 'ଅନୋମାର କନ୍ୟା' ରଖିଛନ୍ତି ।

ଏବଂବିଧ ନାମକରଣ ପଶ୍ଚାତରେ କଥାଶିଳ୍ପୀ ଶାନ୍ତନୁଙ୍କର ଭାବବାଦୀ ମାନସିକତାକୁ ଲକ୍ଷ୍ୟ କରାଯାଏ । ଏହି ମାନସିକତାଟି ହେଉଛି - ଏକ ପ୍ରତୀକାତ୍ମକ ନାମକରଣ ଭିତ୍ତିରେ ଔପନ୍ୟାସିକ ପ୍ରଥମରୁ ଏବଂ ପଠନଶେଷରେ ଐତିହ୍ୟଭାବାମୋଦୀ ପାଠକମାନଙ୍କୁ ନିଜ ମାଟିପଣର ଅତୀତ ପ୍ରତି ଆକର୍ଷଣ କରିବା ସଙ୍ଗେ ସଙ୍ଗେ ତାହାର ସ୍ୱାଭିମାନବୋଧର ରହସ୍ୟକୁ ଅନୁସଂଧାନ କରିବା ଓ ନବନ୍ୟାୟର ମହିମା'ର ସଂସ୍ଥାପନ କରିବା ନିମନ୍ତେ ଉଦାତ୍ତଭଙ୍ଗୀରେ କଳାସୁଲଭ ପ୍ରୋତ୍ସାହନ ଦେବାର

ଭୂମିବାଦୀମାନସିକତା । ଉପନ୍ୟାସର ଆରମ୍ଭରେ ଚିତ୍ରୋତ୍ପଳା ନଦୀର ବ୍ୟାପକତାକୁ (ପରୋକ୍ଷରେ ଚିତ୍ରୋତ୍ପଳା ନଦୀ – ଅବବାହିକାରେ ପ୍ରସାର ଲାଭ କରିଥିବା ସଂସ୍କୃତିର ମହିମାମୟ ସ୍ମୃତିଚାରଣ) ଦେଖାଉ ଦେଖାଉ ସଂସ୍କୃତିପ୍ରାଣ ରଘୁମାଷ୍ଟ୍ରେ ନିଜର କିଶୋରୀ କନ୍ୟା ଚିତ୍ରୋତ୍ପଳାର ଅସମ୍ଭବ ଜିଜ୍ଞାସା, ଅନ୍ୱେଷା ଓ ସ୍ମୃତି ବ୍ୟୁତ୍ପନ୍ନମତିତାକୁ ଦେଖି ଆତ୍ମବିଶ୍ୱାସ କରିଛନ୍ତି ଯେ ଆଗାମୀ ପିଢ଼ିର ଚିତ୍ରୋତ୍ପଳାମାନଙ୍କ ପାଖରେ ଅନୋମା – ସଂସ୍କୃତିର ନବମୂଲ୍ୟାୟନ ସଂଭବ ହେବ । ଉପନ୍ୟାସର ଶେଷରେ ବୌଦ୍ଧଧର୍ମର ରହସ୍ୟ ଓ ବୁଦ୍ଧଦେବଙ୍କ ଅତୀତକୁ ଓଡ଼ିଶା ମାଟିରେ ଖୋଜି ନିଜକୁ ବସ୍ତୁଭୋଗବାଦୀ ସଭ୍ୟତା ଠାରୁ ନିଖୋଜ କରି ଦେଇଥିବା ବୌଦ୍ଧ ପରିବ୍ରାଜକ ରଘୁନାଥଙ୍କୁ ଚିତ୍ରୋତ୍ପଳା ଠାବ କରିବା ଏବଂ ବୌଦ୍ଧଭିକ୍ଷୁ କାଜ୍ୟୁୟୋଦାଙ୍କ ଆସ୍ତିସୂଚକ ଆଶୀର୍ବାଦ 'ହେ ଅନୋମାର କନ୍ୟା (ଚିତ୍ରୋତ୍ପଳା) ସୌଭାଗ୍ୟବତୀ ଭବ' ମଧ୍ୟରେ ଅନୁରଣିତ ହୋଇଉଠିଛି- ଚିତ୍ରୋତ୍ପଳାମାନେ ହିଁ ବୁଦ୍ଧଭୂମି ଓଡ଼ିଶାର ଚିରନ୍ତନ - ପ୍ରାରବ୍ଧମାନଙ୍କୁ ନୂଆରୂପରେ ପ୍ରଖ୍ୟାପିତ କରିପାରିବେ । ନାଟକୀୟ ଉତ୍‌କଣ୍ଠାମୟ ଆରମ୍ଭ ଏବଂ ଅସମାହିତ ଅଥଚ ଓଡ଼ିଶାକୁ ବୁଦ୍ଧ ଜନ୍ମଭୂମି ଓ ବୌଦ୍ଧତତ୍ତ୍ୱ ଲୀଳାଭୂମି ରୂପରେ ପ୍ରମାଣସିଦ୍ଧ କରିବାର ସର୍ଜନଶୀଳ ଅଭିଳାଷପଣର ପରିସମାପ୍ତିକୁ ଲକ୍ଷ୍ୟକଲେ ଏହା ସ୍ପଷ୍ଟ ଉପଲବ୍ଧ ହୋଇଥାଏ ଯେ ଉପନ୍ୟାସର ଭାବପ୍ରଧାନ ବିଷୟବସ୍ତୁର ଗତିଶୀଳତାକୁ ଚିତ୍ରୋତ୍ପଳା/ ଓରଫ ଅନୋମାର କନ୍ୟା ଏବଂ ତାହାର ପ୍ରାରବ୍ଧ – ବାସନା ଦ୍ୟୋତକ ଭୂମିବାଦୀ ମାନସିକତା ହିଁ କେନ୍ଦ୍ରୀୟ ଭାବମନୁ ଭାବରେ ନିୟନ୍ତ୍ରଣ କରିଛି । ଏ ଦୃଷ୍ଟିରୁ ଅନୋମାର କନ୍ୟା ଏକ ଭାବପ୍ରବୋଧକ ନାମକରଣ ହୋଇପାରିଛି ।

**ଉପନ୍ୟାସର ଭାବଗତ ଭିତ୍ତି :**

୧୯୬୨ ରୁ ୨୦୦୪ ମସିହା – ଏହି ଚାରି ଦଶନ୍ଧି ଭିତରେ ଶାନ୍ତନୁ କୁମାର ଆଚାର୍ଯ୍ୟ ଓଡ଼ିଆ ସାହିତ୍ୟକୁ 'ନର-କିନ୍ନର' , 'ଶତାବ୍ଦୀର ନଚିକେତା', 'ତିନୋଟି ରାତ୍ରିର ସକାଳ', 'ଦକ୍ଷିଣାବର୍ତ୍ତ',' ଯାତ୍ରାର ପ୍ରଥମ ପାଦ',' ଅନ୍ୟଏକ ସମୟ ଅନ୍ୟ ଏକ ଭାରତ', 'ଶକୁନ୍ତଳା', 'ମନ୍ତ୍ରୀଙ୍କ ସେୟାର',' ଅନୁ ହଜିଯିବା ପରେ',' ଧରିତ୍ରୀର କାନ୍ଦ', 'ସ୍ୱର୍ଣ୍ଣତ୍ରିଭୂଜ' ଓ 'ଅନୋମାର କନ୍ୟା' ଶୀର୍ଷକ ୧୪ ଖଣ୍ଡି ଉପନ୍ୟାସ ପ୍ରଦାନ କରି କଥାସୃଜନ ପରମ୍ପରାରେ ଏକ ସ୍ୱତନ୍ତ୍ର ଅଧ୍ୟାୟ ସୃଷ୍ଟି କରିଛନ୍ତି । ଏହି ନବାଭିବ୍ୟକ୍ତିବାଦୀୟ ଅଧ୍ୟାୟରେ ଓଡ଼ିଆ ଉପନ୍ୟାସର ବିଷୟଧର୍ମରେ ଭାବବାଦିତା, କୁହୁକ ବାସ୍ତବତା, ଅନ୍ତଃବାସ୍ତବତା, ସଂସ୍କୃତି ପ୍ରବଣତା, ଇତିହାସ ସଚେତନତା, ପ୍ରାରବ୍ଧ - ଆମୁଖତା, ସମୟ- ସଂପୃକ୍ତିଶୀଳତା, ସଂକୁଚିତ ଓ ଅବକ୍ଷୟମାଣ ମୂଲ୍ୟବୋଧର ପ୍ରସାରଣଶୀଳ ରୂପାନ୍ତର ଓ ଶାସ୍ତ୍ରୀୟ ବିଶ୍ୱାସମାନଙ୍କର ନବନ୍ୟାୟିକ ମୂଲ୍ୟାୟନ ଇତ୍ୟାଦି ଅନାସ୍ୱାଦିତପୂର୍ବ ଅନୁଭବଗୁଡ଼ିକୁ କେନ୍ଦ୍ରକରି ପୂର୍ବରୁ ପ୍ରଚଳିତ ହୋଇ ଆସୁଥିବା କାହାଣୀପ୍ରଧାନ ସର୍ଜନବୃତ୍ତିରେ ବ୍ୟତିକ୍ରମ ଘଟାଇ ଔପନ୍ୟାସିକ ଆଚାର୍ଯ୍ୟ ନୂଆ ଆବେଦନର ବାଙ୍‌ମୟକଳାମଣ୍ଡଳ ନିର୍ମାଣ କରିଛନ୍ତି । ଅଭିନବ ନିର୍ମାଣ୍ମୁ ଅବବୋଧର ଅନ୍ୟତମ ସ୍ମାରକୀ ହେଉଛି 'ଅନୋମାର କନ୍ୟା', ଯାହାର ବିଷୟବସ୍ତୁ, ଚରିତ୍ରଚିତ୍ରଣ, ଘଟଣାବିନ୍ୟାସ ଓ ପରିବେଶଗତ ସ୍ଥାନୀୟତା ଆଦିର ନିର୍ବାଚନ ଓ ଉପସ୍ଥାପନା ପଶ୍ଚାତରେ ଶାନ୍ତନୁଙ୍କ ଶିଳ୍ପୀମାନସ ପ୍ରାରବ୍ଧ ବିଶ୍ୱାସ + ସଂସ୍କୃତି + ଶାସ୍ତ୍ରୀୟତା + ଐତିହାସିକ ତଥ୍ୟ ଧର୍ମ+ ଚଳନ୍ତି ସମୟର ପ୍ରତ୍ୟୟ ଓ ପ୍ରୟୋଜନର ମିଶ୍ରରାଗରେ ଅନୁରଂଜିତ ଏକ ଭାବବାଦୀ ଭୂମି ଉପରେ ଛିଡ଼ା ହୋଇଛି ।

ଏହି ଦ୍ରଷ୍ଟାପୁରୁଷଙ୍କ ପାଖରେ ଅଛି ଅପୂର୍ବ ସାମର୍ଥ୍ୟରେ ପ୍ରଥାସିଦ୍ଧ ମିଥ୍ୟା ତଥ୍ୟାତ୍ମକ ଧାରଣା ପଛରେ ଲୁକ୍କାୟିତ ରହିଥିବା ସତ୍ୟସଂଭାବୀ ପ୍ରତ୍ୟୟମାନଙ୍କୁ ନବନ୍ୟାୟିକ ମର୍ଯ୍ୟାଦାରେ ଅଭିଷିକ୍ତ କରବାର ଏକ ଐତିହ୍ୟ- ସ୍ୱାଭିମାନଭରା ମନୋଭୂମି । ଏପ୍ରକାର ମନୋଭୂମିକୁ ଭାରତୀୟ କାବ୍ୟଶାସ୍ତ୍ରୀମାନେ ସ୍ୱୟଂପ୍ରଭ ଓ ବିଭାବନକାରକ ସମାହିତ ଚେତା ସୃଜକଙ୍କ ଅପୂର୍ବ କାରୟତ୍ରୀ ପ୍ରତିଭା ପଣର ମୌଳ ଉପାଦାନ ଭାବରେ ବିବେଚନା କରିଛନ୍ତି । ଅପରପକ୍ଷରେ ନୂଆ ସତ୍ୟକୁ କଥା- କଳ୍ପ ଭିତ୍ତିରେ ସାହିତ୍ୟିକ କୌଳିନ୍ୟ ପ୍ରଦାନ ପୂର୍ବକ ପ୍ରମାଣସିଦ୍ଧ କରିବାର ମାନସିକତାପୋଷଣ କରିଥିବା ଶାନ୍ତନୁଙ୍କ ଶିଳ୍ପୀସତ୍ତା ସମ୍ମୁଖରେ ଛିଡ଼ା ହୋଇଛନ୍ତି ନିଜ ଐତିହ୍ୟକୁ ଚିହ୍ନି ଚିହ୍ନିପାରୁନଥିବା, ଜାଣି ଜାଣିପାରୁନଥିବା ବିରୋଧାଭାଷୀ ପାଠକବର୍ଗ । ଏହି ପାଠକସମାଜ ସମ୍ମୁଖରେ ରହିଛି- ଦୁଃଖ, କାମନା, ନିର୍ବାଣକୁ ନେଇ ଅହିଂସାମାର୍ଗୀ ପାରମାର୍ଥିକ ଜୀବୀତତ୍ତ୍ୱକୁ ମହାଭାବର ମହାସତ୍ୟ ରୂପରେ ପ୍ରତିଷ୍ଠା କରିଥିବା ଭଗବାନ ବୁଦ୍ଧଙ୍କର ଜନ୍ମ, ଜନ୍ମସ୍ଥାନ, ସନ୍ୟାସ, ସିଦ୍ଧି, ଧର୍ମପ୍ରଚାର ଆଦି ପ୍ରସଙ୍ଗ ଓ ତଦ୍‌ସହିତ ଜଡ଼ିତ ଭୂମିଖଣ୍ଡମାନଙ୍କୁ ନେଇ ରହିଥିବା ବିରୋଧାଭାସର ସିଦ୍ଧାନ୍ତ । ଏଥିପ୍ରତି ସଚେତନ ରହି ଆଲୋଚ୍ୟ ଉପନ୍ୟାସର ଚିତ୍ର ଚରିତ୍ରମାନେ ଇତିହାସ ସହିତ ବର୍ତ୍ତମାନକୁ ଯୋଡି ଦେଇ ଯେଉଁ ଭାବ ଭିତ୍ତିଭୂମି ଉପରେ ପରିକଳ୍ପିତ ହୋଇଛନ୍ତି ତାହା ହେଉଛି-

● ଦ୍ୱିତୀୟ ବିଶ୍ୱଯୁଦ୍ଧକାଳୀନ ସମାଜ, ଶାସନ ଓ ଶିକ୍ଷା ବ୍ୟବସ୍ଥାର ଦୃଶ୍ୟମାନ ବାସ୍ତବତା ।

● ସ୍ୱାଧୀନତା ପରବର୍ତ୍ତୀ ଅର୍ଦ୍ଧଶତାବ୍ଦୀର ରାଜନୀତିକ ଘଟାନ୍ତର ଉପରେ ପର୍ଯ୍ୟବସିତ ବାସ୍ତବତା ।

● ଉପନିବେଶବାଦୀ ପ୍ରାଧାନ୍ୟ ଭିତରେ ନିଜର ସ୍ୱାଭିମାନକୁ ହରେଇଥିବା ଓ ପ୍ରାରବ୍ଧ ସ୍ମରଣ କ୍ରମେ ପୁନଶ୍ଚ ତାହାକୁ ନବନ୍ୟାୟିକ ସୂତ୍ରରେ ଖୋଜି ସମାଗ୍ରିକ ଐତିହ୍ୟସୂତ୍ରରେ ତାହାକୁ ନିର୍ଭୁଲ ଭାବରେ ଉତ୍ତର ଉପନିବେଶବାଦୀ ସାଂସ୍କୃତିକ ବ୍ୟବସ୍ଥା ଭିତରେ ଯୋଡ଼ିଦେବାକୁ ପ୍ରଯତ୍ନଶୀଳ ହୋଇପଡ଼ିଥିବା ଓଡ଼ିଶୀ ମାନସିକତା ।

● ୧୮୯୬ ମସିହାରେ ପାଶ୍ଚାତ୍ୟ ପ୍ରତ୍ନତତ୍ତ୍ୱବିତ୍ ଡକ୍ଟର ଫ୍ୟୁରର୍‌ଙ୍କ ଦ୍ୱାରା ଆବିଷ୍କୃତ ନେପାଳର ତରାଇ ଉପତ୍ୟକାରୁ ମିଳିଥିବା ଶିଳାଲିପି ଯେଉଁଥିରେ ବୁଦ୍ଧଙ୍କର ଜନ୍ମଭୂମିକୁ କପିଳବାସ୍ତୁର ଲୁମ୍ବିନୀ ଏକ ଭାକ୍ତିକ -ମିଥ୍ୟା ଭାବରେ ପ୍ରମାଣସିଦ୍ଧ କରାଯାଇଛି ।

● ୧୯୨୮ ମସିହାରେ ଭୁବନେଶ୍ୱର ନିକଟସ୍ଥ କପିଳେଶ୍ୱର ଗ୍ରାମରୁ ମିଳିଥିବା ଓ ବିଶ୍ୱବିଦ୍ୟାଳୟର ସଂଗ୍ରହାଳୟରେ ସଂରକ୍ଷିତ ଥିବା ଶିଳାଲେଖ- ଯାହା ପ୍ରମାଣ ଦିଏ ଯେ ଓଡ଼ିଶା ଉପଖଣ୍ଡରେ ଥିବା କପିଳେଶ୍ୱର ପ୍ରଗଣା ଅନ୍ତର୍ଭୁକ୍ତ ଲୁମ୍ୱେଇ ଗ୍ରାମହିଁ ବୁଦ୍ଧ ଜନ୍ମ-ଭୂମି ।

● ଓଡ଼ିଶୀ ଭାବମାନସରେ ବୁଦ୍ଧତତ୍ତ୍ୱ, ବୁଦ୍ଧନାଭି, ବୁଦ୍ଧପାଦ, ବୋଧିସତ୍ତ୍ୱ, ଆଦି ବୁଦ୍ଧାଂଶମାନଙ୍କୁନେଇ ରହିଥିବା ପାରମାର୍ଥିକ ବିଶ୍ୱାସ ଅନୁରୂପ ବୁଦ୍ଧ କେଶଙ୍କୁ 'କେଶନଗର' ଭୂମିଖଣ୍ଡ ସହିତ ସଂଯୁକ୍ତ କରି ତଦ୍‌ଭିତ୍ତିରେ ବୁଦ୍ଧଦେବଙ୍କ କେଶକୁ ଖୋଜିବାର ଏବଂ ପ୍ରତ୍ନତାତ୍ତ୍ୱିକ କୁହୁକବୋଧର ମାନସିକପଣ ।

● ଆନୁମିତିକ ନ୍ୟାୟରେ ଇତିହାସର ତଥ୍ୟ ଓ ସିଦ୍ଧାନ୍ତ ଯାହା ଯୁକ୍ତିରେ ଅପ୍ରମାଣ୍ୟ ତାହାଙ୍କୁ ସାହିତ୍ୟୋଚିତ ପ୍ରକ୍ରିୟାରେ ପ୍ରମାଣସିଦ୍ଧ କରିବାର ବଳବତ୍ତର ଐତିହ୍ୟ ଭାବ ପ୍ରବୋଧକ ଇଚ୍ଛାବୃତ୍ତି ।

● ନିଜର ଗୋତ ସ୍ମରଣ କରି ନିଜର ମୌଳସତ୍ତାର ରହସ୍ୟ ଓ ସୂତ୍ରକୁ ଖୋଜିଯିବା ଏବଂ ଅତୀତ ସହିତ ବର୍ତ୍ତମାନକୁ ଯୋଡ଼ିଦେଇ ନିଜର ଓ ନିଜ ଜାତିର ବଳିଷ୍ଠ ଆତ୍ମପରିଚିତକୁ ପ୍ରମାଣସିଦ୍ଧ କରିବାର ଜାତିସ୍ମର- ପ୍ରତିକ୍ରିୟା, ପରୋକ୍ଷରେ ମାଟିର ଇତିହାସକୁ ନୂଆରୂପରେ ଖୋଜି, ଚିହ୍ନି, ଚିହ୍ନେଇ, ଲୋଡ଼ିବାର ସାଂସ୍କୃତିକ ଦାୟବଦ୍ଧତା ।

● ଚକ୍ରଧର ମହାପାତ୍ର ଓ ଭାରତତତ୍ତ୍ୱବିତ୍ ଏ.ଏଲ. ବାସାମଙ୍କ ପ୍ରଦତ୍ତ/ ସମର୍ଥିତ ' ଓଡ଼ିଶା ହିଁ ବୁଦ୍ଧ ଜନ୍ମଭୂମି' ତଥ୍ୟର ପଛରେଥିବା ପ୍ରାରବ୍ଧ ଅନୁଭୂତି ।

● ବୌଦ୍ଧଶାସ୍ତ୍ର ଓ ବୌଦ୍ଧ ବିଶ୍ୱାସ କ୍ରମେ ବୁଦ୍ଧଦେବଙ୍କ ଚରିତକୁ ତୋଷାଳୀ ସହିତ ସଂପୃକ୍ତ କରିବାର ଯଥାର୍ଥତାବାଦୀ ପ୍ରୟୋଜନ ।।

ଏହିପ୍ରକାର ଲେଖକୀୟ ଓ ପାଠକୀୟ ମନୋଭୂମି ଓ ଇଚ୍ଛାବୃତ୍ତିକୁ ଆଶ୍ରୟକରି ରଘୁନାଥ, କାଲ୍ୟୁୟୋଦା ଓ ଚିତ୍ରୋତ୍ପଳା ଚରିତ୍ରମାଧ୍ୟମରେ ଶାନ୍ତନୁଙ୍କ ଭୂମିବାଦୀ ସର୍ଜନପଣ ଏହି ଉପନ୍ୟାସରେ ଏକ ଚମତ୍କାର - ନବନ୍ୟାୟିକ ସିଦ୍ଧାନ୍ତରେ ପାଠକକୁ ଉପନୀତ କରାଇଛନ୍ତି । ତାହା ହେଉଛି- 'ମହାନଦୀର ଅବବାହିକାଙ୍କୁ ଆଧାରଭୂମି ରୂପରେ ଗ୍ରହଣ କରି ଯେଉଁ ମହାନ ବୌଦ୍ଧ ସଂସ୍କୃତିର ଐତିହ୍ୟ ଭୂମିପୁତ୍ର ଗୌତମବୁଦ୍ଧଙ୍କ ଦ୍ୱାରା ଓଡ୍ରଭୂଖଣ୍ଡରେ ପ୍ରତିଷ୍ଠା ଲାଭ କରିଥିଲା ତାହାଙ୍କୁ ପ୍ରଳମ୍ବ ଅଶୁଦ୍ଧିକାରକ ଇତିହାସ ବିଭ୍ରାନ୍ତିକର ଧ୍ୱଂସର ତଥ୍ୟବଳୟରୁ ମୁକ୍ତ କରି ଏହି ଐତିହ୍ୟବୋଧର ଉତ୍ତରଦାୟାଦ- ସ୍ୱରୂପିଣୀ ଚିତ୍ରୋତ୍ପଳାମାନେ ହିଁ ନୂଆ ସତ୍ୟ ଓ ନବନ୍ୟାୟାତ୍ମକ ବାସ୍ତବତା ରୂପେ ପ୍ରମାଣସିଦ୍ଧ କରିପାରିବେ ।

**ଉପନ୍ୟାସର ବିଷୟ ଓ ଚରିତ୍ର ସଂପର୍କରେ :**

ଉପନ୍ୟାସର ବିଷୟ ଓ ଚରିତ୍ରଜଗତ ଐତିହ୍ୟବାଦୀ ଚେତନା, ରାଜନୀତିକ ଭୋଗବାଦୀ ସୁବିଧାବାଦ ଓ ୧୯୩୯-୧୯୫୫ ମସିହା ମଧ୍ୟରେ ସମାସୀନ ଚଳନ୍ତି ବାସ୍ତବତାକୁ ଅବଲମ୍ବନ କରିଛି । ରଘୁନାଥ କଲାମ, ଚିତ୍ରୋତ୍ପଳା, ରାମନାଥ ଓ ପଦ୍ମାବତୀ ଐତିହ୍ୟବାଦୀ ପ୍ରାରବ୍ଧ ସଂସ୍କାରର ପ୍ରତୀକାତ୍ମକ ଚରିତ୍ର । ସମଗ୍ର ଉପନ୍ୟାସର ଘଟଣାଗୁଡ଼ିକ ଏହି ପାରିବାରିକ ଚାରି ଚରିତ୍ରଙ୍କ ମାଧ୍ୟମରେ ନିୟନ୍ତ୍ରିତ ହୋଇଛି । ଭାରତୀୟ ଗାନ୍ଧିବାଦୀ ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ପ୍ରବୋଧକ ରଘୁମାଷ୍ଟ୍ରେ ଓରଫ ରଘୁନାଥ କଲାମ ସ୍ୱାଧୀନତା ପରେ ପ୍ରଥମ ମନ୍ତ୍ରିମଣ୍ଡଳରେ ମନ୍ତ୍ରୀପଦ ପାଇବାର ବସ୍ତୁବାଦୀ ଭୋଗସର୍ବସ୍ୱ ସୁବିଧାବାଦକୁ ପଛରେ ପକାଇ ନିଜ ସଂସ୍କୃତିର ମୂଳ- ଖୋଜିବାକୁ ଚାଲି ଯାଇଛନ୍ତି । ରଘୁନାଥ କଲାମଙ୍କ ବିଶ୍ୱାସ- ତାଙ୍କ ଘର କେଶନଗର ଗ୍ରାମର ନାମକରଣ ବୁଦ୍ଧଦେବଙ୍କ କେଶପତନ ସ୍ମୃତିକୁ ବହନ କରି ହୋଇଛି/ତାଙ୍କ ଘର କାନ୍ଥରେ ଖଣ୍ଡାରେ କେଶ ଛେଦନ କାରୀ ଯୁବରାଜ ଗୌତମଙ୍କ ବିଷୟମୁକ୍ତିମନା ଚିତ୍ର ହିଁ ପ୍ରମାଣ କରୁଛି ଗୌତମଙ୍କ କେଶହିଁ ତାଙ୍କ ଜନ୍ମଗ୍ରାମର ପ୍ରାରବ୍ଧ ଐତିହ୍ୟ/ ତାହାକୁ ସୁଡ଼ଙ୍ଗ ଖୋଳି ଆବିଷ୍କାର କରି ବୌଦ୍ଧସଂସ୍କାରର ଇତିହାସକୁ ନୂଆ ସତ୍ୟରେ ଉଦ୍‌ଭାସିତ ଓ

ପରିଚିତ କରାଇବାର ଦାୟିତ୍ୱ ତାଙ୍କ ପରି ଭୂମିପୁତ୍ରମାନଙ୍କର । ଏବଂବିଧ ଐତିହ୍ୟବାଦୀ ସ୍ୱାଭିମାନପଣରୁ ରଘୁନାଥଙ୍କ ପରି ଉଦାତ୍ତ- ଭାବବାଦୀ ଚରିତ୍ରର ପରିକଳ୍ପନା ହୋଇଛି ।

ରଘୁନାଥଙ୍କ ଆଦର୍ଶ ଅଗ୍ନିସ୍ଫୁଲିଙ୍ଗ ରୂପାନ୍ତର ହେଉଛି- ଛାତ୍ରସମାଜ ତଥା ଯୁବପିଢ଼ିର ନେତୃତ୍ୱକୁ ମୁଣ୍ଡେଇ ନେଇଥିବା କନ୍ୟା ଚିତ୍ରୋତ୍ପଳା । ରଘୁନାଥ ନିଜ ଘରଅଗଣାର ସୁଡ଼ଙ୍ଗ ଖୋଳିବା ଅବସ୍ଥାରେ ସେଠାରେ ଠାବ କରିଥିଲେ ଜାପାନୀ ବୌଦ୍ଧ ଭିକ୍ଷୁ କାଜ୍ୟୁୟୋଦାଙ୍କୁ ।

ଭିକ୍ଷୁ କାଜ୍ୟୁୟୋଦା ଔପନ୍ୟାସିକଙ୍କ ସ୍ୱାଭିମାନ ଭରା ମାନସିକ ପ୍ରତିକ୍ରିୟାରୁ ଉତ୍ପନ୍ନ ଅଥଚ ଇତିହାସର ଭାବସତ୍ୟକୁ ଧାରଣ କରିଥିବା ଏକ ଗମ୍ଭୀର ପରିକଳ୍ପନା । ଯେତେବେଳେ ଓଡ଼ିଶା ମାଟିର ସ୍ୱାଭିମାନର ପ୍ରତିଷ୍ଠା ପାଇଁ ଓ ତା'ର ଅତୀତର ମୂଳସୂତ୍ରକୁ ଗବେଷଣାକରି ତାହାକୁ ବିଶ୍ୱଦୃଷ୍ଟିସମ୍ମୁଖ କରିବା ପାଇଁ ଓଡ଼ିଶାର ପ୍ରଜ୍ଞାଶକ୍ତିମାନେ ଅସମର୍ଥ ସେତେବେଳେ କଥାଶିଳ୍ପୀ ଶାନ୍ତନୁଙ୍କ ଭାବମାନସ ଜାପାନୀ ବୌଦ୍ଧ ଭିକ୍ଷୁଙ୍କୁ ଓଡ଼ିଶା ମାଟିରେ ଅବତରଣ କରାଇ ତାଙ୍କରି ମାଧ୍ୟମରେ ଓଡ଼ିଶାର ଭୂମିବାଦୀ ସଂସ୍କାରର ପ୍ରାଚୀନତାକୁ ଖୋଜି ଚିହ୍ନେଇବାର ପ୍ରୟାସ କରିଛନ୍ତି । ପରୋକ୍ଷରେ ଭିକ୍ଷୁ କାଜ୍ୟୁୟୋଦା ଓଡ଼ିଶାରେ ସାମ୍ରାଜ୍ୟବାଦୀ ଇଂରେଜୀ ଶାସନ ବ୍ୟବସ୍ଥାର ଦ୍ୱାହିରେ ଓଡ଼ିଶାମାଟିର ସୁବିଧାବାଦୀ ବସ୍ତୁଭୋଗବିଳାସୀ ପୁଲିସ୍ ଅଫିସର ଦିବ୍ୟକିଶୋରଙ୍କ ଦ୍ୱାରା ସନ୍ତ୍ରାସବାଦୀ / ଜାପାନୀ ଗୁପ୍ତଚର ରୂପରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ପୃଷ୍ଠଭୂମି ଧାରଣାକ୍ରମେ ନିର୍ଯାତିତ ହୁଅନ୍ତି । ତଥାପି ଉପାସ୍ୟ ଭଗବାନ ବୁଦ୍ଧଙ୍କର ଜନ୍ମମାଟି, ସିଦ୍ଧି ଓ ସାଧନାର ଭୂମି ସମ୍ବନ୍ଧରେ ତାଙ୍କର ଜିଜ୍ଞାସା, ଅନ୍ୱେଷା ଓ ତଦ୍‌ଜନିତ ଉଦ୍ୟମ ଉପନ୍ୟାସର ସମଗ୍ର ବିଷୟବୃତ୍ତ/ ଘଟଣାଚକ୍ରକୁ ଓଡ଼ିଶୀ ସ୍ୱାଭିମାନ ବୋଧର ମହିମାରେ ଉଚ୍ଚାଟିତ କରିରଖିଛି । ଏହି ଚରିତ୍ର ମାଧ୍ୟମରେ ଔପନ୍ୟାସିକ ଇତିହାସର ତଥ୍ୟକୁ ନୂଆ ନ୍ୟାୟ ପ୍ରଦାନ କରିବାକୁ ଯାଇ ଲେଖିଛନ୍ତି - ''ଶୁଦ୍ଧୋଦନର ଅର୍ଥ ... ଶୁଦ୍ଧ ଚାଉଳ x x x ଶୁଦ୍ଧୋଦନଙ୍କ ଧାନକ୍ଷେତ ଏଠି (ତରାଇ ଉପତ୍ୟକାର ପଦରିଆ ଅରଣ୍ୟାଞ୍ଚଳ) ଖୋଜିଲେ ପାଇବ ନାହିଁ ବନ୍ଧୁ । ତମେ ତାକୁ ଛାଡ଼ି ଆସିଚ ଢ଼େର ପଛରେ - ଓଡ଼ିଶାର କପିଳେଶ୍ୱର ଗାଁ ପାଖରେ ।'' ରଘୁମାଷ୍ଟ୍ରେଙ୍କ ଉଦ୍ଦେଶ୍ୟରେ ଭିକ୍ଷୁଙ୍କର ଏହି ମନ୍ତବ୍ୟ ଓଡ଼ିଶାର ବୁଦ୍ଧିଜୀବୀମାନଙ୍କ ଧାରଣାକୁ ପରିହାସ ଛଳରେ କୁଠାରଘାତ କେବଳ କରୁନି– ବରଂ ଇତିହାସକୁ ନୂଆ ରୂପରେ ପ୍ରମାଣିତ କରିବାର ଉଦାତ୍ତ ଅନ୍ୱେଷାବୋଧ ଓ ଅଭିଳାଷପଣଟିଏ ସୃଷ୍ଟି କରିପାରିଛି - ଯାହାହିଁ ଏହି ଉପନ୍ୟାସର ପ୍ରତିପାଦ୍ୟ ସତ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଅପରପକ୍ଷରେ ଏହି ସତ୍ୟର ମହାର୍ଘତାକୁ ହୃଦୟଙ୍ଗମ କରିପାରିନାହାନ୍ତି ସୁବିଧାବାଦୀ ଦିବ୍ୟ କିଶୋର ଓ ବସ୍ତୁଭୋଗବିଳାସିନୀ ନଳିନୀମାନେ । ନକାରତ୍ମକ ଧାରଣାରେ ଆତଯାତ ହେଉଥିବା ଦିବ୍ୟକିଶୋରର ନୀଜବିଶ୍ୱାସ ଯେ ବାଲ୍ୟବଂଧୁ ରଘୁମାଷ୍ଟ୍ରେଙ୍କ ଘରଅଗଣା ଭିତରେ ଜାପାନୀ ଗୁପ୍ତଚରମାନେ ଲୁଚିଛନ୍ତି । ଏହାଠାରୁଅନ୍ୟ ଏକ ଭୟଙ୍କର ମୋହାଛନ୍ନ ଧାରଣା ହେଉଛି- ସେହି ସୁଡ଼ଙ୍ଗଟି ପ୍ରାଚୀନ କାଳର ଏକ ମଠ ବା ଧନଭଣ୍ଡାର ଯେଉଁଠି ବହୁ କାଳର ଧାତୁରତ୍ନମାନେ ପୋତାଧନ ରୂପରେ ଭରପୂର ଅଛନ୍ତି । ସେଗୁଡ଼ିକୁ ନିଜ କାମନା ଚରିତାର୍ଥ ନିମନ୍ତେ ହାତେଇବାକୁ ଯାଇ ଦିବ୍ୟକିଶୋର ସରକାରୀ କ୍ଷମତାର ଅପପ୍ରୟୋଗ କରିଛନ୍ତି । ପୂର୍ବରୁ ବଂଧୁକନ୍ୟା ଚିତ୍ରୋତ୍ପଳାକୁ ବୋହୂ କରି ନେବାର ମାଖୁନା ମନୋଭାବ ପ୍ରକାଶ କରି ସୁଡ଼ଙ୍ଗର ଗୁପ୍ତଧନ ସଂପର୍କରେ ଗୋପନରେ ତଥ୍ୟ ସଂଗ୍ରହ କରୁଥିବା ଦିବ୍ୟକିଶୋର ସୁଡ଼ଙ୍ଗ ଭିତରୁ ବୌଦ୍ଧଭିକ୍ଷୁ କାଜ୍ୟୁୟୋଦାଙ୍କୁ ବୋମାବର୍ଷଣକ ି ଜାପାନୀ ସୈନ୍ୟବାହିନୀର

ଗୁପ୍ତଚର ଭାବି ବନ୍ଦୀ କରିନେବା ଓ ତାଙ୍କୁ ଆଶ୍ରୟ ଦେଇଥିବାରୁ ରଘୁମାଷ୍ଟ୍ରେଙ୍କୁ ହାଜତକୁ ନେବା ପରେ ନିଜ ଇପ୍‌ସିତ କାର୍ଯ୍ୟରେ ସଫଳ ହେବାର ଆଶାପୋଷଣ କରିଛନ୍ତି ।

ଉପନ୍ୟାସର ପରବର୍ତ୍ତୀ ପର୍ଯ୍ୟାୟରେ 'ଅନୋମାର କନ୍ୟା'- ଚିତ୍ରୋତ୍ପଳା ନଦୀ ବନ୍ଧକୁ ଲାଗିଥିବା ଓ ବୁଦ୍ଧଦେବଙ୍କ କେଶର ସ୍ମାରକୀ ବହନ କରିଥିବା ରଘୁମାଷ୍ଟ୍ରେଙ୍କ ଗାଁ କିଶରନଗର (କେଶନଗର) ସ୍ୱାଧୀନତା ପ୍ରାପ୍ତି ପରେ ସୁବିଧାବାଦୀ ରାଜନୀତିକ ମନୋଭାବର ସଂସ୍କୃତି ଓ ଐତିହ୍ୟବାଦୀ ଭାବମାନସର ସଂସ୍କୃତି ମଧ୍ୟରେ ଏକ ସଂଘର୍ଷର ଦ୍ରୁମାତକୁ ଦେଖିଛି । ଏହି ସଂଘର୍ଷରେ ପରିଣତି କିପରି ଶିକ୍ଷା, ଶାସନ ଓ ଇତିହାସର ମୂଲ୍ୟବୋଧକୁ ଅବକ୍ଷୟମୁଖୀ କରାଇ ଦେବାରୁ ତାହାର ବ୍ୟଂଜିତ କଳାରୂପ ଉପନ୍ୟାସର ଚିତ୍ରଚରିତ୍ର ଭିତରେ ପ୍ରତିଭାତ ହୋଇଉଠିଛି । ସ୍ୱାଧୀନତା ସଂଗ୍ରାମୀ ଭାବରେ ରଘୁମାଷ୍ଟ୍ରେ କାରାମୁକ୍ତ ହୋଇ ଦେଶୀୟ ଶାସନଧାରାରେ ମନ୍ତ୍ରୀପଦ ପାଇବାକୁ ଯୋଗ୍ୟ ହୋଇଛନ୍ତି । ଆଂଚଳିକ ପ୍ରୀତିପଣରେ ଏ ସମ୍ବାଦ କେଶନଗରର ନାଗରିକମାନଙ୍କୁ ବିହ୍ୱଳିତ କରି ଦେଇଛି । ଶପଥନେବାର ଅବ୍ୟବହିତ ପୂର୍ବରୁ ସୁବିଧାବାଦୀ ଦିବ୍ୟକିଶୋର ଭିକ୍ଷୁ କାଜ୍ୟୁୟୋଦାଙ୍କ କୌଶଳରେ କାରାମୁକ୍ତ କରି ଶପଥଗ୍ରହଣ ମଣ୍ଡପ ନିକଟରେ ଜନମେଳା ଭିତରେ ଛିଡା କରାଇବାରେ ସଫଳ ହୋଇଛନ୍ତି । ଭିକ୍ଷୁ କାଜ୍ୟୁୟୋଦାଙ୍କୁ ଦେଖିବା ମାତ୍ରେ ଗୌତମଙ୍କର ବିଷୟମୋହଶୂନ୍ୟ ଘଟିବା ପରି ରଘୁମାଷ୍ଟ୍ରେ ମନ୍ତ୍ରୀପଦର ବାସନାକୁ ଏଡ଼ିଦେଇ ପ୍ରାରବ୍ଧ ଇତିହାସର ମହାସତ୍ୟକୁ ଖୋଜିବା ନିମନ୍ତେ ନିଜକୁ ନିରୁଦ୍ଦେଶ୍ୟ କରିଦେଇଛନ୍ତି । ଦେବଦହରୁ ଆରମ୍ଭ କରି କେଶନଗର ଦେଇ ଉତ୍ତରାଭିମୁଖୀ ହୋଇ ଭିକ୍ଷୁ କାଜ୍ୟୁୟୋଦାଙ୍କ ସହିତ ରଘୁନାଥ କୁଶୀନଗ୍ର, ତରାଇର ପଦରିଆ ବୌଦ୍ଧସ୍ତମ୍ଭକ୍ଷେତ୍ର ପର୍ଯ୍ୟନ୍ତ ନିଜର ସତ୍ୟାନ୍ୱେଷୀ ଯାତ୍ରା ସାଧନ କରିଚନ୍ତି । ଶେଷରେ ସେ ସତ୍ୟରେ ପହଞ୍ଚିଛନ୍ତି - ବୌଦ୍ଧଧର୍ମ ଓ ସଂସ୍କୃତିର ପ୍ରାରବ୍ଧ- ବୀଜଟି ଓଡ଼ିଶାମାଟିରେ ସଂଗୁପ୍ତ ରହିଛି ଯାହାକୁ 'ଅନୋମାର କନ୍ୟା' ମାନେ ଉତ୍ତର ଦାୟାଦ ଭାବରେ ଅନୁସଂଧାନ କରିବା ହିଁ ଓଡ୍ରଜାତି ନିମନ୍ତେ ନବନ୍ୟାୟିକ ପ୍ରାସଙ୍ଗିକତା ।

ଏହି ପର୍ଯ୍ୟାୟରେ ଉପନ୍ୟାସର ଉପଧାରାଟି ଏକ ଚମକପ୍ରଦ ଭଙ୍ଗୀରେ ସ୍ୱାଧୀନତା ପରବର୍ତ୍ତୀ ସାମାଜିକ -ରାଜନୀତିକ - ଆର୍ଥନୀତିକ ବାସ୍ତବତାର ଘଟାନ୍ତରିତ ଚିତ୍ରକୁ ପ୍ରଦର୍ଶିତ କରିଛି । ଗାନ୍ଧୀବାଦର ଅହିଂସାବୋଧ କ୍ରମଶଃ ଶିକ୍ଷାକ୍ଷେତ୍ରରୁ ସମାଜର ସାଧାରଣସ୍ତର ପର୍ଯ୍ୟନ୍ତ ପ୍ରତିବାଦର ଆନ୍ଦୋଳନାତ୍ମକ ପରିଣତିର ଅର୍ଥରୂପ ଧାରଣ କରିଛି । ସ୍ୱାଧୀନତା ସଂଗ୍ରାମୀ ଭାବରେ ପରିଚୟ ଦେଇ ସୁବିଧାବାଦୀ ନେତୃତ୍ୱର ସଂଭାବନା ବାସ୍ତବ ହୋଇଉଠିଛି । ଭୋଗବାଦୀ ଦିବ୍ୟକିଶୋରମାନେ ଚକ୍ରାନ୍ତରେ ରଘୁମାଷ୍ଟ୍ରେଙ୍କ ଭଳି ଅହେତୁକ ଭାବବାଦୀ ସ୍ୱାଧୀନତା ସଂଗ୍ରାମୀମାନଙ୍କ ସ୍ୱାତନ୍ତ୍ରକୁ ବିସ୍ମୃତିର ପ୍ରସଙ୍ଗ କରିଦେବାକୁ ବସିଛନ୍ତି । ଛାତ୍ର ନେତୃତ୍ୱର ଆବଶ୍ୟକତା ଅନୁଭୂତ ହୋଇଛି । ପରିଣତି ସ୍ୱରୂପ ଉପନ୍ୟାସରେ ରଘୁମାଷ୍ଟ୍ରେଙ୍କ ପରିବାର ଦିବ୍ୟକିଶୋରଙ୍କ ଚକ୍ରାନ୍ତରେ ଗାଁମାଟି ଛାଡ଼ି ବଞ୍ଚିବା ପାଇଁ କଟକ ମାଟିରେ ପାଦ ଦେଇଛି । ମାତ୍ର ପ୍ରାରବ୍ଧ ବିଶ୍ୱାସ ଭିତରେ ବଢ଼ିଥିବା ଚିତ୍ରୋତ୍ପଳା ବାପା ରଘୁମାଷ୍ଟ୍ରେଙ୍କର ଯଥାର୍ଥ ଉତ୍ତର ଦାୟାଦ ଭାବରେ ସମୟୋଚିତ ବାସ୍ତବତାକୁ ଅଙ୍ଗୀକାର କରି ଶିକ୍ଷାଧାରରେ ଯୁବ ପିଢ଼ିର ନେତୃତ୍ୱ – ଦାୟିତ୍ୱ ସଂପାଦନ କରିଛି । ଗୋପନରେ ରଘୁମାଷ୍ଟ୍ରେଙ୍କ ଘର ଅଗଣାର ସୁଡଙ୍ଗ ଖୋଳି ପୋତାଧନକୁ ଆଣି ଘରେ ସାଇତି ରଖିଥିବା ଦିବ୍ୟକିଶୋରଙ୍କ ପ୍ରକୃତ ସ୍ୱରୂପ ତାଙ୍କରି ପୁତ୍ର ରାମକିଶୋର ମାଧ୍ୟମରେ ଚିତ୍ରୋତ୍ପଳା ଉନ୍ମୋଚନ କରିବା ବେଳକୁ ପାଠକନିକଟରେ ଔପନ୍ୟାସିକ

ଏକ ଐତିହ୍ୟବାଦୀ ବିଷାଦବୋଧର ଘାଟନିକ ଆବେଦନକୁ ସଂଚାଳିତ କରିଦେଇଛନ୍ତି । ତାହା ହେଉଛି- ରଘୁନାଥଙ୍କ ଅନ୍ୱେଷଣର ମୂଳ ଲକ୍ଷ୍ୟ ବୁଦ୍ଧଦେବଙ୍କ 'କେଶ'ର ଦୁର୍ଭାଗ୍ୟଜନ ପରିଣତି । ପରିଣତିର ନିର୍ଯ୍ୟାସ ହେଉଛି ଦିବ୍ୟ କିଶୋର ଓ ତାଙ୍କ ପତ୍ନୀ ନଳିନୀଦେବୀ ରଘୁନାଥ କଲାମଙ୍କ ଘର- ସୁଡ଼ଙ୍ଗରୁ ଚକ୍ରାନ୍ତରେ ପାଇଥିବା ପୋତାଧନକୁ ସାଇତି ରଖିଥିଲେ । ମାତ୍ର ପୁରୁଣା କାଳିଆ ସୁନାଫରୁଆ ମଧ୍ୟରେ ଥିବା ବୁଦ୍ଧଦେବଙ୍କ ପବିତ୍ର କେଶକୁ ଅମଙ୍ଗଳକାରକ ଭାବି ନଳିନୀ ଦେବୀ ତାହାକୁ ଫିଙ୍ଗି ଦେଇଥିଲେ । ନଳିନୀ ଦେବୀଙ୍କ ଏପ୍ରକାର ନିର୍ବୋଧ ବସ୍ତୁବାଦୀ ମନୋଭାବର ବିଚାର-ଦାୟିତ୍ୱଶୂନ୍ୟ କର୍ମ ରାମକିଶୋର-ଚିତ୍ରୋତ୍ପଳାଙ୍କ ପରି ଉତ୍ତରଦାୟାଦମାନଙ୍କୁ ନିଜ ସଂସ୍କାରର ଅବଶେଷ ବିଷୟରେ ଅନୁସଂଧାନ କରିବା ଓ ଐତିହ୍ୟକୁ ନୂଆରୂପରେ ପ୍ରତିଷ୍ଠା ଦେଇ ବର୍ତ୍ତମାନକୁ ପ୍ରୋତ୍ସାହିତ ଧର୍ମରେ ଗଢ଼ିବାର ଅବକାଶ ହେଉନାହିଁ । ସୁତରାଂ ଦିବ୍ୟ କିଶୋର ଓ ନଳିନୀମାନଙ୍କର ବସ୍ତୁମୋହବାଦୀ ନିଷ୍ଠୁରପିପାସା ପାଖରେ ଜାତୀୟ ସ୍ୱାଭିମାନବୋଧ ଅସୁରକ୍ଷିତ, ଧ୍ୱଂସମୁଖୀ ?-ଏ ପ୍ରକାର ଏକ ଭାବବାଦୀ ସଚେତନା ଐତିହ୍ୟପ୍ରାଣ ପାଠକଙ୍କ ନିକଟରେ ଔପନ୍ୟାସିକ ପ୍ରତିପାଦନ କରିଛନ୍ତି । ସତେଯେପରି ପୁତ୍ର ରାମକିଶୋରର ନଳିନୀଦେବୀଙ୍କ ଉଦ୍ଦେଶ୍ୟରେ ପ୍ରଦତ୍ତ ଅଭିମତ - ''ତୁ ଏ କ'ଣ କଲୁ ମମି ! ଭଗବାନ ବୁଦ୍ଧଙ୍କ କେଶ । ମୁଣ୍ଡର କେଶ ! ଫୋପାଡ଼ିଦେଲୁ !'' ଭିତରେ ପ୍ରତିନିଧ୍ୱନିତ ହେଉଛି - ଏ ଜାତି ଅଜ୍ଞାତ ଓ ଐତିହ୍ୟ ପ୍ରୀତିର ଅଭାବ ହେତୁ ଅନେକ ପ୍ରାରବ୍ଧ ତଥ୍ୟଙ୍କୁ ଆକଳନ କରି ନପାରି ଫିଙ୍ଗି ଦେଉଛି । ଏହାରି ଭିତରେ ନିଜକୁ ଓ ନିଜର ପାରମ୍ପରିକ ଦୃଢ଼ଭିତ୍ତିକୁ ଏ ଜାତି ଆପଣା ହାତରେ ନିର୍ବୋଧପରି ଭାଙ୍ଗି ଦେଉଛି - ବୌଦ୍ଧ ସଂସ୍କାର ଓଡ଼ିଶା ମାଟିରୁ ପ୍ରତିକୂଳ ସ୍ରୋତରେ ତରାଇ ଅଂଚଳଙ୍କୁ ଚାଲିଯାଉଛି । ସମଗ୍ର ଉପନ୍ୟାସରେ ଏହି ଭାବବୋଧଟି ଶବ୍ଦଚିତ୍ରର ଯାଦୁକ୍ରୀଡ଼ା କରି ପାଠକଙ୍କୁ ବିଗତ କାଳ ସହିତ ଅନୁବନ୍ଧିତ କରି ପାରିଛି ।

**ସିଦ୍ଧାନ୍ତ :**

ମୋଟ ଉପରେ ବିଷୟବସ୍ତୁର ଗତିଶୀଳ ଉପସ୍ଥାପନାରେ ନାଟକୀୟ ଉତ୍କଣ୍ଠା ଚାତୁରୀ, ଭାବମାନଙ୍କର ବ୍ୟଂଜନାତ୍ମକ ବକ୍ତବ୍ୟଧର୍ମୀ ଅଭିବ୍ୟକ୍ତି, ପ୍ରବୋଧିତ ଗୁଣବତ୍ତାର ବାସ୍ତବ-ଐତିହ୍ୟବୋଧାଶ୍ରିତ ପ୍ରସଙ୍ଗ ଓ ଚରିତ୍ରଜଗତ ସହିତ ଭାଷାର ସଂଳାପୋଚିତ ବ୍ୟାବହାରିକ ସୌନ୍ଦର୍ଯ୍ୟ ଓ ତଥ୍ୟାତ୍ମକ ଅର୍ଥବିସ୍ତାରଣଶୀଳ ଚିତ୍ରଧର୍ମୀସୌକର୍ଯ୍ୟ ଏହି ଉପନ୍ୟାସଟିକୁ ଓଡ଼ିଆ ଉପନ୍ୟାସଧାରାରେ ଇତିହାସର ନବନ୍ୟାୟିକ କଳାସୃଜନ -ପ୍ରତୀକ ଭାବରେ ସ୍ୱତନ୍ତ୍ର ପରିଣତି ଦିଆଯାଇପାରିଛି ଏବଂ ଏହାକୁ ପାଠ କରିବା ପରେ ପାଠକର ଭୂମିବାଦୀ ଐତିହ୍ୟଭିଳାଷୀ ପ୍ରାରବ୍ଧ ବିଶ୍ୱାସମାନେ ନୂଆବର୍ଣ୍ଣରେ ଆଲୋକିତ ଓ ନୂଆ ରୂପରେ ଉଦ୍ଭେଦିତ ହୋଇଉଠିବେ - ଏଥିରେ ଦ୍ୱିମତ ହେବାର ନାହିଁ ।



# ଦକ୍ଷିଣାବର୍ତ୍ତ

ମୂଳ ଉପନ୍ୟାସ : ଶାନ୍ତନୁ କୁମାର ଆଚାର୍ଯ୍ୟ

ନାଟ୍ୟରୂପ : ସଦାନନ୍ଦ ନାୟକ

(ଚରିତ୍ର : ପୁରୁଷ : ବୁଢ଼ା, ରୈକ୍ୱ, ଡିମୋକ୍ରାସି ଜାବାଳ, ରତନା

ନାରୀ : ବୁଢ଼ୀ, କେତୀ, ମହାଜନ ଝିଅ)

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

(ଗଙ୍ଗା କୂଳ, ସମୟ ସଂଧ୍ୟା, ମାଟି ଉପରେ ଚେକାମାଡ଼ି ବସିଛି ଜଣେ ଯୁବକ । ଅନ୍ୟ ମନସ୍କ ଲାଗୁଛି ସେ । ଅଣ୍ଟିରେ ତାର ପେନ୍ଥାଏ ଲିଚୁ, ଖାଉଛି, କିଛି ଗୋଟେ ଭାବୁଛି)

ରୈକ୍ୱ : ଡିମୋକ୍ରାସିର ଜୟ ହେଉ ? ଶନିବାର ସଂଧ୍ୟାର ଜୟ ହେଉ ! ଆଉ ଦିବ୍ୟ ଶାଢ଼ିଗୁଡ଼ିକ ପିନ୍ଧି ପାଟଳିପୁତ୍ରର ଯେଉଁ ସୁନ୍ଦରୀ ରମଣୀଗଣ ଆଜିର ଏଇ ଶନିବାର ସନ୍ଧ୍ୟାରେ ଚାଲିଛନ୍ତି, ସେମାନଙ୍କର ଜୟ ହେଉ । ପାଟଳୀପୁତ୍ର ! ପାଟଳୀପୁତ୍ର ! ପାଟଳୀପୁତ୍ରର ମଧ ଜୟ ହେଉ ! (ଲିଚୁଟିଏ ଧରି) ଲିଚୁ ଗୁଡ଼ିକ କେତେ ଲୋଭନୀୟ ସତେ ? ଲିଚୁ, ଲିଚୁ, ଲିଚୁ, ଲିଚୁମାନଙ୍କର ମଧ ଜୟ ହେଉ !

ଏଇ ପୃଥିବୀରେ କେତେ ସୁନ୍ଦର ଫୁଲ, ଫଳ, ଆଉ କେତେ ସୁନ୍ଦର ସେମାନଙ୍କର ନାଁ ! ଏଇ ଯେମିତି କିସ୍‌ମିସ୍, କବାବଚିନି, ଆଲୁବୋଖାର, ଡ୍ରାଇଫିଗ୍, ଆଉ ଅଖରୋଟ୍ । ଏ ସବୁ ନାଁ ସହିତ ମୋ ଅଜା ମୋତେ ପରିଚିତ କରାଇଥିଲେ ।

ଜୟ ହେଉ ସେଇମାନଙ୍କର ଯେଉଁମାନେ ମୋ ମୁହଁରେ ଏଇ ଫଳମାନଙ୍କର ନାଁ ଦେଇଛନ୍ତି ଗଙ୍ଗା, ଗଙ୍ଗା, ଗଙ୍ଗା, ମା– ମା'ଲୋ (ପ୍ରଣାମ କରିଛି) ଡିମୋକ୍ରାସିର ଜୟ ହେଉ ।

(ଆସିଛି ନାଇଣ୍ଟି ସେଭେନ୍, ଯାହାର ଅନ୍ୟନାମ ଡିମୋକ୍ରାସି ଜାବାଳ, ଡିମୋକ୍ରାସି ରୈକ୍ୱକୁ ଏକା ଦେଖି ତା' କାନ୍ଧରେ ଭରାଦେଇ ଝୁଙ୍କି ପଡିଛି ଆଗକୁ ?

ରୈକ୍ୱ : କିଏ ?

ଜାବାଳ : ମୁଁ, ମୁଁ ନାଇଣ୍ଟି ସେଭେନ, ତମେ ଏକଶୋ ପାଞ୍ଚ ନୁହଁକି ? କ'ଣ ଲିଚୁ ଖାଉଚ ? ଦଉନ ।

ରୈକ୍ୱ : ହଁ, ନିଅ ଆସ ।

(ସତ୍ୟକାମ ଯାଇ ବସିଛି ରୈକ୍ୱ ପାଖରେ)

ଡି. ଜାବାନ : ମୁଁ ଦେଖୁଛି ପ୍ରତ୍ୟେକ ଶନିବାର ସଂନ୍ଧ୍ୟାରେ ତମେ ଚାଲିଆସ ଏଠିକୁ, ତମେ ପରା ଲୁଗା ଦୋକାନ ଆଡ଼େ ବୁଲିବାକୁ ଆସିଥିଲ । ଯୁଦ୍ଧ ସହିତ ଲୁଗା ଦୋକାନର ସଂପର୍କ କ'ଣ ?

ଆଉ ଏମିତି ଏଇ ଅନ୍ଧାରରେ ଏକା ଏକା ....

ରୈକ୍ୱ : ଏଇ ଅନ୍ଧାର ମୋତେ ଭଲ ଲାଗେ ବେଶି । ଆଲୋକ ଆଡ଼କୁ ମୁହାଁଇ ଅନ୍ଧାରରେ ଠାକିଯିବା ଅନ୍ଧାର ଭିତରେ ଆଲୋକର ପ୍ରଶାନ୍ତି ଅପେକ୍ଷାରେ ଚିରକାଳ ପାଇଁ ଅଟକି ଯିବା, ମୋର ଗୋଟେ ଅଭ୍ୟାସ । ମୋର ଗୋଟେ ପ୍ରବୃତ୍ତି । ତା'ଛଡ଼ା ମୁଁ ତ ଜନ୍ମ ହୋଇଥିଲି କିଟିମିଟି ଅନ୍ଧାର ଭିତରେ । ମୋ ମା କହେ – ତୁ ତ ଜନ୍ମ ହେଇଥିଲୁ ଗହୀର ବିଲର ଟେଣ୍ଟେଇ ଡିମ ପାରିଲା ପରି, ଘଣ୍ଟାଏଯାକେ ତୋ ପାଟିରେ ସୋର ଶବ୍ଦ ଦେଲା ନାହିଁ ଷଠୀଦୁଶୀ । କିଟିକିଟି ଅନ୍ଧାର । ଦୀପରେ ତେଲ ନଥାଏ । ବାପ ଯାଇ ଥାଏ କୋଉ ବିଦେଶରେ । ଦିଆସିଲି ମୁଠାକ କୋଉଠି ରଖିଥିଲି କେଜାଣି । ଅନ୍ଧାର ଚାରିଆଡ଼େ କିଟିକିଟି ଅନ୍ଧାର ଲୋ ମା' ! ତୁ ତ ଜନମ ହେଲୁ ସେଇ ଅନ୍ଧାରରେ ।

ଡି. ଜାବାଳ : ଆଉ ସେଇଥି ପାଇଁ ଅନ୍ଧାରକୁ ତମେ ଏତେ...

ରୈକ୍ୱ : ଆଲୁଅକୁ ମୁଁ ବରାବର ମନେକରେ ମୋ ବାପପରି, ଅନ୍ଧାର ମୋର କକେଇ । ଆଉ ବାପ ତୁଳନାରେ କକେଇ ମାନେ ଥିଲେ ବଳିୟାର ।

ଏଇ କକେଇମାନଙ୍କ ସମାଜରେ ମୋର ହୋଇଥିଲା ଜନ୍ମ ।

ଡି. ଜାବାଳ : କକେଇ ଆଉ ଖୁଡ଼ି ତୁମକୁ କଷ୍ଟ ଦେଇ ନାହାନ୍ତି ତ ?

ରୈକ୍ୱ : ହଁ, କିନ୍ତୁ ସବୁ ଲଂକାରେ ବି ବିଭୀଷଣ ଥାଆନ୍ତି । ମା କହିଛି – ତମସାର ଅନ୍ତରରେ ଜ୍ୟୋତି ଆଉ ଜ୍ୟୋତିର ଅନ୍ତରରେ ତମସା । ଏଇ ବିଚିତ୍ର ଦ୍ୱୈତ ସେଇ ଦିନରୁ ମୋତେ ଘାରି ଆସିଛି ।

ଡି.ଜାବାଳ: ବାଃ, ସୁନ୍ଦର ତୁମର ଦର୍ଶନ । ଆଚ୍ଛା ଗୋଟେ କଥା ପଚାରିବି ?

ରୈକ୍ୱ : କ'ଣ ·?

ଡି. ଜାବାଳ : ଆଜି ସକାଳ ଘଟଣାରେ ମୋତେ ସମସ୍ତେ ସଂଦେହ କରୁଚନ୍ତି ତମେ କରୁନତ ? (ପୁଳିଏ ଲିଚୁ ଜରବରଦସ୍ତ ଛଡ଼େଇ ନେଲା)

ରୈକ୍ୱ : ସଂଦେହ କ'ଣ ପାଇଁ ?

(ନିଜ ଅଣ୍ଟିରୁ ଆଉ ପୁଳାଏ ଲିଚୁ ବଢ଼େଇ ଦେଲା)

ଡି. ଜାବାଳ : ମୁଁ ଶୁଣିଚି - ମୋ ନାଁରେ ପ୍ରୋସିଡିଂ ହବାକୁ ଯାଉଛି - ଏମାନେ କୋର୍ଟ ମାର୍ସାଲ କରି ପାରନ୍ତି ? ଏମାନଙ୍କ ସହିତ ଆମର ସର୍ତ୍ତ କଅଣ - କିଛି ଜାଣ କି ?

ରୈକ୍ୱ : କୋର୍ଟ ମାର୍ସାଲ ପ୍ରଶ୍ନ ଏଠି ନାହିଁ । ଆମେ ତ ପୂରା ସାମରିକ ଆଇନବଦ୍ଧ ନୋହୁଁ । ଆମେ ସ୍ୱେଚ୍ଛାରେ ଆସିଛୁ ତାଲିମ ପାଇଁ -

ଡି.ଜାବାଳ : ତୁମେ ଜାଣନା, ଯୁଦ୍ଧର ନିୟମ ଆମ ପ୍ରତି ମଧ୍ୟ ଲାଗୁହେବ ।

ରୈକ୍ୱ : କଅଣ କହିଲ ?

ଡି.ଜାବାଳ : ଯୁଦ୍ଧ ଆସୁଛି ଆଗକୁ - ଦ୍ୱ ଆମର ତାଲିମ୍ ସେଇଥିପାଇଁ। ଖବର କାଗଜ ପଢୁଛତ ? ଛାଡ...

(ଗୋଟାଏ ଲିଚୁ ମଂଜିକୁ ପିଚ୍ କିନା ଛାଡିଦେଲା)

ରୈକ୍ୱ : ଶୁଣ୍ ! ଆମେ ଆଉ ଏଣିକି ନମ୍ବର ଦ୍ୱାରା ଡକାଡ଼କି ହବାନାଇଁ- ପ୍ରାୟ ମାସାଧିକ କାଳ ଏକାଠି ରହିଲେଣି ଆମେ । ଆମେ ତ ଜାଣିଲେ ନି କେହି କାହାକୁ । ତୁମର ନାଁଟା ସତେ କଅଣଟି ?

ଡି.ଜାବାଳ : ଓ. ମୋ ନାଁ ।

(ଏକ ଶୋ ପାଞ୍ଚର କାଂଧ ଉପରକୁ ଟିକିଏ ଢଳି ପଡିଲା, ଜାବାଳ ଜବାବ ଦେଲା ନାହିଁ)

ରୈକ୍ୱ : କଅଣ ଶୋଇଗଲ ? ନାଁଟା କହିଲ ନାହିଁ ଯେ !

ଡି.ଜାବାଳ : ନାଁ ଅପେକ୍ଷା ନମ୍ବର ଭଲ ଏ ଦେଶରେ ଭାଇ, ଜାତିଭେଦ ବଡ଼ ଭୟଙ୍କର - ନା କ'ଣ କହୁଚ ?

ରୈକ୍ୱ : ଅନ୍ତତଃ ମୋଠି ସେ ଭୟ ନାଇଁ ଭାଇ । ଏଇ ଦେଖନା ମୋର ଏଇ ମାଳିଟାକୁ । ଏଇଟା ବିଶୁଦ୍ଧ ତୁଳସୀର ।

ଏଇ ମାଳିଟାକୁ ବରାବର ବେକରେ ପିନ୍ଧିବାକୁ ମୋ ବାପା ମା ମୋତେ କହନ୍ତି - ଆମେ ସବୁ ବୈଷ୍ଣବ । ଆମର ଜାତି ନାହିଁ, ତମେ ଏ କଥା ଭଲ କରି ଜାଣ ।

ଡି.ଜାବାଳ : ତୁମେ ଏ ମାଳି ସବୁବେଳେ ପିନ୍ଧ । କାହିଁ ଆଜିର ଆଟାକ୍ ଆଣ୍ଡ ଡିଫେଂନ୍ସ ବେଳେ... ଏଇଟା ପିନ୍ଧିଥିଲ ତମେ ?

ରୈକ୍ୱ : ନା !

ଡି.ଜାବାଳ : କାହିଁକି ?

ରୈକ୍ୱ : ମୁଁ ଏ ମାଳିଟାକୁ କେବଳ ଶନିବାର ସନ୍ଧ୍ୟାରେ ପିନ୍ଧୁଛି ଏଠି । ସେଇ ସନ୍ଧ୍ୟାରେ ମୁଁ ମୁକ୍ତ ମନେ କରେ । ଏତେବେଳେ ଭଲ ଲାଗେ ମତେ-ଏମିତି ଗୁଡାଏ ଚିତ୍କାର କରିବାକୁ। ଡିମୋକ୍ରାସିର ଜୟ ହେଉ । ଛାଡ ତମ ନାଁଟା କହିଲ ନାହିଁ ଯେ ଏ ଯାକେ ।

ଡି.ଜାବାଳ : ତମେ ତ ମୋତେ ଡାକି ସାରିଲଣି ମୋ ନାଁ ଧରି । ତୁମେ ଶୁଣିଲେ ହସିବ ନାହିଁତ ! ମୋ ନାଁ ଡିମୋକ୍ରାସି ।

ରୈକ୍ୱ : ଡିମୋକ୍ରାସି ? ତମ ନାଁ ଡିମୋକ୍ରାସି ? କଅଣ କହିଲ ? (ଆଖି ଦୁଇଟି ଜକେଇ ଆସିଲା ଲୁହରେ)

ଡି.ଜାବାଳ : ହଁ ସେଇଆ, ମୁଁ ଜାଣେନା ଏମିତି ଅଦ୍ଭୁତ ନାଁ ମତେ ଦେଲେ କାହିଁକି ମୋ ମା !

ରୈକ୍ୱ ତୁମର ଜନ୍ମ କେବେ ଡିମୋକ୍ରାସି ?

ଡି.ଜାବାଳ : ବହୁତ ବହୁତ ଆଗରୁ ମୋର ଜନ୍ମ (ହସିଛି) ଏ ପର୍ଯ୍ୟନ୍ତ ଆଉ ଗୋଟିଏ କଥା କହିନି ମୁଁ ତୁମକୁ । ଦାବାଳି !

ଏମିତି ଗୋଟାଏ ନାଁ କୌଣସି ସ୍ତ୍ରୀ ଲୋକର ଶୁଣିଥିବ ନିଶ୍ଚେ ଆଗରୁ । ଶୁଣିଚ ? ହଁ ସେଇ ମଧ୍ୟ ମୋର ମା ର ନାଁ- ଏବେ ମୋ ନିଜ ନାଁ ସ୍ଥିର କର ତୁମେ - ଡିମୋକ୍ରାସି ଜାବାଳ ! ଏଇଆ ଠିକ୍ ! ଠିକ୍ ନୁହେଁ ? ବିଶ୍ୱାସ କର ଏଇ ମୋର ପରିଚୟ ।

(କିଛି କ୍ଷଣ ନିରବତା ପରେ)

ଆଉ ତମ ନାଁ ?

ରୈକ୍ୱ : (ଶରୀର ରୋମାଞ୍ଚିତ ହୋଇ ଆସିଲା), ସେ ହଠାତ୍ ଛିଡା ହୋଇଗଲା)

ଡି.ଜାବାଳ : କୁଆଡେ ବାହାରିଲ ବନ୍ଧୁ ?

(ଏକଶୋ ପାଞ୍ଚର ହାତ ଧରି ଅଟକାଇ ଦେଲା)

ରୈକ୍ୱ : ମୋ ନାଁ ରୈକ୍ୱ ।

## ଦ୍ୱିତୀୟ ଦୃଶ୍ୟ

(ସ୍ଥାନ ବାରାକ୍ , ଯୁଦ୍ଧବିଦ୍ୟା ଶିକ୍ଷା କରିବାକୁ ଯିବା ନିମନ୍ତେ ପ୍ରସ୍ତୁତିହେଉଥାନ୍ତି ରୈକ୍ୱ ଓ ଡିମୋକ୍ରାସି ଜାବାଳ । ସାର୍ଟ ବୋତାମ ଦେଉଦେଉ ମଞ୍ଚକୁ ପ୍ରବେଶ କଲେ ଦୁଇବନ୍ଧୁ ସାମରିକ ପୋଷାକ, ବେଲ୍ଟ ଲଗାଇ, ଯୋତାର ଫିଂତା ବାନ୍ଧୁ ବାନ୍ଧୁ କଥା ହେଉଥାନ୍ତି ସେମାନେ)

ରୈକ୍ୱ : ଡିମୋକ୍ରାସି !

ଡି.ଜାବାଳ : ହଁ, କ'ଣ କହୁଚ ରୈକ୍ୱ ?

(ଦୁହେଁ ପରସ୍ପରକୁ ଚାହିଁ ହସିଦେଲେ)

ରୈକ୍ୱ : ତମେ କାଲି କ'ଣ କହୁଥିଲ ?

ଡି.ଜାବାଳ : କାଲି ?

ରୈକ୍ୱ : ହଁ, କାଲି କହୁନଥିଲ, ଗଙ୍ଗା ନଦୀ କୂଳରେ ।

ଡି.ଜାବାଳ : ଓ, ହଁ, ସେଇକଥା ? ସନ୍ଦେହ କଥା ତ ? ଶୁଣ, ଚାରି ଘଣ୍ଟାଧରି ଟ୍ରେନିଂ ନେଲା ବେଳକୁ ଆମ ଦଫା ଶେଷ ହେବା ଉପରେ । ତାତିଲା ମାଟି ଉପରେ ତଥାପି ପେଟେଇ ପେଟେଇ କୁମ୍ଭୀର ପରି ଘୁଷୁରି ଘୁଷୁରି ଚାଲିବାକୁ ହୁଏ । ଆଉ ତା ସହିତ ସୁବେଦାର ଭଗବାନ ସିଂହର ପାଟି । ମୁଁ ଯେତିକି କ୍ଲାନ୍ତ ହୋଇ ନଥିଲି ସେତିକି ଅତିଷ୍ଠ ହୋଇ ପଡିଥିଲି ସୁବେଦାରର୍ ଶତ୍ରୁ ଶବ୍ଦର ଉଚ୍ଚାରଣରେ ।

ରୈକ୍ୱ : ହଁ, ସେ ଗର୍ଜି ଉଠି କହୁଥିଲା – ନମ୍ବର ଏକଶୋ ପାଞ୍ଚ ଆଉ୍ ଭାନ୍ସ । କ୍ୟା ଶୋ ଗୟା ହୋ !

ନମ୍ବର ନାଇନ୍‌ଟି ସେଭେନ୍ ! ଦୁସ୍‌ମନ ସାମ୍‌ନେ ହୈ । ଉପର ଥୋଡ଼ି ! ଠିକ୍‌ସେ କ୍ରଲ୍ କରୋ– ନେହିଁ ତୋ...

ଡି.ଜାବାଳ : ସୁବେଦାର ଭଗବାନ ସିଂର ସେହି ନେହିତୋ ପଦଟା ଥିଲା ଶତ୍ରୁ ଭୟଠାରୁ ଆହୁରି ଭୟଙ୍କର ।

ରୈକ୍ୱ : ଆମର ପ୍ରକୃତ ଶତ୍ରୁ ଆଗରେ, ଉପରେ, କଡରେ କି ତଳେ କେଉଁଠି ନଥାନ୍ତି । ଖାଲି ପେଟତଳେ ତାଲିଲା ମାଟି ।

ଡି.ଜାବାଳ : ମୋ ପାଟିରୁ ବାହାରି ପଡିଲା, ଶତ୍ରୁ ଫତ୍ରୁ କେହି ନାଇଁ– ମୋ ନମ୍ବର ଯଦି ଆଉ ଥରେ ଧରିବ ନା– ଶଳାକୁ ବାୟୋନେଟ୍ ଖେଂଚିଦେବି ।

ରୈକ୍ୱ : ତା କାନରେ ବୋଧେ ପଡିଗଲା । ଆଉ ଚିହିରି ଉଠିଲା - ନମ୍ବର ନାଇନ୍‌ଟି ସେଭେନ୍ । ବାତ୍‌ଚିତ୍ ମତ୍ କରୋ, ଏନିମି ବୈଠ ରହାହେଁ ସାମ୍‌ନେ ତୁହ୍ମାରା, ଶୌଗଜ୍ କି ସାମ୍‌ନେ - ଶୁନା ହେ ?

ଡି.ଜାବାଳ : ଏକଥା ଶୁଣି ମୁଁ ଲାଇଙ୍ଗ ଡାଉନ୍ ପୋଜିସନରୁ ଉଠି ଠିଆ ହୋଇ ପଡିଲି ।

ରୈକ୍ୱ : ସେ ବି ପାଟି କରୁଥାଏ - ନାଇନ୍‌ଟି ସେଭେନ୍ । ଲେଟ୍ ଯାଓ, ନାଇନଟି ସେଭେନ ଛିପ୍ ଯାଓ, ଦୁସ୍‌ମନ୍ ନଜଦିକ୍ ହାୟ - ଲେଟ୍ ଯାଓ ।

ଡି.ଜାବାଳ : ମୁଁ କିନ୍ତୁ ବାୟୋନେଟ୍ ଖଂଜା ରାଇଫଲ୍‌କୁ ଭଗବାନ ସିଂହ ଆଡକୁ ମୁହାଁଇ ଖେପିଗଲି ।

ରୈକ୍ୱ : କିଛି ବୁଝି ନପାରି ସେ କହୁଥାଏ - ଓ୍ୱାପ୍‌ସ ନାଇନଟି ସେଭେନ । ଓ୍ୱାପସ୍ । ଓ୍ୱାପସ୍ । ଏନିମିକା ନିଘାପର ଆଓ ମତ୍ ।

ଡି.ଜାବାଳ : କିନ୍ତୁ ଭାଇ ମୋର କେହି ଶତ୍ରୁ ନାହିଁ, କେହି ମୋର ଶତ୍ରୁ ନୁହେଁ । ଆରେ ମୋର ଜନ୍ମ ଏଇ ଭାରତ ମାଟିରେ । ଜଣେ ଭାରତୀୟର ଶତ୍ରୁ କିଏ ?

ରୈକ୍ୱ : ସତ କଥା ! ଆଛା, ଆଜି ଆମେ କ'ଣ ପ୍ରାକ୍‌ଟିସ୍ କରିବା ?

ଡି.ଜାବାଳ : ଆଜି ଆମ୍ବୁସ ଓ କାମୁଫ୍ଲେଜ ।

ରୈକ୍ୱ : ଆତ୍ମଗୋପନ (ଶିହରି ଗଲା ତାର ଶରୀର) କି ଚମତ୍କାର ଶବ୍ଦଟିଏ ।

ଡି.ଜାବାଳ ରୈକ୍ୱ ! ତୁ ଯଦି ଆଜି ଦୈବାତ୍ ଇଚ୍ଛା କରୁ ଆଉ ମନେକର ସତକୁ ସତ ଆତ୍ମଗୋପନ କରୁ । ତେବେ କୋଉ ଦିଗକୁ ପଳାଇବୁ ତୁ ? ଉତ୍ତରକୁ ହିମାଳୟ ଆଡକୁ ? ଦକ୍ଷିଣକୁ କୁମାରିକା ଆଡକୁ ? ନା ପୂର୍ବ ଅଥବା ପଶ୍ଚିମକୁ ?

ରୈକ୍ୱ : ସତେ ତ ! ମୁଁ ଏ ପର୍ଯ୍ୟନ୍ତ ଭାବି ନଥିଲି ଯେ, ସଂସାରରୁ ପଳାଇବାକୁ ହେଲେ ବି କୋଉ ଗୋଟାଏ ଦିଗ ଧରିବାକୁ ହେବ ଶେଷରେ ।

ଡି.ଜାବାଳ : କଣ ଭାବୁଛୁ ରୈକ୍ୱ ! ଏମିତି ସ୍ଥାଣୁ ପାଲଟି ଗଲୁଯେ ।

ରୈକ୍ୱ : ନା ସେ କିଛି ନୁହେଁ !

ଡି.ଜାବାଳ : କିନ୍ତୁ ତୁ କିଛି ଗୋଟାଏ ଭାବୁଛୁ ନିଶ୍ଚୟ (ଦୂରରୁ ହ୍ୱିସିଲ୍ ଶୁଭିଲା)

ରୈକ୍ୱ : ଡେରି ହୋଇ ଗଲାଣି, ଚାଲ୍ ଶୀଘ୍ର ।

## ତୃତୀୟ ଦୃଶ୍ୟ

(ନଦୀ କୂଳ, ଅନେକ ଲୋକ ନିଜ ନିଜର ବୋଝ ଓ ଗଣ୍ଠିରୀ ଧରି ବସିଛନ୍ତି । ଅପେକ୍ଷା କରିଛନ୍ତି ଡଙ୍ଗାକୁ, ସେମାନଙ୍କ ମଧ୍ୟରେ ବସିଛି ଗୋଟିଏ ବୁଢ଼ା । ସେଠି ଯାଇ ପହଞ୍ଚିଲା ରୈକ୍ୱ, କାହାକୁ କିଛି କହି ପାରୁନଥାଏ, ଜଣେ ମହିଳା ଡାକୁଛି ରାମରେ ସେ ଆଉ ପୁରୁଷଟିଏ ଉତ୍ତର ଦେଉଛି ହଁ ହଁ..)

ସୈନିକ୍ : ଏ ଅଞ୍ଚଳରେ ଆଜି ସକାଳ ତମାମ ରାମରେ ହେ, ବୋଲି କେହି ଜଣେ ଡାକୁଥିଲା, ଶୁଣିଚକି ଭାଇମାନେ ?

ବୁଢ଼ା : ହୋ ରାମ ଖୋଜାଲି ବାବା !

ସୈନିକ୍ : (ଚମକି ପଡ଼ି) ସ୍ୱଗତଃ - ବା, ବା, ମଉସା !

ବୁଢ଼ା : ବାବା ତମ ଘର କୋଉଠି ? ବସ, କୁଆଡେ ଯାଉଚ, ଘରେ ବୁଢ଼ୀ ମା'କୁ ଏକୁଟିଆ ଛାଡି ପଳେଇ ଆସିଚଟି ।

(ସୈନିକ୍ ବସିଛି, ମାତ୍ର ଶଂକି ଯାଇଛି)

ସୈନିକ୍ : ହଁ ମଉସା, ମୋ ଘର ଉତ୍ତରରେ ମୁଁ ବାହାରିଛି ଦକ୍ଷିଣକୁ । ତମେ ତ ମୋର ଅତୀତଟା ଦେଖିସାରିଲଣି, ମୁଁ ପଳେଇ ଆସିଛି ମିଲିଟାରୀ ବାରାକ୍‌ରୁ ?

ବୁଢ଼ା : କ'ଣ ସିଧା ମିଲିଟାରୀ ବାରାକରୁ ?

ସୈନିକ୍ : ନାଇଁ ମାତୃପ୍ରେମ ମୋତେ ଯୁଦ୍ଧ ଶିକ୍ଷାରୁ ଘରକୁ ଟାଣି ଆଣିଲା । ଆସି ଘରେ ପହଞ୍ଚିଛି କି ନାଇଁ । ପୁଣି ମତେ ଧରିନେଲେ ।

ବୁଢ଼ା : ବାରାକ୍‌କୁ ?

ସୈନିକ୍ : ନା, ଫାଣ୍ଡି ହାଜତକୁ । କେତେଦିନ ସେଇ ଛୋଟିଆ ଘରଟିରେ ବସି ରହିଲି । ଦିନେ କିଏ ଜଣେ ଆସି ପଚାରିଲା - ମାତୃଭୂମି ମା' ଭିତରେ କାହାକୁ ତୁ ବଡ଼ ମନେ କରୁ ।

ବୁଢ଼ା : ଗୋଟାଏ ସାଂଘାତିକ ପ୍ରଶ୍ନ ଇଏ । କ'ଣ ଉତ୍ତର ଦେଲ ?

ସୈନିକ୍ : କହିଲି ମୋ ମାଆକୁ, କାରଣ ମାତୃଭୂମି ଫମ୍ପା ଆବାଜ୍, ମା' ନିଦା ।

ବୁଢ଼ା : ବାଃ

ସୈନିକ୍ : ପ୍ରଶ୍ନ କର୍ତ୍ତା ଟିକିଏ ହସିଲା, ହେଲେ ଦୁଇ ବର୍ଷ ସଜା ହୋଇଗଲା ମତେ ।

ବୁଢ଼ା : ଆଉ ତମ ମା' ?

ସୈନିକ୍ : ଦୁଇ ବର୍ଷ ପରେ ସ୍ୱାଭାବିକ୍ ଭାବେ ମୋ ପାଦ ଟାଣି ଘେନିଗଲା ମୋର ସେଇ ମାଆଟି ଆଡକୁ । କିନ୍ତୁ ମନ ଭିତରଟା ହଠାତ୍ ଫିକା ପଡିଗଲା ଘରେ ପାଦ ଦଉ ଦଉ ।

ମୋ କାନରେ ପଡିଲା ମା ବୋଲୁଛି କିଛି ମାଗୁ ନାଇଁ ତତେ । ଏଇ ପଦଟା ମୋ ମା' ନିତି ବୋଲେ (ଜଗନ୍ନାଥହେ କିଛି ମାଗୁନାହିଁ ତତେ ଗୀତଟିର କିଛି ଅଂଶ ଏଠାରେ ନିଆଯାଇପାରେ)

ବୁଢ଼ା : ତା' ପରେ

ରୈକ୍ୱ : ଆଉ କାହିଁକି କେଜାଣି ସେଇ ପଦଟି ପାଖରେ ଏକବାର ମୋ ମନଟି ମରିଗଲା । ଗୋଟାଏ ଭୟଙ୍କର ଅଭିମାନ ଭରିଗଲା ମୋ ମନ ଭିତରେ ।

ଆଗକୁ ବଢ଼ିଥିବା ପାଦ ପୁଣି ପଛକୁ ଫେରିଲା, ତା'ପରେ ପଛକୁ ବୁଲି ପଡି ଏକ ମୁହାଁ ହେଇ ଚାଲିଲି । ନା ମା' ନା ମାତୃଭୂମି ଏଇପରି ଭାବେ ଦିଗହୀନ ହୋଇଗଲି । କେବଳ ଚାଲିଲି ଆଉ ଚାଲିଲି । ବିକଳ ହେବାର ଆବଶ୍ୟକତା ଆଉ କ'ଣ ଥିଲା !

ପିଚୁ ରାସ୍ତା ଛାଡି ନାଲି ରାସ୍ତା । ନାଲି ରାସ୍ତା, ଛାଡି ଧୂଳିଆ ରାସ୍ତା, ଆଉ ଧୂଳିଆ ରାସ୍ତା ଛାଡି ଗୋଟାଏ ଭାଲୁ ଗଡା ।

ବୁଢ଼ା : ଭାଲୁ ଗଡ଼ା ।

ରୈକ୍ୱ : ଭାଲୁମାନେ ଏଇବାଟେ ଗଡନ୍ତି ବଣଆଡ଼ୁ ଆଖପାଖର ଆଖୁକ୍ଷେତ ଆଡକୁ । ମୁଁ କିନ୍ତୁ ଯାଉଥାଏ ତା'ର ବିପରୀତ ଦିଗରେ । ଏତିକି ବେଳେ ଜଣେ କିଏ ପଛରୁ ଡାକିଦେଲା - ହୋ - କଅଣ ଉଣ୍ଡୁଚ ଏଠେଇଁ ?

ବୁଢ଼ା : ଉଣ୍ଡୁଚ ?

ରୈକ୍ୱ : ହଁ, ଉଣ୍ଡୁଚ, କି କୁତ୍ସିତ ଶବ୍ଦ ଏଇଟା । ମଣିଷ ପ୍ରତି ଆଉଜଣେ ମଣିଷର ଏପରି କୁତ୍ସିତ ଶବ୍ଦ ପ୍ରୟୋଗ ମୋତେ ଆହତ କଲା । ବୁଲି ପଡି ଦେଖିଲି ଆଖୁ କ୍ଷେତ ଭିତରୁ ଜଣେ ମଣିଷ ଉଣ୍ଡୁଚି ମୋ ଆଡକୁ ।

ମୁଁ କହିଲି - ମୁଁ ଚୋର ନୁହେଁ, ଜଣେ ସାଧୁ ।

ବୁଢ଼ା : କ'ଣ କହିଲା ସିଏ ?

ରୈକ୍ୱ : କହିଲା - ଚୋପ ଶଳା ଚୋର, ଫେଏରେ ଉଣ୍ଡୁଚୁ । ମୁଁ ସେଠୁ ଚାଲି ଆସିଲି, ହେଲେ ଲୋକଟାର ସେଇ ସ୍ୱର ଲେଖିହୋଇ ରହିଗଲା ମୋ ଭିତରେ କେଉଁଠି ।

ବୁଢ଼ା : ହଁ ହେଇଥିବ ।

ରୈକ୍ୱ : ସେଇ ଦିନଠୁ ମଣିଷକୁ ମୁଁ ଡରିଲି । ସମସ୍ତଙ୍କଠୁ ମୁଁ ବେଶି ଡରିଲ ମଣିଷକୁ । ଆଉ ଚାଲିଲି ବେଶିବେଶି ଅଗନାଅଗନି ବନସ୍ତ ଆଡକୁ । ଏମିତି ଚାଲୁଚାଲୁ ଦିନେ ରାତିରେ ଗୋଟାଏ ନଦୀ କୂଳରେ ଆଶ୍ରୟ ନେଲି । ରାତି ତମାମ ଗଛ ଉପରେ ଚଢ଼େଇଟିଏ କିଚିରି ମିଚିରି କରୁଥିଲା, ସେଇ ଶବ୍ଦ ହିଁ ମତେ ଟିକିଏ ଆଶ୍ୱସ୍ତ କଲା ।

ବୁଢ଼ା : ଏଇ ନଈ ଘାଟକୁ ଆସିଲ କେମିତି ?

ରୈକ୍ୱ : ପରଦିନ ସକାଳ ନ ହେଉଣୁ ମୋ ନିଦ ଭାଙ୍ଗିଲା, ଗୋଟିଏ ସୁଦୂର ପରାହତ ଡାକରେ ଅବା, ଘାଲେଇ ରହି କାନେଇଛି ସେଇ ଡାକଟିକୁ । କାନ ପାଖରେ ପବନ ବହୁଥାଏ ସାଇଁ ସାଇଁ । ପହିଲେ ଧରି ପାରିଲି ନାହିଁ ଆଦୌ ଶବ୍ଦଟିର ଅର୍ଥକୁ । ବହୁତ ଚେଷ୍ଟା ପରେ ସତେକି ଶବ୍ଦଟି ଧରା ପଡିଗଲା ମୋ ପାଖରେ -

ରାମ - ରାମରେ ହେ ! ହୁଏତ ସ୍ତ୍ରୀ ଲୋକଟିଏ ଡାକୁଥିଲା । ଦେଖିଲି ଉଦୀୟମାନ ସୂର୍ଯ୍ୟର କୋମଳ ଗୈରିକ ରଂଗ ନଦୀଜଳ ଉପରେ ହଲଚଲ ଦେଉଥିଲା । ସେଇ ଜଳରେ ପ୍ରାତଃସ୍ନାନ କରିବା ପାଇଁ ମୋର ଇଚ୍ଛା ହେଲା ଓ ତାହାହିଁ କଲି ।

ବୁଢ଼ା : କହୁଥିଲ ପରା କ'ଣ ଦକ୍ଷିଣକୁ ଯାଉଚି ।

ରୈକ୍ୱ : ହଁ, ଗତ ରାତିରେ ଯୋଉ ଚଢ଼େଇଟି ମୋର ସାଥୀ ହୋଇଥିଲା । ସେଇ ଚଢ଼େଇ ପ୍ରତି ମୋ ମନରେ ଗୋଟାଏ ଅହେତୁକ କୌତୁହଳ ଜାତ ହେଲା, ତାକୁ କହିଲି -

ଚଢ଼େଇ, ମୋର ଯାତ୍ରାର ଦିଗଟି ଟିକିଏ ଦେଖେଇ ଦବନି । ଏତିକି କହୁକହୁ ଚଢ଼େଇଟି ଉଡିଗଲା ନଈ ସେପାରିକି । ପାଣିରୁ ଉଠି ସୂର୍ଯ୍ୟଙ୍କୁ ନମସ୍କାର କଲି ହଠାତ୍ ମନରେ ପ୍ରତିଭାତ କଲା ସେଇ ହଜିଲା ଦିଗଟି ଯାଇଛି ମିଳି ।

ଦକ୍ଷିଣ ! କି ସୁନ୍ଦର ସେଇ ଦିଗଟି, ଯୁଆଡକୁ ଉଡି ଚାଲିଗଲା । ମୋ ବଂଧୁ ସେଇ ଚଢ଼େଇଟି ।

ବୁଢ଼ା : ନଈ ପାର ହେବା ପାଇଁ ଘାଟଟିଏ ଖୋଜିବା ଲକ୍ଷ୍ୟରେ ନଈ କୂଳେକୂଳେ ଚାଲିଆସି ଏଠି ପହଞ୍ଚିଗଲ ନାଇଁ ?

ରୈକ୍ୱ : ହଁ ! ଘାଟି ଯେତିକି ପାଖେଇ ଆସୁଥାଏ । ରାମରେ ହେ ସେତିକି ସ୍ପଷ୍ଟ ହୋଇ ଆସୁଥାଏ ।

ବୁଢ଼ା : ରାମ ଶବ୍ଦଟା ବହୁତ ଆନନ୍ଦଦାୟକ ଶବ୍ଦ, ନୁହେଁ ?

ରୈକ୍ୱ : କିନ୍ତୁ ବଡ ଭୟଙ୍କର ବିରକ୍ତିକର ନାଁ ଟାଏ ଥିଲା ଦିନେ ଏଇ ଶବ୍ଦ ମୋ ପାଇଁ । କେବଳ ଏଇ ଶବ୍ଦ ନୁହେଁ କୃଷ୍ଣ, ଚୈତନ୍ୟ, ମୁରାରି, ନଟବର, ରମାକାନ୍ତ, ଗିରିଧାରି, ସନାତନ, ବ୍ରଜବଂଧୁ, ଗଦାଧର, ନବୀନ, ପୂର୍ଣ୍ଣେନ୍ଦୁ, ଶ୍ୟାମସୁନ୍ଦର, ମନମୋହନ, ଦିବାକର, ରବୀନ୍ଦ୍ର, ବୀରେନ୍ଦ୍ର, ଶତ୍ରୁଘ୍ନ ଇତ୍ୟାଦି । କାରଣ ଗୋଟିଏ ଗୋଟିଏ ନାଁର ଉଚ୍ଚାରଣରେ ସେଇ ନାଁର ମଣିଷମାନଙ୍କ ମୁହଁଟିମାନ ଉଁକି ମାରୁଥିଲା ମୋ ମନରେ । ଆଉ ପ୍ରତ୍ୟେକ ନାଁ ପାଇଁ

ଗୋଟାଏ ଲେଖାଏଁ ସର୍ବନାମ ଉଦ୍ଭାବନ କରି ଥୋଇ ଦେଉଥିଲି ମୁଁ । ଚୋର, ଧପାବାଜ, ଡାକୁ, ସଇତାନ, ବିଟ, ମଦ୍ୟପ, ଶଠ, ଲଂପଟ, ଶିଶୁ ଖାଦ୍ୟଚୋର, ଟ୍ୟାକ୍‌ସଇଭେଡର, ଟାଉଟର, ମନ୍ତ୍ରୀ, ଏମ୍.ଏଲ୍.ଏ. ଏମ୍.ପି. ସରପଞ୍ଚ, ମାଷ୍ଟର, ଓକିଲ, ଡାକ୍ତର, ଆଇ.ଏ.ଏସ୍. ଗୁଣ୍ଡା, ବିଶ୍ୱାସଘାତକ ଇତ୍ୟାଦି । ଶବ୍ଦର ଅର୍ଥ ପରିବର୍ତ୍ତେ କେତେକ ମୁଖ ବିଶେଷର ସ୍ମୃତିରେ ଅତ୍ୟାଚାରିତ ହେଉଥିଲି ମୁଁ ଅଷ୍ଟମ ଶ୍ରେଣୀରେ ପଢୁଥିବା ସମୟରେ ଏଇ ରାମ ନାମଧାରୀ ବାଲ୍ୟବଂଧୁ ସହିତ ମୋର ଅପଡ ହୋଇଥିଲା ସବୁଦିନ ପାଇଁ ।

ବୁଢ଼ା : ଅପଡ ।

ରୈକ୍ୱ : ଛାତ୍ରାବାସର ବିଦାୟୀ ଅନ୍ତେବାସୀଂକ ଉଦ୍ଦେଶ୍ୟରେ ସମ୍ଭାଷଣ ଦେବାବେଳେ ଅଗ୍ରଜ ଶବ୍ଦରୁ ମନେ ପଡିଯାଏ ରାମ ଶବ୍ଦ, ଆଉ ମୋ କଣ୍ଠ ହୋଇଯାଏ ବାଷ୍ପରୁଦ୍ଧ, ସେଇ ସୀତା ବନବାସ କବିତାରୁ ରାମ ଶବ୍ଦ ଚାଲିଆସେ ମନକୁ ।

କୋହ ଉଠିଗଲା ମୋ ଛାତିରୁ , ଗୋଟାଏ ବିରାଟ ହସର ଲହରୀ ଖେଳିଗଲା ସଭା ମଧରେ ଅଥଚ ରାମନାମ ଧାରୀ ମୋ ବଂଧୁଟି ଆଗରେ ବସି ହସୁଥାଏ, ମୁଁ କିନ୍ତୁ କାନ୍ଦୁଥାଏ ।

ବୁଢ଼ା : ଓ, ଏତିକିରେ ତୁମେ ଅପଡ ହୋଇଗଲ ।

ରୈକ୍ୱ : ନାଇଁ, ତା'ପର ଦିନ ସକାଳେ, ସେ ମୋ ପାଖକୁ ଆସିଲା , ବସିଲା, ଭାବିଲା ଦୁଃଖ ପ୍ରକାଶ କରିବାକୁ ଆସିଛି , ସେ କିନ୍ତୁ କହିଲା - ଅନେକ ଦିନ ହେବ ଅଣାଏ ପଇସା ତୁମେ ଧାର ନେଇଥିଲ ମୋଠୁ । ବୋଧହୁଏ ତୁମେ ପାସୋରି ଗଲଣି ସେ କଥା। ପଇସା ଅଣାକ ଶୀଘ୍ର ଦିଅତ ।

ରାମ ଶବ୍ଦଠାରୁ ବିଛିନ୍ନ ହେବାପାଇଁ ଆଉ ମୁହୂର୍ତ୍ତେ ଲାଗିଲା ନାହିଁ ମୋତେ ।

ବୁଢ଼ା : (ହସୁଥାଏ) - ଏଇ ଯେ ଘାଟ ଡଙ୍ଗା ଆସିଲାଣି, ତମେ ପରା ସେ ପାରିକି ଯିବ, ଚାଲ ।

ରୈକ୍ୱ : (ବୁଢ଼ାର ଗଣ୍ଠିରାଟି ଟେକି) ଆରେ ଆରେ ! ଗଣ୍ଠିରାଟା ଏତେ ଭାରି । ଯାକୁ ଏକା ଟେକୁଛ କେମିତିମ ?

ବୁଢ଼ା : ଆରେ ତମେ ଇଏ କ'ଣ କରୁଛ ?

ରୈକ୍ୱ : ଠିକ୍ ଅଛି ତମେ ଆସ ।

## ଚତୁର୍ଥ ଦୃଶ୍ୟ

ରାମରେ ହେ...ହଁ...ହଁ...

ରାମରେ ହେ...ହଁ...ହଁ...

(ଗଣ୍ଡିରାଟି ଧରି ଆଗେ ଆଗେ ଚାଲିଥାଏ ରୈକ୍ୱ ପଛେ ପଛେ ବୁଢ଼ା)

ବୁଢ଼ା : ଦେଖିଲୁତ, ଏ ନାଉରୀ ହଁ ହଁ କହୁଚି, କିନ୍ତୁ ତା ନାଁ ରାମ ନୁହଁରେ ବାପ, ତା ' ନାଁ ଚଂଦରା, ଚଂଦରା କେଉଟ ଏ ବାପ, ଆମ ଶୁଣିବାରେ ଏ ଚଂଦରା କେଉଟ ଆଜିକୁ ପଚାଶ ବରଷ ଧରି ଏଇଆ କରୁଚି । ବଡ଼ ଆଶ୍ଚର୍ଯ୍ୟ, ତୁ ଜାଣିନୁ ଯାର ମରମ ପୁଅ ।

ରୈକ୍ୱ : ମରମ !

ବୁଢ଼ା : ଶୁଣ, ନଈ ସେପଟୁ ରାମରେ ହେ ବୋଲି ଯେ ଡାକିଲାନି ଅଇଛୁଣିକା ? ସେତ ବିଚାରୀ ପାଗଳୀଟାଏ । ତାକୁ ସତୁରୀରୁ କମ୍ ହେବ ନାଇଁ । ତାକୁ କିଏ ଯେମନ୍ତ କହି ଦେଇଚି ରାମଚନ୍ଦ୍ର ଆଉଚନ୍ତି । ହେଇ ନଈ ସେ ପାରିରେ ଗଲେଣି ପହଞ୍ଚି - ଆଉ ଡଂଗା ସେ ପଟେ ନାଗିଲେ ଏପଟକୁ ଆଇବେ, ତେବେ ପଥର ହେଇକିନା ଯେତେ ଅହଲ୍ୟା ଯୋଉଠି ଥିବେ ଆମର ଏପଟ ସଂସାରରେ ସେମାନେ ମୁକତି ନପାଇ ଆଉ ଚାରା ନାହିଁ ! ଆଜିକୁ ଦି' କୋଡି ଦଶ ସାଲ ପାହିଲାରେ ପୁଅ । ରାମ ଆଇଲେନି । ଯୋଉ ପଥରକୁ ସେଇ ପଥର ହେଇ ପଡି ରହିଲେ ସେମାନେ, ତା' ନାଁ ଅହଲ୍ୟା, ଡଂଗା ଏପଟକୁ ଆଇଲାତ ତେଣୁ ସେ ପାଗେଲୀ ବେଧ ବାଉରାଣୀ ଡାକ ମାରିବ - ରାମ ରେ ହେ ! ଆଉ ଏ ଚଂଦରା କେଉଟ ଶଳା କଅଣ କରୁଥେଲା ଜାଣୁରେ ପୁଅ ? ପାନ ଖଣ୍ଡେ ଖାଇବୁ କିରେ... ?

ରୈକ୍ୱ ହଉ ଦିଅ ।

ବୁଢ଼ା : ହଉ, ପହିଲୁ ଶଳା ତାମସା ଦେଖିବ ବୋଲି ହଁ ହଁ କରୁଥଲା ଥଟ୍ଟାରେ । ବିଶୁଦ୍ଧ ଥଟ୍ଟା ତାମସାରେ, କିନ୍ତୁ ଆରେ ବାବୁ ଦି' କୋଡି ଦଶ ବରଷକୁ କି ସହଜ ପାଇଚ ? ଚଂଦରା ଥିଲା ଗଞ୍ଜା ଟୋକା ସେବେ, ଆଉ ଏବେ ଯାହାକୁ ଦେଖୁଚ ଯେ ସେ ଚଂଦରା ନୁହେଁରେ... ଥଟ୍ଟା ନୁହେଁ...ଥଟ୍ଟା ନୁହେଁ, ଶଳା ଭାରି ଭକ୍ତ ଜଣେ ବନିସାରିଚି ଆମ ଏ ଚନ୍ଦରା କେଉଟ । ଗୁଣ୍ଡି ଚଳେତ ?

ରୈକ୍ୱ : ନା !

ବୁଢ଼ା : ମନେ କରୁନୁ ! ଦି, କୋଡି ଦଶ ବରଷଟି । ତେଣୁ ନଈ ଆରପାଖୁ ରାମରେ ଡାକ ପଡ଼ିଲାବେଳକୁ ଏଣୁ ଜଣେ ହଁ ହଁ କରିବ । ଥଟ୍ଟା ତାମସା ସିନା ଦିନେ ଓଳିଏ, କଅଣ

ପଚାଶ ବରଷ ପରିଯନ୍ତେ ଥଟ୍ଟା ଲାଗନ୍ତା କିଓ ଏ ସଂସାରରେ ? ଶେଷକୁ କ'ଣ ହେଲା, ମିଛରୁ ସତ ବାହାରିଲା । ଏଁ କଅଣ କହୁଥେଲୁ ! ଗୁଣ୍ଡି ଚଳେନି ? ହଉ ନେ, ଜାଣିଲୁ ପୁଅ ପରିହାସ କ୍ଷଣିକ, ସମ୍ବନ୍ଧ ଚିର ଦିନର । ଚାଲ ଚାଲ ଆଉ ବେଶି ବାଟ ନାଇଁବା ! ଆରେ ତୋ ନାଁ କଣ ? ଘର ଛାଡିଲୁ ମା' ବାପାଙ୍କୁ ଛାଡିଲୁନା ! ହଉ ଆ ତାହେଲେ । (ବୁଢ଼ା ଚାଲିଥାଏ ଆଗେ ଆଗେ, ମଝିରେ ମଝିରେ ନଇପଡୁଥାଏ, କ'ଣ ଗୋଟାଏ ରାସ୍ତାରୁ ଗୋଟେଇ ରାସ୍ତା କଡକୁ ଫୋପାଡି ଦେଉଥାଏ । ସତେକି ଚଲାବାଟରୁ କଣ୍ଟା କାଢ଼ି କାଢ଼ି ଚାଲିଥାଏ ସେ ।)

ରୈକ୍ୱ : (ଗଣ୍ଡିରାଟି ମୁଣ୍ଡେଇ ଥାଏ) ଟିକେ ଧୀରେ ଚାଲ । ମୁଁ ବାଟ ଦେଖିପାରୁନି ।

ବୁଢ଼ା : ହଉ ହଉ ପୁଅ ।

ରୈକ୍ୱ : (ଶଂକିତ କଣ୍ଠରେ) ମତେ ଆଶ୍ରା ଦବ ଟିକେ ତମ ଘରେ ମଉସା ?

ମୁଁ ତମକୁ ସାହାଯ୍ୟ କରନ୍ତି - ସଂସାର ଯାକର ମଇଳା ଲୁଗାକୁ ଆମେ ଦିହେଁ ମିଶି କାଚନ୍ତେ - ଏଇଆ ମୋର ଇଚ୍ଛା ଡାକୁଛି । କଅଣ କହୁଚ ?

ବୁଢ଼ା : ଏଇଆ କରିବୁ ପୁଅ ?

ରୈକ୍ୱ : ହଁ, ମୋ ମନ କହୁଚି - ତୁ ଧୋବା ହ ! । ଏ ସଂସାରର ଯାବତୀୟ ମଳିନ ବସ୍ତ୍ରକୁ ପରିଚ୍ଛନ୍ନ କରିବା ହିଁ ବର୍ତ୍ତମାନ ତୋର ଆନନ୍ଦମୟ କର୍ତ୍ତବ୍ୟ ।

## ଦ୍ୱିତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

(ନଦୀ କୂଳର ଧୋବା ଘାଟ । ଲୋକମାନେ ଲୁଗା କାଚୁଛନ୍ତି, ଶୁଖୋଉଛନ୍ତି, ଲୁଗା କାଚିଲା ବେଳେ ଗୋଟିଏ ଶବ୍ଦ କରୁଛନ୍ତି - ହିସସ୍ ଫଟ୍, ହିସ୍‌ସ ଠୋ । ହିସ୍‌ସ ଫଟ ହିସ୍‌ସ ଠୋ । ରତନା ଓ ତା' ସ୍ତ୍ରୀ କେତୀ ଲୁଗା କାଚିବାରେ ବ୍ୟସ୍ତ)

ରତନା : ଏ ଶୁଣିଲୁଣି ।

କେତୀ : କ'ଣ ?

ରତନା : ସିଏ ଆଉ ନାହିଁ, ଗଲାଣି ପଳେଇ ।

କେତୀ : କିଏ ?

ରତନା : ସେଇ ଲୋକଟାମ, ଯିଏ ମାମୁଁ ସାଙ୍ଗରେ ଆଇଥେଲା ।

କେତୀ : ଯାଆନ୍ତାନି ଆଉ କ'ଣ ରହନ୍ତା, ତା ମୋହ ତୁଟିଗଲା ।

ରତନା : ସିଏ ତ କହୁଥେଲା – ମଉସା, ହେଇଗଲା, ଖୁବ୍ ହେଇଗଲା ଏଠି, ଏଣିକି ଚାଲିଲି ମୋ ବାଟରେ । ତୁମକୁ ଅଶେଷ ଧନ୍ୟବାଦ ।

କେତୀ : ତା'ର କଣ କେହି ନାହାନ୍ତି, ତା ' ଘରୁକୁ ଯାଇଥବ ।

ରତନା : ସମେତେ ଅଛନ୍ତି । ଘରେ ବୁଢ଼ୀ ମା, ବାପ ଚିର ବିଦେଶୀ ନିଜ ଭାଇମାନଙ୍କ ଭୟରେ । ସିଏ କହେ – ତା ବାପା ମା ଚିର ଦୁଃଖୀ । କୋଉ ଗୋଟିଏ ଦୁଃଖୀ ସମାଜର ପ୍ରତିନିଧି ସେମାନେ । ଘର କୁଆଡେ ଉତ୍ତରରେ । କୋଉ ଗୋଟିଏ ପଲ୍ଲୀ ଗାଁରେ । ହେଲେ ସିଏ ଘରକୁ ଯାଇନଥିବ ।

କେତୀ : କାହିଁକି ?

ରତନା : ମାମୁଁ କହୁଥେଲା, ସିଏ କୁଆଡେ ଦକ୍ଷିଣକୁ ଯାଉଥେଲା । ଗୃହତ୍ୟାଗୀ ଟାଏ ସିଏ । ତୁ ଜାଣିନୁକି ପ୍ରକୃତରେ ସିଏ ଧୋବା ପିଲା ନୁହଁମ ?

କେତୀ : ପୃଥିବୀରେ କରମର ଏତେ ଏତେ ପନ୍ଥା ଉନ୍ମୁକ୍ତ ଥିଲାବେଳେ କେଜାଣି କାହିଁକି ସିଏ ଟାଣିହେଇ ଆସିଲା ଏଇ ଗୋଟାଏ ହୀନପନ୍ଥା ଆଡକୁ ?

ରତନା : ସିଏ ଦିନେ ମେତେ କହୁଥେଲା ସେ କଥା ।

କେତୀ : କ'ଣ କହୁଥେଲା ।

ରତନା : କହୁଥେଲା- କିଏ ଯେମିତି ତାକୁ ଚଳେଇ ନେଲା ଏଇ କାମ ପ୍ରତି । କିଏ ତାକୁ ଯେପରି ନିର୍ଦ୍ଦେଶ ଦେଲା – ଯା, ଯା, ଧୋବାଟାଏ ହ, ଆଜିଠୁଁ ଲକ୍ଷେ ବର୍ଷ ଧୋବା କାମ କରିବା ପାଇଁ ଜନ୍ମହେଲା ତୋର ।

କେତୀ : ଏଇ ଗୋଟାଏ ଅଭିଲା କଥା ।

ରତନା : ଆଉ ଜାଣିଚୁ ସିଏ କହେ – ଗୋଟାଏ ଅକୁହା ଲୋଭ ଲାଳସାରୁ ସେ ଆମର ଏ ଧୋବା କାମକୁ ନିଜ ଇଚ୍ଛାରେ ଆଦରି ନେଲା ! ତା' ମନ ତାକୁ କହିଲା – କେମିତି ମଇଳା କୋଚଟି ଲୁଗାମାନଙ୍କୁ ଟିକେ ଛୁଅନ୍ତା । କେମିତି ଟିକେ ସେ ସେମାନଙ୍କୁ ବୁହନ୍ତା । ଏକାଠି କରି ତା ' ପିଠିରେ, କେମିତି ଟିକେ ସୁମାରି କରନ୍ତା ଗୋଟିଗୋଟି ସେମାନଙ୍କୁ ଆଉ ଜାତିଜାତି କରି ଅଲଗା କରନ୍ତା ସେମାନଙ୍କ ମୁଣ୍ଡରେ ବେକରେ, ଛାତିରେ, ପିଠିରେ କଳାଙ୍କ ମାରି ଧୋବା ଛାପମାନ ପିନ୍ଧେଇ ଦିଅନ୍ତା । ଏଇ ହେଉଛି ଇନ୍ଦ୍ରିୟ କାମନା କଥା ।

କେତୀ : ସିଏ ଯାହାବି ହଉ, ସିଏ ତ ପଳେଇଲା ଚୋରଙ୍କ ପରି, ବୁଡ଼ା ବୁଡ଼ୀଙ୍କୁ କହିକି ଯାଇ ପାରିଲାନି ?

ରତନା : ସିଏତ ଏମିତି କେତେଥର ଯାଇଚି ଆଉ ଆଇଚି । ବଳେ ଫେରି ଆସିବନି । ସିଏ ପରା କହେ- ମୁଁ ଧୋବା.... ପୃଥିବୀର ରଜକ ମୁଁ...

ତା କଥା ବଡ ବିଚିତ୍ର । କାମ କରିବାରେ ସେ ଯେମିତି ପାଏ ସରଗସୁଖ ଥରେ ସେ କହିବାର ଶୁଣିଲି ମୁଁ - ''ହେ ଭାରତ ! ଅଜ୍ଞ ମାନେ କର୍ମ ଫଳାକାଂକ୍ଷୀ ହୋଇ ଯେପରି କରନ୍ତି ବିବେକୀମାନେ ଅନାଶକ୍ତ ହୋଇ ଲୋକମାନଙ୍କୁ ସ୍ୱଧର୍ମରେ ପ୍ରବର୍ତ୍ତାଇବା ପାଇଁ ସେହିପରି କର୍ମ କରିବେ । ଏଇ ଭାରତ ସମ୍ବୋଧନରେ ସେ ରୋମାଞ୍ଚିତ ହୋଇଯାଏ । ସତେ ଯେମିତି ତା ସର୍ବାଙ୍ଗରେ ସଂଚରି ଯାଏ ମହୁ । ଆଉ ଚେଙ୍ଗା ହୋଇ ଉଠି ସେ ହାତ ବଢ଼େଇ ଦିଏ ତାର ଅସମାପ୍ତ କର୍ମ ଆଡକୁ ।

କେତୀ : ସିଏ ତମ ଆମ ପରି ଲୋକ ନୁହେଁ, ସିଏ ଆଉ ବାଗେ ମଣିଷ ହୋଇଥବ । ନ ହେଲେ ପଣ୍ଡିତିଆ କଥା କହନ୍ତା କେମେତେ ?

ରତନା : କମ୍ କାମ କରେ ସିଏ ? ଦିନ ତମାମ ଗଧଭଳି ହାଡଭଂଗା ଖଟଣି ଖଟେ । ଯେତେବେଳେ ହାତରେ କିଛି କାମ ନଥାଏ ବାଧ ହୋଇ ଫେରୁଥେଲା ଧୋବା ସାହିକୁ । ମଣିଷମାନଙ୍କ ପାଖକୁ ।

କେତୀ : ଖାଲି ମଣିଷକି ? ଏ ବଣ, ପାହାଡ, ନଈ, ଗଛ, ମାଛ, ଚଢେଇ, ଏମିତିଙ୍କ ମଇଳା ଲୁଗାମାନଙ୍କୁ ବି ସେ ଭଲ ପାଏ । ମୁଁ ଦେଖୁଛି ଏମାନଙ୍କ ସହିତ ଏକାଏକା ସେ ବେଶ୍ ହସ ଖୁସି, ମଜାର ଗପ ଲଗେଇ ଦିଏ । ବେଳେବେଳେ ସିଏ କଅଣ ଗୋଟାଏ ଭାବେ । ଭାବିଲାବେଳେ ଦେଖିବି ଦେଖିପାରୁନଥାଏ । ଶୁଣିବି ଶୁଣି ପାରୁନଥାଏ, ଏମିତିକି କାଶ, ଛିଙ୍କ ପରି ଶବ୍ଦଗୁଡିକୁ ବି ।

ରତନା : ବୁଢ଼ା ତାକୁ କମ୍ ଭଲ ପାଉଥିଲା କି ? ସଂଜବେଳେ ସିଏ ଘରୁକୁ ଫେରିଲେ ମାମୁଁ ଡାକମାରେ ଆରେ ପୁଅ ଆଇଲାଣି । ଆଲୁଅ ନଗାଅରେ...

କେତୀ : ମାଇଁ ତାକୁ ଭାତ, ଡାଲି , ମାଉଁସ ତୁଉଣ କରିଦିଏ । ବଡ ଶରଧାରେ ପଚାରେ - ଆଉ ତୁଉଣ ଦେବି କିରେ ପୁଅ ? ସବୁବେଳେ ସିଏ କିନ୍ତୁ କହେ-ନାଇଁ । ଏଥିପାଇଁ ମାଁଇର ଭାରି ଅଭିମାନ- ମାମୁଁକୁ କହେ ତାକୁ ଏଠେଇଁ ଭଲ ଲାଗୁନିବା, କିଆଁ ନାଗିଚ ତା ପଛେରେ, ପର ପୁଅ ଗୁଂଜା ଗୁଅ ।

ରତନା : ଦାଣ୍ଡ ପିଣ୍ଡାରେ ଶୋଇଶୋଇ ସିଏ ହାଇ ମାରେ । ବେଳେବେଳେ ଚାହିଁ ରହିଥାଏ ଆକାଶକୁ ।

କେତୀ : ଭଲ ଲୋକଟିଏ - ସକାଳ ନ ପାହୁଣୁ ସେ ଭାଟି ଚୁଲିରେ ଆଂଚ ଧରେଇ ସାରିଥାଏ । ସକାଳ ହେଲାବେଳକୁ ହାଜର ହୁଏ ନଈକୂଳେ । ଆଉ ସିଏ ଫେରିବନି, ଫେରିବାକୁ ଥେଲେ ଏମେତେ ତୁଠରେ ଅଧାକଚା କରି ଲୁଗା ଗୁଡାକୁ ଫୋପାଡିଦେଇ ଚାଲି ଯାଇଥାନ୍ତା ?

ରତନା : କିଏ ଜାଣିଲା । ଏମିତି କେତେଥର ତ ଫେରିଛି । ଫେରିଆସି ସଫେଇ ଦିଏ - ମଉସା, ମୁଁ ମୁଁ-ମୁଁ ଆଛା ହଉ, ଯଦି କହୁଚ ଆଉ ଦିନ ପନ୍ଦରଟା ରହିବି କିନ୍ତୁ ବାସ, ଆଉ ତେଣିକି ନୁହେଁ- ମୁଁ ଯିବି ମୋ ବାଟରେ, ମୋତେ ଅଟକେଇବ ନାହିଁ । ଅଟକେଇଲେ ବି ରହିବି ନାଇଁ ମୁଁ... କେତେବେଳେ କେମେତେ ମନେମନେ ଗୁଣୁଗୁଣୁ ହୁଏ... ନା ନାଃ ଯିବା... ଯିବା... ଯିବା, ଆମେ କାହାର ନହୁଁ... କେହି ଆମର ନୁହନ୍ତି, ଏକା ଏକା... ସମସ୍ତେ ।

କେତୀ : ଏଇତ ମାଇଁ ଆଉଚି ।

(ବୁଢ଼ୀ ଆସିଛି ମନରେ ତା'ର ଅମାପ ଦୁଃଖ ଆଉ ଯନ୍ତ୍ରଣା)

ରତନା : କ'ଣ ପଳେଇ ଗଲାକି ସିଏ ?

ବୁଢ଼ୀ : ହଁରେ ପୁଅ । ଯାଉ ଯୋଗିନୀ ଖିଆ, ଯାଉ ବା, ବାଡ଼ି ଖାଉ ତାକୁ ।

କେତୀ : ଦରକଚା ଲୁଗା ଗୁଡାକ ସେ ଆର ତୁଠରେ ପଡିଚି । କେହି ସେଠି ନାହାନ୍ତି ଶୂନଶାନ । ଯା' ନେଇ ଆସିବୁ ଯା ।

ରତନା : କ୍'ଣ କହିଲକି ତାକୁ ?

ବୁଢ଼ୀ : ନାଇବା କିଏ କାହିଁକି କ'ଣ କହିବ । ସବୁବେଳେ କହେ ପଳେଇବ ପଳେଇବ । ବୁଢ଼ା ବି କହେ - ତୋ ଦେଇ ଖଡା ସିବିବା ନାଇଁ, କେତେ ଅଇଲେଣି କେତେ ଗଲେଣି ତୋରି ଭଳିଆ । କିଏ କହୁଥେଲା ତତେ ଓପରେ ପଡି ପର କାମରେ ହାତ ଦବାକୁ ହୋ ! ମୁଁ ଧୋବା ହେବି... ଯାଃ, ଯାଃ। ଏତିକି ବୋଲି କଥା ।

ରତନା : ହଉ ଦେଖ, ଫେରିଆସି ପାରେ ଯେ

ଯା, ଯା, ଲୁଗା ଗୁଡାକ ନେଇ ଆ

ବୁଢ଼ୀ : ହଉ ଯାଉଚିରେ ପୁଅ।

## ଦ୍ୱିତୀୟ ଦୃଶ୍ୟ

(ରାତି, ଡିବିରି ଟିଏ ଜାଳି ବୁଢ଼ା ବୁଢ଼ୀ କାହାକୁ ଯେମିତି ଅପେକ୍ଷା କରିଛନ୍ତି । ଗଧ, ବିଲୁଆ ଆଉ ପେଚାଂଙ୍କ ରାବ ବେଳେବେଳ ଶୁଭୁଛି)

ବୁଢ଼ା : ମୁଁ ଜାଣେ ପଳେଇବ ସେ ଶଳା ଦିନେ ନା ଦିନେ, ଯାଉ, ଯାଉବା ଦୁଃଖ କଅଣ । ରାତି ଅଧ ହେଲାଣି ଚାଲ ଶୋଇବ ଚାଲ ।

ବୁଢ଼ୀ : ଆଉ ଟିକିଏ ଯାଉ, କାଳେ ଆସିଯିବ, କୁଆଡେ ଚାଲି ଯାଇ ଥାଇପାରେ ଅବା କୋଉ ଜରୁରୀ କାମରେ ।

ବୁଢ଼ା : ନାଇଁ, ଆଉ ସିଏ ଫେରିବନି । ଏଇ ଥରକ ଗଲା । ବିଲୁଆ ବୋବେଇଲେଣି ଦି'ଥର । ଗଧଂଙ୍କ ସୋର ଶବଦ ଆଉ ଶୁବୁନି । ରାତି ଅଧୁକୁ ଗଡି ଗଲାଣି । ଶୋଇଯା, ଯେତେ ଭାରି ନିଦ । (କବାଟରେ ରାଂପୁଡା ଶବ୍ଦ) ଆଇଲାକି ?

ବୁଢ଼ୀ : ଦେଖମ ଯାଇକି । (ବୁଢ଼ା ଉଠିଯାଇ ଦେଖୁଛି)

ବୁଢ଼ା : ନାଇଁମ କିଛି ନାଇଁ, ଗାଡ଼ ଭାଲୁଟାଏ କବାଟ ରାମ୍ପୁଥିଲା ଖିଦିଖାଦିଆ ହୋଇ ଗଲା ଝପଟି ।

ବୁଢ଼ୀ : କୁଆଡୁକୁ ଗଲାକି ? ( ନିଜେ ଦେଖିଛି)

(ରୈକ୍ୱ ଗୋଟିଏ ଜାଗାରେ ସ୍ଥିର ହୋଇ ବସି ଥିବାର ଦେଖୁଛି)

ଆରେ ତୁ, ହେଇଟି ଦେଖିବ ଆସ । ଚୋରଙ୍କ ଭଳିଆ ଏଠେଇ କିଏ ବଇଚି । ଆରେ ଘରକୁ ଆସୁନୁ । (ଦୁହେଁ ତାକୁ ଘେରି ଯାଇଛନ୍ତି)

ବୁଢ଼ୀ : ହଇରେ, ଯାଇଥେଲୁ କୁଆଡେ ତୁ ?

ବୁଢ଼ା : ଆରେ, ଆଇଲେଣୁ କେତେବେଳୁ ?

ବୁଢ଼ୀ : ଆସେ, ଆଗ ଖାଇବୁ ଆଇଲୁ । ଦେଖିଲ ଦିନ ତମାମ ନଖାଇ ନପିଇ ଖରାରେ ବୁଲିବୁଲିକା କେଁଡ଼େ କଳାକାଠ ପଡିଯାଇଚି ।

ବୁଢ଼ା : (ହାତଯୋଡି) ତେତେ ଗୋଟାଏ କଥା ପଚାରିବି କହିବୁ ବାବାଜୀ

ରୈକ୍ୱ : (ଚମକି ପଡିଚି) ବା- ବା -ଜୀ

ବୁଢ଼ୀ : କ'ଣ ଖିଲାପେ ଆମର ଦେଖିଲୁ ତୋ ସେବାରେ – କହିବୁଟି ବାବାଜୀ-

ବୁଢ଼ା : ସକାଳୁ ଯାଉଚୁ କାମୁକୁ ସଂଜୁକୁ ଫେରୁଛୁ ଘରୁକୁ । କ'ଣ ଇଆର ତାତପରିଜ କହିଲୁ ବାବାଜୀ ।

ବୁଢ଼ୀ : ଆମେ ତୋ ଠୋଉଁ କିଛି ଚାହୁଁନାହୁଁ ବା ଭଗବାନଙ୍କ ଦୟାରୁ ସବୁ ମିଳିଚି, ଆମୁକୁ ଏ ସଂସାରରେ - ପୁଅ ଝୁଅ, ଜୋଇଁ, ନାତି, ନାତୁଣୀ, ଅଣନାତି, ପଣନାତି, ଏ ସାରା ସାଇ ଗୋଟାଯାକ ତ ଆମରି ଅଂଶରୁ ଜନମ । ଆମର ଆଉ ଦରକାର କ'ଣ ବାବାଜୀ । ତୁ କ'ଣ ଭାବିଚୁ ଆମେ କୋଉସିଲା ଦରଜ ପାଇବା ପେଇଁ ଆଶା କରି ବଇଚୁ ବାବାଜୀ ।

ରୈକ୍ୱ : ତେବେ କ'ଣ ମତଲବ ଏ ବନ୍ଧନର ଯୋଉଥିରେ ବାଂଧିଚ ମତେ ?

(ବୁଝାଇଲା ପରି କହିଛି) ମୁଁ ବି କହୁଥିଲି ସେଇଆମ, ତୁମରତ ସବୁଅଛି, ଭଗବାନ ଦେଇଛନ୍ତି ସବୁ ତମକୁ ଦେଖୁଛି ମୁଁ । ଆଉ ମୋ ମନରେ ପଶିଚି ସେଇ ଦକ, ମତେ ଏଠି ରଖେଇବା ପେଇଁ କାହିଁକି ଏତେ ଚାହୁଁଚ ତୁମେ ସବୁ ? ଛାଡ ମତେ, ଏଥର ଯାଏ ଚାଲି ମୁଁ ମୋ ବାଟରେ ।

ବୁଢ଼ା : କାହିଁକି ଚାହୁଁଚୁ ଥରକୁଥର ପଳେଇବା ପେଇଁ ବାବାଜୀ । ଆଉ ଆଉଚୁ ବି ଫୁଉଣି ଫେରି ?

ରୈକ୍ୱ : ମୁଁ ମୁଁ...

(ବୁଢ଼ାକୁ ନମସ୍କାର କରି) ମୁଁ ସଂଦେହରେ ପଡିଯାଇଛି ମଉସା, ତୁମେ କ'ଣ ଜାଣି ନ ମୋ ମନ କଥା ? ତୁମେମାନେ ମତେ ଗୁଣି କଲାଭଳି ବାଂଧିଚ ସ୍ନେହରେ କାହିଁକି, କାହିଁକି ? ସଂସାରରେ ସ୍ନେହ ଶ୍ରଦ୍ଧା ମଣିଷ ମଣିଷ ଭିତରେ କାହିଁକି ଏତେ ?

ବୁଢ଼ୀ : ସେ ସବୁ ଥାଉ, ତୁ ଚାଲିଲୁ ଆଗ କ'ଣ ଦିଟା ପାଟିରେ ଦେଇ ଶୋଇଚୁ । ରାତି କେତେ ହେଲାଣି ଜାଣିଚୁ ?

## ତୃତୀୟ ଦୃଶ୍ୟ

(ବୁଢ଼ା ଲୁଗା ଗଣ୍ଡିରାଟିଏ ଆଣି ରଖିଦେଇଛି ପିଣ୍ଡାରେ)

ବୁଢ଼ା : ଆଲୋ ଆଜି କ'ଣ ରୋଷେଇ ବାସ କରିଛୁକି ? କୁଆଡେ ଯାଇଚିକି ବାବାଜୀ ? କାଇଁତ ଦୁଶୁନି ସିଏ ।

ବୁଢ଼ୀ : (ଘର ଭିତରୁ ଆସି) ତମେ ତ ତାକୁ କାମକୁ ଯିବାକୁ ମନା କଲ, ଆଜି ସିଏ ଟିକିଏ ସାଇ ବୁଲିବାକୁ ଯାଇଚି ।

ବୁଢ଼ା : ଯାଉ, ଯାଉ, ଭଲ କରିଚି, ହେଲେ ଏତେ ରାତି ହେଲାଣି ଫେରିନି ଏଯାଏ ।

ବୁଢ଼ୀ : ବୁଲିବାକୁ ଯାଇଚି । ଫେରିଆସିବନି ଏଇନା ! ଏଇତ ଆଇଲାଣି ।

ଆରେ ବାବାଜୀ ତେତେ ବୁଢ଼ା ଖୋଜୁଚି ।

ବୁଢ଼ା : ବଅସ ଟିକିଏ ବାବାଜୀ । ଆଜି ଆମେ ଟିକିଏ କଥା ଭାଷା ହବା । ଆରେ ବଅସେ। ମୁଁ ପରା ତେତେ ସକାଳେ ପଚାରୁଥିଲି ସେଇକଥା । କହିତ ନାହୁଁ ମେତେ ଏତେବେଳ ଯାଏ ସେଇ କଥା । କହ ତୁ କିଏ ? କିଏ ତୁ ପରକୁଟରେ । କୋଉଠୁ ଆଇଲୁ ଆଉ ବାହାରିଛୁ କୁଆଡେରେ ? କହିଲୁ ନାହିଁତ କେବେହେଲେ ତୁ ତୋ ମତଲବ ।

ବାବାଜୀ : (ଚମକପଡ଼ି) ମତଲବ ?

ବୁଢ଼ା : ଆରେ ଏମେତେ ଚମକୁଚୁ କଅଣ ?

ସାଇ ବୁଲିଲୁ ବାବାଜୀ ? ଦେଖିଲୁ ? କ'ଣ ଦେଖିଲୁ ? ମଣିଷ ? ମଣିଷ ଦେଖି ନଥିଲୁ ତୁ ଆଗରୁ ନାଇଁ ? (ହସି ହସି ଗଡ଼ିଗଲା) କଡେଇର ଖଡିକଡ ଶବ୍ଦ ଶୁଣିଚି, ଭିତରୁ) ଆଲୋ କ'ଣ ରାନ୍ଧୁଚୁ ବା ? ଆଜି କିଛି ନାଇଁରେ ଶାଗୁଆଡି ଫାଗୁଆଡି କିଛି ନାଇଁ । ତୁଚ୍ଛା ଶୁଖିଲାରେ ଗଲା ଏତେବଡ ଦିନଟା । (ଚମକି ପଡିଛି ବାବାଜୀ)

ବାବାଜୀ : ଆରେ !

ବୁଢ଼ୀ : (ଆସିଛି )- କ'ଣ ହେଲା କିରେ ବାବାଜୀ । ଏମେତେ ଚମକିଲୁ କିଆଁ ।

ବାବାଜୀ : ନାଇ କିଛି ନାଇଁ ।

ବୁଢ଼ୀ : କ'ଣ କିଛି ନାଇଁ । ଚମକି ପଡିଲୁ, କହୁଚୁ କିଛି ନାଇଁ ?

ବୁଢ଼ା : ନାଇଁ, ନାଇଁ କିଛି ଅଛି - କହୁନୁ ତୁ - ଭାରି କପଟିଆତୁ ବାବାଜୀ !

(ବୁଢ଼ା ଦାନ୍ତ ଲୁଚେଇବାକୁ ଚେଷ୍ଟା କରିଛି)

ବାବାଜୀ : କପଟିଆ...

ଲୀଳା, ଭଗବାନ (କାଂଦକାଂଦ ହୋଇଗଲା)

ବୁଢ଼ୀ : କହିବୁ ନାଇଁ, କ'ଣ ଭାବୁଚୁ ? (ବୁଢ଼ାର କାନର ସନା ଫାଶିଆ ଆଉଦାନ୍ତର ସୁନାଖିଲ ଉପରେ ଡିବି ଆଲୁଅ ଝଲସିଚି)

ବାବାଜୀ : ଏଇ ସୁନା ଫାଶିଆ - ସୁନା ଖିଲ ମ ? ସତରେ ଏତେଦିନ ରହିଲିଣି ତମ ପାଖରେ ଏ ଦିଇଟା ଚିହ୍ନ ତମର କେମିତି ନ ଦେଖିଲି କେଜାଣି ?

ବୁଢ଼ୀ : ତୁତ ଅନଉ ନାଉଁ ମଣିଷ ମୁହଁକୁ ବାବାଜୀ । ଦେଖନ୍ତୁ କେମିତି ?

ବାବାଜୀ : ମତେ ବାବାଜୀ ଡାକ ଡାକିବନି କେହି ଆଜିଠୁ । (ହସିଲେ ବୁଢ଼ା ଆଉ ବୁଢ଼ୀ)

ବୁଢ଼ୀ : ଆଉ କଅଣ ଡାକିବୁବା ତତେ ?

ବୁଢ଼ା : ହୋ ବାବାଜୀ ।

ବୁଢ଼ୀ : ବାବାଜୀରେ ।

ବାବାଜୀ : ଆରେ

ବୁଢ଼ା : ହଁ, କହମ ବାବାଜୀ କଅଣ ଆଉ ଆମେ ଡାକିବା ତତେ ?

ବାବାଜୀ : ମତେ କ'ଣ ଡାକିବ ? ସତେ ମତେ ଆଉ କଅଣ ଡାକିବ ତୁମେମାନେ ?

ମୁଁ ଧୋବା, ମତେ ଡାକୁନ- ଧୋବା । ଡାକ ମୋତେ ଧୋବା

(ବୁଢ଼ା ବୁଢ଼ୀ ଦୁହେଁ ଦୁହିଁକୁ ଚାହିଁ ରହିଲେ)

## ଚତୁର୍ଥ ଦୃଶ୍ୟ

(ବୁଢ଼ା ବୁଢ଼ୀଙ୍କ ଘର । ବୁଢ଼ୀ ଖୋଜୁଛି )

ବୁଢ଼ୀ : ଆରେ କୁଆଡ଼େ ଗଲା ଭାରିମ ? ବୁଢ଼ା ଦୋକାନକୁ ଯାଇଚି ଯେ ଯାଇଛି । ପୁଣି ଗଲା ଭାରିକି ସିଏ ?

କେତୀ : କାହାକୁ ଖୋଜୁଚକି ମାଇଁ ? ବାବାଜୀକୁ ଟି ?

ବୁଢ଼ୀ : ହଁ, ସେଇ ବାବାଜୀକି ?

କେତୀ : କି ବାବାଜୀ ବା ସେଇଟା । ସାଇରେ ବୁଲିଲାଣି ଘର ସନ୍ଧିକୁ ଅନେଇଲାଣି । ମାଇଫିକ ମୁହଁକୁ ଅନିଷା କରି ହାଁ କରି ଠିଆ ହେଉଚିଲୋ ମା' ଗିଳିଦବ ସତେକି । ମୁଁତ ନିଜେ ଭେଟେଣା ହେଇଗଲି ଅଇଛୁଣା ।

ରତନା : ସେ ବାବାଜୀତ ଅଜଣା ଚାଉଳର ଭାତ ଖାଉଚି ।

ଆମ୍ଭୁକୁ ପଚାରୁଚି - କାଲି କାହିଁକି କାମ ବଂଦ କରିଥିଲ, କାହିଁକି ମ ? କାହିଁକି ? କ'ଣ ହୋଇଥିଲା କି କାଲି ?

କେତୀ : ଆସ ଆସ (ଦୁହେଁ ଚାଲିଗଲେ)

(ଦୂରକୁ ବୁଢ଼ା ଓ ବାବାଜୀ ଆସୁଥାନ୍ତି ସେମାନଙ୍କ ମଧ୍ୟରେ ପାଟିତୁଣ୍ଡ , ଟଣା ଓଟରା ଲାଗିଥାଏ)

ବୁଢ଼ୀ : (ସ୍ୱଗତଃ) ଚୁଉପ୍ ଚାଆପ୍ ବସୁଥେଲା ବାବାଜୀ ଆଜିତ କଣ ପାଟି ଫିଟେଇଲାଣି । ଭେଟେଣା ହେଇ ଗଲାକି କାହା ସାଙ୍ଗରେ । (ଟିକେ ବଡ ପାଟିରେ) କୁଆଡେ ଯାଇଥିଲ ଦିହିଙ୍କି ଦିହେଁ ଏତେ ରାତିରେ ? ଜଣେ ବୁଢ଼ା ବାଟ ଦେଖି ପାରୁନି । ଆଉ ଜଣେ ଭେଣ୍ଡିଆ ଭେଟଣା ହେଇ ଯାଉଛି ମାଇପିଙ୍କ ସାମନାରେ । ରାତିରେ ତମେମାନେ ଘରୁ ଗୋଡ଼ କାଢ଼ି କାହିଁକି ଯେ...

(ଦୁହେଁ ପାଟିତୁଣ୍ଡ କରୁକରୁ ଗୋଟାଏ ଠୋ କିନା ଶବ୍ଦ ଶୁଭିଲା । ବୁଢ଼ା ବାବାଜୀକୁ ଚାପଡାଟିଏ ମାରି କହି ଚାଲିଥାଏ)

ବୁଢ଼ା : ଶଳା, ବାବାଜୀ ହେଇଚୁ ନାଇଁ ? ଆଉ କହୁଚୁ କଅଣନା ଠାକୁର ନାହାନ୍ତି।

ବାବାଜୀ : ମୁଁ ପରା କହୁଚି ନାହାନ୍ତି । ଯଦି ଥାଆନ୍ତେ ଭଗବାନ । ଯଦି ସତରେ କୋଉଠି ଥାଆନ୍ତେ... ।

ବୁଢ଼ୀ : କଣ ହେଲା କଣ ହେଲା ? ତମକୁ ଲାଜ ମାଡୁନି ? ଏତେ ବଡ ମରଦକୁ କିଏ ହାତ ଉଠେଇ ମାରେ । ପୁଣି ବାବାଜୀଟାକୁ ।

ବୁଢ଼ା : ଶଳା ବୁଦ୍ଧିକୁ ଦେଖ । ମୁଁ ତରବର ହେଇ ଫେରୁଚି... ଦେଖ୍ ଦେଖ୍ ଏ ମହାତ୍ମା ଯାଇ ହାଜର । କୋଉଠି କହିଛୁ ? ବୁଝିଲୁତ ଏଥର । ବାଟଯାକ ବୁଝେଇଚି ମୁଁ ତାକୁ । ଇଏ ଶଳା ବାବାଜୀଟାକୁ - ଶଳା ବୁଝୁନାଇଁ ଓଲଟି ପଚାରୁଛି କଅଣ ଖରାପ ହେଲା ? ଠାକୁର କଅଣ ଅଛନ୍ତି ? ଧର୍ମ କଅଣ ? ଯେଃ ଶଳାଟା ଅନଉଚି କେଏଁତେ ଦେଖ ।

ବୁଢ଼ୀ : ବାବାଜୀ ଇସ୍ତୀ ଆଞ୍ଚ ନାଗିଚି । ତୁ ଯା ସେଠିକି । ସିଏ ସେଏଁତେ ହଉଥାଉ । (ବାବାଜୀ ଚାଲି ଯାଇଛି)

ବୁଢ଼ା : ହେଇ, ଶଳାର ବୁଦ୍ଧିକି ଦେଖ । ଠାକୁର ନାହାନ୍ତି ଧର୍ମ ନାହିଁ କୁଆଡେ, ହେଃ...

ଶଳା...ଛେଚଡା

ଠାକୁର ନାହାନ୍ତି, ନାଇଁ ?

ଧର୍ମ ନାହିଁ, ନାଇଁ ?

ଭଗବାନ ନାହାନ୍ତି, ନାଇଁ ?

ଶଳା ଛେଚଡା !

## ପଞ୍ଚମ ଦୃଶ୍ୟ

(ବୁଢ଼ାର ଘର - ବାବାଜୀକୁ ଡାକି ଡାକି ଆସିଛି ବୁଢ଼ା)

ବୁଢା : ବାବାଜୀ , ଏ ବାବାଜୀ , ବାବାଜୀ

ଆରେ ଆ'ସେ ଏଠିକୁ

(ବାବାଜୀ ଆସିଛି)

ହଁ କଅଣ କହୁଥେଲୁ କାଆଲି । ଠାକୁର ନାହାନ୍ତି ନାଇଁ ?

ବୁଢୀ : (ଆସିଛି) ଠାକୁର ଥାଆନ୍ତୁକି ନ ଥାଆନ୍ତୁ । ତେମେ ତାକୁ ମାରଧର କରିବ ନାଇଁ, କହି ଦଉଚି, ଖବରଦାର...

(ଧୂପକାଠି ଟିଏ ବଳାଇ ରଖି ଦେଇଚି ବୁଢ଼ୀ)

ବୁଢ଼ା : କାଆଲି କାହିଁକି ? ଆଜି ବି କହୁଚି ମୁଁ - ଆଲୋ ମୋ ଟିଣା ଟା ଗଲା କୁଆଡ଼େ ? ଗିଲାସଟାଏ ଆଣେ ମ । (ବୁଢ଼ୀ ବଢେଇ ଦେଇଛି ଟିଣା ଓ ଛୋଟ ଗ୍ଲାସଟେ)

(ବାବାଜୀ ଆସି ବସିଛି, ଗ୍ଲାସକୁ ଟିଣାରୁ ଢ଼ାଳି ବାବାଜୀ ସମାନାରେ ରଖି ଦେଇଛି) ନେ ବାବାଜୀ ନେ ପହିଲେ ତୋ'ରି ପାଳି ।

ବୁଢା : ଆଜି ଗୋଟିଏ ଦିବ୍ୟ ସୁନ୍ଦର ଟିଲ୍ଲା ଦେଖିଲିରେ ବାବାଜୀ । ଆଉ ସତ କହୁଚି ହୋ ଏଠି ସଂଜ ନାଗିଚି । ତାକୁ ଦେଖିଲା ମାତ୍ରେ ମୋ ମନ କହିଲା, ଠାକୁର ନିଶ୍ଚେ ଅଛନ୍ତିରେ । ନିଶ୍ଚେ ଅଛନ୍ତି । ହେତୁ ପାଇଲା ଦିନଠୁ ଆଜି ଯାବତ ଲୋକଙ୍କର ସେବା କରି ଆଇଚି ମୁଁ ବାବାଜୀ, ଆଉ କି କି କାମ ନ କରିଚି ମଣିଷଙ୍କର ତ ନ କହ । ହେଲେ କଦବା ଥରେ ଅଧେ ଘଟେ ଏମିତି ବାବାଜୀ, ମଣିଷଙ୍କ ସେବା କରୁକରୁ ଥବଥବ ମଝିରେ ଧଡ଼୍‌କିନା ନାଗିଯିବ ତମ ଦିହରେ ଚାଉଁକିନା ଏମିତି - ଠାକୁର ଅଛନ୍ତିରେ ଅଛନ୍ତି...

ଅଛନ୍ତିମ ! ବହୁଦିନ ପରେ ଆଜି ପୁଣି ଥରେ ନାଗିଗଲା - ନାଗିଗଲା ସେମିତି ।

ବୁଢ଼ୀ : ତମକୁ କାଲିଠଉଁ ଧଇଲାଣି ସେଇଆ ଆଜି ବୋଲି କିଆଁ ମିଛ କହୁଚ ?

ବୁଢ଼ା : ହଁ ସେଇଆ - କାଲିଠୁଁ ଧଇଲାଣି । ହେଲେ କାଲି ମୁଁ ଜାଣି ପାରିନଥେଲି ଧଇଲାଣି ବୋଲି । ଆଜି ଜଣେଇ ଦେଲା ସେ । (ଗ୍ଲାସକୁ ଚାହିଁ) କ'ଣ ହେଲା ପିଇବୁନି ?

ବାବାଜୀ : ନାଇଁ (ଗ୍ଲାସଟି ବଢ଼େଇ ଦେଇଚି ବୁଢ଼ା ହାତକୁ)

ବୁଢ଼ା : ପିଇ ପିଇ ଟିକିଏ ବାବାଜୀ

ବୁଢ଼ୀ : ଠାକୁରଙ୍କ ପ୍ରସାଦକୁ ମନା କରନ୍ତି ନାଇଁମ ?

ବୁଢ଼ା : ହଉ ନ ପି ଏଇଲେ, ଥାଉ ଟିକେକେ ପିଇବ ସେ । (ନିଜେ ପିଇଛି ଆଖିବୁଜି, ଆଖିଖୋଲି ମୁରୁକି ମୁରୁକି ହସିଲା ବୁଢ଼ା) ଆଉ ଦୁଃଖ ରହିବ ନାଇଁରେ । ଏ ସଂସାରରୁ ଦିନେ ନା ଦିନେ ଯିବ ସେ ନା କଅଣ କହୁଚୁ ବାବାଜୀ ।

ବୁଢ଼ୀ : କଅଣ କହିବ ସେ ମ ? ସିଏତ ନିଜେ ଦୁଃଖୀ ବିଚରା- ଦେଖୁନ କଅଣ ଦିଶିଲାଣି ତା ଚେହେରା ଦିନକୁ ଦିନ- ଆସିଲା ଦିନ ଦୁଶୁଥେଲା କେଏଁତେ । ଆଉ ଅଛି ? (ବୁଢ଼ୀ ନିଜେ ଟିଣାରୁ ଢ଼ାଳି ପିଇଛି)

ବୁଢ଼ା : ସେଇ ଏକା ନୁହେଁ - ସାରା ତମାମ । ତୁ କ'ଣ ମୁଁ କ'ଣ ? ଆମର କଅଣ ଜମାରୁ ଦୁଃଖ ନାଇଁ ମନେ କରିଛୁ ?

ବୁଢ଼ୀ : ଆମର ଦୁଃଖ କଅଣ ବା ?

(ବୁଢ଼ୀ ଗ୍ଲାସଟିକୁନେଇ ଆସିଲା ନିଜ ଆଡକୁ) ବୁଢ଼ା ଟିକିଏ ଦରାଣ୍ଡିଲା ଭଳି ହୋଇଗଲା)

ବୁଢ଼ା : ମୁଁ ତ ସେଇଆ କହୁଥେଲି ଆମର ଦୁଃଖ କଅଣ ?

(ଗ୍ଲାସଟାକୁ ବୁଢ଼ା ଖୋଜୁଥାଏ)

ଆମ କଥା ଆଉ କିଆଁ ପଡିଚି, ଆମେ ତ ଯିବା, ହେଲେ ସଂସାର ରହିବ, ଆଉ ତାକୁ କୁକୁର ଭଳି ଜଗି ପଡିଥିବ ଦୁଃଖ । ଓହୋ, କମି କାମୁଡ଼ା ତା'ର ! କମି କାମୁଡ଼ା ସହିଚେ ଆମେ ତାଆର ସେଇ ପୋଡା ମୁହଁ । ଦୁଃଖର ? ଭାବିଲୁ ଦେଖି ଥରୁଟିଏ ଯେବେ ତୁ ମୁଁ ପିଲା ହେଇଥୋଲେ, ସେଇ ଦିନଠୁ ଆଜିଯାକେ କି ହନ୍ତସନ୍ତରେ ଦିନ ନ କାଟିଚେ ?

ବୁଢ଼ୀ : କି ହନ୍ତସନ୍ତ ହେଇଚେ ବା ଆମେ ? କଅଣ ମୋ ବାପଘରୁ ନ ଆଣିଚି କି ତମେ ତମ ଘରର କୋଉ ଅଭାବଟା ନ ପୂରେଇଚୁ ବା ଆମେ । ହନ୍ତସନ୍ତ ତମେ ଆଉ ହେଲ କୋଉଠି ବା ? (ଗ୍ଲାସଟିକୁ ଭର୍ତ୍ତି କରି ରଖିଚି ମଝିରେ)

(ହସିହସି) ହନ୍ତସନ୍ତ କେହି ହେଇନ ତମେ ଏ ଘରେ - ଦଶ ଦଶଟା ପୁଅ ଆଉ ଛ' ଛଅଟା ଝିଅ ଜନମ କଲାବାଲା ମୁଇଁ ନିଜେ, ଜାଣିଚି ଏ ଘରେ ହନ୍ତସନ୍ତ କେହି ହେଇ ନାହାନ୍ତି ମୋ ଜାଣିବାରେ ଏକା ଜଣକୁ ଛାଡ଼ିଦେଲେ ।

(ବାବାଜୀ ଗ୍ଲାସ ଆଡ଼କୁ ହାତ ବଢ଼ାଇ ଥିଲା, ବୁଢ଼ା ହାତ ସହିତ ତା ' ହାତ ଛୁଆଁ ଛୁଇଁ ହୋଇଗଲା)

ବୁଢ଼ା : ନେ, ନେ, ବାବାଜୀ...ନେ...ନେ

ବାବାଜୀ : ନିଅ, ନିଅ, ତମେ ନିଅ । ମୁଁ ପିଇବି ନାଇଁ ।

ଗୋଟାଏ କ'ଣ ଭାରି ଭଲ ବାସ୍ନା ହଉଚି ମ ଏ ଘରେ ଆଜି ।

ବୁଢ଼ା : ଭଗବାନଙ୍କ ବାସ୍ନାରେ ବାବାଜୀ (ପିଉପିଉ ମନେ ପଡି ଯାଇଛି)

ଏ ଧୂପ ବତୀଟା କୋଉଠୋଉ ଆଣିଥୋଲୁ ତୁ ? ସତେ ଭାରି ମହକୁଚି, ରହରହ ଏମିତି ଗୋଟେ ବାସନା ମୁଁ ତ ପାଇଥିଲି କୋଉଠି – କୋଉଠି ମ ସେ ?

ବୁଢ଼ୀ : ଧୂପବତୀ ଏଠିକା ଜିନିଷ ନୁହଁମ, ତାକୁ ଜଣେ ଆଣିଥେଲେ ଦକ୍ଷିଣରୁ । କୋଉ ମୂଲକ କେଜାଣି ସେ , ତାଙ୍କରି ଘରୁ ଆଣିଚି ମୁଁ ।

ବୁଢ଼ା : ନା, ନା, ଏ ବାସନା କୋଉଠି ଶୁଂଘିଚି ମୁଁ ନିଶ୍ଚେ । ଏଇ ଯେମେତେ ଲାଗୁନି ଏଇନେ ଅବିକଳ ସେଏଁତେ ଲାଗି ଗଲାରେ ମତେ ମାଇପିଟାକୁ ଦେଖିଲା ମାତ୍ରେ-ସେଇମ ସେଇ ଦିବ୍ୟ ସୁନ୍ଦର ତିର୍ଲା-ମୂଳରୁ ଯାହା କଥା କହୁ ନଥେଲି !

ବାବାଜୀ : ଦକ୍ଷିଣର ବାସ୍ନା ଏ ! ଠିକ୍ ଠିକ୍ ! (ଧୂପବତୀ ଲିଭି ଆସିଛି)

ରତନା : (ଆସିଛି ) ଶୁଣୁଚ ! (ବାବାଜୀ ଠାରିଛି ଆସିବାକୁ)

ମାମୁଁ ମାଇଁ, ବାବାଜୀ

ବୁଢ଼ୀ : କୁଆଡେ ଆଇଥେଲୁରେ ରତନା ?

କେତେବେଲୁ ଆଇଲେଣୁ ?

ରତନା : ମୁଁ ଆଇଲିଣି କେତେବେଲୁ...

ବୁଢ଼ା : କୁଆଡେ ଆଇଥେଲୁ ?

ରତନା : ଆଇଥେଲି ପୋଷେ ଚାଉଳ ଉଧାର ପେଇଁ ବା । ଆଉ ତମେମାନେ ତ ଅଛ ଏ ଅବସ୍ଥାରେ, କ'ଣ ଆଉ କହିବି ମୁଁ ।

ମାମୁ, ଏଠି ଆଖିବୁଜି କ'ଣ ଦେଖୁଥିଲବା ତମେମାନେ ? ମତେ ଦେଖାନ୍ତ ନାଇଁ ଟିକିଏ (ବୁଢ଼ୀ ଘର ଭିତରୁ ଯାଇ ଅଣ୍ଟିରେ ଚାଉଳ ଆଣି ଦେଇଛି, ଚାଉଳକୁ ଗାମୁଛାରେ ବାନ୍ଧି ଫେରି ଯାଉଥିଲା ରତନା)

ବୁଢ଼ୀ : ଟିକିଏ ପିଇ ଦେଇ ଯାଆମ ଆଇଚୁତ ଠିକଣା ବେଳାରେ । (ଗ୍ଲାସ ବଢ଼େଇ ଦେଇଛି)

ବୁଢ଼ା : ହଁ ପିଇ, ମାତର ଜାଣିଥା – ବାପ (ଲୋକଟି ଅଧା ପିଆ ହୋଇ ଚାହିଁଲା)

ମଦ କିଛି ନୁହେଁ କିଛି ନୁହେଁ ଯା ଆଗେରେ

ରତନା : କାହା ଆଗେରେ, କାହା ଆଗେରେ ? (ଚାହିଁ ରହିଲା କିଛି ସମୟ ପୁଣି ପିଇଲା)

ବୁଢ଼ୀ : କାଲି ସଂଜ ବୁଡନ୍ତିଆ ଆସିବୁତ ? ଆଜି ଯାହା ଦେଖିଲୁ ସେଇଆମ ଆଉ କିଛି ନାହିଁ, କିନ୍ତୁ କହି ଦଉଚି ଏ ମାଲ ପାଣି କିଛି ନୁହେଁ ତା ଆଗେରେ ।

(ଚାଲିଯାଇଛି ରତନା)

ବୁଢ଼ୀ : ତୁ ଆକୁ ଜାଣୁ ବାବାଜୀ, ଚିହ୍ନିଚୁ ତାକୁ ?

ବାବାଜୀ : ହଁ, ମତେ ସିଏ ତୁଠରେ ଠିକ୍ ଏଇଆ ପଚାରୁଥିଲା ।

ବୁଢ଼ା : କ'ଣ ?

ବାବାଜୀ : ବାବାଜୀ ତୁତ ଠାକୁର ଠାକୁରାଣୀଙ୍କ ପାଖ ଲୋକ କହିଲୁ ଦେଖି । କୋଉ ଦିନ ଆମ ଦୁଃଖ ଦୂର ହବ ?

ବୁଢ଼ା : ମୁଁତ ସେଇ କଥା କହୁଥେଲି । ଚାଲ ଖାଇବା ଚାଲ ।

(ବୁଢ଼ା ନିଜେ ଉଠିଛି, ବାବାଜୀ ହାତଧରି ବି ଉଠେଇଚି)

ବାବାଜୀ : ସେଇ ଯୋଉ ଦିବ୍ୟ ସୁନ୍ଦର ସ୍ତ୍ରୀ ଲୋକ କଥା କହୁଥିଲ ତମେ - ତା ନାଁ ମୁଁ ଜାଣେ ।

ବୁଢ଼ା : କ'ଣ କଅଣ ତା ନାଁ ?

ବାବାଜୀ ସେଇଟା ପ୍ରକୃତରେ କାହାର ନାଁ ନୁହେଁ ଯେ - ଶବ୍ଦଟାଏ - ଭାରି ମିଠା ଶବ୍ଦ ଟାଏ ।

ବୁଢ଼ା : କି ଶବଦ କହୁନୁ କହ । ଆରେ କହ ।

## ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ବୁଢ଼ୀ ଘିଅ ଦୀପଟିଏ ଜାଳିଛି ଓ ତା' ପାଖରେ ଧୂପବତୀ ଲଗେଇ ଦେଇ ବସି ରହିଛି, ବେଳେବେଳେ ଦୀପକୁ ଟିକିଏ ଟିକିଏ ତେଜୁଥାଏ)

ବୁଢ଼ା : ଦେଖିଲୁ ବାବାଜୀ ? ଚଳିବ କି ନାଇଁ କହିଲୁ ? ଠିକଣା ନିଚିପର ହେଇଚି ତ ?

ବାବାଜୀ : (ଅନ୍ୟ ମନସ୍କ ହୋଇ) ହେଇନି ମ କିଛି ହେଇନି ସବୁତ ଆରଂଭ ମାତ୍ର ।

ବୁଢ଼ୀ : ହେଇନି ?

ବୁଢ଼ା : (ଆସିଛି ଲୁଗା ଗଣ୍ଠିରାଟିଏ ଧରି, ଗଣ୍ଠିରାଟି ରଖିଦେଇଛି) ପାଇଚି, ଆଜି ପାଇଚିରେ ତା ଦେଖା ଆଉ ଥରେ । ଦେଖିଲୁ ଦେଖିଲୁ (ଫଟୋ ଟିଏ ବାହାର କରିଛି ଗୁଡ଼ାହେଇ

ରହିଥିବା କାଗଜ ଭିତରୁ) ଏଇନା ଏଇନା ସେ ଯାହା ନାଁ ତୁ କାଲିଠଉଁ କହିବୁ କହିବୁ କହୁଥେଲୁ ? ଏଇ ସେ ନୁହେଁ କିରେ ବାବାଜୀ ? କାଆଲିଠୁଁ ଏଇମାନେ ପକଡିଛନ୍ତି ଆମ ସଭିଙ୍କ ମୁଣ୍ଡଟି ମାନଙ୍କୁ ନୁହେଁ କିରେ ?

ବାବାଜୀ : ଯାକୁ ତୁମେ କୋଉଠୁ ପାଇଲ ମଉସା ?

(ବୁଢ଼ୀ ଆସି ଫଟୋଟି ରଖିଦେଲା ଦୀପ ଆଉ ଧୂପ ପାଖରେ, ବାବାଜୀ କିଛି ଫୁଲ ଆଣି ସଜେଇ ଦେଲା)

ବୁଢ଼ା : ମା' ମା'

ବାବାଜୀ : (ଚମକି ପଡ଼ି) ମା' ମା'

(ତିନିଜଣ ଯାକ କେମିତି ଏକ ଅନୁଭୂତି ବିହ୍ୱଳିତ ଅବସ୍ଥାରେ ବସି ଯାଇଛନ୍ତି ଫଟୋ ପାଖରେ, ହାତ ଯୋଡ଼ି) (ଆସିଛନ୍ତି ରତନା ଓ କେତୀ) ।

ରତନା : ମିଶେଇବ ନାଇଁ ତମ ସାଥିରେ ଆମକୁ ଟିକିଏ ବାବାଜୀ ।

ବାବାଜୀ : ଆ ଆ, ଚାଲିଆ, ଚାଲିଆସ ସମସ୍ତେ ଯେ ଅଛ ସେଠି । ଅଦୃଶ୍ୟରେ ଅନ୍ଧାରରେ ।

ବୁଢ଼ା : ମୁଁ କ'ଣ କହୁଥିଲି ବାବାଜୀ ? କହୁ ନଥିଲି ଭଗବାନ ଅଛନ୍ତି ? ଆଉ ଦିନେ ନା ଦିନେ ଆସିବେ ସମିତେ ତାଙ୍କରି ପାଖକୁ । କହୁ ନଥିଲି କି ?

ବାବାଜୀ : ସବୁ ମଣିଷ ଆସିବେ ଆଉ ଏଇ ମଣିଷ ସବୁ ବି କରିପାରିବ । ଅତି ମାନସ ଛୁଇଁଲାଣି ଧରାପୃଷ୍ଠକୁ , କେବେଠୁ ଛୁଇଁ ସାରିଲାଣି । ଅମର ହବ ଏଇ ମଣିଷ ।

ବୁଢ଼ା : କ'ଣ କହିଲୁ ? ମଣିଷ ସବୁ କରିପାରିବ ! ଆରେ ଏଇ ମଣିଷ କରିବ ସେ ସବୁ କଥା ଯାହାଯାହା କହୁଛୁ ତୁ ? ଏଇ ମିଛୁଆ ଚୋର ଧପାବାଜ ମଣିଷ ? ବାବାଜୀ ପିଲାଲୋକ ତୁ । ବୁଝିନୁ ବୁଝିନୁରେ ମଣିଷଙ୍କ ଦାଉ ! ଆରେ ଶଳା ଏଇ ମଣିଷ ହବ ଅମର ? ଅମର ହବ, - ବୁଢ଼ା ହବନି, ଭୋକ- ଶୋଷ ରହିବନି ତା'ର । ଦୁଃଖ କ'ଣ ଜାଣିବନି- ଏଇ ମଣିଷ ସେମିତି ହବ ? ଏଇସବୁ ଯିଏ ଆମେ ଏଠି ବଇଚେ ଏକାଠି ? ଅସମ୍ଭବ ଅସମ୍ଭବ ବାବାଜୀ, ସେ ମଣିଷ ଅଲଗା । ଆରେ ବାବାଜୀ ମଣିଷ ଆଉ ଭଗବାନଙ୍କୁ ଏକାଠି ସମତୁଲ କରି ଦେଏନା ତୁ- ଭାରି ଅଧର୍ମ ଘୋଟିଯିବ ସଂସାରକୁରେ ବାବାଜୀ !

ବାବାଜୀ : ଏଇ ସେଇ ମଣିଷ ମଉସା ଏଇ ସେଇ । ମୁଁ କହୁଛି ଏଇ ସେଇ - ଯେ ହବ ଅମର । ଆଉ ଯେତେ କଥା କହିଲ ତୁମେ ସବୁହବ ସେ - ତାରି ଦେହି ।

(ବାବାଜୀ ଆଖି କୋଣରେ ଦେଖାଦେଲା ଲୁହ)

ବୁଢ଼ୀ . : ମଣିଷ !

ରତନା ହଇରେ ବାବାଜୀ ! ଭୁଇଁକି ସତରେ ଛୁଇଁଲାଣି ସେ ?

କେତୀ : କିଏ, କିଏ ବା ? ଭୂତ ନା ପ୍ରେତ ! ଇଲୋ ମାଆଲୋ !(ଛାତିରେ ଛେପ ପକେଇଲା କେତି)

ରତନା : ନା – କଅଣ କହୁଥେଲୁ ତା' ନାଆଁଟି ବାବାଜୀ। ସେଇଆଟି ?

ବୁଢ଼ୀ : କହିଲା ପରା କେବେଠୁ ଓହ୍ଲେଇଲାଣି ଭୂଇଁକୁ କହିଲାନି ? କେତେ ଫଟେଇ ହୋଉଛ ! ନା କ'ଣ କହୁଚୁ ବାବାଜୀ ?

ବାବାଜୀ : ଅତିମାନସ । (ଗମ୍ଭୀର ହୋଇ)

କେତୀ : ସେଇଟା କୋଉ ଜିନିଷ ଲୋ ମା !

ରତନା : କୋଉଠିକି ଆଗ ଓହ୍ଲାଇବ ସେ ବାବାଜୀ ?

ବାବାଜୀ : ପାଠଚକ୍ର । (ଏଇଠି ସନ୍ଧ୍ୟାରେ ହେବ ପାଠଚକ୍ର)

ରତନା : ଆମେ ସମେତେ ଆସିବୁ । ଗାଁ ସାରା ସମେତେ ଆସିବୁ ଏଇ ପାଠଚକ୍ରକୁ । ଆମେ ମଣିଷର ଅସଲ ରୂପକୁ ଦେଖିବୁ । ମଣିଷର ଭାଗ୍ୟ ସଂପର୍କରେ ଜାଣିବୁ । ମଣିଷର ଅସଲ ରୂପକୁ ଚିହ୍ନିବୁ ।

ବାବାଜୀ : ଆଉ ଗୋଟିଏ କଥା । ଆମକୁ ନାଁକୁ ଛାଡିବାକୁ ହବ । ଯୋଉ ଜିନିଷର ନାଁ ନିତି ଘୋଷୁଚେ, ଦିନେ ଭଲା ଜାଣିଚେ ତାକୁ । ଚିହ୍ନିଚେ କି ତାକୁ ସତସତ ।

ବୁଢ଼ା : ବାବାଜୀ ତୁ ପୁଣି ଭୁଲୋଉଚୁ ଆମକୁ ସେଇ ଅଧର୍ମ ଆଡକୁ । ଆରେ ଯାହାର ନାଁ ଅଜଣା ତାକୁ ପୁଣି ଧରିବ କିଏ ? ଜାଣିବ କିଏ ? କେମିତି ? ରାମ ନଥାଇ ଅଛି କି ଏ ରାମାୟଣ ? ଗୋବିନ୍ଦ ନଥାଇ ଅଛି କିରେ ଭାଗବତ ପୁରାଣ ?

ବାବାଜୀ : ରାମ ଗୋବିନ୍ଦ ଏ ଗୁଡ଼ାକୁ ଖାଲି ନାଁ ନାଁ ଏଇ ନାଁର ମଣିଷକୁ ଅନେଇଚ ଭଲା କେବେ ତୁମେ ? କହିଲ କହିଲ – ଦେଖି ଯଦି ତାଙ୍କମାନଙ୍କ ନାଁ ରାମ ହେଇ ନଥାନ୍ତା, ଯଦି ତାଙ୍କ ମାନଙ୍କ ନାଁ ହେଇନଥାନ୍ତା ଗୋବିନ୍ଦ, ତେବେ କି ଲୋଡ଼ା ଆମର ଏଇ ନାଁ ରେ ? ସେଇଥିପାଇଁ କହୁଚି – ମୁଁ ସିନା ନାଁକୁ ଛାଡ଼ି ଧର ମଣିଷକୁ । ଶବ୍ଦକୁ ଛାଡ଼ ଧର ବିଷୟକୁ ।

(ବୁଢ଼ା ବୁଢ଼ୀ ରତନା, କେତୀ ସମସ୍ତେ ବୁଝି ନ ପାରିଲାପରି ପରସ୍ପରର ମୁହଁକୁ ଅନାଅନି ହେଲେ)

## ଦ୍ୱିତୀୟ ଦୃଶ୍ୟ

(ବୁଢ଼ା ରାଗିଯାଇଥାଏ ଅସମ୍ଭବ ଅସ୍ଥିର ଭାବରେ ଏଣେତେଣେ ବୁଲୁଥାଏ, କ'ଣ କରିବ ସ୍ଥିର କରି ପାରୁନଥାଏ । ଶେଷରେ ପାଟିକଲା)

ବୁଢ଼ା : ବାବାଜୀ, ବାବାଜୀ...ବାବଜୀ...

ବାବାଜୀ : (ଘରୁ ବାହାରି ଆସି) କ'ଣ ହେଲା ମଉସା, ତମେ ଏମିତି....

ବୁଢ଼ା : ଶୁଣ, ଏ ତୁ କ'ଣ... ବାବାଜୀ ?

ବାବାଜୀ : (ଆଶ୍ଚର୍ଯ୍ୟ ହୋଇ) ମୁଁ ?

ବୁଢ଼ା : ହଁ, ତୁ , ତୁ

କାମ ଜାଗ୍ରତ ହେଲାଣି ତୋ ଦିହରେ ବାବାଜୀ, ଏଣିକି ଯା, ଯା ସଂସାର କର, ସଂସାର କର ।

ବାବାଜୀ : କାମ !

ବୁଢ଼ା : ହଁ କାମ, ତୁ ମୋ ପିଣ୍ଡାରୁ ମହାଜନ ଘରକୁ କାହିଁକି ଉଠେଇ ନେଲୁ ପାଠଚକ୍ର ବାବାଜୀ ? କାହିଁକି ?

ବାବାଜୀ : (ସ୍ଥିର ଅବିଚଳିତ ଭାବରେ) ଧନୀମାନେ, ମହାଜନମାନେ ବି ବସିବେ ଏକା ପଙ୍ଗତରେ, ତେବେ ଯାଇ ବ୍ୟାପିବ ଏ.......

ବୁଢ଼ା : ତୁଟା ବାବାଜୀ ନୁହଁ, ଗୋଟାଏ ବେପାରୀ ତୁ, ବୈଶ୍ୟ ତୁ ।

ବାବାଜୀ : ବୈଶ୍ୟ !

ଜଗତରେ ମାତୃଶକ୍ତି ହିଁ ପ୍ରତିଷ୍ଠିତ ହେବ – କାମ ପରିଣତ ହେବ କରୁଣାରେ । ପୌରୁଷ ଅବତରିବ ବାତ୍ସଲ୍ୟରେ ।

ବୁଢ଼ା : (ମୋହିତ ହୋଇଗଲା ଶବ୍ଦରେ କ'ଣ ? କ'ଣ ସେ ଶବ୍ଦଟି ବାବାଜୀ !

କହୁନୁ ଟିକିଏ ଆରେ କହ ?

(ବାବାଜୀ ଆବାକାବା ହୋଇ ଚାହିଁ ରହିଥାଏ)

ବୁଢ଼ା : କରୁଣା, ଖାସା ଶବ୍ଦଟିଏ ବାବାଜୀ ଖାସା ଶବ୍ଦଟିଏ

(କାନ୍ଦି ପକେଇଲା ବୁଢ଼ା)

## ତୃତୀୟ ଦୃଶ୍ୟ

(ମହାଜନର ଘର, ଦୀପ ଧୂପବତୀ, ଦେଇ ଫଟୋଟିକୁ ଫୁଲରେ ସଜାଇ ଥାଏ ଝିଅଟିଏ, ରୂପରେ ଓ ଆଚରଣରେ ଯେପରି ସାତ୍ତ୍ୱିକ ଭାବାପନ୍ନର ଦେବୀ ପ୍ରତିମାଟି, ସେ)

ବୁଢ଼ା : ବୁଝିଲ ମହାଜନେ, ବାବାଜୀ କେତେଦିନ ହେଲା ମୌନ ରହୁଥେଲା, ଯେମିତି ମୂକ ପାଲଟି ଯାଇଚି । କାମ ଦାମ ପ୍ରତି ବି ଅନାସକ୍ତ ରହୁଥେଲା । ଏବେ ଗୋଟାଏ ନୂଆ ଭାବରେ ସେ ଆପଣା ଛାଏଁ ଆପଣାର ମୌନତାକୁ ଭାଙ୍ଗି ଦେଇଛି । ଆଉ ଜାଣିଚ, ଧୋବାଟୁଠର ସେଇ ହିସ୍‌ସ୍ ଫଟ୍, ହିସ୍‌ସ୍ ଠୋ ମନ୍ତ୍ରରେ ସେ ଯେମିତି ସିଦ୍ଧି ପାଇଗଲା । ଏବକୁ ସେ ଧରିଛି ଗୋଟାଏ ନୂଆ କାମ । ଅଗରବତୀ ତିଆରି । ସିଏ କହୁଛି - ପହିଲେ ସୁବାସ, ଆଉ ଏଇ ସୁବାସରୁ ଜନ୍ମିବ ସତ୍ୟଯୁଗ । ଦିବାନିଶି ଏଇ ହେଇଚି ଏଇଲେ ତାର ବିଶ୍ୱାସ । ସୁବାସ ଆଉ ସତ୍ୟଯୁଗ -ଏଇ ଯୋଡ଼ିକ ଶବ୍ଦକୁ ଆଶ୍ରା କରି ବଞ୍ଚିଛି ସେ ଏଇଲେ ।

ମହାଜନ : ଅଗରବତୀ ତିଆରି ସିଏ କ'ଣ ଜାଣିଥିଲା ?

ବୁଢ଼ା : ନାଇମ, ତାକୁ ନେଇଗଲି ଜଣେ ଅଗରବତୀ କାରିଗର ପାଖକୁ । କହିଲି ଏ ମୋ ପୁଅ । ଆପଣଙ୍କଠାରୁ ଅଗରବତୀ ଶିଖିବା ପାଇଁ ଆଇଚି । କାରିଗର ଯେମିତି ତା'ଠୁ ସତ୍ୟଯୁଗ ଆଉ ଅତିମାନସ କଥା ଶୁଣିଚି ବିଦ୍ୟା ନ ଶିଖାଇ ଆଉ ଯାଏ କୁଆଡ଼େ ? ଆଉ ଜାଣିଚ ମୋ ପିଣ୍ଡାରୁ ତମର ଏ କୋଠାଘରକୁ ପାଠଚକ୍ର ଉଠି ଆସିବାରୁ ଏହା କେବଳ ବ୍ୟାପିଚି ତା' ନୁହେଁ ତମ ଝିଅର ସାଜସଜା ମୋ ବୁଢ଼ୀ ମନକୁ ଭାରି ପାଇଚି । ସିଏ ବାବାଜୀକି କହୁଥେଲା -ଭଲ କଲୁତୁ ବାବାଜୀ, ଏଠିକି ଉଠେଇ ଆଣିଲୁ ତାକୁ, ଶବର ଘରୁ ନୀଳମଣିକି ବାହାର କରି ଧାଇଁଲୁ ବାବାଜୀ ବଡ଼ ଦେଉଳକୁ । ଭାରି ସିଆଣା ପ୍ରକୃତରେ, ଭାରି ବୁଦ୍ଧିଆ ତୁ ବାବାଜୀ ।

ଜାଣିଚ, କାଲି ବାବାଜୀ ତମ ଝିଅ ବିଷୟରେ ମୋତେ ପଚାରୁଥିଲା ।

ମହାଜନ : ମୋ ଝିଅ ବିଷୟରେ ? କ'ଣ ?

ବୁଢ଼ା : ପଚାରିଲା ସିଏ କିଏ ? ମୁଁ କହିଲି ଏଇତ ସେଇ, ଯାହାକୁ ମହାଜନ ପାଇଚି ଝିଅ ରୂପରେ ବାବାଜୀ । ସତ କହୁଚି ତମ ଘରର କନ୍ୟାମାନଙ୍କ ଚେହେରାରେ ଥାଏ ଠାକୁରାଣୀଙ୍କ ଆଭାସ । ବଡ଼ ଝିଅକୁ ଦେଖି ବାବାଜୀ ଦିବ୍ୟ ଭାବରେ ବୁଡ଼ିଗଲା କାଲି । ମୁଁ ଦେଖୁଛି ତା ଚେହେରାରେ ଗୋଟାଏ ନୂଆ ଆଲୁଅ ମହାଜନେ ! ବିଶ୍ୱାସ କର ।

ମହାଜନ : କେବଳ ମୁଁ ନୁହେଁ। ମୋ ଘରର ସମସ୍ତେ ଏଇ ପାଠଚକ୍ରର ମୋହରେ ପଡ଼ିଗଲୁଣି। ବଡ଼ ନିବିଡ଼ ବଡ଼ ଆତ୍ମୀୟ ସେ ବନ୍ଧନ ।

## ଚତୁର୍ଥ ଦୃଶ୍ୟ

(ବୁଢ଼ାର ଘର, ବସିଛନ୍ତି ବୁଢ଼ା ବୁଢ଼ୀ)

ବୁଢ଼ା : କାଲି ପାଠଚକ୍ରରେ କ'ଣ କହିଲା ବାବାଜୀ ?

ମଣିଷ ଆଉ ମରିବ ନାଇଁ ? ନାଆଁଲୋ ମରିବା ନାଇଁମ ଆମେ, ମରିବା କାହିଁକି ? (କିଛି ସମୟ ପାଇଁ ଭାବିଛି) ଆମେ ମଲେ ମରିବାମ କ'ଣ ହେଇଗଲା ସେଥିରୁ- ଭାବିଲୁ ଦେଖି ଆଜିକୁ କୋଟିଏ ବରଷ ମନେକର ଆଗକୁ ଗଲାଣି ଚାଲି । ଆଉ ତାହାରି ଭିତରେ ଆମରି ନାତି, ଅଣନାତି, ପଣନାତି ସବୁ ଗଲେଣି ହଜି- ମରି କିଏ କୁଆଡ଼େ, ହେଲେ ମଣିଷ ମରିବ ନାଇଁ - ବଞ୍ଚିବ ସେ । କେତେ ଉଶ୍ୱାସିଆ ଲାଗୁଚି ମ କଥାଟା ।

ବୁଢ଼ୀ : ତମକୁ ଉଶ୍ୱାସିଆ ନାଗିଲେ ନାଗୁଥାଉ - ମୋ ନାତି ଅଣନାତି ମରିବେ କାଇଁକି ମ ? ଏ କୋଉ ଉଶ୍ୱାସିଆ କଥା ଯେ ।

ବାବାଜୀ : (ଆସିଛି) ମଉସା ମାଉସି ।

ବୁଢ଼ା : ମରିନୁରେ ଆମେ ବାବାଜୀ, ଡରନାମ ପୁଅ, ଠାକୁରପା କହିଚେନି, ମରିବେନି ଆଉ ମରିବେନି କେହି - କହି ନାହାନ୍ତି କିରେ ? (କାନ୍ଦି କାନ୍ଦି ବିକଳ ହୋଇ ଆସିଛନ୍ତି ରତନା ଓ କେତୀ, କେତୀ କାନ୍ଧରେ ତାର ମୁମୂର୍ଷୁ ସନ୍ତାନ)

ରତନା: ରକ୍ଷାକର, ରକ୍ଷାକର, ବାବାଜୀ, ମଣିଷକୁ ପୁଣି ମାଇଲା ସେ, ପୁଣି ମାଇଲା ସେ ପୁଣି ମାଇଲା (କାନ୍ଦୁଥାଏ) ।

କେତୀ : 'ରକ୍ଷାକର ବାବାଜୀ, ରକ୍ଷାକର, ଗୋଡେଇଚି ସେ ଗୋଡ଼େଇଚି ପୁଣି ରେ।

(ବାବାଜୀ ସ୍ଥିର ହୋଇ ବସିଥାଏ କେତୀ ତା'ର ବର୍ଷକର ମୁମୂର୍ଷୁ ସନ୍ତାନକୁ ବାବାଜୀ କୋଳରେ ରଖିଦେଲା)

ବାବାଜୀ ମା' ମା' । ରକ୍ଷାକର ରକ୍ଷାକର ଏଇ ଅରକ୍ଷ ମଣିଷକୁ ମା' ।

ବୁଢ଼ା : ଯମ ଥଟ୍ଟା କରୁଚିରେ, ପୁଣି ଅଦଉତି ଲଗେଇ ଲାଣି ସେ ମଣିଷ ସଂଗେରେ ସେଇ ଯମର କାମ ଇଏ ବାବାଜୀ, ମଣିଷକୁ ଛାଡ଼ିବ ନାଇଁ ସେ - ଛାଡ଼ିବ ନାଇଁ ଜମାରୁ

(ପିଲାଟିକୁ ସମସ୍ତେ ଚାହିଁ ରହିଥାନ୍ତି, ବାବାଜୀ କୋଳରେ ପିଲାଟି ଶେଷ ନିଶ୍ୱାସ ତ୍ୟାଗ କଲା। କାନ୍ଦି ଉଠିଲେ ରତନା ଓ କେତୀ)

କେତୀ : (ଚିହିରି ଉଠିଲା) ତୁ ପରା କହିଥିଲୁ- ପାଠଚକ୍ରରେ ପରା କାଆଲି କୁହାହେଲା- କୁହା ହେଲା ନାଇଁ କିରେ, କେହି ମରିବେନି । ମରିବେନି କେହି- କୁହା ହେଲାନି କିରେ । ଏସବୁ କେମିତି ହେଇଗଲା ବାବାଜୀ ? ଦେଖୁଚୁଟି ତୁ, ନିଜ ଆଖିରେ ଦେଖୁଚୁଟି ?

(ନିର୍ବିକାର ଚିତ୍ତରେ ବସିଥାଏ ବାବାଜୀ)

ରତନା (ଚିତ୍କାର କରି) ତୁ କିଛି କହୁନୁ କାହିଁକି ବାବାଜୀ ?

ବୁଢ଼ା ବାବାଜୀ !

ରତନା ତା' ହେଲେ ତୁ ଯାହା କହୁଥେଲୁ ସେସବୁ କ'ଣ ମିଛ । ତାହା ମିଛ ? ଏ ବାବାଜୀ ତୁ କିଛି କହୁନୁ କାଇଁକିରେ...।

(ରତନା ଓ କେତୀ ଜୋରରେ କାନ୍ଦି ଉଠିଲେ)

## ପଞ୍ଚମ ଦୃଶ୍ୟ

(ପାଠଚକ୍ର , ଆଜି ପାଠଚକ୍ରରେ ନିସ୍ତବତା ରାଜୁତି କରୁଛି, ସମସ୍ତେ ନିରବ, ଦୀପଟିଏ ଜଳୁଛି ମିଞ୍ଜିମିଞ୍ଜି ହୋଇ । ସମସ୍ତଙ୍କ ମୁଖ ମଣ୍ଡଳରେ ନିଶାଚର ଛାୟା)

ବାବାଜୀ : (ସ୍ୱଗତଃ) ସଂଯମ, ସଂଯମ, ଯେଉଁଥିରୁ ଉତ୍ପନ୍ନ ହୋଇଥିଲା ନିଜେ ଯମ।

ରତନା : ବାବାଜୀ ତୁ ପରା କାଲି କହିଥେଲୁ ମରିବେନି କେହି ଏ ଗାଁରୁ । ରାତିଟିଏ ନ ପାହୁଣୁ କଅଣ ହେଇଗଲା ଇଏ, ଇଏ କଅଣ ହେଲା ?

(ମହାଜନର ବଡ଼ ଝିଅ ଦୀପ ଗୁଡ଼ିକୁ ଜଳାଉଥାଏ)

ବୁଢ଼ା : ଏଇ ମଣିଷ ନୁହେଁରେ ସେ ବାବାଜୀ ଯିଏ ଜିତିବ ଯମକୁ- ଆଉ ବାରେ ଆଉ ପ୍ରକାରେ ମଣିଷ ସେ । ସେ ମଣିଷ ତୁମେ ଆମେ ନୁହେଁରେ ବାବାଜୀ, ତୁମେ ଆମେ ନୁହେଁ । ସାକ୍ଷାତ, ଭଗବନା ସେ, ଚତୁର୍ଭୁଜ ସେ । ଶଂଖ, ଚକ୍ର, ଗଦା, ପଦ୍ମଧାରୀ ଜନମିବ ସେ ଏ ମର୍ତ୍ତ୍ୟରେ। ଆଉ ତିଆରିବ ନୂଆ ମଣିଷ, ସାଇ, ସମାଜ, ଗାଁ, ରାଇଜ, ଦୁଃଖ, ଶୋକ, ଡର, ଶଂକା, ଜରା, ମରଣ ତାଆରି ଏକା ନଥିବ ସିନା । ତୁମରି ଆମରି ପେଇଁ ଏ ସଭିଏଁ ଥିବେରେ ବାବାଜୀ ସଦା ବରାବର ଥିବେ । ଏ ସଭିଏଁ ତୁମ ଆମର ସାଥୀ । ସଂଗାତ ହୋଇ ରହିଥିବେ ସେମାନେ ଚିର କାଳକୁ ଚିର କାଳକୁ ।

କେତୀ : ଆମେ ନୁହେଁ ବା । କୋଉ ନାଇଁ କୋଉ ମଣିଷ ସେ ପଡିଚି ଯାହା କଥା ଏଠେଇଁ

ମହାଜନ : ପାପୀ ଗୁଡ଼ାକ ଆମେ- ଜନମ ଜନମର ପାପ ଠୁଳ ହେଇଛି ଏ ଦିହରେ । ଏଇ ଦିହରେ ବା ! କ'ଣ ସହଜ ପାଇଚକି ଧୁଆଧୋଇ କରି ସଫା କରିଦବ ଏଇ ଗୋଟାଏ ଜନମରେ ।

ରତନା : ମଣିଷ ଭଗବାନ ନୁହେଁ - ଭଗବାନ ବି ମଣିଷ ନୁହଁରେ ଭାଇ । ଏମିତି ଭାବିବାଟା ହିଁ ପାପ ଆମର । ଆଉ ଆମକୁ ବୁଡ଼େଇଲା କିଏ କେଜାଣି ଏ ପାପରେ - ଏ ଘୋର କର୍ମରେ ।

ବୁଢ଼ା : ବାବାଜୀ - ଯୋଉ ସତ୍ୟଯୁଗ କଥା ଉଠେଇଚୁ ତୁ ସେ କଥା ସତ ଯେ -ହେଲେ ବହୁତ ଡେରି ବହୁତ ଡେରି ବାପ ସେ ସବୁ ଦିନ । ଏଇ ଦିନେ ଓଳିକର କଥା ନୁହେଁ ସେ ବାବୁ । ଲକ୍ଷ ଲକ୍ଷ ବର୍ଷ ଅଛି ଆଗକୁ ।

ବାବାଜୀ : ସଂଯମ, ସଂଯମ, ଯେଉଁଥିରୁ ଉତ୍ପନ୍ନ ହୋଇଥିଲା ନିଜେ ଯମ ।

## ଷଷ୍ଠ ଦୃଶ୍ୟ

(ବୁଢ଼ାର ଘର, ବସିଛି ବାବାଜୀ, କିଛି ଗୋଟାଏ ଭାବୁଛି, ଗଭୀର ଭାବରେ)

ବାବାଜୀ : ମଉସା, ମଉସା, (ଡାକିଛି)

ମଉସା ଯାଉଚି ମୁଁ । ଯାଉଚି ମୁଁ ମଉସା

ବୁଢ଼ା (ଘରୁ ବାହାରି ଆସି) ଏ ବଡ଼ି ଭୋରୁ କ'ଣ ଯାଉଚି ଯାଉଚି ହଉଚୁ ।

କୁଆଡ଼େ କୁଆଡ଼େ ଯିବୁରେ ପାଗଳା । ସବୁଆଡ଼େ ସେଇ ଘୋର ଅନ୍ଧାରରେ ବାପ - ଆଲୁଅ ନାଇଁ, ଆଲୁଅ ନାଇଁ - ଯିବୁ କୁଆଡ଼େ ?

ବୁଢ଼ୀ : (ଦୁଃଖ ଭରା କଣ୍ଠରେ) ନୀଳମଣିକୁ ତୁ ଫୁଉଣି ଆଣେ ଫେରେଇ ବାପ- ବଡ଼ ଦେଉଳ ଲୋଡ଼ା ନାଇଁ ତା'ର, ଅନ୍ଧାରିଆ ବଣ ଲଟାରେ ତାଆରି ଆନନ୍ଦ, ଘିନିଆ ତାକୁ ସେଠିକି ବାପ- ସବୁ ପୁଣି ଭଲ ହୋଇଯିବ- ଯିବ ସୁଧୁରି ।

ବାବାଜୀ : ଧନୀମାନେ ମହାଜନମାନେ ବସିବେ ଏଇ ପଙ୍ଗତରେ । ଧର୍ମକୁ ଛାଡ଼ି ତିଷ୍ଠିବ ନାଇଁ କୋଉ ସମାଜ - କୋଉ ଦେଶ ମୁହୂର୍ତ୍ତେ, ବସ୍ତୁକୁ ଛାଡ଼ି ଜୀବନର ସ୍ପନ୍ଦନ କଦାପି ହେବନି । ଏମିତି ଆସିବନି କୋଉ ଦିନ ଯେବେ ଦାରିଦ୍ର୍ୟ ଦେବ ସୌନ୍ଦର୍ଯ୍ୟ, ମଣିଷକୁ - ଧନୀମାନଙ୍କୁ ଘେନି ଯିବାକୁ ହେବ ସଂଗରେ - ଅରଣ୍ୟରୁ ବଡ଼ ଦେଉଳକୁ । ଆଉ ବଡ଼ ଦେଉଳରୁ ବଡ଼ ଦାଣ୍ଡକୁ ଚାଲିବା ତ ନୀଳମଣିର ଧର୍ମ । କିଏ ଅଟକେଇବ ତାକୁ ।

ରତନା ମତେ ବି ଧରେ ସାଙ୍ଗରେ ବାବାଜୀ ।

କେତୀ : (ପୁଟୁଲୁଟିଏ ଧରି) ମତେ ନଅ । ମତେ ନିଅ । ସାଥିରେ ତୋଓରୋ ବାବାଜୀ ।

ବାବାଜୀ : ଭଗବାନ, ମା' ମା'

ବୁଢ଼ୀ : ଆଉ କାହିଁକି ତା' ପିଛା ଧରିଚ ତମେ ଦି'ଟା ଦୂବବରକୋଳି ପତର ଦେଇ ଯମକୁ ଡାକି ପୂରେଇଲ ଘରେ, ଆଉ ବଦନାମି କଲ ଭଲ ମଣିଷର।

ଅଲକ୍ଷଣା। ଅଲକ୍ଷଣାରେ ତମେ ଦିଇଟା, ଅଲକ୍ଷଣା ମଣିଷକୁ କିଏ ଉଧାରିବ କିଏ ରକ୍ଷା କରିବ ଭଲା ।

(ବାବାଜୀଙ୍କୁ) ହଉ ଯିବୁ ଯଦି ଯିବୁ, ଗଣ୍ଡିଏ ଖାଇନେଇ ଯାଆ ବାବାଜୀ

ବୁଢ଼ା : ହଁ, ହଁ ନ ଖାଇକି କୁଆଡ଼େ ଯିବୁ ?

ଆମେ ଦିହେଁ ବି ଚାଲିବା ତୋ ସାଥିରେ ଦକ୍ଷିଣକୁ ବାବାଜୀ ।

ବୁଢ଼ୀ : ହଁ ହଁ ଆମେ ବି ଯିବୁ । ମୁଁ ଯାଉଚି । ସାଇରେ ଏ ଖବର ଦେଇକି ଆସିବି - ଦକ୍ଷିଣକୁ ଦକ୍ଷିଣକୁ ବାହାରିଲୁ ଗୋ ଆମେ।

ବୁଢ଼ା ଦକ୍ଷିଣ ହିଁ ଆମର ଅସଲ ଘରରେ ବାବାଜୀ - ଆମେ ଯିବା ।

ଏଇ ଦେଖିଲ ଆକାଶ ସାରା ଛାଇ ହୋଇଛନ୍ତି ହଂସ, ଦକ୍ଷିଣ ଦକ୍ଷିଣ, ଆହା ହଂସ ମାନଙ୍କର ବାଟରେ ଯିବା ଚାଲ ।

ବାବାଜୀ ହଂସ , ହଂସ, ପରମ ହଂସ।

(ଗୋଟାଏ ଅପୂର୍ବ ପୂଲକ ତା' ଦେହରେ ଖେଳିଗଲା, ବୁଢ଼ା, ବୁଢ଼ୀ, ରତନା ଓ କେତୀ ଜୀବନର ସବୁ ଦୁଃଖ ଯେପରି ଭୁଲି ଗଲେ)

## ସପ୍ତମ ଦୃଶ୍ୟ

(ମହାଜନ ଘର, ଗୋଟିଏ ଉତ୍ସବ ପାଳନ କଲାପରି କୋଳାହଳ ଲାଗି ରହିଛି, ସମସ୍ତେ ସମବେତ ହୋଇଛନ୍ତି, ସମସ୍ତଙ୍କ ମୁଖ ମଣ୍ଡଳ ଉଜ୍ଜ୍ୱଳ ଦିଶୁଛି)

ରତନା : ଚାଲ ଚାଲ, ବାହାର, ଉଛୁର ଆଉ କାହିଁକି ?

ବୁଢ଼ା : (ବୁଢ଼ୀକୁ କହୁଥାଏ) ଗାଁ ସାରା ସମସ୍ତେ ବାହାରିଲେଣି, ଏଇ ଦେଖିଲୁ ସେଇ ସ୍ଥିର ଆଉ ଗମ୍ଭୀର ମୂର୍ତ୍ତିଟିକୁ (ମହାଜନର ବଡ଼ ଝିଅକୁ ଦେଖେଇ) ଆହା, ଧଳା ଶାଢ଼ିଟିଏ ପିନ୍ଧି କି ପବିତ୍ର ଆଉ ସାତ୍ତ୍ୱିକ ଦେଖା ନଯାଉଚି ଝିଅଟି ।

ବୁଢ଼ୀ ସିଏ କିଏ ?

ବୁଢ଼ା ମହାଜନର ଝିଅ ବା

ରତନା ଯିବାନି କଁରେ ଆମେ ଆଜି ଆଉ ଦକ୍ଷିଣକୁ । ବାହାର ଶୀଘ୍ର ।

ବୁଢ଼ା : ମଣିଷ ତାହେଲେ ଚାଲିଚି, ଚାଲିବ ଏଣିକି ସେଇ ଦିଗକୁ ।

ମହାଜନ : ଚାଲିଚି ଚାଲିଚି ଭାଇ ସେ ସେଣିକି - ସିଆଡ଼କୁ ସଂସାରରେ ଅଛି କୋଉ ଶକ୍ତି ଭଲା ଯେ ଅଟକେଇବ ତାକୁ -ଛନ୍ଦିବ ତା ପାଦକୁ ।

ରତନା ଖାଇଲେ ପିଇଲେତ, ମହାଜନ ସବୁ ବ୍ୟବସ୍ଥା କରିଥେଲେ, ଚାଲ ତେବେ।

ମହାଜନ (ଯୋଡ଼ ହସ୍ତ ହୋଇ କହିଛି) ତମେମାନେ ଯିବ ନାହିଁ ଏକା, ଯିବି ମୁଁ ବି ତମ ସାଥିରେ ଯିବେ ମୋ ସ୍ତ୍ରୀ ମୋ ପିଲାମାନେ । ଏକା ମୁଁ ଆଉ ମୋ ପିଲାମାନେ ନୁହନ୍ତିମ , ଏ ସବୁ ଯେତେ ଯାହା ଦେଖୁଛ -(ଆଙ୍ଗୁଠି ବୁଲେଇ ଆଣିଲା ଚତୁର୍ଦିଗକୁ) ସିଆଡ଼େ ଯିବେ ସଭିଏଁ ତମରି ସାଙ୍ଗରେ। ସବୁ ହାନିଲାଭ ଖର୍ଚ୍ଚବାର୍ଚ୍ଚ ଉଠିବ ମୋର ଏ ସମ୍ପତ୍ତିରୁ ପିଲେ । ଆମେ କ'ଣ ବାହାରିଚେ ସମସ୍ତେ ଗାଁଟା ସାରା ?

ବାବାଜୀ : ସମସ୍ତେ ସମସ୍ତେ ।

ବାବାଜୀ : ତେବେ କିଏ ଜଗିବ ଆମର ଏ ଘରଦ୍ୱାର ବିଲ ବାଡ଼ି... ?

ବାବାଜୀ (ହସିହସି) କିଏ ଜଗିଚି ଆମର ଏଇ ବନ, ପର୍ବତ, ନଦୀ ସମୁଦ୍ରକୁ ମହାଜନେ ।

ବୁଢ଼ା ଏ ଶୁଣିଲୁଣି, ସେଇ ଛୋଟ ପିଲାଟି ତା ମାଆକୁ କହୁଛି ଗଛମାନେ ପାହାଡ଼ ମାନେ କୁଆଡ଼େ ଚାଲିଲେଣି ଆମ ଆଗେ ଆଗେ ପଛେ ପଛେ ।

ବୁଢ଼ୀ : ଯାଇ ପାରିବା ? ଯାଇ ପାରିବା ତ ଆମେ ଯାଂକ ସାଙ୍ଗରେ ଏଇ ପିଲାମାନଙ୍କ ସାଙ୍ଗରେ ।

ବୁଢ଼ା : ଆଗରେ ରେଳ ଷ୍ଟେସନ । ମହାଜନ ଆମ ଯାତ୍ରାର ସବୁ ବ୍ୟବସ୍ଥା କରିସାରିଛନ୍ତି ।

ବୁଢ଼ୀ : ଧଳା ପଦ୍ମଫୁଲ ପରି ରୂପଟିଏ କେମିତି ବାଟ କଢ଼େଇ ନଉଚି ଦେଖିଲ !

ବୁଢ଼ା ସିଏ ମହାଜନର ବଡ଼ ଝିଅ। ମୁଁ କହୁ ନଥିଲି ତା' କଥା ।

ବୁଢ଼ୀ : ମହାଜନେ ଦେଖୁଚ ତ ତମ ପଦ୍ମଫୁଲିଆ ସେଇ ଝିଅକୁ । ଯାହାକୁ ଜନ୍ମଦେଇଥିଲ ତମେ ତମ ଶରୀରରୁ । (ମହାଜନ ବିମୋହିତ ହୋଇ ଚାହିଁ ରହିଥାଏ)

ବୁଢ଼ା : ପଦ୍ମଫୁଲର ବାପତୁ !

ପଦ୍ମଫୁଲର ବାପ ତୁ,

ଶାନ୍ତ ହ, ଚୁପ୍ ହ

ମଣିଷର କର୍ତ୍ତା ତୁ - କର୍ତ୍ତା ତୁ

(ସମସ୍ତେ ଚାଲିବା ଢ଼ଙ୍ଗରେ ରହିଯିବେ)



# A Day with Biju Patnaik in Rajdhani College

*Santanu Kumar Acharya*

Looking back to the years-1988 to 1990 during which I served the Rajdhani College, Bhubaneswar as the Principal, I was confronted with some absurd and funny situations that were worth recording for the sake of posterity to reckon with. I would like to reminisce one such as a present to my readers who are celebrating the Silver Jubilee of the college this year.

It was the day when Biju Patnaik visited the college as the chief guest of the Annual Function of the Students' Union. This was early in 1990, just a few days before the General Election was going to be held for the Orissa Legislative Assembly. Biju Babu was the sitting M.L.A. of the local Bhubaneswar constituency at the time and was holding the post of opposition leader in the Orissa Legislative Assembly also. He was the most eligible person who would fit in the task for which he was so eagerly solicited by the student's council that year. But the times were not favourable. The General Election in Orissa was notified already. Candidates have already filed their nomination papers. Biju Patnaik himself was also a candidate for the Bhubaneswar Legislative Aassembly constituency. As per rules of People's Representation Act candidates were restricted against electioneering in public institutions after the Election Commission notified and election machinery started rolling. Hence they were not welcome for the function at our college at that time. For this reason Biju Babu could not have been invited officially by the Principal of the Rajdhani College as a guest. But the student leaders, in their excess enthusiasm, went directly to their beloved leader and invited him. And, as always, the youth -doting aging leader over ruled the formality and without waiting for the Principal's invitation quickly gave his consent to their proposal.

It was at the time when I was away from the college for a full month for attending a training course for the Principals at the State Administrative officers' Training Institute in Bhubaneswar. During my absence the senior most teacher, Dr. Bidyut Kumar Samal, Reader in History, was in-charge of the college. Dr. Samal used to meet me during this period at my Sahidnagar residence and report on the day-to-day administrative problems and sought advice in matters of emergency. He was a cheerful man by nature and was not to be easily deterred by the day-to-day problems in the college.

But that evening he arrived with a worn out look on his face. After a solemn moment of silence he moaned. " Take back the charge of your college Sir and kindly spare me of the Election Commission's noose around my neck. Oh ! Enough is enough. I can no more run your college..." Then he slumped into a chair heavily.

I was yet to take proper note of his mental state. So I asked lightly, " Now what is that my friend ? Has Mr. Seshan sent any summons in your name or what ! Why do you look so disturbed and sick ?"

Those were the days of the most dreaded Chief Election Commissioner of India, Mr. Seshan. At the mention of that name the big and small of the political class used to spit venom and utter imprecations of their choice.

But Dr. Samal was not in his usual spirit that evening. He was glum and fretting. After a while he opened up and fumed," There is a very serious trouble ahead for us Sir! We might be jailed for breaking the election rules. The students have let us down. They went to Biju Babu this morning and invited him to be the Chief guest at their function. And look at the old man ! He immediately handed them his consent letter without waiting for our formal invitation ! As per rules we could not invite a political person to the college at this juncture of time. The election process has already started working. Now, in case the old man visits the college– we are finished ! You as the Principal and I as the adviser of the

Students' Union we may get ourselves ready to be booked in an election litigation and the rest you can imagine."

I was taken aback at that statement. The serious consequences of violating the election rules were the talk of the town. The newspapers daily reported on such maladventures perpetrated by the reckless officials of the country. Some big guys have already tasted Mr. Sheshan's ire and no law court could come to their help. So I had to stand up to Dr. Samal's warning and take a careful note of the situation at hand.

At my behest my colleague explained the situation further. "If we don't invite him," he lowered his voice, "we would face the music after the elections. For Biju Babu would surely return as the next Chief Minister of the state. And if we are forced to invite him then there is Mr. Shesan's baton ! Further there is the student's ire if we ignore their choice of the guest. All this amount to the devil and the deep sea story Sir ! Now think of it and say what should I do. Bye the bye when your deputation to that Administrative College will end ? When are you joining back ?"

It was indeed the devil and the deep-sea situation Dr. Samal pushed me into. Of course my service- career as a Govt. servant was packed all along with such devilish stories, and time and again I have been cornered by the administration for taking independent stand on issues where I differed with my peers. But ultimately I always won my point and the devil let me alone. So why not now I venture a little and do something to boost up the moral of my colleague ?

Suddenly an idea flashed in my mind. I thought it out and said, "Leave the matter to me Dr. Samal. I shall return next Monday and take charge from you. You will not take the blame. But kindly do what I ask you to. Just print an invitation card for the function. In that card the name of the chief guest will be printed without any mention of his political designation. No mention of M.L.A. or any such stuff. Simply print Biju Patnaik, Member of the Governing body of the college. Bas

! And a further precaution-never use the college stationery to write an official letter of invitation to Biju Babu. You will know the reason for adopting this strategy in proper time. Please go back home and sleep well. The responsibility is of mine. I shall face the election litigation alone if that comes to that."

Dr. Samal was perplexed. He wanted more light. So I said, "See-we are not inviting Biju the politician. We are inviting the member of the Governing body of the college who is the guardian of the students and all of us. What was the occasion, suppose the Election Commission will ask us, to explain for inviting that member of the G.B. to the college? Our precise reply would be straightforward. Well, we will maintain the argument that the guardian wanted to meet his wards and the wards needed him. It is an affair between them. The college authorities were merely servants to the wishes of the Governing Body. Does that sound sense?" I patted my perplexed colleague on the back and sent him home.

Dr. Samal was out of the door when I again shouted so that he would hear me clearly, "Listen ! Please ask the Roads and Building Dept.. to get the entire college building white washed before the function. After all Biju Babu is no ordinary guest..."

Next Monday was the meeting day. The invitation cards were printed and distributed in time. True to my promise I proceeded to take charge of the office from Dr. Samal that day. After all it was my responsibility to conduct the meeting in the college as the Principal. So I had to reach the college well in advance of the meeting time. But before reaching the portals of the building, I was taken aback and stood aghast. It seemed the college building has disappeared from sight. In its place was a big canvas showing a bizarre abstract painting-a terrible collage of wheels lotuses human hands and hammer-sickle and many more ! All possible political party symbols and party slogans were splashed in coal tar and bold graffities on the front walls of the building.

I saw Dr. Samal, clutching at a sheaf of papers, approaching me. He seemed relieved that I have come back in time. I looked at him in a raze and demanded, "Did you get this building white washed as I asked you that day Prof. Samal ?" My voice was rough to my ears.

"Yes Sir," replied Dr. Samal nervously, "The R.B. Dept.. did their job neatly. But as you know politics know no aesthetics. Through out last night they were at it, drawing these Chakras, Padmas, Hand and the Hammer and the sickle. Who can stop them ? But never mind Sir. We have to conduct the meeting peacefully. The police have arrived already. The Guests are coming in time."

I went with a dejected mood into my office room. Took back the charge of my office from Dr. Samal. Then we had to wait till the guests arrived.

The guests did arrive in time.

We busied ourselves for receiving the guests and make arrangements to hasten the meeting's proceedings. Biju Babu was ushered into my office room along with two more guests. One of them was Dr. Rama Murty, the Director of the Physics Institute, Bhubaneswar. The other one was a friend of Sri Patnaik, a young industrialist from Bombay. They were ceremoniously received and introduced with members of the staff. For a while things went on very well. Biju Babu started chatting with Dr. Rama Murty. I remained busy in attending to the last minute paper works before proceeding to the meeting place, with the guests. Suddenly I was startled by a growl. It was unmistakably the growl of the lion; our Kalinga Keshari the chief guest of the day !

"Hey Principal !," the lion roared directly at me again. I turned my attention to the man who was destined to hold the reins of the State Administration as the Chief Minister only a week after. And as soon as I turned my face towards him the great patriarch almost mimicked at me and put that impossible question, "Can your college produce such a scientist like this man ?" I found him pointing a finger at Dr. Rama Murty, the

Director of the Physics Institute, an internationally renowned scientist !

It was one of the severest tests of my career as an educationist. By that time I had already put in thirty-two years of service and only two more years to go for retirement. I became impatient with politicians who were constantly trying to teach lessons to the teachers and interfering with the system without any compunction.

"No Sir," my spontaneous reply was unbelievable. But that was the truth, which I wanted to record here for the sake of posterity to know. Then I cast a look around and quipped,

"This education industry is not designed for producing great scientists or geniuses like Dr. Murty. It is geared to produce only such eminent political scientists like a Biju Patnaik or a Janakiballav Patnaik"

It was a spontaneous exasperation on my part and it exploded like a bomb cell in the room. Suddenly every thing went quiet and tense. I too became a little apprehensive. But my sixth sense spoke not to stop there but to carry on the talk !

So I hastened to explain. "Sir, would you kindly care for a moment to come out of this room and see for yourself the condition of this college building by your own eyes. It was white washed only yesterday. But today it is plastered with filth. It is only because they knew you were coming here. Now you may say if I am wrong in asserting that these places are no more the educational institutions of the past where Dr. Rama Murty and the likes were educated. You may ask any student whom you may choose to ask here and now as to who Dr. Rama Murty is? None could possibly answer. But ask any student here the question-who is Biju or Janaki Babu. The answer is at the fingertip. I may be excused for what I said. But what I meant was that few students are thinking of becoming scholars or researchers in the fields of higher education in India today. The older generation has already gone with the wind."

That was the last nail I hammered on the conscience of our esteemed guest that day. Having that accomplished I felt like the real master of the ceremony. The guests were led to the dais ceremoniously. When my turn came to introduce the guests I reminded them of the demand of the time and cited the election rules. Politely asked them not to say any such thing that might be used later for the transgression of the code of conduct by the candidate in the eyes of the Election Commission.

Needless to say every thing went on well. On the dais Biju Babu asked me, "Hey Principal ? What do you want me to speak then if not politics?"

With maximum politeness and courtesy I suggested, "Sir, you are here as the member of the Governing body today. Kindly speak to our students of the adventures you undertook upon yourself in your college days as a student. For example didn't you take bicycle and travelled all the way from the Ravenshaw college campus at Cuttack to Peshawar, now in Pakistan ? And of course your historical adventure in rescuing Dr. Hatta of Indonesia ! We are all eager to hear your youthful adventures today, but not politics."

Then I asked Dr. Samal to switch on the tape recorder for recording our beloved leader Biju Babu's speech.

The meeting was highly successful. But the Election Commission's threat still lurked in the air. And the hatchet struck-

An election case was indeed lodged against me. A candidate who lost the election filed the case at the State Election Commission's court. He complained against me by name that by inviting Biju Patnaik to the Rajdhani College I was responsible for slashing a substantial size of his votes that caused his defeat and made Biju Patnaik the winner. By the time Biju Babu had already become the C.M. of Orissa. An officer from the Secretariat came for conducting the enquiry to my college and wanted to record the preliminary explanations from me on the matter.

Needless to say that my strategy did work. I won the case. I could be able to prove that the college did not invite the guest officially. He visited in the capacity of the guardian of the college as the ex-officio member of the G.B. The most crucial proof came from the tape-recorded proceedings of the meeting. When the cassette was played out my voice was distinctly heard. The Chief Guest was requested by the Principal not to utter even a word of politics and he abided by that principle like a disciplined Statesman was proved finally and I was let off the noose.

